JEEBANAPATHE by Rama Debi Choudhury ; Published by Grantha Mandir, Cuttack-2, & Berhampur-1, Printed by Gramasevak Samabaya Press, Cuttack-2, First Edition : April, 1984, Price ; Rs. 30.00

ପ୍ରକାଶକ :

ଅଭିରାମ ମହାପାତ୍ର

ଗ୍ରନ୍ଥମନ୍ଦିର, ବିନୋଦବିହାରୀ, କଟକ-୨

ଗ୍ରନ୍ଥମନ୍ଦିର, ମେନ୍‌ରୋଡ୍, ବ୍ରହ୍ମପୁର-୧

ମୁଦ୍ରକ :

ଗ୍ରାମସେବକ ସମବାୟ ପ୍ରେସ, କଟକ-୨

ପ୍ରଥମ ସଂସ୍କରଣ : ୧୯୮୪ ଏପ୍ରିଲ୍

ମୂଲ୍ୟ : ଟ ୩୦-୦୦

ସାଦା ବନ୍ଧେଇ : ଟ ୨୪-୦୦

# ସୂଚୀ

---



ରମାଦେବୀ ( ୧୯୫୬-୫୭ )

# ମୁଖବନ୍ଧ

ଆତ୍ମତ୍ୟାଗ, ସେବା, ପରୋପକାର, ସଦ୍‌ବିଚାରର ପ୍ରତିମୂର୍ତ୍ତି ଦେଶପୂଜ୍ୟା ଶ୍ରୀମତୀ ରମା ଦେବୀ ପ୍ରାୟ ଚୌରାଶୀ ବର୍ଷ ତଳେ ୩-୧୨-୧୮୯୯ରେ କଟକ ସହରରେ ଜନ୍ମହୋଇଥିଲେ । ତାଙ୍କ ବାପଘର ଓ ମାମୁଘର ଓଡ଼ିଶାର ନାଁଡ଼ାକ ଖାନ୍ଦାନ୍ ବଡ଼ଲୋକ ଘର । ପ୍ରାତଃସ୍ମରଣୀୟ ଉତ୍କଳଗୌରବ ମଧୁସୂଦନ ଦାସ ତାଙ୍କ ବଡ଼ବାପା । ତାଙ୍କ ବାପା ଗୋପାଳବଲ୍ଲଭ ଦାସ ଓଡ଼ିଶାର ଗୋଟିଏ ଆଦ୍ୟ ଉପନ୍ୟାସ 'ଭୀମାଭୂୟାଁ'ର ଲେଖକ ଓ ସେତେବେଳର ଜଣେ ଡେପୁଟି କଲେକ୍ଟର । ତାଙ୍କ ମା' ବସନ୍ତ କୁମାରୀ ଦେବୀ ବିଖ୍ୟାତ ନନ୍ଦକିଶୋର ଦାସଙ୍କ କନ୍ୟା । ନନ୍ଦକିଶୋର ଦାସ ଇଂରେଜ ସରକାରଙ୍କ ଅଧୀନରେ "ସୁପରିଣ୍ଟେଣ୍ଡେଣ୍ଟ ଅଫ୍ ଗଡ଼ଜାତ୍ ମାହାଲ୍‌ସ୍" ବୋଲି ଉଚ୍ଚପଦସ୍ଥ କର୍ମଚାରୀ ଥିଲେ ଓ ଧନୀ ଜମିଦାର ମଧ୍ୟ ଥିଲେ । ଶ୍ରୀମତୀ ରମା ଦେବୀଙ୍କ ବଡ ମାମୁ ବ୍ରଜକିଶୋର ଦାସ ଡେପୁଟି କଲେକ୍ଟର ହୋଇଥିଲେ ଓ ପରେ ଦଶବର୍ଷ ପର୍ଯ୍ୟନ୍ତ ପୁରୀରେ ଶ୍ରୀ ଜଗନ୍ନାଥ ମନ୍ଦିରର ସୁପରିଣ୍ଟେଣ୍ଡେଣ୍ଟ ଥିଲେ । ସ୍ନେହ, ଆଦର, ପ୍ରାଚୁର୍ଯ୍ୟ, ବୈଭବ ଭିତରେ ଶ୍ରୀମତୀ ରମା ଦେବୀ ବଢ଼ିଥିଲେ ଓ ତାଙ୍କୁ ଯେତେବେଳେ ମାତ୍ର ପନ୍ଦରବର୍ଷ ପୂରିଥାଏ, ୧୯୧୪ ଅପ୍ରେଲ୍ ମାସରେ ଗୋଟିଏ ବିଖ୍ୟାତ ବଂଶରେ ତାଙ୍କର ବିବାହ ହୋଇଥିଲା । ତାଙ୍କ ଶ୍ୱଶୁର ଶ୍ରୀ ଗୋକୁଳାନନ୍ଦ ଚୌଧୁରୀ କଟକ ଜିଲ୍ଲା ଜଗତସିଂହପୁର ପାଖ ଖେରସ ଗ୍ରାମର ଗୋଟିଏ ପୁରୁଷ ପୁରୁଷର ନାଡ଼ାକ ଜମିଦାର ପରିବାରର । ସେ କଲେଜରେ ରମା ଦେବୀଙ୍କ ବାପାଙ୍କ ସହପାଠୀ ଥିଲେ । ସେ ଓକିଲାତି ଆରମ୍ଭ କଲାବେଳେ ମଧୁବାବୁଙ୍କ ଜୁନିଅର ଥିଲେ ।

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଆନ୍ଦୋଳନରେ ସେ ଆଗ କିଛି ବର୍ଷ ମଧୁବାବୁଙ୍କ ପ୍ରଧାନ ସହକର୍ମୀ ଥିଲେ, ପରେ ଦୁହିଁଙ୍କ ମତ ଅମେଳ ହେବାରୁ ସେ ଅଲଗା ହୋଇଗଲେ । ସେ ଜଣେ ନାଁଡାକ୍ ଓକିଲ୍ ଥିଲେ; କଟକ ଜିଲ୍ଲାବୋର୍ଡ଼ର ଚେୟାରମ୍ୟାନ୍ ହୋଇଥିଲେ ଓ କଟକର ଜଣେ ମୁଖ୍ୟ ବ୍ୟକ୍ତି ଥିଲେ । ତାଙ୍କ ବଡପୁଅ ଗୋପବନ୍ଧୁଙ୍କ ସହିତ ରମା ଦେବୀଙ୍କର ବିବାହ ହେଲା । ପୂଜ୍ୟ ୰ ଗୋପବାବୁ ଜଣେ ଉଜ୍ଜ୍ୱଳ କୃତୀ ଛାତ୍ର, ସେହି ବର୍ଷ ସେ ଏମ୍. ଏ. ପାଶ୍ କରିଥାନ୍ତି । ତାଙ୍କର କୌଣସି ଅଭାବ କି ସମସ୍ୟା ନ ଥାଏ । ସେ ନିଶ୍ଚିନ୍ତ ଓ ଦାୟିତ୍ୱ-ଶୂନ୍ୟ ହୋଇ ସୁଖଭୋଗରେହିଁ ଜୀବନ କଟାଉଥାନ୍ତି । ବାପଘର ପରି ଶାଶୁଘରେ ସ୍ନେହ ଆଦର ସୁଖ ପ୍ରାଚୁର୍ଯ୍ୟ ଭିତରେ ଶ୍ରୀମତୀ ରମା ଦେବୀଙ୍କ ଦିନ ବିତିଯାଉଥାଏ । ତାପରେ, ବିଭାଘରର ଦେଢମାସ ପରେ ୧୯୧୪ ଡିସେମ୍ବରରେ ତାଙ୍କ ବାପା ମରିଗଲେ ଓ ଆଉ ଦୁଇ ମାସରେ ୧୯୧୫ ଫେବୃଆରୀରେ ତାଙ୍କ ଶ୍ୱଶୁର ଗୋକୁଳାନନ୍ଦ ଚୌଧୁରୀ ମରିଗଲେ । ସେହି ଦ୍ୱିତୀୟ ଦୁଃଖର ଆଘାତରେ ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କ ନିଶ୍ଚିନ୍ତ ଜୀବନର ମୂଳଦୁଆ

ହୋଇଚାଲିଗଲା । ନାନା ଦାୟିତ୍ୱ ତାଙ୍କ ମୁଣ୍ଡ ଉପରେ ଅଜାଡ଼ି ହୋଇ ପଡ଼ିଲା । ତାଙ୍କୁ ଘର ଚିନ୍ତା ଲାଗିଲା । ୧୯୧୬ରେ ସେ ଲ' (ଆଇନ) ପଢ଼ିବାକୁ କଲିକତା ଗଲେ, ୧୯୧୭ରେ ସେ ପ୍ରଥମଭାଗ ଆଇନ୍ ପରୀକ୍ଷା (ପ୍ରିଲିମିନେରି ଲ) ପାଶ୍ କଲେ, କଲିକତା ବିଶ୍ୱବିଦ୍ୟାଳୟରେ ପ୍ରଥମ ସ୍ଥାନ ପାଇଲେ, କିନ୍ତୁ ଘରର ଦାୟିତ୍ୱ ତୁଲାଇବାଲାଗି ତାଙ୍କୁ ଶୀଘ୍ର ରୋଜଗାର କରିବା ଦରକାର ପଡ଼ିଲା । ଆଉ ବର୍ଷେ ଓକିଲାତି ନପଢ଼ି ସେହି ବର୍ଷ ସେ ୧୯୧୭ରେ ଡେପୁଟି କଲେକ୍ଟର ଚାକିରି ପାଇଁ ଦରଖାସ୍ତ କଲେ, ତହିଁରେ ନିଯୁକ୍ତି ପାଇ କଟକରେ ଅବସ୍ଥାପିତ ହେଲେ । ୧୯୧୫ ଅକ୍ଟୋବରରେ ତାଙ୍କର ପ୍ରଥମ ସନ୍ତାନ ମନମୋହନ ଚୌଧୁରୀ ଜନ୍ମ ହୋଇଥାନ୍ତି, ୧୯୧୭ ନଭେମ୍ବରରେ ତାଙ୍କର ଦ୍ୱିତୀୟ ସନ୍ତାନ ଶ୍ରୀମତୀ ଅନ୍ନପୂର୍ଣ୍ଣାଙ୍କର ଜନ୍ମ । ୧୯୧୯ର ଶେଷ ଆଡ଼କୁ ସେ କଟକରୁ ବଦଳି ହୋଇ ଯାଜପୁରର 'ସେକେଣ୍ଡ ଅଫିସର' ହେଲେ । ସେତେବେଳେ ୧୯୨୦ର ପ୍ରବଳ ବଢ଼ିବେଳେ ସେଠି ସେ ଲୋକଙ୍କ ଶୋଚନୀୟ ଅବସ୍ଥା ଦେଖିଥିଲେ ଓ ସାହାଯ୍ୟ ବାଣ୍ଟିଥିଲେ । ୧୯୨୦ ଶେଷରେ ସେ ବରଗଡ଼ ବଦଳିହେଲେ; କିନ୍ତୁ ଆଉ ଚାକିରି କରିବାକୁ ତାଙ୍କୁ ବିଷପରି ଲାଗିଲା, ସେ ୧୯୨୧ ଫେବୃୟାରୀ ଆରମ୍ଭରୁ ଇସ୍ତଫା ଦେଲେ ଓ ଆଉ ସାତଦିନେ କଂଗ୍ରେସ ଆନ୍ଦୋଳନରେ ଯୋଗଦେଲେ ।

ସେତେବେଳେ ଶ୍ରୀମତୀ ରମା ଦେବୀଙ୍କ ବିବାହର ସାତବର୍ଷ ହୋଇଥାଏ, ତାଙ୍କୁ ଏକୋଇଶି ବର୍ଷ ଚାଲିଥାଏ । ତାଙ୍କ ଜୀବନ ସୁଖ ସ୍ୱାଚ୍ଛନ୍ଦ୍ୟ ଭୋଗ ପ୍ରାଚୁର୍ଯ୍ୟରେହିଁ ବିତି ଆସିଥାଏ । ତାଙ୍କର ସ୍ୱାମୀ ଗାନ୍ଧୀମାର୍ଗ ଧରି ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେବାରୁ ସେ ମଧ୍ୟ ଆନନ୍ଦରେ ତାଙ୍କର ଅନୁଗାମିନୀ ହେଲେ । ଧନୀ ପରିବାରର ଝିଅ ହେଲେବି ପିଲାଦିନୁ ଧନ ପ୍ରତି ତାଙ୍କର ଆସକ୍ତି ନଥିଲା, ପରୋପକାର ଓ ଦେଶସେବା ପାଇଁ ଆତ୍ମୋତ୍ସର୍ଗ ଲାଗି ମନ ଡାକୁଥିଲା; ବର୍ତ୍ତମାନ ସେଥିପାଇଁ ସୁଯୋଗ ମିଳିଲା । ତାଙ୍କ ସ୍ୱାମୀଙ୍କ ସହିତ ସେ ମଧ୍ୟ ସବୁ ପ୍ରକାର ବିଳାସ ବ୍ୟସନ ଆଡ଼ମ୍ବର ବର୍ଜନ କରି ସମାଜର ଦରିଦ୍ରତମ ଶ୍ରେଣୀର ଲୋକଙ୍କ ପରି ଶ୍ରମଭିତ୍ତିକ ସରଳ କଠୋର ଜୀବନ ବିତାଇ ସାଧାରଣ ଜନ ଗୋଷ୍ଠୀଙ୍କ ଉପକାର ପାଇଁ ଆତ୍ମତ୍ୟାଗ ଓ ଜନସେବାର ପରାକାଷ୍ଠା ଦେଖାଇ ବଞ୍ଚିବାକୁ ଲାଗିଲେ । ସେମାନେ ଧନଦଉଲତ, କୋଠାବାଡ଼ି ଛାଡ଼ି ଓହ୍ଲାଇ ଆସିଲେ ଧୂଳି କାଦୁଅକୁ, ପାରମ୍ପରିକ ଆଭିଜାତ୍ୟ ଛାଡ଼ି ଏକାତ୍ମ ହୋଇଗଲେ କୃଷୀ ମୂଲିଆଙ୍କ ସହିତ । ଦେହ ସୁଖ ସୁବିଧା ନିରାପତ୍ତାକୁ ଫୋପାଡ଼ିଦେଇ ଆଦରିନେଲେ କଷ୍ଟ, ଅନିଶ୍ଚିତତା, ବିପଦ । ଆପଣା ସଂକୀର୍ଣ୍ଣ ପରିବାର, ଶ୍ରେଣୀ, ଗୋଷ୍ଠୀର ବନ୍ଧନରେ ସୀମିତ ନରହି ଆଦୋରି ନେଲେ ଏକ ବିଶାଳ ମନୁଷ୍ୟ ପରିବାର । ଶ୍ରୀ ଗୋପବନ୍ଧୁ ଚୌଧୁରୀ ଆପଣା ପରିବାରର ସମସ୍ତଙ୍କୁ ଓ ଅନ୍ୟାନ୍ୟ ଅନେକ ବ୍ୟକ୍ତିଙ୍କୁ ଏହି ପନ୍ଥା ଧରାଇଥିଲେ ।

ଶ୍ରୀମତୀ ରମା ଦେବୀଙ୍କର ଏ ପରିବର୍ତ୍ତିତ ଜୀବନ ୧୯୨୧ ଫେବୃଆରୀରେ ଶ୍ରୀ ଗୋପବନ୍ଧୁ ଚୌଧୁରୀ ଚାକିରି ଛାଡ଼ି କଂଗ୍ରେସରେ ଯୋଗ ଦେଲା ଦିନୁଁ କ୍ରମେ କ୍ରମେ ଆରମ୍ଭ ହୋଇଗଲା । ସେ ବର୍ଷ ମାର୍ଚ୍ଚ ମାସ ୨୩ ତାରିଖରେ କଟକରେ ବିନୋଦବିହାରୀ ମନ୍ଦିର ହତାରେ

ମହିଳାମାନଙ୍କର ଗୋଟିଏ ସଭା ହେଲା, ମହାତ୍ମା ଗାନ୍ଧୀ କଟକ ଆସିଥାନ୍ତି, ତାଙ୍କୁ ସମ୍ବର୍ଦ୍ଧନା ଦିଆଗଲା । ଶ୍ରୀମତୀ ରମା ଦେବୀ ମଧ୍ୟ ସେହି ସଭାକୁ ଯାଇଥିଲେ । ମାର୍ଚ୍ଚ ୨୪ ତାରିଖରେ କଟକରେ କାଠଯୋଡ଼ି ନଦୀବାଲିରେ ବିରାଟ ସଭାରେ ମହାତ୍ମାଜୀ ଭାଷଣ ଦେଲେ । ଶ୍ରୀମତୀ ରମା ଦେବୀ ସେ ସଭାକୁ ଗଲେ । ସେଠି ମହାତ୍ମାଜୀ ମହିଳାମାନଙ୍କୁ ନିବେଦନ କଲେ ଯେ ସେମାନେ ଦେଶର ସ୍ୱାଧୀନତା ପାଇଁ କାମ କରନ୍ତୁ, ସେମାନେ ଆଉ ଗହଣା ପିନ୍ଧନ୍ତୁ ନାହିଁ, ଗହଣାତକ ଦେଶକାମ ପାଇଁ ଦାନ କରନ୍ତୁ । ମହାତ୍ମାଜୀଙ୍କର ସେହି ଉପଦେଶ ଶ୍ରୀମତୀ ରମା ଦେବୀ କାର୍ଯ୍ୟକାରୀ କଲେ । ସାତବର୍ଷ ପୂର୍ବେ ବାହାହେଲାବେଳେ ସେ ଅଳଙ୍କାରରେ ଝୁଉଣୀ ହୋଇ ଆସିଥିଲେ । ଏକା ସୁନା ଗହଣା ଶରୀରେ ଭରିର ପିନ୍ଧିଥିଲେ—ସେ ସବୁ ସେ ସତ୍ୟାଗ୍ରହ ଆନ୍ଦୋଳନ ପାଇଁ ଦାନକରିଦେଲେ । ସେ ବହୁମୂଲ୍ୟ ପାଟ ଆଦି ପିନ୍ଧୁଥିଲେ, ସେଗୁଡ଼ିକ ଗରିବଗୁରୁବାଙ୍କୁ ବାଣ୍ଟି ଦେଇ ନିଜେ ଶସ୍ତା ଶାଢ଼ୀ ପିନ୍ଧିଲେ ଓ ଅତି ଶୀଘ୍ର ହାତକଟା ମୋଟା ଖଦଡ଼ ଶାଢ଼ୀ ପିନ୍ଧିବା ଅଭ୍ୟାସ କରିନେଲେ । ସେ ଯେତେବେଳେ ନିରାଭରଣା ହୋଇ ହାତକଟା ମୋଟା ଖଦୀ ପିନ୍ଧି ଦେଶ କାମରେ ଖରାବର୍ଷାରେ ଖାଲି ପାଦରେ ଗାଁଗଣ୍ଡାରେ ବୁଲିଲେ, ସେତେବେଳେ ଗ୍ରାମଆଡ଼େ ହୁରି ପଡ଼ିଗଲା । ତାଙ୍କର ପାରମ୍ପରିକ ଆଭିଜାତ୍ୟର ପୃଷ୍ଠଭୂମିରେ ତାଙ୍କର ଏ ପରିବର୍ତ୍ତନ ଲୋକଙ୍କ ମନରେ ଗଭୀର ପ୍ରଭାବ ପକାଇଲା । ଦେଶପାଇଁ ସେମାନଙ୍କ ତ୍ୟାଗ ତପସ୍ୟା ଆହୁରି ଉଜ୍ଜ୍ୱଳ ଓ ଗୁରୁତ୍ୱପୂର୍ଣ୍ଣ ଦିଶିଲା, ଅନେକଙ୍କୁ ଅନୁପ୍ରାଣିତ କଲା ।

ଖାଲି ବେଶଭୂଷା, ଚଳଣିରେ ଯେ ସେମାନଙ୍କର ଏ ପରିବର୍ତ୍ତନ ଘଟିଗଲା ତାହା ନୁହେଁ, ଆଚାର, ବିଚାର, ଆଭିମୁଖ୍ୟ ସବୁଥିରେ ଆମୂଳଚୂଳ ପରିବର୍ତ୍ତନ ହେଲା । ସେମାନେ ଜାତି-ଅଜାତି, ଛୁଆଁ-ଅଛୁଆଁ, ଧର୍ମ-ଭେଦ, ଗୋଷ୍ଠୀ-ସଙ୍କୀର୍ଣ୍ଣତା ସବୁ ବନ୍ଧବାଡ଼ ଲଙ୍ଘିଲେ । ଅନ୍ଧବିଶ୍ୱାସ ଓ କୁସଂସ୍କାର ଭାଙ୍ଗିବା ବିରୁଦ୍ଧରେ ପ୍ରଚାର କଲେ, ଅନ୍ୟାୟ ଅବିଚାରର ପ୍ରତିରୋଧକଲେ, ଗାନ୍ଧୀ ବିଚାର ମାର୍ଗରେ ଗୋଟିଏ ନୂଆ ସମାଜ ଗଢ଼ିବାପାଇଁ ବାଟ କଢ଼ାଇଲେ । ନିଜେ ସ୍ୱାଧୀନତା ସଂଗ୍ରାମରେ ଆତ୍ମାହୁତି ଦେଇ ପର ହିତ ପାଇଁ ଜୀବନ ବଞ୍ଚିଲେ ।

୧୯୨୧ ରୁ ୧୯୨୮ ପର୍ଯ୍ୟନ୍ତ ଶ୍ରୀମତୀ ରମା ଦେବୀଙ୍କ ଜୀବନରେ ଏ ପରିବର୍ତ୍ତନ କ୍ରମେ କ୍ରମେ ବଢ଼ି ବଢ଼ି ଆସୁଥାଏ । ସେତେବେଳେ ସେ ଗ୍ରାମଆଡ଼େ ଗଲେ ବି କଟକରେ ହିଁ ରହୁଥାନ୍ତି । ସେଠି ତାଙ୍କ ଶ୍ୱଶୁରଙ୍କର କୋଠା ଥାଏ । ୧୯୨୨ରେ ଶ୍ରୀ ଗୋପବନ୍ଧୁ ଚୌଧୁରୀ ଯେତେବେଳେ ନିଖିଳ ଭାରତ କଂଗ୍ରେସ କମିଟିର ଓଡ଼ିଶାରୁ ପ୍ରଥମ ସଭ୍ୟ ହୋଇ କମିଟିର ବାର୍ଷିକ ସମ୍ମେଳନରେ ଯୋଗ ଦେବାକୁ ଗୟା ଗଲେ, ସେ ପରିବାରଙ୍କୁ ବି ସେଠିକି ନେଇଥିଲେ । ସେହି ୧୯୨୨ରେ ସେମାନଙ୍କର ତୃତୀୟ ସନ୍ତାନ ଗୋଟିଏ ଶିଶୁପୁତ୍ର ହଠାତ୍ ମରିଗଲା । ସେହିଦିନୁଁ ସେମାନେ ସଙ୍କଳ୍ପବଦ୍ଧ ହେଲେ ଯେ ଭବିଷ୍ୟତରେ ସେମାନଙ୍କର ଆଉ ସନ୍ତାନ ହେବ ନାହିଁ । ୧୯୨୪ରେ ଶ୍ରୀ ଗୋପବନ୍ଧୁ ଚୌଧୁରୀ ଦୁରାରୋଗ୍ୟ ଜ୍ୱରରେ

ପଡ଼ି କିଛିଦିନ ସଙ୍କଟାପନ୍ନ ଅବସ୍ଥାରେ ରହିଲେ । ଦିନ ରାତି ଅକ୍ଳାନ୍ତ ସେବା କରି ଉତ୍କଣ୍ଠା ଭିତରେ ଦୁଃସ୍ୱପ୍ନ ପରି ଶ୍ରୀମତୀ ରମା ଦେବୀ ସେସବୁ ଆତଙ୍କମୟ ଦିନ ବିତାଇଥିଲେ ।

୧୯୨୮ରେ ଶ୍ରୀମତୀ ରମା ଦେବୀ ସ୍ୱାମୀଙ୍କ ସଙ୍ଗେ କଲିକତା କଂଗ୍ରେସ ସମ୍ମେଳନରେ ଯୋଗ ଦେଲେ । ସେହି ୧୯୨୮ ତାଙ୍କ ଜୀବନରେ ଆଉ ଗୋଟିଏ ପରିବର୍ତ୍ତନର ସମୟ । କାରଣ ସେତିକିବେଳୁ ପୂଜ୍ୟ ଗୋପବାବୁ ସପରିବାର ଅଲକାଶ୍ରମରେ ରହିଲେ । ରମା ଦେବୀ ସେହି ମଫସଲରେ ମାଟି ଚାଳ ଘରେ ଆଶ୍ରମର କଠିନ ନିର୍ଘଣ୍ଟମୟ ଜୀବନ ବିତାଇବାକୁ ଲାଗିଲେ, ଅଲକାଶ୍ରମରେ ଚାଲିଥିବା ବିବିଧ କାର୍ଯ୍ୟରେ ଭାଗ ନେଲେ ଓ ବିଶେଷତଃ ଗାଁ ଗାଁ ବୁଲି ଗାନ୍ଧୀବାଦ ପ୍ରଚାର କରିବା, କଂଗ୍ରେସରେ ମହିଳାମାନଙ୍କୁ ମେମ୍ବର କରିବା, ମହିଳାକର୍ମୀ ସଂଗ୍ରହ ଓ ତାଲିମ, ଗାଁମାନଙ୍କରେ ସଫେଇ, ରୋଗୀ ସେବା, ଔଷଧ ବଣ୍ଟା, କୁସଂସ୍କାର ଅନ୍ଧବିଶ୍ୱାସ ଓ ଭୟ ଦୂରୀକରଣ ଆଦି କାର୍ଯ୍ୟ କରାଇବାକୁ ଲାଗିଲେ । ସ୍ୱାଧୀନତା ଆନ୍ଦୋଳନ-ଲାଗି ସେତେବେଳେ ଅଲକାଶ୍ରମ ଗୋଟିଏ ପ୍ରଧାନ ଓ ଶକ୍ତିଶାଳୀ କେନ୍ଦ୍ର ହୋଇଥାଏ । ୧୯୨୧ରୁ ସେ କେବେ କେବେ ଅଲକାଶ୍ରମକୁ ଯାଉଥିଲେ, କିନ୍ତୁ ରହୁନଥିଲେ । ୧୯୨୮ରୁ ସେ ଦେଶକାମରେ ଆହୁରି ଅଧିକ ମିଶିଗଲେ ଓ ପଦାକୁ ବାହାରିପଡ଼ି ଅନ୍ୟାନ୍ୟ ମହିଳା କର୍ମୀଙ୍କ ସହିତ ଗାଁ ଗାଁ ଚାଲିଚାଲି ବୁଲିବାକୁ ଲାଗିଲେ । ଲବଣ ସତ୍ୟାଗ୍ରହ ଆନ୍ଦୋଳନରେ ୧୯୩୦ ଅପ୍ରେଲରେ ଶ୍ରୀ ଗୋପବନ୍ଧୁ ଚୌଧୁରୀ ଗିରଫ ହେବା ପରେ ଶ୍ରୀମତୀ ରମା ଦେବୀ, ଶ୍ରୀମତୀ ମାଳତୀ ଦେବୀ ଆଦି ବାଲେଶ୍ୱରର ଇଞ୍ଚୁଡ଼ି ଗଲେ, ଶ୍ରୀଜଙ୍ଗ ଯାଇ ଲୁଣମାଟି ଆଣିଲେ, ଅଲକାଶ୍ରମକୁ ଫେରିଆସିଲେ । ସେଠୁ ଗଲେ କୁଜଙ୍ଗ, ସେଠୁ ପାରାଦୀପ, ସେଠୁ ଫେରି ପୁଲିସଫୌଜଦଳ ଆଗରେ କାଳିଆପାଟରେ ଲୁଣ ମାରିଲେ ଫେରିଲେ । ଶ୍ରୀଜଙ୍ଗରେ ପୁଲିସ ଅତ୍ୟାଚାର ଓ ଜୋରିମାନା ହେବାର ଶୁଣି ସେମାନେ ସେଠାକୁ ଯାଇ ଅନୁସନ୍ଧାନ କରି ଫେରିଲେ । ସେ କାର୍ଯ୍ୟ ଅତ୍ୟନ୍ତ କଷ୍ଟପ୍ରଦ, ବିପଦସଙ୍କୁଳ ଓ ଦୁଃସାହସିକ ଥିଲା । ପୁଲିସ ଡରରେ ବସ୍‌ବାଲା ସେମାନଙ୍କୁ ନିଅନ୍ତି ନାହିଁ, ଗାଁରେ ଆଶ୍ରା ମିଳେ ନାହିଁ, ବର୍ଷାରେ ପାଣିକାଦୁଅରେ ଦୂରଦୂର ବାଟ ଚାଲିଚାଲି ଯିବାକୁ ପଡ଼େ । ଦିନେ ଦିନେ ଉପାସ । ସେହିପରି ଅବସ୍ଥା ଭିତରେ ସେମାନେ ଯାଜପୁର, କେନ୍ଦ୍ରାପଡ଼ା, ପଟ୍ଟାମୁଣ୍ଡାଇ, ମାହାଙ୍ଗା, ଧର୍ମଶାଳା ଆଦି ଅଞ୍ଚଳର ଗାଁଗଣ୍ଡା ବୁଲିଲେ, ଗାନ୍ଧୀନୀତି ଓ ଅସହଯୋଗ ପ୍ରଚାର କଲେ, ସଭାସମିତି କଲେ, ଚାନ୍ଦା ସଂଗ୍ରହ ଓ ସ୍ୱେଚ୍ଛାସେବିକା ସଂଗ୍ରହ କଲେ । ଚାରିଆଡ଼େ ବିଲାତି ବର୍ଜନ, ମଦ ଓ ଅଫିମ ଦୋକାନ ପିକେଟିଂ କାର୍ଯ୍ୟକ୍ରମ ଚାଲିଥାଏ, ସ୍କୁଲ କଲେଜ ଆଗରେ ପିକେଟିଂ ହୋଇ ଛାତ୍ରମାନେ ସେସବୁ ବର୍ଜନ କରନ୍ତୁ ବୋଲି କୁହାଯାଉଥାଏ, ତହିଁରେ ସେ ମଧ୍ୟ ଅଂଶ ଗ୍ରହଣ କରୁଥାନ୍ତି । ୧୯୩୦ ନଭେମ୍ବର ୧୧ରେ ରାତି ୧୦ଟାରେ କଟକରେ ଗିରଫ ହୋଇ ସେ ଜେଲ୍‌କୁ ନିଆଗଲେ । ତାଙ୍କ ଜୀବନରେ ତାହା ପ୍ରଥମଥର ଜେଲ୍ । ବିଚାରରେ ତାଙ୍କୁ ଆଠମାସ ଜେଲ ଦଣ୍ଡ ହେଲା ଓ ସେ ଭାଗଲପୁର ଜେଲକୁ ଗଲେ । ଜେଲରୁ ଫେରିଲା ପରେ ପୁଣି ସେ ପୂର୍ବ କାର୍ଯ୍ୟରେ ଲାଗିରହିଲେ । ୧୯୩୨ ଜାନୁଆରି ୨୬ରେ

ସ୍ୱାଧୀନତା ସଂକଳ୍ପ ପାଠକରି ସେ ପୁଣି ଗିରଫ ହୋଇ ଜେଲ୍ ଗଲେ । ସେ, ତାଙ୍କ ସ୍ୱାମୀ ଓ ତାଙ୍କ ପରିବାରର ସମସ୍ତେ ଭାଗଲପୁର ଓ ବିଭିନ୍ନ ଜେଲ୍‌ରେ ରଖାଗଲେ । ସେ ଅଗଷ୍ଟ କି ସେପ୍‌ଟେମ୍ବର ୧୯୩୨ରେ ଜେଲରୁ ବାହାରିଲେ । ୧୯୩୨ ସେପ୍‌ଟେମ୍ବରରୁ ଭାରତରେ ଅସ୍ପୃଶ୍ୟତା ନିବାରଣ ପାଇଁ ଐତିହାସିକ ଆନ୍ଦୋଳନ ଆରମ୍ଭ ହେଲା ଓ ସେହି ଉଦ୍ଦେଶ୍ୟରେ "ଅଖିଳ ଭାରତ ହରିଜନ ସେବକ ସଂଘ" ପ୍ରତିଷ୍ଠିତ ହେଲା । ତାର ମୁଖ୍ୟ କାର୍ଯ୍ୟାଳୟ ଦିଲ୍ଲୀରେ ରହିଲା । ତାର ପ୍ରାଦେଶିକ ଶାଖାମାନ ଖୋଲିଗଲା । ଓଡ଼ିଶା ଶାଖାର କାର୍ଯ୍ୟାଳୟ କଟକରେ ରହିଲା । ତାର ସଭାପତି ରହିଲେ କବିରାଜ ଶ୍ରୀ ବାଲୁକେଶ୍ୱର ଆଚାର୍ଯ୍ୟ ଓ ସମ୍ପାଦକ ରହିଲେ ଶ୍ରୀମତୀ ରମା ଦେବୀ ଓ କୋଷାଧ୍ୟକ୍ଷ ରହିଲେ ଶ୍ରୀ ସତ୍ୟନାରାୟଣ ସେନ୍‌ଗୁପ୍ତ । ଶ୍ରୀ ଗୋପବନ୍ଧୁ ଚୌଧୁରୀ ଜେଲରୁ ଖଲାସ ହୋଇ ତାର ନିର୍ଦ୍ଦେଶକ ଓ ସଂଚାଳକ ହୋଇ ସବୁ କାର୍ଯ୍ୟ ତୁଲାଉଥାନ୍ତି । କଟକରେ ଶ୍ରୀମତୀ ରମା ଦେବୀଙ୍କ ନେତୃତ୍ୱରେ ନାରୀକର୍ମୀମାନେ ନାନା ଜଣଂସମାସ୍ୟ କାର୍ଯ୍ୟ କରୁଥାନ୍ତି । ସେମାନେ ହରିଜନ ବସ୍ତିମାନଙ୍କର ସାହି ସାହି ବୁଲି ଝୋଟେଇ ଗ୍ରୁଞ୍ଜୁଣୀ ଧରି ମେହେନ୍ତର ସାହି ସଫାକରନ୍ତି, ସେମାନଙ୍କ ଘର ଭିତରେ ଲୁଗାପଟା ସଫା କରନ୍ତି, ସେମାନଙ୍କ ସଙ୍ଗେ ମିଶି କେବେ କେବେ ସହରର ପାଇଖାନା ସଫା କରନ୍ତି, ହରିଜନମାନଙ୍କୁ ପରିଷ୍କାର ପରିଚ୍ଛନ୍ନ ରଖିବା, ମଲା ଗୋରୁ ଆଦି ଖାଇବା ବନ୍ଦ କରିବା, ମଦ ଛଡ଼େଇବା, ପାଠ ପଢ଼ାଇବା, ଉଚ୍ଚ ଜାତିର ଲୋକଙ୍କ ପରି ସୁରୁଚିରେ ଲୁଗା ପିନ୍ଧିବା ଆଦି ନାନା ତାଲିମ ଦେଉଥିଲେ, ସେମାନଙ୍କ ଭୟ ଦୂର କରୁଥିଲେ, ଆତ୍ମବିଶ୍ୱାସ ଓ ଆତ୍ମମର୍ଯ୍ୟାଦା ବଢ଼ାଉଥିଲେ, ସବର୍ଣ୍ଣ ଓ ହରିଜନଙ୍କ ଭିତରେ ଭେଦଭାବ ଭାଙ୍ଗୁଥିଲେ ଓ ସହରର ଅନେକ ଭଦ୍ରବ୍ୟକ୍ତି ଭଦ୍ରମହିଳା ସେମାନଙ୍କ ସଙ୍ଗେ ଯୋଗ ଦେଉଥିଲେ । ହରିଜନମାନଙ୍କୁ ଔଷଧ ବଣ୍ଟାହେଉଥିଲା ଓ ସେମାନଙ୍କ ପାଇଁ ଅନ୍ୟାନ୍ୟ ନାନା ସେବାକାର୍ଯ୍ୟ କରାହେଉଥିଲା । ୧୪-୩-୩୩ରୁ ଜାନୁଆରି ୧୯୩୪ ଯାକେ ଶ୍ରୀ ଗୋପବନ୍ଧୁ ଚୌଧୁରୀ ପୁଣି ଜେଲ୍‌ରେ ରହିଲେ; କିନ୍ତୁ ଶ୍ରୀମତୀ ରମା ଦେବୀ ହରିଜନ ସେବା କାର୍ଯ୍ୟରେ ବ୍ୟାପୃତ ରହିଥାନ୍ତି ।

୧୯୩୪ ମେ’ ୭ ତାରିଖରୁ ଓଡ଼ିଶାରେ ଗାନ୍ଧୀଜୀଙ୍କର ଐତିହାସିକ ହରିଜନ ଗସ୍ତ ଲାଗି ରହିଲା । ୭ତାରିଖ ରାତିରେ ପୁରୀରେ ପହଞ୍ଚି ସେଠୁ ସେ ନାନା ସ୍ଥାନରେ ରହଣି କରି କରି ପଦଯାତ୍ରା କରି କଟକ ଗଲେ । ସେଠୁ ରେଳରେ ପାଟନା ଯାଇ ସେଠି ନିଃଭାଃକଃ କମିଟିରେ ଯୋଗଦେଇ ଫେରି ପୁଣି ମେ ୨୧ରେ ବୈଣୀ ଷ୍ଟେସନରେ ରେଳରୁ ଓହ୍ଲାଇଲେ । ସେଠୁ ପଦଯାତ୍ରା କରି କଟକ ଓ ବାଲେଶ୍ୱର ଜିଲ୍ଲାର ନାନା ମଫସଲ ଅଞ୍ଚଳ ବୁଲିଲେ ଓ ଜୁନ୍ ଦ୍ୱିତୀୟ ସପ୍ତାହ ଆରମ୍ଭରେ ଭଦ୍ରଖ ଷ୍ଟେସନକୁ ଆସି ସେଠୁ ରେଲ୍‌ରେ ଚାଲିଗଲେ । ପୁରୀରୁ କଟକ ପଦଯାତ୍ରାବେଳେ ଶ୍ରୀମତୀ ରମା ଦେବୀ ତାଙ୍କ ସଙ୍ଗେ ସଙ୍ଗେ ଥିଲେ । କିନ୍ତୁ ସେହି ମେ’ ମାସରେ ତାଙ୍କ ମା ମରିଯିବାରୁ ସେ ଦୁଃଖରେ ଭାଙ୍ଗି ପଡ଼ିଲେ ଓ ଗାନ୍ଧୀଜୀଙ୍କର ଦ୍ୱିତୀୟଥର ହରିଜନ ପଦଯାତ୍ରାର ପ୍ରଥମ ଭାଗରେ ସେ ଆସି ପାରିଲେ ନାହିଁ । ପୁଣି ପୁରୁଷୋତ୍ତମପୁର ରହଣି ବେଳଠୁଁ ପଦଯାତ୍ରାରେ ମିଶିଲେ । ସେ କହିବାରୁ ଗାନ୍ଧୀଜୀ ତାଙ୍କୁ

ବୁଝାଇଲେ – ଦେଶସେବକର ନିଜ ସମସ୍ତ ଉପରେ ଅଧିକାର ନାହିଁ ଯେ ସେ ତାଙ୍କୁ କାହିଁବାରେ ନଷ୍ଟ କରିବ ..କାହିଁକିବା ?.. ସମସ୍ତେ ତ ସେହି ବାଟେ ଯିବା । ସେହି ପଦଯାତ୍ରାବେଳେ ଗାନ୍ଧୀଜୀଙ୍କର ପ୍ରତ୍ୟେକ ରହଣି ସ୍ଥାନରେ ଶ୍ରୀମତୀ ରମା ଦେବୀ ଓ ତାଙ୍କ ସହକର୍ମୀମାନେ ହରିଜନ ବସ୍ତିମାନଙ୍କୁ ଯାଇ ସେଠି ହରିଜନମାନଙ୍କ ସଙ୍ଗେ ମିଶି, ଅକ୍ଲାନ୍ତ ପରିଶ୍ରମ କରି ବିବିଧ ହରିଜନ କଲ୍ୟାଣକର କାର୍ଯ୍ୟ କରୁଥାନ୍ତି । ଓଡ଼ିଶାରୁ ଚାଲିଗଲା ବେଳେ ଗାନ୍ଧୀଜୀ ସେମାନଙ୍କ କାର୍ଯ୍ୟକୁ ଉଚ୍ଛ୍ୱସିତ ପ୍ରଶଂସା କରିଗଲେ ।

ଭଦ୍ରକ ଷ୍ଟେସନକୁ ଯାଉ ଯାଉ ଗାନ୍ଧୀଜୀ ଶ୍ରୀମତୀ ରମା ଦେବୀଙ୍କୁ କହିଲେ, "ଓଡ଼ିଶାରେ ସ୍ତ୍ରୀଲୋକମାନଙ୍କୁ ତାଲିମ୍ ଦେବା ପାଇଁ ବା କାମରେ ଲଗାଇବା ପାଇଁ କୌଣସି ସଂସ୍ଥା ନାହିଁ କି ବ୍ୟବସ୍ଥା ନାହିଁ । ସେ କାମ ତୁମେ ହାତକୁ ନିଅ ।" ତାହା ପରେ ଶ୍ରୀ ଗୋପବନ୍ଧୁ ଚୌଧୁରୀ ୩-୮-୩୪ରେ ସପରିବାର ଯେତେବେଳେ ଯାଇ ବରୀରେ ରହିଲେ ଓ ବରୀକୁ ତାଙ୍କର କର୍ମକେନ୍ଦ୍ର କଲେ, ସେତେବେଳେ ଶ୍ରୀମତୀ ରମା ଦେବୀ ମହାତ୍ମାଜୀଙ୍କର ସେହି ନିର୍ଦ୍ଦେଶ କାର୍ଯ୍ୟକାରୀ କରିବାକୁ ଲାଗିଲେ ।

ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କୁ ମଧ୍ୟ ସେହି ହରିଜନ ପଦଯାତ୍ରା ବେଳେ ମହାତ୍ମାଜୀ କହିଥିଲେ ଯେ ସେ ଗାଁରେ ରହି ଗଠନାତ୍ମକ କର୍ମ କରନ୍ତୁ ଓ ତଦନୁଯାୟୀ ଶ୍ରୀ ଗୋପବନ୍ଧୁ ଚୌଧୁରୀ ସହର ଛାଡ଼ି ଗଣ୍ଡ ମଫସଲରେ ଯୋଗ୍ୟ ସ୍ଥାନରେ କର୍ମପୀଠ କଲେ । ଯାଜପୁର ସବ୍‌ଡିଭିଜନରେ ଦୁର୍ଗମ ଓ ପ୍ରବଳ ବନ୍ୟାକ୍ଲିଷ୍ଟ ବରୀ ଅଞ୍ଚଳକୁ ସେଥିପାଇଁ ସେ ନିଜେ ବାଛିଥିଲେ । ୩ ଅଗଷ୍ଟ ୧୯୩୪ରୁ ୧୯୫୬ ଜାନୁଆରି ୭ ରେ ଶ୍ରୀମତୀ ରମା ଦେବୀ ଆଦିଙ୍କ ସଙ୍ଗେ ସେଠୁ ଦୀର୍ଘ ପଦଯାତ୍ରାରେ ବାହାରିଯିବାଯାକେ ବରୀହିଁ ହୋଇଥିଲା ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କର ଘର । କିନ୍ତୁ ସେଠି ସେ କୌଣସି ଗୋଟିଏ ସ୍ଥାନରେ ରହିପାରିନଥିଲେ, ଗୋଟିକ ପରେ ଆଉ ଗୋଟିଏ ସ୍ଥାନ ହୋଇ ଚାରୋଟି ସ୍ଥାନ ସେମାନଙ୍କ ନିବାସ ସ୍ଥଳ ହୋଇଥିଲା, ଯଥା—(୧) (ବରୀ) ବାଗ୍‌ଦାରେ ଶ୍ରୀ ବାମନ ଚରଣ ଦାସଙ୍କ ଚୌପାଢ଼ୀ, ୧୩-୮-୩୪ରୁ ୬-୪-୩୫ (୨) (ବରୀ) ଅରଙ୍ଗାବାଦ୍‌ରେ ସେମାନେ ତୋଳିଥିବା 'ସେବାଘର' ବା 'ବରୀ-ଆଶ୍ରମ' (୩) (ବରୀ) ଅରଙ୍ଗାବାଦ୍‌ରେ ଶ୍ରୀ ଗୋବର୍ଦ୍ଧନ ପୂଜାରୀଙ୍କ ଦାଣ୍ଡଘର, ଜୁନ୍ ୧୯୪୮ରୁ ୧୯୫୦, ଓ (୪) 'ବୁଧେଇପାଳ'ରେ ସେମାନେ ତୋଳିଥିବା ଘର ।

ଶ୍ରୀ ଗୋପବନ୍ଧୁ ଚୌଧୁରୀ ବରୀକୁ କର୍ମକେନ୍ଦ୍ର କରିବାରୁ ସେଠି ଓ ସେ ଅଞ୍ଚଳରେ ଗାନ୍ଧୀବାଦୀରର ପ୍ରଚାର ସହିତ ସୂତାକଟା, ଖଦୀ, ଗ୍ରାମୋଦ୍ୟୋଗ, ବିବିଧ ଗଠନାତ୍ମକ କାର୍ଯ୍ୟ ଓ ବିବିଧ କ୍ଷେତ୍ରରେ ନୂତନ ପରୀକ୍ଷା ଓ ପ୍ରୟୋଗ, ଗାନ୍ଧୀଦର୍ଶନ ଅନୁଯାୟୀ ସମାଜ ଗଠନ ଓ ଗ୍ରାମସଂଗଠନ କାର୍ଯ୍ୟ ଆଦି ବ୍ୟାପକ ଭାବରେ ଆରମ୍ଭ କରିଦେଲେ । ସେ କାର୍ଯ୍ୟରେ ତାଙ୍କ ସହିତ ଆଦର୍ଶ ସହଧର୍ମିଣୀ ଓ ସହକର୍ମିଣୀ ହୋଇ ନାନା ଦୁଃଖ କଷ୍ଟ ସହି, ଶ୍ରମକ୍ଲିଷ୍ଟ ସରଳ ନିରାଡ଼ମ୍ବର ଜୀବନ ବିତାଇ ଗୁରୁଦାୟିତ୍ୱ ତୁଲାଇଥିଲେ ଶ୍ରୀମତୀ ରମା ଦେବୀ । ସେଠି ସେମାନଙ୍କ ଖିଆ ଓ ଚଳଣିର ସ୍ତର ଗାଁର ସାଧାରଣ କୃଷୀ ମୂଲିଆଙ୍କ ଚଳଣିର ସ୍ତରଠୁଁ ଭିନ୍ନ ନଥିଲା,

ସେମାନେ ଜାଣିଶୁଣି ଦେଶର ନିମ୍ନତମ ଆର୍ଥିକ ଶ୍ରେଣୀର ସାଧାରଣ ମଣିଷଙ୍କ ସଙ୍ଗେ ଏକ ହୋଇ ମିଶିଯାଇଥିଲେ, ନିଜେ ଶାରୀରିକଶ୍ରମ କରୁଥିଲେ ଓ ଶ୍ରମର ମର୍ଯ୍ୟାଦା ପ୍ରତିଷ୍ଠିତ କରିଥିଲେ । ଏପରି କିଛି ଶ୍ରମ ନଥିଲା ଯାହା ଗରିବ ଶ୍ରେଣୀର ଅନ୍ୟମାନେ କରିପାରୁଥିଲେ ଅଥଚ ସେମାନେ ନକରୁଥିଲେ, ବରଂ ସେମାନେ ସେସବୁ କାର୍ଯ୍ୟରେ ବି ଅନ୍ୟମାନଙ୍କଠାରୁ ଆଗୁଆ ଥିଲେ । ସେବାଘର ତୋଳାହେଲା, ସେମାନେ ବି ମାଟି ହାଣିଲେ, ବୋହିଲେ, ଚକଟିଲେ, କାନ୍ଥକଲେ, ଅନ୍ୟାନ୍ୟ ମୂଲିଆ ମୂଲିଆଣୀଙ୍କ ସଙ୍ଗେ ମିଶି କାମ କଲେ । ସେମାନେ ବି କେବେ କେବେ ମୂଲିଆ ମୂଲିଆଣୀଙ୍କ ସଙ୍ଗେ ମିଶି ହଳ କାମ କଲେ ।

ଗୋଟିଏ ଉଦାହରଣ ମନେପଡ଼େ । ୧୯୨୮ରେ ମହାତ୍ମାଜୀ, ୧୯୨୩ରେ ପ୍ରତିଷ୍ଠିତ 'ଗାନ୍ଧୀ ସେବା ସଂଘ'ର ଓଡ଼ିଶା ଶାଖା ପରିଚାଳନା ଦାୟିତ୍ୱ ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କୁ ଦେଲେ । କାଳକ୍ରମେ ତାର ପୁନର୍ଗଠନ ହେଲା । ମହାତ୍ମାଜୀଙ୍କ ନିର୍ଦ୍ଦେଶ ହେଲା ଯେ 'ସ୍ୱାବଲମ୍ବୀ ଖଦୀ କେନ୍ଦ୍ର' ହେଉ । କର୍ମୀମାନେ ନିଜେ ପରିଶ୍ରମ କରି ଓ କରାଇ ଗବେଷଣା କରନ୍ତୁ ଯେ ନାନା ପ୍ରକାର ଗ୍ରାମୋଦ୍ୟୋଗରେ ଗୋଟିଗୋଟିକରେ କେତେ ଘଣ୍ଟା ଭଲ କରି କାମ କଲେ ଓ କେତେ ପରିମାଣରେ କଲେ ଘଣ୍ଟାକୁ ଏକ ଅଣା ମୂଲ ପାଇଲେ ମୂଲିଆ ପୋଷି ହେବ । ଉଦ୍ଦେଶ୍ୟ ଥାଏ ଯେ ସବୁପ୍ରକାର ଧନ୍ଦାରେ ମୂଲିଆଙ୍କ ମୂଲ ସମାନ ହେବା ଉଚିତ ଓ ସେଥିରେ ମୂଲିଆ ପୋଷି ହେବା ଉଚିତ । ଘଣ୍ଟାକୁ ଅନ୍ତତଃ ଅଣାଏ ମୂଲ ମିଳିବା ଉଚିତ । ସେତେବେଳେ ଦୈନିକ ମୂଲ ଥାଏ ୨ ଅଣାରୁ ତିନି ଅଣା । ଶ୍ରୀ ଗୋପବନ୍ଧୁ ଚୌଧୁରୀ ବାରିରେ ଏହାର ପରୀକ୍ଷା କଲାବେଳେ ସେ ନିଜେ, ଶ୍ରୀମତୀ ରମା ଦେବୀ, ତାଙ୍କ ଝିଅ ଶ୍ରୀମତୀ ଅନ୍ନପୂର୍ଣ୍ଣା ମୂଲିଆ ମୂଲିଆଣୀଙ୍କ ସଙ୍ଗେ ମିଶି ବାରିରେ ପର ଜମିରେ ମୂଲ ଲାଗିଥିଲେ । ସେମାନେ ନିଜେ ଧାନ କାଟି ମୁଣ୍ଡରେ ମୁଣ୍ଡେଇ ଫେରୁଥିବା ଦୃଶ୍ୟ ଅଦ୍ୟାପି ସେ ଅଞ୍ଚଳର ଲୋକଙ୍କର ମନେଅଛି ।

ଆଶ୍ରମର କର୍ମନିର୍ଘଣ୍ଟ କଠୋର ନିରଳସ ଥାଏ, ପ୍ରତି କାର୍ଯ୍ୟ ଯଥା ସମୟରେ ହେବ, ସୁଚାରୁରୂପେ ହେବ । ଭୋର ୪ଟାରୁ ବିଛଣା ଛାଡ଼ି କାର୍ଯ୍ୟ ଆରମ୍ଭ ହୋଇଯାଏ । ନାନା କାର୍ଯ୍ୟ ଥାଏ । ତହିଁରେ ଥାଏ ଆଶ୍ରମ ସଫେଇ, ଝାଡ଼ୁକେଇ ରାସ୍ତା ଧରି ଗାଁ ସଫେଇ, ବଗିଚାରେ ଖଟଣି, ହରିଜନ ବସ୍ତିରେ ହରିଜନଙ୍କ ସଙ୍ଗେ ମିଶି ସେମାନଙ୍କ ସେବା ଇତ୍ୟାଦି । ସୂତାକଟା ତ ନିତ୍ୟନୈମିତ୍ତିକ, ପ୍ରାର୍ଥନା ପରି । ସେଥିପାଇଁ ଦିନକୁ ଅନ୍ତତଃ ସମସ୍ତେ ଦୁଇ ତିନି ଘଣ୍ଟା ବିତାନ୍ତି । ଖଦୀକାମକୁ ବିଶେଷ ଗୁରୁତ୍ୱ ଦିଆହେଉଥାଏ, ତାହା ଅର୍ଥ ସୂତାକଟା, କପା ଚାଷ, ହାତତନ୍ତରେ ଖଦଡ଼ ବୁଣା, ଖଦଡ଼ ବ୍ୟବହାର, ତାର ବିକ୍ରି, ପ୍ରଚାର ଓ ପ୍ରସାର । ଗ୍ରାମୋଦ୍ୟୋଗର ନାନା କାର୍ଯ୍ୟ ହେଲା । ଅଶିକ୍ଷା ନିବାରଣ, ଅସ୍ପୃଶ୍ୟତା ନିବାରଣ ଆଦି ବହୁତ ବ୍ୟାପିଲା । ଏହା ଛଡ଼ା ଥାଏ ସଦ୍‌ଗ୍ରନ୍ଥ ଅଧ୍ୟୟନ, ପଢ଼ା, ଲେଖା, ଆଲୋଚନା, ଆଶ୍ରମ ପରିଚାଳନା ଦାୟିତ୍ୱ । ଏତେ ଲୋକଙ୍କ ପାଇଁ ଆଶ୍ରମ ହିଁ ଘର । ସେମାନଙ୍କୁ ଖୁଆଇବେ, ସେମାନଙ୍କ ଭଲ ମନ୍ଦ ବୁଝିବେ, ସେବାଶୁଶ୍ରୂଷା କରିବେ ଶ୍ରୀମତୀ ରମା ଦେବୀ ଓ ତାଙ୍କ

କର୍ମୀମାନେ । ବସ୍ତିକୁ କେନ୍ଦ୍ର କରି ଯେତେ ଯେତେ ରଚନାତ୍ମକ କାର୍ଯ୍ୟ କରାହେଉଥାଏ ତାର ତାଲିକା ବି ଅତି ଦୀର୍ଘ ହେବ । ତାହା ମଧ୍ୟରେ ଆତୁର ଥିଲା ମୌଳିକ ଶିକ୍ଷା ପ୍ରବର୍ତ୍ତନ, ରାଷ୍ଟ୍ରଭାଷା ପ୍ରଚାର, ନାରୀ ଜାଗରଣ, ପ୍ରୌଢ଼ଶିକ୍ଷା, ନିଶା ନିବାରଣ, ଗୋସେବା, ଉନ୍ନତ କୃଷି ପ୍ରଚଳନ, ମହୁମାଛି ପାଳିବା, ଖଜୁରି ଗୁଡ଼ ତିଆରି, ଚମଡ଼ା କଷ କରିବା, ଗାଁ ଗାଁ ବୁଲି ରୋଗୀଙ୍କୁ ଔଷଧ ବାଣ୍ଟିବା, ନଇବଢ଼ି ଓ ଅନ୍ୟାନ୍ୟ ବିପତ୍ତି ବେଳେ ଲୋକଙ୍କୁ ସାହାଯ୍ୟ କରିବା, ନାନା ପ୍ରକାର ଜନସେବା, ଲୋକଙ୍କର ଭୟ କୁସଂସ୍କାର ଅନ୍ଧବିଶ୍ୱାସ ବଦ୍ ଅଭ୍ୟାସ ଓ ଅପବ୍ୟୟ ଛଡ଼ାଇବା, ସେମାନଙ୍କର ନାନା ସମସ୍ୟା ସମାଧାନ ପାଇଁ ସାହାଯ୍ୟକରିବା ଇତ୍ୟାଦି । ଶ୍ରୀମତୀ ରମା ଦେବୀ ଓ ତାଙ୍କ ନେତୃତ୍ୱରେ ଅନ୍ୟାନ୍ୟ ନାରୀ-କର୍ମୀମାନେ ବସ୍ତିରେ ରହି ଏହି ସବୁ କାର୍ଯ୍ୟ କରୁଥାନ୍ତି ।

ବିବିଧ ରଚନାତ୍ମକ କର୍ମ କରିବାକୁ 'ଗାନ୍ଧୀ ସେବା ସଂଘ' ତରଫରୁ ୧୯୪୨ ପର୍ଯ୍ୟନ୍ତ ଓଡ଼ିଶାରେ ଗୋଟିଏ ଗୋଟିଏ କର୍ମୀଙ୍କ ତତ୍ତ୍ୱାବଧାନରେ ଅନ୍ତତଃ ତେଇଶିଟି କେନ୍ଦ୍ର ଥିଲା । ସେଥିମଧ୍ୟରୁ ୧୯୩୫ରେ ପ୍ରତିଷ୍ଠିତ ବରି "ସେବାଘର" କେନ୍ଦ୍ର ତତ୍ତ୍ୱାବଧାନରେ ତାର "ସଞ୍ଚାଳିକା" ହୋଇଥିଲେ ଶ୍ରୀମତୀ ରମା ଦେବୀ । ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କ ବରି କର୍ମ-କେନ୍ଦ୍ର ହିଁ ଓଡ଼ିଶାରେ ଖଦୀ ଗ୍ରାମୋଦ୍ୟୋଗ ଆଦି ବିବିଧ ରଚନାତ୍ମକ କର୍ମ ଲାଗି କର୍ମୀ ତାଲିମ ପାଇଁ ପ୍ରଧାନ କେନ୍ଦ୍ର ହୋଇଥିଲା । ସେଠି ନାରୀ କର୍ମୀମାନେ, କିଛି ଗୃହୀ ଓ ଶିକ୍ଷାର୍ଥିନୀ ଶ୍ରୀମତୀ ରମା ଦେବୀଙ୍କ ତତ୍ତ୍ୱାବଧାନରେ ରହିଥାନ୍ତି । ସ୍ଥାନୀୟ ଝିଅମାନଙ୍କୁ ଓ ଓଡ଼ିଶାର ଗ୍ରାମଆଡ଼ୁ ଝିଅମାନଙ୍କୁ ଆଣି ସେଠି ରଖି ତାଲିମ ଓ ଶିକ୍ଷା ଦିଆଯାଉଥାଏ । ଶ୍ରୀମତୀ ରମା ଦେବୀ ମା'ଠୁ ବଳି ସେମାନଙ୍କର ଯତ୍ନ ନେଉଥାନ୍ତି ।

୧୯୩୮ ମାର୍ଚ୍ଚ ୨୫ ତାରିଖରେ ଡ଼େଲାଂ ଷ୍ଟେସନ ପାଖ ବେରବୋଇରେ 'ଗାନ୍ଧୀ ସେବା ସଂଘ'ର ବାର୍ଷିକ ସମ୍ମିଳନୀ ବସିଲା । ଗାନ୍ଧୀଜୀ ତାହା ଉଦ୍‌ଘାଟନ କଲେ । ଭାରତର ଚାରିଆଡ଼ୁ ହଜାର ହଜାର ଲୋକ ସେଠିକୁ ଆସିଥିଲେ । ସେମାନଙ୍କୁ ରାନ୍ଧି ବାଢ଼ି ଖୁଆଇବା ଦାୟିତ୍ୱ ଶ୍ରୀମତୀ ରମା ଦେବୀ ଏପରି ସୁଚାରୁ ରୂପେ ତୁଲାଇଲେ ଯେ ସମସ୍ତେ ସେଥିପାଇଁ ତାଙ୍କୁ ଧନ୍ୟ ଧନ୍ୟ କଲେ ଓ ମହାତ୍ମା ଗାନ୍ଧୀ ତାଙ୍କୁ ବହୁତ ପ୍ରଶଂସା କଲେ ।

୧୯୩୮ ନଭେମ୍ବର ମାସରେ ଅନୁଗୁଳ ଇଲାକାରେ ଯେତେବେଳେ ତାଳଚେରରେ ଗଡ଼ଜାତ ପ୍ରଜା ଆନ୍ଦୋଳନ ଦମନ ଅତ୍ୟାଚାର ଯୋଗୁଁ ୨୫ ହଜାରରୁ ଅଧିକ ଶରଣାର୍ଥୀ ଆଶ୍ରୟ ନେଇଥାନ୍ତି, ସେତେବେଳେ ଶ୍ରୀମତୀ ରମା ଦେବୀଙ୍କ ସମେତ ଅନେକ ନାରୀକର୍ମୀ ସେମାନଙ୍କ ସେବାରେ ଲାଗିଯାଇ ଅକ୍ଳାନ୍ତ ପରିଶ୍ରମ କଲେ ।

୨୫-୨-୧୯୪୨ ଦିନ ବରିରେ ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କ କନ୍ୟା ଶ୍ରୀମତୀ ଅନ୍ନପୂର୍ଣ୍ଣା ଓ ଶ୍ରୀ ଚନ୍ଦ୍ରମୋହନ ମହାରଣାଙ୍କ ପୁଅ ଶ୍ରୀ ଶରତ୍ ଚନ୍ଦ୍ର ମହାରଣାଙ୍କ ବିବାହ ସରଳ ନିରାଡ଼ମ୍ବର ଭାବରେ ସମ୍ପନ୍ନ ହେଲା । ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ବିବାହ ପରେ ଏହା ତାଙ୍କ

ପରିବାରର ଦ୍ୱିତୀୟ ଅସବର୍ଣ୍ଣ ବିବାହ । ୧୯୪୨ ଅଗଷ୍ଟ ମାସ ୯ ତାରିଖରେ ଶ୍ରୀମତୀ ରମା ଦେବୀ ଓ ଶ୍ରୀ ଗୋପବନ୍ଧୁ ଚୌଧୁରୀ କଟକରେ ଗିରଫ ହେଲେ ଓ ଜେଲ୍ ଗଲେ । ଉଭୟେ ୧୯୪୪ ଜୁଲାଇ ମାସରେ ଜେଲ୍‌ରୁ ଖଲାସ୍ ହେଲେ ।

ସେତେବେଳକୁ ବରୀ ଆଶ୍ରମ ଧ୍ୱଂସ ହୋଇଥାଏ । ସେମାନେ ଆସି ଅରଙ୍ଗାବାଦରେ ଶ୍ରୀ ଗୋବର୍ଦ୍ଧନ ପ୍ରଧାଙ୍କ ଘରେ ରହିଲେ । ଯେଉଁ ଯୁବକମାନେ ଜେଲ୍‌ରୁ ଫେରୁଥାନ୍ତି ଶ୍ରୀମତୀ ରମା ଦେବୀ ସେମାନଙ୍କୁ ଗଠନମୂଳକ କାର୍ଯ୍ୟରେ ଲଗାଇବାକୁ ସାହାଯ୍ୟ କରୁଥାନ୍ତି ଓ (ବରୀ) ରାମଚନ୍ଦ୍ରପୁରରେ ମୌଳିକ ବିଦ୍ୟାଳୟକୁ ସଜାଡ଼ିବାକୁ ସାହାଯ୍ୟ କରୁଥାନ୍ତି ।

ଓଡ଼ିଶା ପ୍ରଦେଶରେ "କସ୍ତୁରବା ଗାନ୍ଧୀ ଟ୍ରଷ୍ଟ ଫଣ୍ଡ"ର କାର୍ଯ୍ୟ ପରିଚାଳନା କରିବା ଦାୟିତ୍ୱ ଗାନ୍ଧୀଜୀ ଶ୍ରୀମତୀ ରମା ଦେବୀଙ୍କୁ ଦେଲେ । ସେହି ଟ୍ରଷ୍ଟ ଫଣ୍ଡର ଅର୍ଥ ସାହାଯ୍ୟରେ ୧୯୪୫ରେ (ବରୀ) ରାମଚନ୍ଦ୍ରପୁରରେ ମହିଳା କର୍ମୀ ତାଲିମ ଶିବିର ବସିଲା । ଗୋଟିଏ କନ୍ୟାଶ୍ରମ ଖୋଲିଗଲା ଓ ଯେଉଁ କର୍ମୀମାନେ ସେଠି ତାଲିମ ପାଇଲେ ସେମାନଙ୍କ ଦ୍ୱାରା ଓଡ଼ିଶାର ନାନା ସ୍ଥାନରେ କାମ ଆରମ୍ଭ ହେଲା । ପ୍ରଥମେ କଟକ ଜିଲ୍ଲାରେ ବରୀ ଓ ସତ୍ୟଭାମାପୁରରେ ଓ କୋରାପୁଟରେ ଉମ୍ମିଗୁଡ଼ା ଗାଁରେ କସ୍ତୁରବା ସେବାକେନ୍ଦ୍ର ବସିଲା । ବରୀରେ ଭଙ୍ଗା 'ସେବାଘର'ର ଭିତ୍ତିରେ ଘର ତୋଳା ହୋଇ ମାତୃମଙ୍ଗଳ କେନ୍ଦ୍ରଟିଏ ବସିଲା । ପ୍ରଥମେ ଶ୍ରୀମତୀ ନିର୍ମଳା ଦତ୍ତ (ସେ ନାଗପୁରରୁ ଧାତ୍ରୀବିଦ୍ୟା ଟ୍ରେନିଂ ପ୍ରାପ୍ତ) ଓ ୧୯୪୭ରୁ ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କର ଗୋଟିଏ ଭଉଣୀ ଶ୍ରୀମତୀ ଡାକ୍ତର ଭୁବନେଶ୍ୱରୀ ଦାସ ତାର କାର୍ଯ୍ୟ ଚଳାଇଲେ । ୧୯୫୨ ଶେଷବେଳକୁ ଓଡ଼ିଶାରେ ଆଠଟି ସ୍ଥାନରେ ସେପରି ମାତୃମଙ୍ଗଳ କେନ୍ଦ୍ର ବସିସାରିଥିଲା । କସ୍ତୁରବା ଟ୍ରଷ୍ଟ ଫଣ୍ଡରୁ ଅର୍ଥ ସାହାଯ୍ୟରେ ୧୯୫୧ରେ ବରୀରେ "ଗାର୍ହସ୍ଥ୍ୟ ଶୁଶ୍ରୂଷା କେନ୍ଦ୍ର" ବସିଲା । କେନ୍ଦ୍ରଗୁଡ଼ିକ ଚଳାଇବା ଛଡ଼ା କର୍ମୀମାନେ ଗାଁ ଗାଁ ବୁଲି ଶିବିର କରି ସ୍ତ୍ରୀଲୋକମାନଙ୍କୁ ଚରଖା, ସେବା, ଶୁଶ୍ରୂଷା, ରୋଗ ପ୍ରତିଷେଧକ ବ୍ୟବସ୍ଥା ଆଦି ଶିଖାଉଥାନ୍ତି । କସ୍ତୁରବା ଗାନ୍ଧୀ ଟ୍ରଷ୍ଟ ଫଣ୍ଡ ସାହାଯ୍ୟରେ ଅନ୍ୟାନ୍ୟ ନାନା ଲୋକହିତକର ରଚନାତ୍ମକ କାର୍ଯ୍ୟ ହେଲା, କେତେଗୁଡ଼ିଏ ପୁରୁଣା 'ଗ୍ରାମସେବା କେନ୍ଦ୍ର' ସାହାଯ୍ୟ ପାଇଲେ ଓ ୧୯୫୨ ଶେଷ ସୁଦ୍ଧା ଆହୁରି ନଅଟି 'ଗ୍ରାମସେବା କେନ୍ଦ୍ର' ବସିଲା । ବରୀରେ 'ଲୁଗାବୁଣା କେନ୍ଦ୍ର' ବସିଲା ଓ ୧୯୫୩ରେ ରାମଚନ୍ଦ୍ରପୁରରେ 'ଲୁଗାବୁଣା କେନ୍ଦ୍ର' ଓ ପ୍ରାକ୍‌ବେସିକ୍ ମହିଳା ଟ୍ରେନିଂ ବସିଲା । ଏସବୁ କାର୍ଯ୍ୟର ତତ୍ତ୍ୱାବଧାନ କରିବାକୁ ଶ୍ରୀମତୀ ରମା ଦେବୀଙ୍କୁ ବହୁତ ପରିଶ୍ରମ କରିବାକୁ ପଡ଼ୁଥିଲା ।

୧୯୪୭ ଫେବୃଆରୀ ୧୭ ତାରିଖରେ ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କ ପୁତ୍ର ଶ୍ରୀ ମନମୋହନ ଚୌଧୁରୀଙ୍କ ସହିତ ବଙ୍ଗୀୟ ବ୍ରାହ୍ମଣ ଶ୍ରୀ ବିଭୂତି ଭୂଷଣ ବନ୍ଦୋପାଧ୍ୟାୟଙ୍କ କନ୍ୟା ଶ୍ରୀମତୀ ସୁମିତ୍ରା ଦେବୀଙ୍କର ବିବାହ ସଂପନ୍ନ ହେଲା । ଏହା ସେମାନଙ୍କ ପରିବାରର ଅନ୍ୟତମ ଅସବର୍ଣ୍ଣ ବିବାହ ।

୧୯୪୮ ମାର୍ଚ୍ଚ ମାସରେ ଶ୍ରୀମତୀ ରମା ଦେବୀ ଓ ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କ ଉଦ୍ୟମରେ ଜଣେ ବ୍ରାହ୍ମଣ ଯୁବକଙ୍କ ସହିତ ଜଣେ ପାଣ (ହରିଜନ) କନ୍ୟାଙ୍କର ବିବାହ ବଡ଼ିରେ ସଂପନ୍ନ ହେଲା—ବର ଶ୍ରୀ ବୃନ୍ଦାବନ ତ୍ରିପାଠୀ ଓ କନ୍ୟା ଶ୍ରୀମତୀ ସରସ୍ୱତୀ ଦେବୀ ।

୧୯୪୭ରେ ଓଡ଼ିଶାରେ ଆଦିବାସୀ ସେବା ପାଇଁ "ନବଜୀବନ ମଣ୍ଡଳ" ଗଢ଼ା ହେଲା, ଯେଉଁମାନେ ଏହାର ଗଠନକର୍ତ୍ତା ସେମାନଙ୍କ ମଧ୍ୟରେ ଶ୍ରୀମତୀ ରମା ଦେବୀ ମଧ୍ୟ ଜଣେ । ମୂଳରୁ ସେ ଏହି ଅନୁଷ୍ଠାନ ସହିତ ଜଡ଼ିତ । ଏହା ୧୯୫୦-୫୧ରୁ ଶ୍ରୀମତୀ ମାଳତୀ ଦେବୀଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଚାଲିଛି ।

୧୯୪୬ ଅଗଷ୍ଟ ୧୫ରେ କଲିକତାରେ ପୈଶାଚିକ ସାଂପ୍ରଦାୟିକ ହାଣକାଟ ଆରମ୍ଭ ହେବା ପରଠୁଁ ଭାରତର ନାନା ସ୍ଥାନରେ ସେପରି କାଣ୍ଡ ଘଟିଗଲା । ଶ୍ରୀ ଗୋପବନ୍ଧୁ ଚୌଧୁରୀ ମୂଳରୁ ସାଂପ୍ରଦାୟିକ ଏକତା ଓ ସଦ୍ଭାବ ପାଇଁ କାର୍ଯ୍ୟ କରୁଥିଲେ । ସେ ଓ ତାଙ୍କ ସହକର୍ମୀମାନେ ସେଥିପାଇଁ ଆହୁରି ବୁଲିଲେ ଓ ଉଦ୍ୟମ କଲେ । ଓଡ଼ିଶାରେ ଯେ ଗଣ୍ଡଗୋଳ ନହେଲା ସେଥିପାଇଁ ସେମାନଙ୍କ ଅବଦାନ ବହୁତ । ଶ୍ରୀମତୀ ରମା ଦେବୀ ମଧ୍ୟ ଏହି କାର୍ଯ୍ୟ କରିଥିଲେ ।

୧୯୫୦ ଅପ୍ରେଲ ମାସରେ ଅନୁଗୁଳରେ "ଅଖିଳ ଭାରତ ସର୍ବୋଦୟ ସମାଜ"ର ଦ୍ୱିତୀୟ ବାର୍ଷିକ ସମ୍ମିଳନୀ ବିଶାଳ ଆକାରରେ ଚମତ୍କାର ଭାବରେ ଓ ଅତି ଅଳ୍ପ ଖର୍ଚ୍ଚରେ ହେଲା । ହଜାର ହଜାର ଦର୍ଶକ ଆସିଥିଲେ । ସେଠି ମଧ୍ୟ ଶ୍ରୀମତୀ ରମା ଦେବୀ ବହୁତ ପରିଶ୍ରମ କରିଥିଲେ ।

ଶ୍ରୀ ଗୋପବନ୍ଧୁ ଚୌଧୁରୀ ଓ କଂଗ୍ରେସ ଶାସକ ଗୋଷ୍ଠୀଙ୍କ ଭିତରେ ମତାନ୍ତର ଘଟୁଥାଏ ଓ ସେ ଭାବୁଥାନ୍ତି ଯେ ଦେଶ ସ୍ୱାଧୀନତା ପାଇଲେ ବି ଅବସ୍ଥା ବଦଳୁ ନାହିଁ କି କୌଣସି ରାଜନୈତିକ ଦଳ ସର୍ବୋଦୟ ସମାଜର ଲକ୍ଷ୍ୟ ପୁରାପୂରି ଗ୍ରହଣ କରିନାହାନ୍ତି କି ସେପରି କାର୍ଯ୍ୟ କରୁନାହାନ୍ତି । ତାଙ୍କର ଅଶାନ୍ତି ଓ ନୈରାଶ୍ୟ ଉପୁଜୁଥାଏ । ଏତିକିବେଳେ ୧୯୫୧ ଡିସେମ୍ବରରେ ସେ ଖବର ପାଇଲେ ଯେ କୋରାପୁଟର ରାୟଗଡ଼ା—ଗୁଣୁପୁର ଅଞ୍ଚଳରେ ମରୁଡ଼ି ହୋଇ ଦୁର୍ଭିକ୍ଷ ପଡ଼ିଛି । ସେ ମର୍ମାହତ ହେଲେ । ନିଜେ ଗଲେ ଦେଖି ସମ୍ଭାଳି ପାରିବେ ନାହିଁ ବୋଲି, ଆଚାର୍ଯ୍ୟ ମହାଶୟ, ଶ୍ରୀମତୀ ରମା ଦେବୀ, ଶ୍ରୀମତୀ ମାଳତୀ ଦେବୀ, ଶ୍ରୀ ଈଶ୍ୱରଲାଲ ବ୍ୟାସ୍ ଓ ଅନ୍ୟ କେତେଜଣଙ୍କୁ ସେଠିକା ଅବସ୍ଥା ବୁଝିବାକୁ ପଠାଇଲେ । ସେମାନେ ଯାଇ ସେଠିକା ଅବସ୍ଥା ଦେଖିଲେ ଓ ସେହି ମାଳ ଅଞ୍ଚଳରେ କେତୋଟି ଅନ୍ନଛତ୍ର ଖୋଲି ଲୋକଙ୍କୁ ସାହାଯ୍ୟ ଦିଆଗଲା । 'କସ୍ତୁରବା ଗାନ୍ଧୀ ସ୍ମାରକ ନିଧି' ଅର୍ଥରେ ପରିଚାଳିତ କନ୍ଧ ଗ୍ରାମ ଡମ୍ବଗୁଡ଼ାସ୍ଥ କେନ୍ଦ୍ରର ନାରୀ କର୍ମୀ ଶ୍ରୀମତୀ ମାଳତୀ ବିଶ୍ୱାଳ, ଶ୍ରୀମତୀ କେତକୀ ଦେବୀ ଓ ଅନ୍ୟାନ୍ୟ ନାରୀକର୍ମୀମାନେ ସେ କାର୍ଯ୍ୟରେ ବହୁତ କଷ୍ଟ ସ୍ୱୀକାରକଲେ ।

ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କ ଜୀବନରେ ଗୋଟିଏ ପରିବର୍ତ୍ତନର ସମୟ ଆସିଗଲା । ସେ ନୂଆ ବାଟ ଖୋଜିବାକୁ ବାହାରିପଡ଼ିଲେ ଓ ଆଚାର୍ଯ୍ୟ ବିନୋବାଙ୍କ 'ଭୂଦାନ ଯଜ୍ଞର'

ମାର୍ଗରେ ଦେଶର ସମସ୍ୟାର ସମାଧାନ ହୋଇପାରିବ ଭାବି ଓଡ଼ିଶାରେ 'ଭୂଦାନ ଆନ୍ଦୋଳନ'ର ପ୍ରବର୍ତ୍ତକ ଓ ନେତା ହେଲେ । ଶ୍ରୀମତୀ ରମା ଦେବୀ ଓ ସେମାନଙ୍କ ପରିବାର ତାଙ୍କର ସହକର୍ମୀ ହେଲେ ।

ଶ୍ରୀମତୀ ରମା ଦେବୀ ଜାନୁଆରୀ ୭,୧୯୫୨, ଦିନ ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କର ଐତିହାସିକ ପଦଯାତ୍ରାରେ ବରୀ (ରାମଚନ୍ଦ୍ରପୁର)ରୁ ତାଙ୍କ ସଙ୍ଗେ ବାହାରିପଡ଼ିଲେ । ବରୀରୁ ମୌଳିକ ବାଟେ ଅନୁଗୁଳ ପାଖ ଟାଇଁସୀ ଗଲେ । ସେଠି ଶହ ଶହ ରଚନାତ୍ମକ କର୍ମୀଙ୍କ ବାର୍ଷିକ ସମ୍ମିଳନୀ ଓ ଶିବିର ହେଲା । କିଏ କଣ ଖାଇବ, କିପରି ଖାଇବ, ମା' ପରି ସ୍ନେହରେ ସବୁ ବୁଝୁଥିଲେ ଶ୍ରୀମତୀ ରମା ଦେବୀ । ସେଠୁ ପଦଯାତ୍ରା ଚାଲିଲା ପୁରୀ, ଗଞ୍ଜାମ, କୋରାପୁଟ, କଳାହାଣ୍ଡି, ବଲାଙ୍ଗିର, ସମ୍ବଲପୁର, ଢେଙ୍କାନାଳ, କଟକ ଜିଲ୍ଲାମାନଙ୍କର ନାନା ଅଞ୍ଚଳ ବାଟେ, ଅରଣ୍ୟମୟ ଘାଟ ପର୍ବତ ଚଢ଼ି ଓହ୍ଲାଇ, ନାନା ପ୍ରକାର ସ୍ଥାନ ଦେଇ । ୪ ମାସ ୨୨ଦିନ ପଦଯାତ୍ରା କଲାପରେ ସେମାନେ କଟକ ଜିଲାର ଖଣ୍ଡସାହି ଗ୍ରାମରେ ପହଞ୍ଚିଲେ । ତାର ୫ ଦିନ ପୂର୍ବଯାଏ ଶ୍ରୀମତୀ ରମା ଦେବୀ ସେହି ପଦଯାତ୍ରାରେ ଚାଲିଥିଲେ । ଅସୁସ୍ଥ ହୋଇ ମାତ୍ର ଅନୁପସ୍ଥିତ ରହିଲେ । ପଦଯାତ୍ରାବେଳେ ସ୍ଥାନେ ସ୍ଥାନେ ରହଣି ହେଉଥାଏ, ସଭା ହେଉଥାଏ, ସେମାନେ ଜନଜୀବନ ସଙ୍ଗେ ମିଶୁଥାନ୍ତି, ସେମାନଙ୍କ ସମସ୍ୟା ବୁଝୁଥାନ୍ତି, ଭୂଦାନ ଦର୍ଶନ ପ୍ରଚାର କରୁଥାନ୍ତି । ସମ୍ବଲପୁର ଜିଲ୍ଲାର ବୋଡ଼ାସମ୍ବର ଇଲାକାର ଗାଇସିଲେଟ୍‌ରେ ରହଣି ବେଳଠୁଁ ଭୂଦାନ ସଂଗୃହୀତ ହେଉଥାଏ ।

ଏତେ ଦୀର୍ଘ, ଏତେ ଶ୍ରମସାଧ୍ୟ ପଦଯାତ୍ରା ପରେ ସେମାନେ କ୍ଷାନ୍ତ ହେଲେ ନାହିଁ । ୧୯୫୨ ଅକ୍ଟୋବର ୨ ରୁ ପୁଣି ଶ୍ରୀ ଗୋପବନ୍ଧୁ ଓ ଶ୍ରୀମତୀ ରମା ଦେବୀ ପଦଯାତ୍ରାରେ ବାହାରି ପଡ଼ିଲେ, ଡିସେମ୍ବର ୧୦ ରେ ଫେରିଲେ । ୪୨୭ ମାଇଲ୍ ଚାଲିଲେ ଓ ଭଦ୍ରକ ସବ୍‌ଡିଭିଜନ୍, ବାଲେଶ୍ୱର ସବଡ଼ିଭିଜନ, ମୟୂରଭଞ୍ଜ ଓ କେନ୍ଦୁଝର ଜିଲ୍ଲାମାନ ବୁଲିଲେ ।

ପ୍ରାଦେଶିକ ରଚନାତ୍ମକ କର୍ମୀମାନଙ୍କ ବାର୍ଷିକ ଶ୍ରମଶିବିର ୧୪-୨-୧୯୫୩ରେ ପୁରୀ ଜିଲ୍ଲାରେ ବେରବୋଇରେ ହେଲା । ସେଠି ନିଷ୍ପତ୍ତି କରାଗଲା ଯେ ଏଣିକି ଅନ୍ୟ ସବୁ ବନ୍ଦ କରି ସମସ୍ତେ ଭୂଦାନ କାମରେ ଲାଗିବା ଦରକାର ଓ 'କସ୍ତୁରବା ନିଧି'ର ଗ୍ରାମସେବିକା-ମାନେ ନିଜ ନିଜ ଅଞ୍ଚଳରେ 'ଭୂଦାନ କାମକୁ ମୁଖ୍ୟ ରୂପେ କରିବେ' । ଭୂଦାନ କାର୍ଯ୍ୟ ଆହୁରି ଜୋର୍‌ସୋର୍‌ରେ ଚାଲିଲା । ଘରେ ଘରେ 'ସର୍ବୋଦୟ ପାତ୍ର', 'ସମ୍ପତ୍ତି ଦାନ', 'ଶ୍ରମଦାନ', 'ବୁଦ୍ଧିଦାନ', 'ଜୀବନଦାନ', 'ଶାନ୍ତିସେନା' ଗଠନ, 'ଗ୍ରାମଦାନ' ଆଦି କାର୍ଯ୍ୟକ୍ରମ ଆରମ୍ଭ ହୋଇଗଲା ।

୨୬-୧-୫୫ରୁ ଓଡ଼ିଶାରେ ବିନୋବାଜୀଙ୍କ ପ୍ରଥମ ପଦଯାତ୍ରା ଚାଲିଲା—ବାଲେଶ୍ୱରର ଲକ୍ଷ୍ମଣନାଥରୁ ପୁରୀ । ମାର୍ଚ୍ଚମାସ ୨୦ ତାରିଖରେ ପୁରୀରେ ଅଖିଳ ଭାରତ ସର୍ବସେବା ସଂଘର ବୈଠକ ବସି ୨୦ ତାରିଖ ଯାଏ ଚାଲିଲା ଓ ତାପରେ ୨୬ ତାରିଖଯାଏ

ସର୍ବୋଦୟ ସମ୍ମିଳନୀ ହେଲା । ତାହା ଗୋଟିଏ ବଡ଼ଟ ସମ୍ମିଳନୀ ଓ ଭାରତର ଚାରିଆଡ଼ୁ ସେଠିକୁ ହଜାର ହଜାର ଲୋକ ଆସିଥିଲେ । ସେଠ ମଧ୍ୟ ଶ୍ରୀମତୀ ରମା ଦେବୀ ଓ ତାଙ୍କ ସହକର୍ମୀମାନେ ଦିନରାତି ଖଟି ହଜାର ହଜାର ଲୋକଙ୍କୁ ରାନ୍ଧି ବାଢ଼ି ଖୁଆଇଲେ ଓ ସବୁ ବ୍ୟବସ୍ଥା ଏତେ ସୁରୁଖୁରୁରେ କଲେ ଯେ ସମସ୍ତେ ସେମାନଙ୍କ କାର୍ଯ୍ୟକୁ ବହୁତ ପ୍ରଶଂସା କଲେ । ପୁରୀରୁ ବିନୋବାଜୀ ପଦଯାତ୍ରା କରି କରି ଓଡ଼ିଶା ଦେଇ ଗଞ୍ଜାମ ଗଲେ, ଗଞ୍ଜାମ ମାଲ ବାଟେ କୋରାପୁଟ ଜିଲ୍ଲାରେ ଗସ୍ତ କଲେ । ବହୁତ ଦୁର୍ଭେଦ୍ୟ ମାଲ ଅଞ୍ଚଳରେ ବୁଲିଲେ ଓ ସେପ୍ଟେମ୍ବର ୨୯ରେ ରାୟଗଡ଼ର ଜଗନ୍ନାଥପୁରରୁ ଓଡ଼ିଶା ଛାଡ଼ି ଆନ୍ଧ୍ରକୁ ଚାଲିଗଲେ । ବିନୋବାଜୀଙ୍କର ଏହି ପଦଯାତ୍ରା ବେଳେ ଅଧିକାଂଶ ସମୟରେ ଶ୍ରୀମତୀ ରମା ଦେବୀ ତାଙ୍କ ଆଗେ ଆଗେ ରହଣିସ୍ଥାନମାନଙ୍କରେ ପହଞ୍ଚିଯାଇ ସବୁ ବ୍ୟବସ୍ଥା କରୁଥାନ୍ତି ଓ ତାଙ୍କ ରହଣିବେଳେ ସେଠି ରହି ସବୁ କରୁଥାନ୍ତି । ବିନୋବାଜୀ ଚାଲିଗଲା ପରେ ସେ ଓ ଶ୍ରୀ ଗୁଣନିଧି ମହାନ୍ତି ଭୂଦାନ ଭୂମି ବଣ୍ଟନ ଦାୟିତ୍ୱରେ ରହିଲେ ।

୧୯୫୬ ମେ' ମାସରେ ଶ୍ରୀମତୀ ରମା ଦେବୀ ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କ ସଙ୍ଗେ ଆସାମର ଲକ୍ଷ୍ମୀପୁର ଯାଇ ସେଠି ସର୍ବୋଦୟ ମେଳାରେ ଯୋଗ ଦେଲେ । ୧୯୫୬ରେ ଶ୍ରୀମତୀ ରମା ଦେବୀ କେନ୍ଦୁଝର ଜିଲ୍ଲାରେ ଭୂଦାନ କାର୍ଯ୍ୟ କରିବାକୁ ଲାଗିଲେ ଓ ୧୯୫୭ ଜାନୁଆରୀରୁ ସେ ସେହି ଜିଲ୍ଲାରେ ଭୂଦାନ ଗ୍ରାମଦାନ ସଂଗ୍ରହ ଦାୟିତ୍ୱ ନେଲେ ଓ ସେଥିପାଇଁ କଣ୍ଟିଆମଡ଼ା ଗ୍ରାମରେ ରହିଲେ । ଅନ୍ୟ କେତେକ ଭୂଦାନ କର୍ମୀ ତାଙ୍କୁ ସାହାଯ୍ୟ କରୁଥାନ୍ତି । ପ୍ରୟୋଜନ ପଡ଼ିଲେ ସେ ବଡ଼ୀ (ରାମଚନ୍ଦ୍ରପୁର) ମଧ୍ୟ ଯାଉଥାନ୍ତି ଓ ସେତେବେଳକୁ କଟକ ଓ୍ୱାରିଆସାହି ଆଶ୍ରମରେ ସେମାନେ ରହୁଥାନ୍ତି, ସେଠି ପ୍ରାଦେଶିକ ଭୂଦାନ ଅଫିସ ଥାଏ । ଶ୍ରୀ ଗୋପବନ୍ଧୁ ଚୌଧୁରୀ ୧୯୫୨ ମାର୍ଚ୍ଚ ମାସରୁ ୧୯୫୬ ଜୁନ୍ ଯାଏ କୋରାପୁଟ ଜିଲ୍ଲାରେ ଭୂଦାନ କାମ କଲେ । କୋରାପୁଟରେ ଶ୍ରୀ ଅଣ୍ଣାସାହେବ ସହସ ବୁଦ୍ଧେଙ୍କ ପରିଚାଳନାରେ 'ନିର୍ମାଣ' କାର୍ଯ୍ୟ ଲାଗିଗଲା । ତାପରେ ୧୯୫୬ ଜୁନ୍ ଠାରୁ ଶ୍ରୀ ଗୋପବନ୍ଧୁ ଚୌଧୁରୀ କୋରାପୁଟ ଜିଲ୍ଲା ପରିବର୍ତ୍ତେ ଅନ୍ୟାନ୍ୟ ଜିଲ୍ଲାରେ ଭୂଦାନ କାର୍ଯ୍ୟ କରାଇବାକୁ ଲାଗିଲେ । ପୁଣି ୧୯୫୭ ଜୁନ୍ ମାସରେ କୋରାପୁଟ ଜିଲ୍ଲାକୁ ଯାଇ ୧୪ ଦିନ ପର୍ଯ୍ୟନ୍ତ ଜିଲ୍ଲାର ସବୁ ଚାରିଆଡ଼େ ଗସ୍ତ କଲେ ଓ ଭୂଦାନ ସମ୍ପତ୍ତି ଦାନ ଆଦି କାର୍ଯ୍ୟରେ ନୂଆ ଉତ୍ସାହ ଖେଳାଇଦେଲେ । ଜୁନ୍ ୨୪ ପରେ ଆଉ ସେଠାକୁ ସେ କେବେ ଯାଇନାହାନ୍ତି ।

କେନ୍ଦୁଝର ଜିଲ୍ଲାରେ ଭୂଦାନ କାର୍ଯ୍ୟ କରୁ କରୁ ୧୯୫୮ ଅପ୍ରେଲ୍ ମାସ ପ୍ରଥମ ସପ୍ତାହରେ ଶ୍ରୀମତୀ ରମା ଦେବୀ ଗୋଟିଏ ସମ୍ମିଳନୀରେ ଯୋଗ ଦେବାକୁ ବ୍ରହ୍ମପୁର ଗଲେ । ସେଠି ଟାଇଫଏଡ୍ ଜ୍ୱରରେ ପଡ଼ି କଟକ ଓ୍ୱାରିଆସାହି ଆଶ୍ରମରେ ରହି ଚିକିତ୍ସିତ ହେଉଥାନ୍ତି । ଶ୍ରୀ ଗୋପବନ୍ଧୁ ଚୌଧୁରୀ ମୟୂରଭଞ୍ଜ ଜିଲ୍ଲାରେ ଗସ୍ତ କରି ବଡ଼ୀ ଫେରିଆସି ସେଠି ଏ ସମ୍ବାଦ ପାଇ କଟକ ଆସିଲେ, ଶ୍ରୀମତୀ ରମା ଦେବୀଙ୍କୁ ଶୁଶ୍ରୂଷା କଲେ ଓ ସେ ଭଲହେଲେ । କିନ୍ତୁ

ଦୁର୍ବଳ ହୋଇପଡ଼ିଥାନ୍ତି । ଏହି ସମୟରେ ୧୯୫୮ ଅପ୍ରେଲ୍ ମାସ ୨୯ ତାରିଖ ରାତି ୧୧ଟା ୫୫ରେ ଶ୍ରୀ ଗୋପବନ୍ଧୁ ଚୌଧୁରୀ ହଠାତ୍ ସ୍ୱର୍ଗବାସୀ ହେଲେ ।

ଏଡ଼େ ବଡ଼ ଆଘାତ ସହି ଠିଆହେବାକୁ ଶ୍ରୀମତୀ ରମା ଦେବୀଙ୍କୁ ବହୁଦିନ ଲାଗିଲା । ସେ ନିଜ ଭିତରେ ବୁଡ଼ି ଅବସନ୍ନ ହୋଇ ରହିଥାନ୍ତି । ତାହାପରେ ପୁଣି ସେ ଲାଗିପଡ଼ିଲେ— ମହାତ୍ମାଜୀ ତ ତାଙ୍କୁ ନିଜେ ବୁଝାଇ ଯାଇଥିଲେ, "ଶୋକରେ ସମୟ ଖର୍ଚ୍ଚ କରିବାକୁ ଦେଶସେବକର ଅଧିକାର କାହିଁ ?"

୧୯୫୮ରେ ସେ ମହାରାଷ୍ଟ୍ରରେ ପଣ୍ଢରପୁର ସର୍ବୋଦୟ ସମ୍ମିଳନୀର ସଭାପତି ହୋଇଥିଲେ । ସେହି ବର୍ଷ ସେ ସମୁଦାୟ ଭାରତରେ 'ଶାନ୍ତିସେନା' ସଙ୍ଗଠନ କାର୍ଯ୍ୟର ନେତୃତ୍ୱ ନେଇଥିଲେ । ୧୯୫୯ରେ କଟକ ଜିଲ୍ଲାରେ ତାଙ୍କ ପ୍ରେରଣାରେ ଶ୍ରୀମତୀ ରମ୍ଭାଦେବୀ ଦ୍ୱାସ୍ତିଆଙ୍କଦ୍ୱାରା ହରିଦାସପୁରରେ "ସେବା ସମିତି" ପ୍ରତିଷ୍ଠିତ ହୋଇଥିଲା । ସେହି ବର୍ଷ ଶ୍ରୀମତୀ ରମା ଦେବୀ 'ନିଖିଳ ଭାରତ ଶାନ୍ତି ସେନା ମଣ୍ଡଳ'ର ସଭାପତି ହେଲେ । ୧୯୬୦-୬ ରେ ସେ ଓଡ଼ିଶାରେ 'ଶାନ୍ତି ସମନ୍ୱୟ ସମିତି' ସ୍ଥାପନ କଲେ । ତାର ଉଦ୍ଦେଶ୍ୟ ଥିଲା— ଗାଁରେ ମାଲିମକଦ୍ଦମା ମିଳାମିଶା ଦ୍ୱାରା ତୁଟାଇଦେବା । ସେହି ବର୍ଷ ସେ ନଈବଢ଼ିବେଳେ ସାହାଯ୍ୟ ସଂଗଠନ କଲେ । ଚୀନ୍ ଆକ୍ରମଣ ପରେ ୧୯୬୨ ଡ଼ିସେମ୍ବରରେ ସେ ଆସାମ ସୀମାନ୍ତରେ ବୁଲିଲେ । ୧୯୬୩ରେ ଓଡ଼ିଶାରେ ଆଚାର୍ଯ୍ୟ ବିନୋବାଙ୍କର ଦ୍ୱିତୀୟ ଥର ପଦଯାତ୍ରା ହେଲା, ସେହି ପଦଯାତ୍ରାକୁ ଶ୍ରୀମତୀ ରମା ଦେବୀ ସୁଚାରୁରୂପେ ପରିଚାଳନା କଲେ । ୧୯୬୪ ଫେବୃଆରୀ-ମାର୍ଚ୍ଚରେ ସେ କୋରାପୁଟ ଜିଲ୍ଲାରେ ଭୂଦାନ ଯାତ୍ରାକଲେ ଓ ଅପ୍ରେଲରେ ରାଉରକେଲାରେ ସାଂପ୍ରଦାୟିକ ଗଣ୍ଡଗୋଳ ପଛେ ପଛେ ସେଠିକି ଯାଇ ସେଠି ଶାନ୍ତି ପ୍ରତିଷ୍ଠା କାର୍ଯ୍ୟ ପରିଚାଳନା କଲେ । ୧୯୬୪ ସେପ୍ଟେମ୍ବର ଶେଷ ସପ୍ତାହରେ କଟକ ସହରରେ ଛାତ୍ର ଆନ୍ଦୋଳନ ଯୋଗୁଁ ଗଣ୍ଡଗୋଳ ଘଟିଲା, ସେତେବେଳେ ଶାନ୍ତି ପ୍ରତିଷ୍ଠା ପାଇଁ କଟକରେ ଶ୍ରୀମତୀ ରମା ଦେବୀ ବହୁତ ପରିଶ୍ରମ କରିଥିଲେ ଓ ଗଣ୍ଡଗୋଳର ସମାଧାନ କରାଇଥିଲେ ।

୧୯୬୫ରେ ସେ ଓଡ଼ିଶାରେ 'ଉତ୍କଳ ଗାନ୍ଧୀ ସ୍ମାରକ ନିଧି'ର ସଭାପତି ହେଲେ । ୧୯୬୬ରେ କଳାହାଣ୍ଡି ଜିଲ୍ଲାରେ ଦୁର୍ଭିକ୍ଷ ପଡ଼ିଲା । ଶ୍ରୀମତୀ ରମା ଦେବୀ ମାର୍ଚ୍ଚ ମାସରେ ସେ ଜିଲ୍ଲାରେ ବୁଲି ଦୁର୍ଭିକ୍ଷ-ପ୍ରପୀଡ଼ିତଙ୍କ ପାଇଁ ସାହାଯ୍ୟ ସଂଗ୍ରହ କଲେ, ସାହାଯ୍ୟ ବ୍ୟବସ୍ଥା କରାଇଲେ । 'ଉତ୍କଳ ରିଲିଫ କମିଟି' ଗଠିତ ହେଲା ଓ ସେ ତାର ସଭାପତି ହେଲେ । ୧୯୬୭ ସେପ୍ଟେମ୍ବରରେ ବାଲେଶ୍ୱର ଓ ମୟୂରଭଞ୍ଜ ଜିଲ୍ଲାରେ ବନ୍ୟାଗଙ୍ଗ ନଦୀରେ ବନ୍ୟା-ଯୋଗୁଁ ବହୁତ କ୍ଷତି ହେଲା, ସେ ରିଲିଫ୍ କାର୍ଯ୍ୟ କରିଥିଲେ । ସେହିବର୍ଷ ଅକ୍ଟୋବରରେ କଟକ ପୁରୀ ବାଲେଶ୍ୱର ଜିଲ୍ଲା ଉପକୂଳରେ ଭୀଷଣ ବାତ୍ୟାହେଲା ଓ ଭୟଙ୍କର କ୍ଷତି ହେଲା । ସେଠିବି ସେ ରିଲିଫ୍ କାର୍ଯ୍ୟ କରାଇଥିଲେ । ୧୯୬୮ରେ ଓଡ଼ିଶାର ଆଠଟି ଜିଲ୍ଲାରେ ମରୁଡ଼ି ହେଲେ ରିଲିଫ୍ କାର୍ଯ୍ୟରେ ସେ ସହଯୋଗକଲେ । ୧୯୬୭ ରୁ ୧୯୬୯

ଭିତରେ ଗାନ୍ଧୀ ଶତବାର୍ଷିକୀ ପାଇଁ ଆୟୋଜନ ହେଲା, ତହିଁରେ ସେ ସକ୍ରିୟ ଅଂଶ ଗ୍ରହଣ କଲେ । ୧୯୬୯ରେ କଟକ କଲା ଜମ୍ମୁରେ କିଛି ଭାଷା-ବିଦ୍ୱେଷ ସଂଘର୍ଷ ହେଲା । କଟକରେ ସାଂପ୍ରଦାୟିକ ବିଦ୍ୱେଷ ମୁଣ୍ଡ ଟେକିଲା, ବ୍ରହ୍ମପୁରରେ ଅନ୍ୟପ୍ରକାର ସାଂପ୍ରଦାୟିକ ବିଦ୍ୱେଷ ଦେଖାଦେଲା, ତାର ସମାଧାନ ଓ ନିରାକରଣ ପାଇଁ ସେ ସରକାରୀ ଉଦ୍ୟମ ସହିତ ସହଯୋଗ କଲେ । ୧୯୭୦-୭୧ରେ ପଶ୍ଚିମବଙ୍ଗର ବନାଜ୍‌ପୁରରେ ବାଂଲାଦେଶରୁ ଶରଣାର୍ଥୀଗୁଡ଼ିଏ ପହଞ୍ଚିଥାନ୍ତି, ସେମାନଙ୍କ ସେବାକାର୍ଯ୍ୟ ପାଇଁ ଓଡ଼ିଶାରୁ ୨୯ ଜଣ କର୍ମୀ ନେଇ ସେଠି ସେ ପହଞ୍ଚିଲେ ଓ ସେଠି ପାଞ୍ଚମାସ ରହି ସେବାକାର୍ଯ୍ୟ କରାଇଲେ । ସେହିବର୍ଷ ଓଡ଼ିଶାରେ ପ୍ରାୟ ସ୍ୱର ଶହ ବନ୍ୟା ପୀଡ଼ିତ ଲୋକଙ୍କୁ ଥଇଥାନ କରାଗଲା, ସେହି କାର୍ଯ୍ୟରେ ମଧ୍ୟ ସେ ବହୁତ ପରିଶ୍ରମ କଲେ । କଟକ ସହରରେ ରହି ସେଠି ଭିକାରୀ, କୁଷ୍ଠରୋଗୀ ସମସ୍ୟା, ଦଣ୍ଡହରି ଗଣ୍ଡଗୋଳ, ମଦନିଶାର ପ୍ରସାର ଚନ୍ଦ ଆଦି ନାନା ସମସ୍ୟାର ସମାଧାନ ପାଇଁ ବହୁଦିନୁଁ ସେ ବହୁତ ବ୍ୟକ୍ତିଙ୍କ ସଙ୍ଗେ ଆଲୋଚନା କରି ଉଦ୍ୟମ କରିଆସୁଥିଲେ । ଏଥିପାଇଁ ୧୯୭୨ ମାର୍ଚ୍ଚ ୧୯ ତାରିଖରୁ କିଛି ହେଲେ କାମ ଆରମ୍ଭ କରିଦେବା ଉଦ୍ଦେଶ୍ୟରେ 'ସର୍ବୋଦୟ ମଣ୍ଡଳ' ତରଫରୁ ଗୋଟିଏ 'ଶିଶୁବିହାର' ପ୍ରତିଷ୍ଠା କରାଇଲେ ।

୧୯୭୫ ଜୁନ୍ ମାସରେ ଭାରତରେ ଏମରଜେନ୍‌ସି (ଜରୁରୀକାଳୀନ ଅବସ୍ଥା) ଜାରି କରାହେଲା । ତାର ପ୍ରତିବାଦରେ ଗୋଟିଏ ପ୍ରଚାରପତ୍ର ବାହାରକରି ବଣ୍ଟା ହେବ ବୋଲି କେତେକ ନେତା ସ୍ଥିର କଲେ । ଶ୍ରୀମତୀ ରମା ଦେବୀ ତହିଁରେ ଏକମତ ହେଲେ ଓ ତାଙ୍କରି ସ୍ୱାକ୍ଷରରେ ପ୍ରଚାରପତ୍ର ଛପା ହେଲା । ତାପରେ ତାଙ୍କର ଓ ଶ୍ରୀମତୀ ମାଳତୀ ଦେବୀଙ୍କ ସ୍ୱାକ୍ଷରରେ ଦ୍ୱିତୀୟ ପ୍ରଚାରପତ୍ର ବାହାରିଲା । ସେହି ବର୍ଷ ଅକ୍‌ଟୋବର ୨ ତାରିଖ ଗାନ୍ଧୀ ଜୟନ୍ତୀ ଦିନ ଶ୍ରୀମତୀ ରମା ଦେବୀ ଓ ଅନ୍ୟମାନେ ମିଶି କଟକରେ ଗୋଟିଏ ନୀରବ ଶୋଭାଯାତ୍ରା କଲେ । ନୀରବ ହେଲେ ମଧ୍ୟ ତାହା ଗାନ୍ଧୀବାଦୀ ଦୃଷ୍ଟିଭଙ୍ଗୀରୁ ଏମର୍ଜେନ୍‌ସି ବିରୁଦ୍ଧରେ ଗୋଟିଏ ଅହିଂସ ଓ ବଳିଷ୍ଠ ପ୍ରତିବାଦ ଥିଲା । ଶ୍ରୀମତୀ ରମା ଦେବୀ ଏମର୍ଜେନ୍‌ସି ବିରୁଦ୍ଧରେ ପ୍ରଚାର କରୁଥାନ୍ତି । ଏମରଜେନ୍‌ସି ବେଳେ ତ ଅନେକେ ଗିରଫ ହୋଇ ଜେଲରେ ରହିଲେ, କିନ୍ତୁ ତାଙ୍କୁ ଗିରଫ କରାହେଲା ନାହିଁ, କିମ୍ବା ତାଙ୍କ ଯିବା ଆସିବା ଉପରେ କୌଣସି ପ୍ରକାର ସରକାରୀ କଟକଣା କରାଗଲାନାହିଁ । କିନ୍ତୁ କଟକ ଯୋଗିଆ-ସାହି 'ଆଶ୍ରମ'ରେ ଯେଉଁଠି ସେ ରହୁଥିଲେ ତା ଆଗରେ ପୁଲିସ ରହି ନଜରରଖୁଥିଲେ ।

ସେ ବେଳ ବି ଗଲାଗଲା । ଶ୍ରୀମତୀ ରମା ଦେବୀଙ୍କ ବାର୍ଦ୍ଧକ୍ୟ ବଢ଼ିବା ସଙ୍ଗେ ସଙ୍ଗେ ତାଙ୍କ ସ୍ୱାସ୍ଥ୍ୟ କ୍ରମେ ଦୁର୍ବଳ ହୋଇଗଲା । ତଥାପି ତାଙ୍କର ମନର ବଳ, ତୀକ୍ଷ୍ଣ ଓ ପରିଷ୍କାର ବିଚାର, ଜନସେବା ପ୍ରତି ଏକନିଷ୍ଠ ଆଗ୍ରହ ଅତୁଟ ରହିଛି । ସେ ନାନା ଲୋକ ହିତକର କାର୍ଯ୍ୟରେ ବ୍ୟାପୃତ ରହନ୍ତି, ଗଠନାତ୍ମକ କର୍ମୀମାନଙ୍କୁ ପରାମର୍ଶ ଦିଅନ୍ତି, ଗଭୀର ସହାନୁଭୂତି ସହକାରେ ନାନା ଶ୍ରେଣୀର ବ୍ୟକ୍ତିଙ୍କ ଦୁଃଖ ଓ ସମସ୍ୟା ସେମାନଙ୍କୁ ପଚାରି ବୁଝି ସେମାନଙ୍କୁ ସାହସ ଦିଅନ୍ତି ଓ ସଦୁପଦେଶ ଦିଅନ୍ତି ଓ ତାର ନିରାକରଣ ପାଇଁ ଉପାୟ ଚିନ୍ତା କରନ୍ତି ।

ସେ ଦେଶର ନାନା ସମସ୍ୟା କଥା ଭାବନ୍ତି । ତଥାପି ସେ ନିରାଶ ନୁହନ୍ତି । ତାଙ୍କର ଚରିତ୍ରଗତ ମୂଲ୍ୟବୋଧ, ଆଶା ଓ ବିଶ୍ୱାସ ଅତୁଟ ରହିଛି, ଓ ଏବେ ସୁଦ୍ଧା ତାଙ୍କର ଧ୍ୟେୟ ହୋଇ ରହିଛି ପରୋପକାର ଓ ସର୍ବୋଦୟ ଆଦର୍ଶରେ ଅହିଂସ ସମାଜ ଗଠନ । ପୂଜ୍ୟା ଶ୍ରୀମତୀ ରମାଦେବୀଙ୍କ ଲେଖା ପୁସ୍ତକ 'ଜୀବନପଥେ' ପ୍ରକାଶିତ ହେଲା । ଏହା ତାଙ୍କର ପିଲାଦିନର ଅଭିଜ୍ଞତାରୁ ଆରମ୍ଭ କରି ୧୯୭୭ରେ 'ଏମର୍ଜେନ୍ସି' ପରବର୍ତ୍ତୀ ନିର୍ବାଚନ ପର୍ଯ୍ୟନ୍ତ ସମୟ ଭିତରେ ତାଙ୍କର ଆତ୍ମଜୀବନୀ । ଏ ପୁସ୍ତକରେ ଥିବା ଲେଖାଗୁଡ଼ିକ ଅଳ୍ପ ଅଳ୍ପ ହୋଇ ଧାରାବାହିକ ଭାବେ ସାପ୍ତାହିକ 'ସର୍ବୋଦୟ' ପତ୍ରିକାରେ ପ୍ରକାଶିତ ହୋଇଥିଲା, ପରେ ତେସ୍ତ୍ରୀଶି ଅଧ୍ୟାୟ ହୋଇ ଏକତ୍ର ଏ ପୁସ୍ତକରେ ପ୍ରକାଶିତ ହୋଇଛି ।

'ସର୍ବୋଦୟ' ପତ୍ରିକାରେ ପ୍ରଥମ ଲେଖାଟି ବାହାରିଥିଲା ମାତ୍ରେ ତାହା ପାଠକପାଠିକାମାନଙ୍କୁ ଚମତ୍କୃତ କରିଥିଲା । ତାହା ପୂର୍ବରୁ କେବେ ଜଣା ନଥିଲା ଯେ ଶ୍ରୀମତୀ ରମା ଦେବୀ ଆତ୍ମଜୀବନୀ ଲେଖୁଥିଲେ । ସେ ନିଜ ବିଷୟରେ କେବେ କିଛି କହନ୍ତି ନାହିଁ । ମୁଁ ଯେତେବେଳେ ପୂଜ୍ୟ ୰ ଗୋପବନ୍ଧୁ ଚୌଧୁରୀଙ୍କ ଜୀବନୀ ('ଧୀପଂଜ୍ୟୋତି' ଓ 'ଧୂଳି ମାଟିର ସନ୍ଥ') ଲେଖିଲି ଓ ସେଥିପାଇଁ ତଥ୍ୟ ଆହରଣ କରୁଥିଲି ସେତେବେଳେ ମଧ୍ୟ ତାହା ଜାଣିନଥିଲି ।

ନାନା ଦିଗରୁ ଏ ଆତ୍ମଜୀବନୀଟି ଗୋଟିଏ ଅତି ଉପାଦେୟ ବହୁମୂଲ୍ୟ ଗ୍ରନ୍ଥ । କି ପରିବେଶ ଭିତରେ ଓ କାହା କାହା ଚରିତ୍ରର ଓ ଦୃଷ୍ଟାନ୍ତର କିପରି ପ୍ରଭାବ ପଡ଼ି ଓ କି ପ୍ରକାର ଶିକ୍ଷା ତାଲିମ୍ ପାଇ ମୂଳରୁ ଶ୍ରୀମତୀ ରମା ଦେବୀଙ୍କର ଆଦର୍ଶ ଚରିତ୍ର ଓ ବ୍ୟକ୍ତିତ୍ୱର ଗଠନ ଓ ବିକାଶ ସମ୍ଭବ ହୋଇପାରିଲା ତାହାର କିଛି ପରିଚୟ ତାଙ୍କ ନିଜ ଅନୁଭୂତି ଉପରେ ଆଧାରିତ ଏ ଆତ୍ମଜୀବନୀରୁ ମିଳିବ, ଅନେକ ପ୍ରସିଦ୍ଧ ବ୍ୟକ୍ତିଙ୍କ ଚରିତ୍ରର ନାନା ଆକର୍ଷଣୀୟ ଦିଗ ବିଷୟରେ ଧାରଣା ମିଳିବ ଓ ଅତୀତର ଐତିହାସିକ ସମୟର କିଛି ଜୀବନ୍ତ ସ୍ପର୍ଶ ମିଳିବ । ଶ୍ରୀମତୀ ରମା ଦେବୀଙ୍କ ସୁଯୋଗ୍ୟା କନ୍ୟା ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣା ମତେ ଏହାର ମୁଖବନ୍ଧ ଲେଖିବାକୁ କହି ଗୌରବାନ୍ୱିତ କରିଛନ୍ତି, ଏହା ମୋର ସୌଭାଗ୍ୟ ଓ ଏଥିପାଇଁ ମୁଁ ତାଙ୍କପାଖେ କୃତଜ୍ଞ । ଇତି ।

ଗୋପୀନାଥ ମହାନ୍ତି

୨୧ ୩-୮୪

# ୧ । ପିଲାଦିନ

ମୋର ଅତୀତ ଜୀବନର କଥା ମୁଁ ଲେଖିରଖେ ବୋଲି ସରଳା ଦେବୀ ମୋତେ ଅନୁରୋଧ କଲେ । ମୁଁ ଭାବିଲି—କ'ଣ ଲେଖିବି ? ପନ୍ଦରବର୍ଷ ଯେ ବାପା-ମା'ଙ୍କ ପାଖରେ ଥିଲି, ସେତେବେଳେ ତ ସାଧାରଣ ଝିଅପରି ଜୀବନ କଟାଇଛି—ଉଲ୍ଲେଖଯୋଗ୍ୟ କାମ କ'ଣ ବା କରିଛି ? ବାହାହୋଇ ଶାଶୁଘରକୁ ଯେ ଆସିଲି, ପିଲା ଜନ୍ମ କରିବା, ତାଙ୍କୁ ପାଳିବା, ଘରକାମ କରିବାରେ ପନ୍ଦରବର୍ଷ କଟିଲା । ସେହି ପନ୍ଦରବର୍ଷ ଭିତରେ ମୋ ଜୀବନକୁ ମୁଁ ଯେପରି ନିୟନ୍ତ୍ରଣ କରିଛି, ଘରକରଣା ଭିତରେ ସାର୍ବଜନୀନ କାମ କରିବାପାଇଁ ମୁଁ ନୀରବରେ ଯେଉଁ ଉଦ୍ୟମ କରିଛି ତାହା ଅବଶ୍ୟ ମୋ ଶ୍ରେଣୀର ଅର୍ଥାତ୍ ପଢ଼ାଶୁଣା କରିନଥିବା ଝିଅବୋହୂଙ୍କ ପାଇଁ କାମରେ ଆସିପାରେ । ପାଠ ବଳ ନ ଥାଇ କେବଳ ଗୁଣ ବଳରେ ଯେ ମଣିଷ ଦେଶ ତଥା ସମାଜସେବା କାମ କରିପାରେ, ଏ ପ୍ରମାଣ ମୋ ଜୀବନରୁ ମିଳିବ । କେତେ ବଡ଼ ବଡ଼ ଜୀବନୀ ତ ଲୋକେ ପଢ଼ୁନାହାନ୍ତି ଏବଂ ପଢ଼ିଲେ ବି ଜୀବନରେ ଗ୍ରହଣ କରୁନାହାନ୍ତି—ମୁଁ ବା କିବା ସ୍ତରର ଲୋକ ଯେ ମୋ କଥାର କି ମୂଲ୍ୟ ଅଛି ?

ମୋ ବାପା ୰ ଗୋପାଳ ବଲ୍ଲଭ ଦାସ, ମୋ ଶ୍ୱଶୁର ୰ ଗୋକୁଳାନନ୍ଦ ଚୌଧୁରୀ, ଯାଜପୁରର ବ୍ରହ୍ମାନନ୍ଦ ଦାସ ପ୍ରଭୃତି କେତେଜଣ ସହପାଠୀ ଥିଲେ ଏବଂ ତାଙ୍କ ଭିତରେ ଘନିଷ୍ଠ ବନ୍ଧୁତା ଥିଲା । ବାପା ଓ ଶ୍ୱଶୁର କଲିକତାରେ ବି. ଏ. ପଢ଼ିଲେ । ବାପା ଏମ୍.ଏ. ଓ ଶ୍ୱଶୁର ଓକିଲାତି ପଢ଼ିଲେ କଲିକତାରେ । ଛୁଟିରେ ଦୁହେଁ ସାଙ୍ଗ ହୋଇ କଲିକତାରୁ ଚାନ୍ଦବାଲି ବାଟେ କେମିତି କଟକ ଆସନ୍ତି, ସେ କଥା ବାପା ଗପ କରନ୍ତି । ଅନେକ ମଜା ମଜା କଥା କହନ୍ତି । ବାହାଘର ପରେ ମଧ୍ୟ ବନ୍ଧୁତା କମିଲା ନାହିଁ । ଶ୍ୱଶୁର କଟକରେ ଓକିଲାତି କଲେ । ଶାଶୁଙ୍କ କାଖରେ କଣ ଘା ହେଲା ଯେ ସେ ଘା ଶୁଖିଲା ନାହିଁ । ତାଙ୍କୁ କଟକ ଅଣାହେଲା । ସେତେବେଳେ କଟକରେ ଓକିଲ ପ୍ରଭୃତି ଲୋକଙ୍କ ପରିବାର ଖୁବ୍ କମ୍ ରହୁଥିଲେ, ଓଡ଼ିଆ ଯେ ରହୁଥିଲେ ସେମାନେ ପ୍ରାୟ କରଣଘରର । ତେଣୁ ବନ୍ଧୁବାନ୍ଧବ ସମ୍ପର୍କ ଜୁଟିଯାଉଥିଲା । ମୋ ମା'ଆଈ, ସେତେବେଳେ କଟକରେ ପୁରୁଣା ଲୋକ ଥିଲେ । ତାଙ୍କ ମୁରବିପଣିଆ ଗୁଣରେ ସେ ସମସ୍ତଙ୍କର ମୁରବି ହୋଇ ଯାଉଥିଲେ । ଶାଶୁ କଟକ ଆସିଲେ । ଶ୍ୱଶୁର ବାପାଙ୍କର ଘନିଷ୍ଠ ବନ୍ଧୁ । ସେଥିପାଇଁ ମୋ ବଡ଼ମାଉସୀ ନଶାମଣି ଦେବୀ ଶାଶୁଙ୍କ ସାଙ୍ଗରେ ଗୁନ୍ଦ ବସିଲେ । ତେଣୁ ଶାଶୁ ମୋ ଆଈଙ୍କର ଝିଅ ସମ୍ପର୍କ ହେଲେ—ଆଈ ଶାଶୁଙ୍କ ସହିତ ଝିଅମତ ଧର୍ମଝିଅ କାରବାର କଲେ ।

ପୂଜାଅପରବ ଆଦରେ ଖରବେଖର ଦିଆନିଆ ମଧ୍ୟ ଚାଲିଲା । ଶାଶୁ ମୋ ମାମୁଁ ଘରେ ଗୋଟିଏ ଝିଅର ଆଦରବ୍ୟବହାର ପାଇଲେ । ବାପା କଟକରେ ରହୁଥିଲେ । ବାପା, ଶ୍ୱଶୁର ଓ ଅନ୍ୟ ବନ୍ଧୁମାନଙ୍କର କଥା ସ୍ଥିରହୋଇଗଲା ଯେ ପ୍ରତି ଆଠ ଦିନରେ ରବିବାର ଦିନ ବନ୍ଧୁମିଳନ ହେବ—ଜଣେ ବନ୍ଧୁଙ୍କ ଘରେ ଅନ୍ୟମାନେ ଖାଇବେ । କିଛିଦିନ ପରେ ଦେଖାଗଲା ଅନ୍ୟମାନଙ୍କୁ ଠକେଇବା ପାଇଁ ଶ୍ୱଶୁର ଫାଙ୍କିଦେବାକୁ ଲାଗିଲେ । ତାଙ୍କ ପାଳିରେ ଖୁଆଇବାକୁ ଡାକିଲେ ନାହିଁ । ଦିନେ ଶ୍ୱଶୁର ଘରେ ନ ଥିବାବେଳେ ହଠାତ୍ ବାପା ତାଙ୍କ ଘରକୁ ଗଲେ । ବାପା ମୋ ନଣନ୍ଦ ଗୁଲି ଅପାଙ୍କୁ ଖୁବ ସ୍ନେହକରୁଥିଲେ । ସେ 'ଗୁଲି' 'ଗୁଲି' ଡାକଡାକିକା ଦାଣ୍ଡରେ ନରହି ଘର ଭିତରକୁ ପଶିଯିବାର ଦେଖି ମୋ ଶାଶୁ ଆଉ ଗୋଟିଏ ଘରେ ଲୁଚିଗଲେ । ବାପା ଘର ଭିତରକୁ ଗଲେ ଏବଂ କିଛିକ୍ଷଣ ପରେ ବାହାରିଗଲେ । ଘର ଭିତରକୁ କାହିଁକି ଅଳ୍ପ ସମୟ ପାଇଁ ଯାଇ ବାହାରିଆସିଲେ, କେହି କିଛି ଜାଣିପାରିଲେନାହିଁ । ତାପରେ ଯେଉଁ ରବିବାର ପଡ଼ିଲା, ବାପା ସବୁ ବନ୍ଧୁଙ୍କୁ ଖାଇବାକୁ ଡାକିଲେ । ଖିଆପିଆ ଜାକଜମକରେ ହେଲା । ଖାଇସାରି ସମସ୍ତେ ପାନ ଖାଇ ଗପସପ ହେଉଛନ୍ତି, ବାଞ୍ଛାଗୁଡ଼ିଆ ଆସି ଶ୍ୱଶୁରଙ୍କୁ କେତେଗୁଡ଼ିଏ ସୁନାଗହଣା ଦେଖାଇ କହିଲା—"ଗୋପାଳବାବୁ ଏଗୁଡ଼ିକ ମୋତେ ଦେଇ ଆଜିକା ଖିଆପିଆ ଖରଚ କରାଇଥିଲେ, ଆପଣ ଏ ଗହଣା ନେଇ ମୋତେ ମୋ ପ୍ରାପ୍ୟ ଟଙ୍କା ଦିଅନ୍ତୁ ।" ସମସ୍ତେ ହୋ ହୋ ହୋଇ ହସିଲେ । ଶ୍ୱଶୁର ଅପ୍ରସ୍ତୁତ ହେଲେ ମଧ୍ୟ ସମସ୍ତଙ୍କ ସାଙ୍ଗରେ ହସିଲେ । ବାପା ଏହିପରି କୌତୁକବରାବର କରୁଥିଲେ ।

ମା ବି ଏମିତି କାମ କରିବାର ପିଲାଦିନେ ଦେଖିଛି । ଆମ ଗାଁରେ ଲୋକଙ୍କ ବାଡ଼ିରୁ କାକୁଡ଼ି, କଦଳୀ ପ୍ରଭୃତି ପନିପରିବା ଖୁବ୍ ଚୋରିହେଉଛି ବୋଲି ସମସ୍ତେ କହୁଥାନ୍ତି । ଆମ ବାଡ଼ିରୁ ମଧ୍ୟ ଖୁବ୍ ଚୋରିହେଉଥାଏ । ଆମେ ଗାଁରେ ଥାଉ । ବଗିଚା କାମ ଦାୟିତ୍ୱରେ ଥିବା ବାଞ୍ଛାକୁ ମା ତାଗିଦ କରେ । ସେ କହେ—"ସାଆନ୍ତାଣି ! ଯେ ନେଉଛି ସେ ଖୁବ ଗରିବଲୋକଟାଏ । କ'ଣ କରିବ, ତା ପିଲା ଖାଇବାକୁ ପାଉନାହାନ୍ତି ।" ମା କହେ— "ତୋର ଯଦି ସେ ଚୋରପ୍ରତି ଏତେ ଦୟା, ତେବେ ତୋ ବାଡ଼ିରୁ ବି ତାକୁ କିଛି ଦେ । ନ ହେଲେ ଗଛ ଲଗେଇ ତା ଜିମା କରିଦେ—ସେମାନେ ଗଛ ବଞ୍ଚାନ୍ତୁ, ଫଳ ଖାଆନ୍ତୁ ।" ମା ଯେଉଁଦିନ ବେଶି ବିରକ୍ତ ହୁଏ, ସେଦିନ କହେ, "ବାଞ୍ଛା ! ମୁଁ ଦେଖୁଛି କେବଳ ମୋ ଛଡ଼ା ସବୁରି ଉପରେ ତୋର ଖୁବ ଦୟା । ମୋ ଉପରେ ତୋର କାହିଁକି ଦୟା ହେଉନାହିଁ ?" ଗାଁରେ ଏମିତି ଚୋରିଗୋଳ ଲାଗିଥାଏ ।

ଦିନେ ଗୋପୀ ଦାଦା ମା'କୁ କହିଲେ—"ଭାଉଜ'ଉ, ତମ ବାଡ଼ିରେ କାହିଁକି ଏତେ ଚୋରି ହେଉଛି—ମୋ ବାଡ଼ିରେ ତ ଦିନେ ବି ହେଉନାହିଁ ! ମୋଠୁଁ ସମସ୍ତଙ୍କର ଶିଖିବାର କଥା ଯେ ମୁଁ କମିତି ସମସ୍ତଙ୍କୁ ଜବତ କରି ରଖିଛି—ଚୋର ପଶିପାରୁନାହାନ୍ତି ।" ଗୋପୀଦାଦା ଏ କଥା କହିବାର ଚାରି ପାଞ୍ଚ ଦିନ ଗଲାପରେ ଦିନେ ମା

ଗୋପୀଦାଦାଙ୍କ ଘରକୁ ବୁଲିବାହାରିଲୁ । ସନ୍ଧ୍ୟା ହୋଇଯାଇଥାଏ । ମା, ଆମେ ଦୁଇ ଭଉଣୀ, ସୋଣୀବୋଉ ଖୁଡ଼ୀ, ଆଉ ଜଣେ ଦୁଇଜଣ ଗଲୁ । ଦୁଇଜଣ ଲୋକ ଲଣ୍ଠନ ଧରି ଆମ ସାଙ୍ଗରେ ଗଲେ । ଗୋପୀଦାଦାଙ୍କ ବାଡ଼ି ପାଖ ହେଲାରୁ ମା ଲଣ୍ଠନ କମାଇ ଦେବାକୁ କହିଲା ଏବଂ ବାଡ଼ି ଧଡ଼ା ଫିଟାଇ ତା ଭିତରକୁ ଗଲା । ଆମେ ସମସ୍ତେ ତା ପଛେ ପଛେ ଗଲୁ । ବାଇଗଣ, ଭେଣ୍ଡି, କଦଳୀ ଯେ ଯାହା ପାଇଲୁ ଅନ୍ଧାରରେ ତୋଳି ଏକାଠି କରି ଗୋଟାଏ ଟୋକେଇରେ ପୁରେଇ ଆଣିଲୁ । ଗୋପୀନାଥପୁରରେ ପହଞ୍ଚିବା ମାତ୍ରେ ବଡ଼ମା ଓ ଖୁଡ଼ୀମାନେ ଖାଇବାକୁ ଆମନ୍ତ୍ରଣ କରନ୍ତି । ଗୋପୀଦାଦାଙ୍କ ଘର ଖୁଡ଼ୀ ଡାକନ୍ତି ନାହିଁ, ମାତ୍ର ଖାଇବା ତାଙ୍କର ଘରେ ହୁଏ । ଆମେ ପହଞ୍ଚିବା ମାତ୍ରେ ସମସ୍ତେ ଖାଇବା ପାଇଁ ନିମନ୍ତ୍ରଣକଲେ । ଗୋପୀଦାଦାଙ୍କ ଘରେ ଖାଇବା କଥା ତ ଜଣାଶୁଣା । ଗୋପୀଦାଦା ସନ୍ଧ୍ୟା ପୂଜାରେ ବସିଥିଲେ । ପୂଜାସାରି ଆସି କଥାବାର୍ତ୍ତା କଲେ । ପରିବା ଦେଖି କହିଲେ—"ଆଜି କାହିଁକି ପରିବା ଆଣିଛ ?" ମା କହିଲା—"ନେଇ ଆସିଲି ।" ଗୋପୀଦାଦାଙ୍କ ଘରେ ତରକାରି ହୁଏ ନାହିଁ, ଡାଲି ଓ ବିଭିନ୍ନ ପ୍ରକାରର ଭଜା ହୁଏ । ରନ୍ଧାବଢ଼ା ହେଲା । ସମସ୍ତେ ଖାଇସାରିଲା ପରେ ମା ଗୋପୀଦାଦାଙ୍କୁ କହିଲା ଯେ ସେ ପରିବା ତାଙ୍କର ବାଡ଼ିର । ଗୋପୀଦାଦାଙ୍କୁ ତ ଖୁବ ଲାଜ ହେଲା । ସେ କହିଲେ — "ଭାଉଜବୋହୂ ! ମୁଁ କାହାରି ପାଖରେ ଏମିତ ହାରି ମାନି ନ ଥିଲି । ମୁଁ ଯେଉଁ ବଡ଼େଇ କରି କଥା କହୁଥିଲି ତାହାର ଫଳପାଇଲି ।" ମା ଏହିପରି ଅନେକଙ୍କ ସଙ୍ଗେ ଅନେକ ପ୍ରକାରର ରସିକତା କରୁଥିଲା ।

## ୨ । ଶୁଭସଂସ୍କାର

ବାପା ତ ସରକାରି ଚାକିରି କରୁଥିଲେ । ସେତେବେଳେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହୋଇନଥିଲା—ବଙ୍ଗଳା ବିହାର ସାଙ୍ଗରେ ରହୁଥିଲା । ବାପା ଯେଉଁଠି ଥିଲେ ବି ସେ ବେମାର ହେବା ଖବର ପାଇଲେ ବଡ଼ବାପା ତାଙ୍କୁ ପାଖକୁ ନେଇଆସନ୍ତି—ଚିକିତ୍ସା କରାଇ ଭଲ ହେଲେ ଛାଡ଼ନ୍ତି । ବାପାଙ୍କ ସାଙ୍ଗରେ ଆମେ ମଧ୍ୟ ଆସି ବଡ଼ବାପାଙ୍କ ଘରେ ରହୁ । ବର୍ତ୍ତମାନ ଯେ ଶୈଳବାଳା ମହିଳା କଲେଜ ହୋଇଛି, ସେଇଟା ବଡ଼ବାପାଙ୍କର ବାସଗୃହ ଥିଲା । ବାପା, ମା ଓ ଆମେ ଦୁଇ ଭଉଣୀ ସେଇଠି ରହୁ । ବଡ଼ବାପାଙ୍କ ଘରେ ମିସ୍ ଦାସ (୧), ମିସ୍ ହାଜରା (୨) ଓ ଚନ୍ଦ୍ର ପ୍ରଭୃତି ମଧ୍ୟ ଥାଆନ୍ତି । ବଡ଼ବାପାଙ୍କ ଘରେ ରହିଲାବେଳେ ମିସ୍ ଦାସ ଆମ ଉପରେ ମୁରବିପଣିଆ କରନ୍ତି । ବାଥରୁମ୍ କିପରି ବ୍ୟବହାର କରିବାକୁ ହୁଏ, ଟେବୁଲରେ ଖାଇବା କାଇଦା ଏସବୁ ଶିଖାନ୍ତି । ସେ ସଣ୍ଣୁଣାର ଟିକିଏ ବ୍ୟତିକ୍ରମ ହେଲେ ମିସ୍

(୧) ଶୈଳବାଳା ଦାସ, (୨) ସୁଧାଂଶୁବାଳା ହାଜରା

ଦାସ ଆକଟ କରନ୍ତି । ସେ ଆକଟ ବଡ଼ବାପାଙ୍କୁ ଭଲ ନ ଲଗିଲା ପରି ଜଣାପଡ଼େ । ସେ କହିପକାନ୍ତି, "ଶୈଳ, ପିଲାଗୁଡ଼ାଙ୍କୁ କେତେ ଶାସନ କରୁଛୁ ? ଗୁଡ଼ିଏ ବଡ଼ ହେଲେ ସେମାନେ ଆପେ ଜାଣିବେ ।"

ବଡ଼ବାପା ତ ଓଡ଼ିଆଙ୍କ ସାଙ୍ଗରେ ବି ଅନେକ ସମୟରେ ବଙ୍ଗଳାରେ କଥାବାର୍ତ୍ତା କରନ୍ତି—ତେଣୁ ମିସ୍ ଦାସଙ୍କ ସଙ୍ଗେ ବଙ୍ଗଳା କହିବା ସ୍ୱାଭାବିକ । ମିସ୍ ହାଜରାଙ୍କ ସ୍ୱଭାବ କଡ଼ା ନଥିଲା । ସେ ଆମକୁ ନେଇ ବଗିଚାରେ ବୁଲନ୍ତି । ସେ ସେତେବେଳେ କଲିକତାରେ ପଢ଼ୁଥିଲେ । ଆମେ ମାଟିରେ କଣେଇ ଗଢ଼ି ଶିଖିବୁ, ସେଥିପାଇଁ ସେ କଲିକତାରୁ କଳା ରଙ୍ଗର ଅତି ସୁନ୍ଦର ଭଲ ମାଟି ଆଣୁଥିଲେ ଓ ସେ ମାଟିରେ କଣେଇ ଗଢ଼ା ଶିଖାଉଥିଲେ । ତାଙ୍କର ଚିତ୍ର ଆଙ୍କିବାର ସଉକ ଥିବା ଯୋଗୁଁ ହେଉ ବା ବାପାଙ୍କର ଆଗ୍ରହ ଥିବା ଯୋଗୁଁ ହେଉ, ରଙ୍ଗୀନ୍ ପେନ୍ସିଲରେ ଆମ ହାତରେ ଚିତ୍ର କରାଉଥିଲେ । ବଗିଚାରେ ବୁଲିବା ବେଳେ ଫୁଲ ଓ ଗଛ ଲତା ଆମକୁ ଦେଖାଇ କହୁଥିଲେ—ସ୍ୱାକୁ ସବୁ ଦେଖି ଚିତ୍ର ଆଙ୍କି ଓ ସେଥିରେ ସାହାଯ୍ୟ କରୁଥିଲେ । ଫୁଲତୋଡ଼ା ବନ୍ଧା ଶିଖାଉଥିଲେ ।

ବଡ଼ବାପାଙ୍କ ସଙ୍ଗେ ମୋ ମା'ର ସମ୍ପର୍କ ଦେଢ଼ଶୁର ଭାଇବୋହୂ ପରି ନଥିଲା—ବାପ ଝିଅ ଭଳି ଥିଲା । ସେଥିପାଇଁ କେତେ ଲୋକ ମା'କୁ ଥଟ୍ଟାରେ କହନ୍ତି—ତମେ ଆର ଜନ୍ମରେ ପେଟ୍ସ୍ ହୋଇ ଜନ୍ମ ହେବ । ବଡ଼ବାପା ମାକୁ 'ପାଲ୍' ଡାକନ୍ତି । ମା'ର ଡାକନାମ ଥିଲା ପାଲ୍ । ବଡ଼ବାପାଙ୍କ ଘରେ ଖାନସମା ରୋଷେଇ କରନ୍ତି । କିନ୍ତୁ ବଡ଼ବାପା ଖାଇବା ବେଳେ ପାଲ୍ ହାତ ରନ୍ଧା ତରକାରି ଓ ମିଠା ଖୁବ ଖୁସିରେ ଖାଇବେ । ଏଥିପାଇଁ ମା ଦୋମହଲା ଛାତ ଉପରେ ଗୋଟିଏ ଉଠା ଚୂଲିରେ ପ୍ରତିଦିନ ତରକାରି, ପିଠା ଓ ଅନ୍ୟ ଜଳଖିଆ ତିଆରି କରେ । ପରଷିବା ବେଳେ ବଡ଼ବାପା କହନ୍ତି—"ପାଲି ! ତୁ ଯଦି ଖୁସି ହେବୁ ତ ମୋ ପେଟ ପୂରିଲେ ମଧ୍ୟ ଗୋଟିଏ ସନ୍ଦେଶ ଖାଇବି ।" ବଡ଼ବାପା କାକରା ପିଠାକୁ ଭଲପାଆନ୍ତି । ମା ସେ ପିଠା କରେ, ଖୁସିରେ ତାକୁ ଖାଆନ୍ତି । କିନ୍ତୁ ବରାବର କହନ୍ତି—ମୋ ବୋଉହାତ ପିଠାପରି ଲାଗୁନାହିଁ । ମିସ୍ ଦାସ ଦିନେ ଦିନେ ମା'କୁ ପଚାରନ୍ତି—ଏ ତରକାରି କିପରି ରାନ୍ଧିଲ, ଏ ମିଠା କାହିଁରେ ତିଆରି ଇତ୍ୟାଦି । ଦିନେ ଦିନେ ବଡ଼ବାପା ଥଟ୍ଟାରେ କହନ୍ତି—କଣ ତେଲ ମସଲାରେ ତରକାରି ସୁଆଦ ହୁଏ କି ? ଖୁଆଇବାର ଶରଧା ବା ସଉକ ସୁଆଦ କରେ ।

ଆମେ ପ୍ରାୟ ପ୍ରତିଦିନ ଚାରିଟାବେଳେ ବଡ଼ବାପାଙ୍କ ସାଙ୍ଗରେ ଗାଡ଼ିରେ ବୁଲିଯାଉ । କେହି ଜଣେ ବଡ଼ମଣିଷ ଆମ ସାଙ୍ଗରେ ଯା'ନ୍ତି । ଅଧିକାଂଶ ଦିନ ବଡ଼ବାପାଙ୍କ ସାଙ୍ଗରେ ଟ୍ୟାନେରୀକୁ (୧) ଯାଉ । ସେ ତାଙ୍କ କାମ କରନ୍ତି । ଆମକୁ ଜଣେ ବୁଲେଇ ଯେଉଁଠି ଯାହା କାମ ହେଉଥାଏ ବୁଝାଇ କହିଦିଏ । ଦିନେ ଗୋଟାଏ କେଉଁଠିକି ଭଲ ଜାଗାକୁ ଯିବାର ଥାଏ । ଆମେ ଲୁଗାପଟା ପିନ୍ଧାରେ ବ୍ୟସ୍ତ ଥାଉ । ସିଡ଼ିରେ ବଡ଼ବାପାଙ୍କ ଜୋତା ଶବ୍ଦ ହେଲା ।

(୧) ମଧୁସୂଦନ ଦାସଙ୍କ ଦ୍ୱାରା ସ୍ଥାପିତ ଉତ୍କଳ ଟ୍ୟାନେରୀ ।

ସଙ୍ଗେ ସଙ୍ଗେ ଡାକ ଶୁଣିଲୁ —"କରେ କ'ଣ କରୁଛ ? ମୁଁ ଆସିଲଣି, ଆସ ।" ସେ ତାଙ୍କ ବସିବା ଘରେ ଯାଇ ବସିଲେ । ଅଳ୍ପ ସମୟ ପରେ କୁଆଡ଼େ ଚାଲିଗଲେ । ବାପା ଆମକୁ ଡ଼ାକ କହିଲେ, "ବଡ଼ବାପା ଡ଼ାକିଲେ, କାହିଁକ ଆସିଲ ନାହିଁ ? ଭାରି ଭୁଲକଲ । ଆଉ ଦିନେ ଏପରି କରିବ ନାହିଁ । ବଡ଼ବାପା ଆସିବାଯାଏ ତୁମେ ବୁଲିଯିବନାହିଁ । ସେ ଆସିବା ସଙ୍ଗେ ସଙ୍ଗେ ତାଙ୍କ ପାଖକୁ ଆସିବ ଓ ଏ ଭୁଲ ପାଇଁ କ୍ଷମା ମାଗିବ ।"

କିଛି ସମୟ ପରେ ବଡ଼ବାପା ଆସିଲେ । ସେ ଆସିବାକ୍ଷଣି ପଚାରିଲେ—ମାଙ୍କଡ଼ ଦିଟା ଗଲେ କୁଆଡ଼େ ? ମା କହିଲ—"ଆପଣ ଡାକିଲେ, ସେମାନେ ଆସିଲେ ନାହିଁ ବୋଲି ଗାଳି ଖାଇ କାନ୍ଦୁଛନ୍ତି ।" ସଙ୍ଗେ ସଙ୍ଗେ ବଡ଼ବାପା ଆମ ପାଖକୁ ଗଲେ ଓ ମତେ ଟେକି ଉପରକୁ ଫୋପାଡ଼ିଦେଇ ଧରିନେଲେ । ଖୁବ୍ ଗେଲ କରି କହିଲେ—"ଯେ କେହି ଡାକିଲେ ତାକୁ ସାଙ୍ଗେ ସାଙ୍ଗେ ଜବାବ ଦେବ ଓ ତା ପାଖକୁ ଆସିବ । ସେପରି ନ କଲେ ଅଭ୍ୟାସ ଭାରି ଖରାପ ହୋଇଯିବ ।" ବାପାଙ୍କୁ ଡାକ କହିଲେ—"ଗୋପାଳ ! ତୋ ଝିଅମାନେ ଶାସ୍ତି ପାଇଲେଣି । ତୁ ଅନୁମତି ଦେ ବୁଲିଯିବେ ।" ଏହା କହି ସାଙ୍ଗରେ ତାଙ୍କ ଗାଡ଼ିରେ ବୁଲାଇନେଇଗଲେ ।

ବଡ଼ବାପା ଦିନେ ଦିନେ ସୁନା ରୁପା କାରଖାନାକୁ, କଣ୍ଢେଇ ତିଆରି କାରଖାନାକୁ ସାଙ୍ଗରେ ନେଅନ୍ତି । କେଉଁ ଜିନିଷ ଆମର ପସନ୍ଦ ତାହା ପଚାରି ବୁଝନ୍ତି । ପରେ ଜାଣିଲୁ ଯେ ଆମ ରୁଚି ପରୀକ୍ଷା ପାଇଁ ସେ ସେପରି କରନ୍ତି । କହନ୍ତି - ତମର ଏଥିଭିତରୁ ଯାହା ନେବାର ଇଚ୍ଛା ତାହା ନିଅ । ଆମେ ଗହଣା ବା ଅନ୍ୟ ସଉକିନିଆ ଜିନିଷ ବା କଣ୍ଢେଇ ଯାହା ଆଣୁ, ବାପା ଓ ମା ସହିତ ସେ ଜିନିଷ ବିଷୟରେ, ଆମ ପସନ୍ଦ ବିଷୟରେ, ଆଲୋଚନା କରନ୍ତି । ବଡ଼ବାପାଙ୍କର ଇଚ୍ଛା ଯେ ତାଙ୍କ ବୈଠକଖାନାରେ ଥିବା ଜିନିଷ ନେଇ ଆମେ ଖେଳିବୁ, ଏଣେ ତେଣେ ପକେଇବୁ, ଭାଙ୍ଗିବୁ ଇତ୍ୟାଦି । କିନ୍ତୁ ମିସ୍ ଦାସ ସେ ବିଷୟରେ ଭାରି କଡ଼ା । ସେ ଚାହାନ୍ତି ନାହିଁ ସଜାହୋଇଥିବା ଜିନିଷ ଟିକିଏ ଏପାଖ ସେପାଖ ହେଉ । ଡ୍ରଇଂ ରୁମ୍‌ରେ ସତରଞ୍ଚ (ନ୍ୟାପ୍‌କିନ) ଖେଳର ଗୋଟିଏ ଟେବୁଲ୍ ଥାଏ । ସେଥିରେ ସୁନାର ଓ ରୁପାର ସାର ଥାଏ । ବଡ଼ବାପା ଦିନେ ଦିନେ ଆମକୁ ସତରଞ୍ଚ ଖେଳ ଶିଖାଇବାକୁ ଚେଷ୍ଟା କରନ୍ତି ।

ବାପା ବଡ଼ବାପା ଯେତେବେଳେ ଏକାଠି ବସନ୍ତି, ଦେଶ ବିଷୟରେ, ସ୍ୱତନ୍ତ୍ର ଉତ୍କଳ ବିଷୟରେ କଥାବାର୍ତ୍ତା କରନ୍ତି । କେବେ ଏଣୁତେଣୁ ଗପ କଲପରି ମନେ ହେଉନାହିଁ । ମା ବରାବର ସେ ଗପସପ ବେଳେ ସେଠି ଉପସ୍ଥିତ ଥାଏ । ମା ଗୀତ ଶୁଣିବାକୁ ଭଲପାଏ ବୋଲି ପ୍ରତିଦିନ ସନ୍ଧ୍ୟାରେ ମିସ୍ ହାଜରା ପିଆନୋ ବଜେଇ ଗୀତ ଶୁଣାନ୍ତି ଓ ଛୋଟ ଛୋଟ ବଙ୍ଗଳା ଗୀତ ଆମକୁ ଶିଖାନ୍ତି ।

ବାପାଙ୍କ ଦେହ ଭଲ ହେଲା । ଆମେ ବିହାରର ମୋଜାଫରପୁରକୁ ଆସିଲୁ । ସେତେବେଳେ ବୋଧେ ସରକାରୀ ଘର ମିଳୁ ନ ଥିଲା । ଆମେ ଗୋଟିଏ ବଡ଼ କୋଠାରେ

ଗହଳି । ଘର ସାମନାରେ ଫଳଗଛର ବଡ଼ ବଗିଚା ଥାଏ । ଫୁଲଗଛ ବି ଥାଏ । ବଗିଚା ଘର ମାଲିକଙ୍କର କି ଆମର ତା' ଆମେ ଜାଣି ନ ଥିଲୁ । ବଗିଚାରେ ଆମେ ଦୁ' ଭଉଣୀ ବୁଲୁଥିଲୁ । ଡାଳିମ୍ବ ଗଛରେ ଡାଳିମ୍ବ ପାଚିଥାଏ । ବଗିଚାର ମାଳି ଦୁଇଟା ଡାଳିମ୍ବ ଆଉ କିଛି ଫଳ ତୋଳି ଆମକୁ ଦେଲା । ଆମେ ଫଳ ନେଇ ଘରକୁ ଆସିଲୁ । ଫଳ ଦେଖି ବାପା ପଚାରିଲେ "ଏ ଫଳ ତମକୁ କିଏ ଦେଲା ?" ମୁଁ କହିଲି "ମାଳି ଦେଲା ।" ବାପା ପଚାରିଲେ—"ବଗିଚାର ମାଲିକ ତମେ ଫଳ ଆଣିବା କଥା ଜାଣନ୍ତି ?" ଆମେ କହିଲୁ—"ଆମେ ଜାଣିନାହୁଁ । ମାଳିକୁ ତାକି ପଚାରିବାରୁ ଜାଣିଲେ ଯେ ତା ବାବୁଙ୍କ ଅଜଣାରେ ସେ ଆମକୁ ଖୁସିରେ ଫଳ ତୋଳି ଦେଇଛି । ବାପା କହିଲେ—"ଜାଣିଲୁ ମା' ! ଯାହାର ଜିନିଷ ସେ ନଦେଲେ ବା ତା' ଅଜଣାରେ ଜିନିଷ ଆଣିଲେ ତାକୁ ଚୋରି କହନ୍ତି । ଯାହାଙ୍କର ବଗିଚା, ତାଙ୍କୁ ନ ଜଣାଇ ମାଳି ଫଳ ଦେଇଛି, ସେ ଫଳ ରଖିବା ଠିକ୍ ହେବ ନାହିଁ । ତମେ ସେ ଫଳ ନେଇ ମାଳି ସାଙ୍ଗରେ ଯାଇ ସତ କଥା କହି ଫଳ ଫେରାଇ ଦେଇ ଆସିବ । ତମେ ଯେ ଭୁଲ କାମ କରିଛ ଏ କଥା ତାଙ୍କୁ କହିବ ।" ଆମେ ମାଳି ସାଙ୍ଗରେ ସେ ବାବୁଙ୍କ ପାଖକୁ ଗଲୁ । ଆମେ ଆଉ କହିବା ଅବସ୍ଥାରେ ନ ଥିଲୁ । ମାଳି ସବୁ କହିବାରୁ ସେ ଆମକୁ ଖୁବ୍ ଆଦରକରି ସେ ଫଳ ସାଙ୍ଗରେ ଆଉ ଫଳ ଦେଇ ପଠାଇଲେ । ବାପାଙ୍କୁ ଅସନ୍ତୁଷ୍ଟ କରିବାର ଏ ହେଲା ଆମର ଦ୍ୱିତୀୟ ଥର ଶାସ୍ତି ।

ମୁଁ ସାତ ଆଠ ବର୍ଷର ହୋଇଥାଏ । ଧୋବଣୀ ଲୁଗା ନେଇ ଆସିଲା । ମୁଁ ତାକୁ ପଚାରିଲି—ତୁ କି ଜାତି ? ମୋର ଏତିକି କଥା ବାପା ଶୁଣିପାରିଲେ । ସଙ୍ଗେ ସଙ୍ଗେ ମୋ ପାଖକୁ ଚାଲିଆସି କହିଲେ, "ଶାଶୁଖାଇ ! ଜାତି କଥା କାହାକୁ ପଚାରନ୍ତି ନାହିଁ । ତୁ ଆଉ ଦିନେ କାହାକୁ କେବେ କେଉଁ ଜାତି ବୋଲି ପଚାରିବୁ ନାହିଁ ।" ସେ କଥା ଆଜି ପର୍ଯ୍ୟନ୍ତ ମୋ ମନରେ ରହିଛି—ଆଉ କେବେ କାହାକୁ ଜାତି କଥା ପଚାରିନାହିଁ ।

ବଡ଼ ପୂଜାରୀଙ୍କଠାରୁ ସେବାପୂଜା ଶିଖିବା ପାଇଁ ଆମ ଘରେ ଛୋଟ ଛୋଟ ପୂଜାରୀ ରହୁଥିଲେ । ଦିନେ ଜଣ ଗୋଟିଏ କାମ କହିଲି । ସେ ନ ମାନିବାରୁ ମୁଁ କହିଲି—"ତମେ ତ ଚାକରି କରିଛ, କଥା କାହିଁକି ମାନିବ ନାହିଁ ?" ଏ କଥା ବାପା ଶୁଣିପାରିଲେ । ସେ ସଙ୍ଗେ ସଙ୍ଗେ ମୋ ପାଖକୁ ଆସି କହିଲେ, "ସେ ଆମ ପାଖରେ ଚାକିରି କରିଛି ସତ, ସେ କଥା ଜାଣିଥିଲେ ମଧ୍ୟ ଆମେ ତାକୁ କହିବା ଉଚିତ ନୁହେଁ—ତା' ମନକୁ ବାଧିବ । ଗରିବ ଲୋକ ବୋଲି ସାନ ପିଲାଟାକୁ ଚାକିରି କରିବାକୁ ପଠାଇଛି । ତା' ମୁହଁରେ ସେପରି କହିଲେ ତା' ମନରେ କେତେ କଷ୍ଟ ହେବ ! କଥା କହିଲା ବେଳେ ଭାବିବ, ଆମ କଥା ତା' ମନକୁ କଷ୍ଟ ଦେବ କି ନାହିଁ ।"

ମୋ ପିଉସୀଙ୍କଠାରୁ ଶୁଣିଛି, ମୋ ଉପର ଭଉଣୀକୁ ବାପା ପୂଜାରୀ ସାଙ୍ଗରେ ଦେବୀ ଦେଖିବାକୁ ପଠାଇଲେ । ସେ ଦେବୀ ଦେଖି ଫେରିଲେ । ବାପା ପଚାରିଲେ—'ମା' !

ରୁ କ'ଣ ଦେଖିଲୁ କହୁଲୁ ?" ଅପା ସେ କଥା ନ ଶୁଣି କହିବାକୁ ଲାଗିଲା "ବାପା ! ନନା ମତେ ଦେଲେ ନାଲି ନାଲି ମିଠା ମିଠା, ଖାଇଦେଲି, ପାଣିପଣ ବୋଲୁଗଲା ।" ବାପା କଥାର ତାତ୍ପର୍ଯ୍ୟ ବୁଝି ପୂଜାରୀଙ୍କୁ ଗୋଟିଏ ଗୁପ୍ପୁଡ଼ା ପକାଇଲେ । ଅପା କାନ୍ଦି ଉଠିଲା—"ବାପା ! ତମେ ଆମ ନନାକୁ ମାରିଲ । ତାକୁ କାଟିଥିବ । ତାଙ୍କୁ କାହିଁକି ମାଇଲ ?" ବାପା ଲୁଆଡ଼େ ତା' ପରେ ଆଉ କେବେ ଚାକର ପୂଜାରୀଙ୍କୁ ମାରିନଥିଲେ ।

## ୩ । ସ୍ୱଦେଶଭାବନାର ଉନ୍ମେଷ

ଆମେ ମୋଜାଫରପୁରରେ ଥାଉ । ରାତି ସାଢ଼େଆଠଟାରୁ ନଅଟା ଭିତରେ ଆମର ଖାଇବାବେଳ । ବାପା ଓ ଆମେ ଦୁଇ ଭଉଣୀ ଖାଉଥାଉ । ମା' ପାଖରେ ବସିଥାଏ । ଗୋଟିଏ ଭାରି ବଡ଼ ଶବ୍ଦ ଶୁଭିଲା । ଦୁଇ ଭଉଣୀ ଚମକିପଡ଼ିଲୁ । କିଛି ଜାଣି ପାରିଲୁ ନାହିଁ । ବାପା କହିଲେ, "ଏ ତ ବୋମା ଫୁଟିବା ଶବ୍ଦ ।" ଏତିକି କହି ସେ ଏପରି ଗମ୍ଭୀର ହୋଇ ଗଲେ ଯେ ସେ ଦୃଶ୍ୟ ଏବେ ବି ମନେପଡ଼ୁଛି । କିଛି ସମୟ ପରେ ଜଣେ ଚପରାଶୀ ଆସି ଖଣ୍ଡିଏ ଚିଠି ଦେଲା । ବାପା ସେ ଚିଠିକୁ ମନେ ମନେ ପଢ଼ି କହିଲେ, "କିଂସ୍ ଫୋର୍ଡ୍ ସାହେବ ଚିଠି ଦେଇଛନ୍ତି ।" କିଂସ ଫୋର୍ଡ୍ ସାହେବ ବାପାଙ୍କର ଭାରି ବନ୍ଧୁ । ଆମେ ବାପାଙ୍କ ସାଙ୍ଗରେ ବରାବର ତାଙ୍କ ଘରକୁ ଯାଉ । ତା'ପରେ ବାପା ମା' ସାଙ୍ଗରେ ବୋମା ଫୁଟିବା ସମ୍ବନ୍ଧରେ କଥାବାର୍ତ୍ତା ହେଲେ ।

ଆମ ଘର ପାଖରେ କେତେ ଘର ବଙ୍ଗାଳୀ ଥାଆନ୍ତି । ସେମାନେ ସରକାରୀ ଚାକିରିଆ ନୁହନ୍ତି । ତାଙ୍କ ଭିତରେ ଯୋଗେଶବାବୁ ବୋଲି ଜଣେ ବଡ଼ ଓକିଲ ଥିଲେ । ସେ ବଙ୍ଗାଳୀ କେତେ ଘର ସାଙ୍ଗରେ ଆମର ଭାରି ଭାବ । ସେମାନେ ଆସି ବାପାଙ୍କ ସହିତ କଥାବାର୍ତ୍ତା କରନ୍ତି । ତାଙ୍କ ଘରର ପିଲାମାନେ 'ବଙ୍ଗ ଆମାର ଜନନୀ ଆମାର' ଆଦି ଗୀତ ବୋଲନ୍ତି । ଆମେ ତାଙ୍କଠାରୁ ସେ ଗୀତ ଗୁଡ଼ିକ ଶିଖିଲୁ । ଆଜି (୧) ଚୁଡ଼ି ଓ ବଙ୍ଗ ଲକ୍ଷ୍ମୀ ମିଲ୍‌ର ମୋଟା ଲୁଗା ପିନ୍ଧିବା, ଆଜି ପାନିଆ ବ୍ୟବହାର କରିବା ଆଦି ସବୁ ସ୍ୱଦେଶୀ ପୁରା ଦମ୍‌ରେ ଚାଲିଲା ।

ଖୁଦିରାମଙ୍କର (୨) ବିଚାର ହେଲା । ତାଙ୍କୁ ଫାଶୀ ହୁକୁମ ହେଲା । ପ୍ରତ୍ୟେକଟି ଖବର ଆମ ଘରେ କଥାବାର୍ତ୍ତା ହୁଏ—ଆମେ ଶୁଣୁ । ସେତିକିବେଳେ ଅରବିନ୍ଦଙ୍କ କଥା ମୁଁ ଶୁଣିଲି । ବାପା ତାଙ୍କ ବନ୍ଧୁମାନଙ୍କ ସଙ୍ଗେ ଆଲୋଚନା କରନ୍ତି । କଥାବାର୍ତ୍ତାରେ ଇଂରାଜୀ ଭାଷାର ଆଧିକ୍ୟ ଥିଲେ ମଧ୍ୟ ଯେତିକି ତା' ଭିତରେ ହିନ୍ଦୀ ବା ବଙ୍ଗଳା ଥାଏ, ତାକୁ ଆମେ

---

(୧) ସେଲୁଲଏଡ୍ (୨) ଖୁଦିରାମ ବୋସ୍ କିଂସ୍ ଫୋର୍ଡ଼ ସାହେବଙ୍କ ଉପରକୁ ବୋମା ପକାଇଥିଲେ । ସେଥିରେ ସେ ନ ମରି ଅନ୍ୟ ଜଣେ ମଲେ ।

ମନଦେଇ ଶୁଣୁ । ଉତ୍ତେଜନାର ବାତାବରଣ ଭିତରେ ଆମେ ଥାଉ । ଦେଶ ପାଇଁ କାମ କରିବାକୁ ହେଲେ ଜେଲ ଯିବାକୁ ହୁଏ, ଫାଶୀ ପାଇବାକୁ ହୁଏ, ସ୍ୱଦେଶୀ ଜିନିଷ ବ୍ୟବହାର କରିବାକୁ ହୁଏ—ଏ ଧାରଣା ମନରେ ବଦ୍ଧମୂଳ ହେଲା । ସେମାନଙ୍କ କଥା ଆଲୋଚନା ହେଉଥାଏ । କେତେ ପ୍ରଶଂସା କରାଯାଉଥାଏ । ଧନ୍ୟ ଧନ୍ୟ କୁହାଯାଉଥାଏ । ତା'ର ପ୍ରଭାବ ମଧ୍ୟ ମନଉପରେ ପଡ଼ିଲା ଯେ ଦେଶକାମ କଲେ ଏସବୁ ମଧ୍ୟ ମିଳେ । "ସପ୍ତକୋଟି ମିଳିତ କଣ୍ଠେ ଡାକେ ଉଚେ ଆମାର ଦେଶ" ଏ ପଦକ ସବୁବେଳେ ପାଟିରେ ରହୁଯାଇଥାଏ । ଅରବିନ୍ଦଙ୍କ କଥା ମଧ୍ୟ ବହୁତ ଶୁଣିବାକୁ ମିଳିଲା । ସେତିକବେଳୁ ଅରବିନ୍ଦଙ୍କ ପ୍ରଭାବ ମନରେ ଦେଶକାମ କରିବାର ଛାପପକାଇଲା । ମନେ ମନେ ତାଙ୍କ ପ୍ରତି ଭକ୍ତି ଆସିଲା । ତାଙ୍କ ବିଷୟରେ ଜାଣିବାକୁ ଚେଷ୍ଟାକଲି ।

ଜେଲ୍ ବିଷୟରେ ଆମର ଧାରଣା ଥାଏ—କାରଣ ବାପା ମଝିରେ ମଝିରେ ଜେଲ ପରିଦର୍ଶନରେ ଯାନ୍ତି । ଆମ ଦୁ'ଭଉଣୀଙ୍କୁ ସାଙ୍ଗରେ ନିଅନ୍ତି । ବାପା ଅଫିସରେ ରହନ୍ତି । ଅଫିସରୁ ଲୋକ ଆମକୁ ନେଇ ଜେଲଭିତର ଦେଖାନ୍ତି । ଖୁଦିରାମଙ୍କୁ ମୁଁ ଜେଲରେ ଦେଖିନାହିଁ । ଖୁଦିରାମଙ୍କ ମା' ଆସିଲେ ପୁଅକୁ ଦେଖିବାପାଇଁ । ସମସ୍ତଙ୍କ ମୁହଁରେ ସେହି କଥା । ଖୁଦିରାମଙ୍କ ପ୍ରତି କମିତ ଗୋଟିଏ ମାୟା ଜନ୍ମିଯାଇଥାଏ । ସେ ଫାଶୀ ପାଇବେ ଶୁଣି ମନେ ମନେ ଭାରି ଦୁଃଖୀ ହେଲି । ବାପାଙ୍କୁ ଅତି ଡରି ଡରି କହିଲି, "ଆମେ ଖୁଦିରାମଙ୍କୁ ଦେଖନ୍ତେ ।" ବାପା ଗୋଟିଏ ଭ୍ରୂକୁଞ୍ଚି ପକାଇ କହିଲେ, "ଦୂର ଶାଶୁଖାଇ ! ତମକୁ ଦେଖିବାପାଇଁ ଛାଡ଼ିବେ ନାହିଁ ।" କେହି ଲୋକ ଫାଶୀ ପାଇଲେ ବାପା ଫାଶୀ ସ୍ଥାନରେ ଉପସ୍ଥିତ ରହିବା ପାଇଁ ଯାଆନ୍ତି । ତାଙ୍କ ଉପରେ ସେ ଦାୟିତ୍ୱ ଥାଏ । ଭୋର ତିନଟାରୁ ଉଠି ପୋଷାକ ପିନ୍ଧି ଜେଲଖାନାକୁ ଯାଆନ୍ତି । ଖୁଦିରାମଙ୍କ ଫାଶୀ ଦିନ ନିକଟ ହେଲା । ଆମେ ତାଙ୍କରି କଥାରୁ ଜାଣିଲୁ ଫାଶୀ ପୂର୍ବଦିନ ଲୋକକୁ ତା' ଇଚ୍ଛା କଣ ପଚରାଯାଏ ଓ ସେ ଯାହା କହେ ତାହା ଆଇନସଙ୍ଗତ ହୋଇଥିଲେ ପୂରଣ କରାଯାଏ । ଆଜି ରାତି ପାହାନ୍ତାରେ ଖୁଦିରାମଙ୍କର ଫାଶୀ ହେବ, ଏ କଥା ମୁହୂର୍ତ୍ତିକ ପାଇଁ ମନରୁ ଯାଇ ନ ଥାଏ । ମନ କଣ ହୋଇଯାଉଥାଏ । କାନ୍ଦମାଡ଼ୁଥାଏ । ମାଙ୍କୁ ଯାଇ କହିଲୁ—ସେ ବାପାଙ୍କୁ ମନାକରୁ ବାପା ଫାଶୀ ବେଳେ ହାଜର ରହିବାକୁ ନ ଯାଆନ୍ତୁ । ମା' କହିଲା—ତମେ କୁହ । ଅତି ଡରି ଡରି ବାପାଙ୍କ ଟେବୁଲ ପାଖରେ ଠିଆହେଲୁ । ଅପା ମତେ ଠାରୁଥାଏ ଯେ କଥାଟା ମୁଁ କହେ । କେତେ ସମୟ ଠିଆ ହୋଇ ରହିଲାରୁ ବାପା କହିଲେ—କଅଣ କହିବାକୁ ଆସିଛ କହୁନା । ସାହସ କରି ମୁଁ ହଠାତ୍ କହି ଦେଲି—"ଖୁଦିରାମ ଫାଶୀ ବେଳକୁ ତମେ ଯାଅନା ।" ବାପା କହିଲେ "ଆଉ କିଏ ଯିବ ?" ତା'ର ଜବାବ ଆମ ପାଖରେ ନ ଥିଲା । ବାପା ଆମ ମୁଣ୍ଡରେ ହାତ ବୁଲେଇ ଦେଇ କହିଲେ "ମୁଁ ଯିବ ନାହିଁ ।" ବାପା ଭାରି ଗମ୍ଭୀର ଦେଖାଯାଉଥାନ୍ତି । ସେ ଅଧିକାଂଶ ଦିନ ରାତିରେ ମୋକଦ୍ଦମା ରାୟ ଲେଖନ୍ତି, ସେ ଦିନ ବି ଲେଖୁଥିଲେ । ଯଥା ସମୟରେ ଖୁଦିରାମଙ୍କର

ଫାଶୀ ହେଲା । ସକାଳ ହେବା ବେଳକୁ ଖବର ଗୃହଆଡ଼େ ବ୍ୟାପିଯାଇଥିଲା । ଆମ ସାହିରେ ଯେପରି ହାଉଆ ହୋଇଥାଏ, ତାହା ମୋର ବର୍ତ୍ତମାନ ବି ମନେପଡ଼ୁଛି—ମାତ୍ର ତାହା ବର୍ଣ୍ଣନା କରିବାର ଶକ୍ତି ମୋର ନାହିଁ । ସମସ୍ତେ ମନର ଉତ୍ତେଜନା ଲୁଚେଇ ଲୁଚେଇ ପ୍ରକାଶ କରୁଥାନ୍ତି । ଧୀରେ ଧୀରେ ସେ ହାଉଆ ଚାଲିଗଲା । ଅରବିନ୍ଦଙ୍କ ଉପରେ ସବୁରି ଦୃଷ୍ଟି ରହିଲା । ମୋ ମନରୁ ଯେମିତି ଅରବିନ୍ଦଙ୍କ ଛାପ ଲିଭି ନାହିଁ, ସେମିତି ଆଉ କେତେ ଲୋକଙ୍କ ମନରେ ହୁଏତ ଥିବ । ପଣ୍ଡିଚେରୀ ଆଶ୍ରମ ହେଲା । ତାଙ୍କର ଭକ୍ତ ସଂଖ୍ୟା ବଢ଼ି ଚାଲିଛନ୍ତି । କିନ୍ତୁ ମୋ ମନ ଉପରେ ବିପ୍ଳବୀ ଅରବିନ୍ଦଙ୍କର ଯେଉଁ ଛାପ ପଡ଼ିଛି ତାହା ଭକ୍ତମାନଙ୍କ ମନ ଉପରେ ପଡ଼ିଛି କି ନାହିଁ ଜାଣିପାରୁ ନାହିଁ । ଦେଶ ପାଇଁ ସର୍ବସ୍ୱ ଦେବାକୁ ହେବ—ଏ ଭାବନା ଆମ ମନରେ ବିପ୍ଳବୀ ଅରବିନ୍ଦ ସୃଷ୍ଟି କରିଥିଲେ । ତାଙ୍କୁ ଦେଖିବାର ସୌଭାଗ୍ୟ ମୋର ଘଟିନଥିଲା ।

ମୁଁ ଗପ ଶୁଣିବାକୁ ଭାରି ଭଲପାଏ । ମା' ସନ୍ଧ୍ୟାବେଳେ ପୂଜାକରିସାରି ଶୋଇକରି ଆମକୁ ଗପକହେ । ରାମାୟଣ ମହାଭାରତରୁ ଯେତେ ଲୋକଙ୍କ ଚରିତ୍ର ପିଲାଙ୍କଆଗରେ ବର୍ଣ୍ଣନା କରିଯାଇପାରେ ସେସବୁ ସେ କହେ । ତା'ଛଡ଼ା ଭାରତର ଐତିହାସିକ ଘଟଣା, ଆନନ୍ଦମଠ, ଦେବୀ ଚୌଧୁରାଣୀ, ରାଣାପ୍ରତାପ ରବୀନ୍ଦ୍ରନାଥଙ୍କ ଗପ ମା' ଆମକୁ ସଞ୍ଜବେଳେ ଘଣ୍ଟାଏ ଶୁଣାଏ । ଖୁଦିରାମଙ୍କ କଥା ଯେମିତି ପଢ଼ିଲା, ସେ ସରଳ ଭାବରେ ସେ କଥାକୁ, ବିଶେଷକରି ଅରବିନ୍ଦଙ୍କ ଚରିତ୍ର ଏପରି ବର୍ଣ୍ଣନା କଲା ଯେ, ଆମର ତାଙ୍କପ୍ରତି ଭକ୍ତି ଜାତହେଲା । ଆମ ଘରେ ମହାରାଣୀ ଭିକ୍ଟୋରିଆଙ୍କର ଛବି ଆଲବମ୍ ଥାଏ । ସେଇଟା ଅଲବମ୍ କି ଛବିବହି କହି ପାରିବି ନାହିଁ । ଭିକ୍ଟୋରିଆଙ୍କର ଶିଶୁ ଅବସ୍ଥାରୁ ସମ୍ରାଜ୍ଞୀ ହେବା ପର୍ଯ୍ୟନ୍ତ ବହୁ ଛବି ସେ ବହିରେ ଥାଏ । ଭିକ୍ଟୋରିଆ ଚାରିବର୍ଷ ବୟସରେ ଗୋଟିଏ ଠେଲଗାଡ଼ିରେ ଅଳିଆ ପକାଇବ'କୁ ଯାଉଛନ୍ତି । ଠେଲା ଗାଡ଼ିକୁ ଠେଲୁ ଠେଲୁ ବାଟରେ ସେ ତାଙ୍କ ପାଖରେ ଥିବା ଲୋକକୁ କହିଲେ, "ମୁଁ ଆଉ ନେବି ନାହିଁ ।" ସେ ତାଙ୍କୁ ବୁଝାଇ କହିଲା—ଯାହା କରିବ ବୋଲି ଠିକ୍ କରିଛ କଷ୍ଟ ପଡ଼ୁ ପଛେ ତାକୁ କରିବାକୁ ହେବ । ସେ ବହିରେ ପିଲାଙ୍କ ପାଇଁ ସ୍ତ୍ରୀଲୋକ ତଥା ଗୃହିଣୀଙ୍କ ପାଇଁ, ବହୁ ଶିକ୍ଷାପ୍ରଦ କଥା ଛବି ସାଙ୍ଗରେ ଥିଲା । ମା' ସେ ଛବିଗୁଡ଼ାକ ଦେଖାଏ ଓ ବିଷୟଟା କହେ । ରାତିରେ ଯାହା ଶୁଣିଥାଉ ତାହା ପରଦିନ ଲେଖିକରି ମା'କୁ ଦେଖାଉ । ଭୁଲକଲେ ବା ଦୋଷକଲେ ମାଡ଼ ତ ଦୂରର କଥା, ମା' କେବେ ଗାଳି ଦିଏନାହିଁ । ତେଣୁ ମାକୁ ଆଦୌ ଡରୁନାହିଁ । ବାପାଙ୍କୁ ସମସ୍ତେ ଡରନ୍ତି, ସେ ବେଳେ ବେଳେ ରାଗି ଯାଆନ୍ତିବୋଲି । ଆମେ ପିଲାଦିନରୁ ବରାବର ଦେଖିଲୁ ଯେ, ଚାକର, ପୂଜାରୀ, ଚପରାଶୀ କିଛି ଦୋଷ କଲେ ସେମାନେ ଗାଳି ଖାଇବେ ଏହି ଭୟରେ ମା' ସେ କଥାକୁ ଲୁଚାଇ ବାପା ଯେପରି ନ ରାଗିବେ ସେହିପରି ଭାବରେ କହେ । କ୍ରମେକ୍ରମେ ଆମେ ବି ସେଥିରେ ଅଭ୍ୟସ୍ତ ହେଲୁ ଏବଂ ଚାକର ପୂଜାରୀ ତା'ର ସୁବିଧା ନେଲେ । ସ୍ୱେଷେଇ କିଛି ଖରାପ ହେଲେ ବାପା ଯଦି ପଚାରିବେ—ଏପରି କାହିଁକି

ହୋଇଛୁ—ପୂଜାରୀ କହିବେ—ଦେଈ ଭଲପାଆନ୍ତି ବୋଲି ସେପରି କରିଛୁ । ପୂଜାରୀ ଆମ ମୁହଁ ଉପରେ କହନ୍ତି ଆମେ କିଛି କହୁନାହିଁ । ଚାକର ଯଦି ଠିକ୍ କାମ ନ କରିଛନ୍ତି ତ ବାପା ପଚାରନ୍ତି—ଏ କାମ କାହିଁକି ହୋଇନାହିଁ ? ଚାକର କହିବେ, "ଦେଈ ଆଉ ଗୋଟାଏ କାମ କରିବାକୁ କହିବାରୁ ଏଇଟା କରିନାହିଁ ।" ଏହିପରି ମିଛ କହି ସେମାନେ ଗାଳିରୁ ରକ୍ଷାପାଆନ୍ତି ।

ସେମାନେ ଯେ ଏପରି କଥାମିଛ ମୁହଁ ସାମନାରେ କହନ୍ତି, ମା' ତାଙ୍କୁ ସେତେବେଳେ କିଛି କହେ ନାହିଁ, ଏହା ଦ୍ୱାରା ତାଙ୍କର ଯେ ସ୍ୱଭାବ ନଷ୍ଟ ହେଉଛି ତାହା ପରେ ତାଙ୍କୁ ବୁଝାଏ । ମା' କେବେ ଗାଳି ଦିଏ ନାହିଁ । କୌଣସି କଥାରେ ରାଗିଲେ କହେ, "ତୋର ସବୁରି ଉପରେ ଦୟାମାୟା ଅଛି, କେବଳ ମୋର ଉପରେ ନାହିଁ ।"

ଆଠ ନଅ ବର୍ଷ ବୟସରୁ ଅମେ ଧୋବା ହିସାବ ରଖୁଥିଲୁ । ଧୋବା ଲୁଗା ଦେଇଗଲେ ପୋଷାକ ସଜାଡ଼ି ରଖିବା, ବୋତାମ ଲଗାଇବା ଆଦି କାମ କରୁଥିଲୁ । ଆମ ଦି ଭଉଣୀଙ୍କୁ କଲମ, ଛୁରି, କଇଁଚି ପ୍ରଭୃତି ଜିନିଷ ଅଲଗା ଅଲଗା ଦିଆଯାଇ କୁହାଯାଏ—କିଏ କେତେ ବେଶି ଦିନ ଭଲ ରଖିପାରିବ । ଯାହା ଜିନିଷ ଅଳ୍ପ ଦିନରେ ଖରାପ ହେଲା ସେ ହାରିଲା । ସେତେବେଳେ ଫାଉଣ୍ଟେନ୍ ପେନ୍ ନ ଥିଲା । ଆମେ କାଠି କଲମ, ପର କଲମ ବ୍ୟବହାରକରୁଥିଲୁ । ପର କଲମ ଭଲ କାଟିଜାଣିବା ସେତେବେଳେ ଗୋଟାଏ ବାହାଦୁରୀ କାମ ଥିଲା ।

ପିଲାଦିନେ ମୁଁ ଭାରି ଖେଳପ୍ରିୟ ଥିଲି । କିନ୍ତୁ ଖେଳରେ ହାରିଲେ କାନ୍ଦି ପକାଏ । ବାପା ଛୁଟିଦିନେ, ତାସ, ସତରଞ୍ଚ ବା କଉଡ଼ି ଖେଳିବାକୁ ବସିବେ । ବାପାଙ୍କ ସାଙ୍ଗରେ ଅପା, ମା' ସାଙ୍ଗରେ ମୁଁ ରହେ । ଖେଳ ବେଳେ ଗୋଟିଏ ପାତ୍ରଆରେ କମଳା, ଅଙ୍ଗୁର ପ୍ରଭୃତି ଫଳ ରଖାଯାଇଥିବ । ହାରିବା ଜିତିବା ତ ବାପାଙ୍କ ହାତରେ । ଦିନେ ଦିନେ ସେ ମୋତେ ହରାଇ ଦେଇ କହିବେ—ତୁ ଯଦି ନ କାନ୍ଦିବୁ ତେବେ ଫଳ ତୁ ଖାଇବୁ, ଯଦି କାନ୍ଦିବୁ ତେବେ ମୁଁ ଖାଇବି । ଦିନେ ଦିନେ ସେ ଜିତନ୍ତି ତ ମତେ ନ ଦେଇ ଫଳକୁ ଦେଖାଇ ଦେଖାଇ ବାପା ଓ ଅପା ଖାଆନ୍ତି । ଏମିତି କରି କରି ମୋ କାନ୍ଦିବା ଛଡ଼ାଇ ଦେଲେ ।

ବାପା ଅଫିସକୁ ଗଲାବେଳେ ତାଙ୍କ ହାତକୁ ପୋଷାକ ବଢ଼େଇଦେବା, ଯୋତା ମୋଜା ପିନ୍ଧାଇଦେବା, ଅଫିସରୁ ଆସିଲେ ପୋଷାକ ସଜାଡ଼ିବା, ଜୋତା ମୋଜା ଫିଟାଇବା, ଖାଇବା ପରେ ହାତକୁ ପାଣି ଟେକିଦେବା, ହୁକା ଚିଲମ ସଜାଡ଼ିବା କାମ ଆମେ ଭାରି ଆଗ୍ରହରେ କରୁଥିଲୁ । ବାପା ଗୀତ ଶୁଣିବାକୁ ଭାରି ଭଲପାଉଥିଲେ । ଖାଇବା ଓ ଶୋଇବା ବେଳେ ଗୀତ ଶୁଣିବା ତାଙ୍କର ଶଉକ୍ ଥିଲା । ଖାଇବା ବେଳେ ତ ଆମେ ସାଙ୍ଗରେ ଖାଇଛୁ ତେଣୁ ଶୋଇବାବେଳେ ଆମ ଦୁହିଁଙ୍କ ଭିତରୁ ଜଣେ ଗୀତ ବୋଲେ

ଜଣେ ତାଙ୍କ ମୁଣ୍ଡ ଆସ୍ତେ ଆସ୍ତେ କୁଣ୍ଡେଇଦିଏ । ପିଠି ସଳ-ସଳ କରିଦେଉ । ଖାନୁ ମିଆଁ ପ୍ରଭୃତି ଯେଉଁ ଗୀତବୋଲାଳୀ ବାପାଙ୍କୁ ଭଲପାଉଥିଲେ ସେମାନେ ଦଳେ ଆସି ବାପାଙ୍କ ଖାଇବାବେଳେ ଗୀତ ବୋଲୁଥିଲେ । ଆମେ କଟକରେ ଉଗରପଡ଼ାରେ ଆମ ଘରେ ରହୁଥିଲୁ । ସେ ଘର ବାପା ସର୍ବେଶ୍ୱର ବାବୁଙ୍କୁ ଉଇଲ୍‌ରେ ଦାନକରିଦେଲେ । ପୁରୀରେ ମଧ୍ୟ ଆମ ନିଜ ଘର ଥିଲା ।

ବାପା ଭଡ଼ା ଘୋଡ଼ାଗାଡ଼ିରେ କଚେରୀକୁ ଯାଆନ୍ତି । ଯିବାବେଳେ ଆମେ ଦୁହେଁ ତାଙ୍କୁ ଛାଡ଼ିବାକୁ ଯାଉ । ଟ୍ରେଜେରୀରେ ଯେଉଁଦିନ ବେଶି ଟଙ୍କା କାରବାର, ଆମେ ସେଠି ବସି ପୋଦ୍ଦାରର କାମ ଦେଖୁ । ଆଗେ ଏତେ ନୋଟ୍ କାରବାର ନ ଥିଲା । ପାଞ୍ଚ ଟଙ୍କା ତଳକୁ ନୋଟ୍ ନ ଥିଲା । ତେଣୁ ଟ୍ରେଜେରୀରେ ସ୍ତୂପାକାରରେ ଟଙ୍କା ଜମା ହୋଇଥାଏ । ପୋଦ୍ଦାରମାନଙ୍କର ଟଙ୍କା ବଜେଇ ଗଣିବାର କ୍ଷିପ୍ର ଗତିଟା ଦେଖିବା କଥା ।

## ୪ । ମାମୁଘର କଥା

ମୋର ତିନି ମାମୁ—ରାଜକିଶୋର ଦାସ, ନବକିଶୋର ଦାସ ଓ ବୀରକିଶୋର ଦାସ । ଏହି ମାମୁମାନଙ୍କର ପୁଅ ଓ ଝିଅ ସହିତ ଆମେ ସହୋଦର ପରି ଚଳୁଥିଲୁ । ସହୋଦର ଭାଇ ଆମର ନଥିଲେ ହେଁ ତାହାର ଅଭାବ ଏ ଭାଇମାନଙ୍କ ଯୋଗୁ ଜାଣି ନଥିଲୁ ।

ଆମେ ବଡ଼ ହୋଇଗଲାରୁ ଭାଇଭଉଣୀ ବସି ବିଚାର କଲୁଁ ଯେ ଖଣ୍ଡେ ପତ୍ରିକା ବାହାର କରିବା । ବିଲୁଆ ବିଚାର ଚାଲିଲା । ପଇସା କୋଉଠୁ ଆସିବ ? ମାମୁଙ୍କର ଦୂର ସଂପର୍କୀୟ ଭାସ୍ୱା ଆମର ସମ୍ପର୍କରେ ଭାଇ ହେବେ । ସେ ବୁଢ଼ା ଲୋକ । ତାଙ୍କ ପୁଅ ଆମଠାରୁ ବୟସରେ ବଡ଼ ହେଲେ ମଧ୍ୟ ଆମକୁ ପିଉସୀ ଓ ଭାଇମାନଙ୍କୁ ଦାଦା ଦାଦା ଡାକି ଲଜ୍ଜିତ କରାନ୍ତି । ସେହି ରସାନନ୍ଦ ଭାଇଙ୍କ ପୁଅ ପତ୍ରିକା ବାହାର କରିବା ପାଇଁ ଟଙ୍କା ପଇସାଠାରୁ ଆରମ୍ଭକରି ଆଉ ଯାହା ଯାହା ଦରକାର, ସବୁ ଆମକୁ କହିବାରୁ ଆମେ ଡରିଗଲୁଁ । ମୁଣ୍ଡୁଭାଇ, (୰ନିକୁଞ୍ଜକିଶୋର ଦାସ, ୰ ରାଜକିଶୋର ଦାସଙ୍କ ଦ୍ୱିତୀୟ ପୁତ୍ର—ପରବର୍ତ୍ତୀକାଳରେ ଜଣାଶୁଣା ସାହିତ୍ୟିକ ) ଲେଖିବାବାଲା ଥିଲେ । ଉପ (ଉପେନ୍ଦ୍ର ବଲ୍ଲଭ ଦାସ, ରାଜକିଶୋର ଦାସଙ୍କର ତୃତୀୟ ପୁତ୍ର । ଏହାଙ୍କୁ ଗୋପାଳବାବୁ ପୁଅ କରି ନେଇଥିଲେ । ପରେ ପ୍ରଖ୍ୟାତ ଚିତ୍ରଶିଳ୍ପୀ ଓ ସାହିତ୍ୟିକ ) ଭଲ ଭଲ କବିତା ଲେଖିବା ଆରମ୍ଭ କରିଥିଲା । ସାହସ କରି ଶିକ୍ଷା-ଦର୍ପଣ ନାମରେ ପତ୍ରିକା ବାହାର କରାଗଲା । ଆମେ ବାହା ହୋଇ ଆସିଲୁ । ଭାଇ (ସ୍ୱର୍ଗତ ରାଜକିଶୋର ଦାସଙ୍କ ବଡ଼ପୁଅ ସ୍ୱର୍ଗତ ପ୍ରମୋଦ କିଶୋର ଦାସ ), ମୁଣ୍ଡୁ ଭାଇ ମ୍ୟାଟ୍ରିକ୍ ପାସ୍ କରି କଲେଜରେ ପଢ଼ିଲେ । ଚୁଙ୍ଗୁ ( ଶ୍ରୀ ନିତ୍ୟାନନ୍ଦ କାନୁନଗୋ) ତାଙ୍କଘରେ ପଢ଼ିଲା । ପତ୍ରିକା ଉପରେ ଦୃଷ୍ଟି ରହିଲା ନାହିଁ । ତାହା ଅଚଳ ହେବାକୁ ବସିଲା

ବାପା ମରିଯିବା ପରେ ମା ମାମୁଘରେ ରହିଲା । ସତ୍ୟଭାମାପୁରରେ ନ ରହି କଟକରେ ରହିବାର ଅସଲ ଉଦ୍ଦେଶ୍ୟ ଥିଲା ଯେ, ମୁଁ କଟକରେ ରହେ । ମୋର ତ କଟକ ଛଡ଼ା ଆଉ କୁଆଡ଼େ ଯିବାର କଥା ନ ଥାଏ—ସେ କଟକରେ ରହିଲେ ମୋ ଖବର ସବୁବେଳେ ପାଇବ ଓ ମୋତେ ଦେଖିବ । ମା କଟକରେ ରହିବାରୁ ଅଚଳ ଅବସ୍ଥାକୁ ଆସିଥିବା "ଶିକ୍ଷା-ଦର୍ପଣ"ର ନାଁ ବଦଳାଇ 'ପରିଚାରିକା' ନାଁଦେଇ ପୁଣି ସେ ପତ୍ରିକା ପ୍ରକାଶିତ ହେଲା । ଭାଇମାନେ ମା'କୁ ଧରାଧରିକରି ପରିଚାରିକାର ସମ୍ପାଦିକା କରିଦେଲେ । ସେ ପତ୍ରିକା ବାହାରିଲାରୁ ମା ଲେଖିକାମାନଙ୍କୁ ଲେଖା ପଠାଇବା ପାଇଁ ଅନୁରୋଧ ପତ୍ର ପଠାଇଲା ।

ସ୍ୱର୍ଗତ ଫକୀରମୋହନ ସେନାପତି ମା'ର ଅନୁରୋଧ ରକ୍ଷା କରି ଲେଖା ପଠାଇଲେ । ସେ ଲେଖା ସହିତ ଯେଉଁ ଚିଠି ଦେଇଥିଲେ, ସେଥିରେ ଲେଖିଥିଲେ, "ତମ ଝିଅ ଘର କଣରେ ବସି ପାନ ଚୋବାଇବ, ଆଉ ଏ ବୁଢ଼ା ଲେଖି ଲେଖି ମରୁଥିବ । ସେହି ଚିଠିରେ ମା'କୁ ଲେଖିଥିଲେ—

"ସାବଧାନେ ସଲ୍ଲର୍ପଣେ ଚଳ ମା ସମ୍ପ୍ରତି
ରହିବ ଅସଂଖ୍ୟ ଦୃଷ୍ଟି ତୁମ ଲେଖା ପ୍ରତି ।"

'ପରିଚାରିକା'ର ଗୋଟିଏ ସଂଖ୍ୟାରେ ମା ଗୃହସ୍ଥର କର୍ତ୍ତବ୍ୟ ସମ୍ବନ୍ଧରେ ଲେଖିଥିଲା । ସେଥିରେ ଥିଲା, ଗୃହସ୍ଥର କର୍ତ୍ତବ୍ୟ ହେଉଛି ପରିବାରର ଯେତେ ଲୋକ, ଚାକର, ପ୍ରଜାମାନେ ସହିତେ ଥିବେ, ଘରର ଗୃହିଣୀ ତାଙ୍କ ଖାଇବାଖବର ବୁଝିବେ । କେହି ଯେପରି ଖାଇବାରେ ଅସନ୍ତୁଷ୍ଟ ନହେବେ ତାହା ସେ ଦେଖିବେ । ଦିନେ ଖରାବେଳେ ମୁଁ ମାମୁ ଘରକୁ ଯାଇ ଦେଖିଲି ଯେ ମୋ ଆଈ ପରିବା ବନଉଛନ୍ତି । ତାଙ୍କୁ ଜଣେ ଦି ଜଣ ସାହାଯ୍ୟ କରୁଛନ୍ତି । ମୁଁ ବିସ୍ମିତ ହୋଇ ପଚାରିଲି, "ତୁ କାହିଁକି ଏତେବେଳେ ପରିବା ବନଉଛୁ ?" ସେ ଦୁଇଜଣ ଚାକରଙ୍କ ନାଁ କହି କହିଲା, "ସେମାନେ ଗୋଟାଏ କାମରେ ଯାଇଥିଲେ, ଏବେ ଫେରିଲେ । ତାଙ୍କ ପାଇଁ ତରକାରୀ ନାହିଁ । ପାଲି (ମୋ ମା'ର ଡାକନାମ) ପରି ସେ ବହିରେ ଲେଖିଛି ସମସ୍ତଙ୍କର ଖାଇବା କଥା ବୁଝିବ ! କାହା ମନରେ ଯେପରି ଅସନ୍ତୋଷ ହେବ ନାହିଁ । ମୋ ଝିଅ ଯେତେବେଳେ ଲେଖିଛି, ମା କେମିତି ତାହା ନ କରିବ ?" ନିଜ ଲୋକ, ବନ୍ଧୁବାନ୍ଧବ ଚାକରବାକର ମିଶି ମାମୁଁଘରେ ପଚାଶ ଷାଠିଏ ଜଣ ଲୋକ ରହନ୍ତି । ସମସ୍ତଙ୍କ ଖବର ଆଈ ବୁଝେ । କେବେ କାହା ଉପରେ ରାଗିବାର ବା କାହାକୁ ଗାଳିଦେବାର ମୁଁ ଦେଖିନାହିଁ । ଦୟା, କ୍ଷମା, ଶାନ୍ତିର ଆଧାର ଯେପରି ସେ ଥିଲା ।

ଆଈ ଆମକୁ ତାଙ୍କ ବୋହୂବେଳର କଥା କହନ୍ତି । ସେ କଥାରୁ ବହୁତ ଶିଖିବାର ଜିନିଷ ଅଛି । ଆଈ ଦୁଇ ଜାଆ ଥିଲେ । ଗଣେଶ୍ୱର ଦାସଙ୍କ ସ୍ତ୍ରୀଙ୍କର ତିନି ଝିଅ । ବଡ଼ ଝିଅ ବଡ଼ ଜମିଦାର ଘରେ ବାହାହୋଇଥିଲେ । ମାତ୍ର ଅଳ୍ପ ବୟସରେ ବିଧବା ହେବାରୁ ସେ

ବାପଘରେ, ଅର୍ଥାତ୍ ମୋ ଆଈଙ୍କ ପାଖରେ ରହୁଥିଲେ । ତାଙ୍କୁ ଚନ୍ଦଅପା ବୋଲି ଡାକୁ । ତାଙ୍କ ତଳ ଝିଅ ଦୁଗଅପା, ପୁଅଟିଏ ଓ ଝିଅ ଦୁଇଟି ରଖି ମରିଗଲେ । ସେ ମଉସା ପୁଣି ବାହାହେଲେ । ମାଛେଉଣ୍ଡ ପିଲା ଦୁଇଟିକୁ ଆମ ଆଈ ପାଳିଲେ । ସେମାନେ ବଡ଼ ହୋଇ ଘରକୁ ଗଲେ । ସେହି ପିଲାଙ୍କ ଭିତରୁ ପୁଅଟିଏ ଆମ ଜମ୍ବୁଭାଇ । ଜମ୍ବୁଭାଇ ବୟସରେ ଆମଠାରୁ ବହୁତ ବଡ଼ । ମାଈଁମାନଙ୍କର ଭାରି ଆଦରଣୀୟ ଥିଲେ । ଜମ୍ବୁଭାଇ ଓ ତାଙ୍କର-ସ୍ତ୍ରୀ ମାମୁ ଘରକୁ ଆସିଲେ ସମସ୍ତେ ବ୍ୟସ୍ତହେବେ କିପରି ତାଙ୍କ ଚର୍ଚ୍ଚା ଭଲ-ଭାବରେ ହେବ । ସେହି ଜମ୍ବୁଭାଇଙ୍କ ପୁଅ ଅନନ୍ତ ( ଶ୍ରୀ ଅନନ୍ତ ପଟ୍ଟନାୟକ, କବି ଓ ଲେଖକ), ଓ ଗୁରୁଚରଣ ( ଶ୍ରୀ ଗୁରୁଚରଣ ପଟ୍ଟନାୟକ, କମ୍ୟୁନିଷ୍ଟ ନେତା ) । ଅନନ୍ତ ପିଲାଦିନେ ମାମୁ ଘରକୁ ଯାଏ । ଆମର ସେ ଭାରି ଗେଲ୍ଲ, କାରଣ ଗୋଟିଏ ମାତ୍ର ପୁରୁଷ । ଆମେ ଏତେ ଲୋକ କାଖେଇବାକୁ ଥାଉଁ ଯେ ସେ ଆଉ ତଳେ ବସେ ନାହିଁ । ଦୁଗଅପାଙ୍କ ସଉତୁଣୀ ସୁଲଅପା ବିଧବା ହେଲେ । ସେ ମଧ୍ୟ ଆସି ଆଈ ପାଖରେ ରହନ୍ତି । ମୋର ବଡ଼ ମାଉସୀ କ୍ଷେତ୍ରମଣିଅପା ଦୁଇଟି ସାନ ସାନ ପୁଅ ରଖି ମରିଗଲେ । ପୁଅ ଦୁହିଁଙ୍କୁ ଆଈ ପାଳିଲେ । ସେ ମଉସା ପୁଣି ବାହାହେଲେ ଓ ସେହି ମାଉସୀ ଅଳ୍ପ ଦିନେ ବିଧବା ହେଲେ । ତାଙ୍କର ଗୋଟିଏ ଝିଅ । ସେ ମା ଝିଅ ଅଧିକାଂଶ ଦିନ ମାମୁଁ ଘରେ ରହନ୍ତି । ଝିଅକୁ ମାମୁ ବିବାହ ଦେଲେ ।

ଆଈଙ୍କ ବଡ଼ ଜାଆ ଭାରି ରାଗୀଲୋକ ଥିଲେ । ତାଙ୍କର ପୁଅ ନ ଥିବାରୁ ସେ ବଡ଼ ମାମୁଙ୍କୁ ପୁଅକରିଥିଲେ ; ସେ ବଡମାମୁଙ୍କୁ ଖାଇବାରେ କଷ୍ଟ ଦିଅନ୍ତି । ସ୍କୁଲକୁ ଗଲାବେଳେ କେବଳ ଭାତ ଖାଇବାକୁ ଦିଅନ୍ତି । ଜଳଖିଆ ଦିଅନ୍ତି ନାହିଁ । ମାମୁ ଆଈ ଉପରେ କିଛି କହି ପାରନ୍ତି ନାହିଁ । ଦିନେ ଦିନେ ଭାତ ମୁଦ୍ଧା ଦିଅନ୍ତି ନାହିଁ । ମାମୁ ସ୍କୁଲକୁ ଯିବାବେଳକୁ ରୋଷେଇଘରେ ତାଲା ପକେଇଦେଇ କୁଆଡ଼େ ଚାଲିଯାଉଥିଲେ । ଆଈଙ୍କର ଭାତ ବଦଳରେ ଅନ୍ୟ କିଛି ଖାଇବାକୁ ଦେବାର ମଧ୍ୟ ଅଧିକାର ନଥାଏ । ସଙ୍ଗେ-ସଙ୍ଗେ କହିବେ—ମୋ ପୁଅକୁ ଖୁଆଇବାକୁ ତୁ କିଏ ? ଦିନେ ଦିନେ ମାମୁମାନେ ସ୍କୁଲରୁ ଫେରିବା ବେଳକୁ ରୋଷେଇଘରେ ତାଲା ପଡ଼ିଥିବ । ଆଈ ଜଳଖିଆ ତିଆରି କରିସାରିବା ପରେ ସେ ଘରୁ ବାହାରିବା ମାତ୍ରେ ତାଲାପଡ଼ିଯିବ । ବଡ଼ଆଈ ଏହିପରି ନାନା ଭାବରେ କଷ୍ଟ ଦେଉଥିଲେ । ଅନେକ ବର୍ଷ ପରେ ତାଙ୍କର ପୁଅ ହେବା ପରେ ବଡ଼ ଜେଜେ ମାମୁଙ୍କୁ ଫେରାଇଦେଲେ । ପରେ ଅନୁତାପ କୁଆଡ଼େ କଲେ ଯେ ଏଡ଼େ ବଡ ଗୁଣର ପୁଅକୁ ମୁଁ କାହିଁକି ଫେରାଇଲି । ବଡ଼ ଜେଜେଙ୍କର ସେ ପୁଅ ନାଆଁ ଯୋଗେଶ୍ୱର । ସେ ଭାରି ଗେହ୍ଲା ହେଲେ, ପଢ଼ାପଢ଼ି କଲେନାହିଁ, ଭାରି ରାଗୀ ମଧ୍ୟ ଥିଲେ । ବଡ଼ହେବାପରେ ନିଜ ଜମିଦାରୀ ଲୁଟାପୁଟା କରିବାରୁ ମାମୁଙ୍କ ଜମିରୁ ଧାନ କଟେଇ ନେବେ; ଆମ୍ବ, ନଡ଼ିଆ ଆଦିପରେଇ ନେବେ । ମାମୁ ଶୁଣିଲେ ବି କିଛି କହନ୍ତି ନାହିଁ । କ୍ରମେ ସେ କାରବାର ବଢ଼ିଲା ।

ଦିନେ ମାମୁଙ୍କ ତହସିଲଦାର ଆସି ଯୋଗୀମାମୁ କପଟର ଧାନ କଟାଇ ନେଉଛନ୍ତି ସେହି ଅଭିଯୋଗ କହିଲେ । ମାମୁ ସବୁ ଶୁଣିସାରି ତହସିଲଦାରଙ୍କୁ କହିଲେ—ମୁଁ ଦେଖୁଛି ତମର ତ ଭାରି ସାହସ ! ମୋ ଭାଇ ମୋ ଜିନଷ ନେଲେ—ତମେ ଆସି ତା ନାଁରେ ମୋ ଆଗରେ କହୁଛ ? ଆଉ ଦିନେ ଏପରି କାମ କରିବ ନାହିଁ । ତହସିଲଦାର ଏପରି ବ୍ୟବହାର ଆଶା କରିନଥିଲେ । ସେ କାବାହୋଇଗଲେ । ଯୋଗୀ ମାମୁ କେଉଁଠି ଏ କଥା ଶୁଣିଥିଲେ କି କଅଣ, ସେ ଦଉଡ଼ି ଆସି ମାମୁଙ୍କ ଗୋଡ଼ତଳେ ପଡ଼ି କାନ୍ଦିଲେ ଏବଂ କହିଲେ, "ଏ ଦୋଷୀକୁ ଶୀଘ୍ର ଦଣ୍ଡ ଦିଅ ।" ମାମୁ ତାଙ୍କୁ ଉଠେଇ ଅତି ସ୍ନେହରେ କହିଲେ, "ଯୋଗୀ ! ମୋ ମନରେ ତୋ ପ୍ରତି କିଛି ନାହିଁ । ତୋର ବ୍ୟସ୍ତ ହେବାର କିଛି ନାହିଁ ।" ସେହିଦିନ ଠାରୁ ଯୋଗୀମାମୁଙ୍କ କାରବାର ବଦଳିଗଲା । ବଡ଼ମାମୁଙ୍କର ଏଗୁଣ ବହୁତ ଥିଲା । ସେ ବହୁତ ଲୋକଙ୍କ ପ୍ରତି ଉଦାର ଆଚରଣ କରିଛନ୍ତି । ବଡ଼ମାଈଙ୍କର ମଧ୍ୟ ଭାରି ମର୍ଯ୍ୟାଦା-ବୋଧ ଥିଲା । ଏତେ ଗୁଡ଼ାଏ ଭିନ୍ନ ଭିନ୍ନ ବୟସ ଓ ସମ୍ପର୍କର ଲୋକଙ୍କୁ ନେଇ ଯେ ଚଳାଉଥିଲେ ତାହା ଦେଖିବାର ଓ ଶିଖିବାର ଜିନିଷ ।

ଥରେ ଆମେ ସମସ୍ତେ ଗୋଟାଏ ବାହାଘର ନିମନ୍ତ୍ରଣରେ ଗଲୁ । ଗହଣାପତ୍ର ମାଈଁ-ମାନେ ଖୁବ୍ ପିନ୍ଧିଲେ । ଘରେ ଫେରିଆସି ସବୁ ଓହ୍ଲେଇକରି ବାକ୍ସରେ ରଖିଲେ । ସାନମାଈଙ୍କର କିଛି ଗହଣା ମୁଁ ନାଇଥିଲି । ତାକୁ ଓହ୍ଲେଇଦେଲି । ମାଈଁ ବାକସରେ ଗହଣାତକ ସଜାଡ଼ି ରଖି କହିଲେ—ଏହାକୁ ନେଇଯା ମାଙ୍କୁ ଦେବୁ, ସେ ଆଲମାରିରେ ରଖିବେ । ମୁଁ ନେବି ନେବି କହି ଗପ କଲି । ମାଈଁ ଓ ମୁଁ ଉଭୟେ ଭୁଲିଗଲୁ । ମୁଁ ସେ ବାକ୍ସ ଆଣି ଆଈଙ୍କୁ ଦେଲିନାହିଁ । ସମସ୍ତେ ଶୋଇଲେ, । ସକାଳୁ ଉଠି ମାଈଁ ଦେଖିଲେ ଗହଣା ବାକ୍ସଟି ନାହିଁ । ଘରେ ଚହଲପଡ଼ିଗଲା । ଚୋର କିଏ ଏବଂ ସେ କେଉଁବାଟେ ଆସି ନେଲା ? ଛାତ ଉପର, ବାଡ଼ିଆଡ଼ ସବୁ ଭିନ୍ନ ଭିନ୍ନ ଲୋକ ଭିନ୍ନ ଭିନ୍ନ ଦୃଷ୍ଟିରୁ ଖୋଜି ଦେଖିଲେ । ମତେ କେହି କିଛି ନ କହିଲେ ସୁଦ୍ଧା ମୁଁ ନିଜକୁ ଦୋଷୀ ମନେକରି ମୁହଁ କାଚୁମାଚୁ କରି ବୁଲି ଦେଖୁଥାଏ । ସାନ ମାମୁଙ୍କ ଦୃଷ୍ଟି ମୋ ଉପରେ ପଡ଼ିଲା । ମୋତେ କୋଳକୁ ଟାଣିନେଇ କହିଲେ—"ଆମେ ବଡ଼ମଣିଷତ ଭୁଲିଗଲୁ, ବାକ୍ସଟା ଠିକ୍ ଜାଗାରେ ରଖିଲୁନାହିଁ, ତୋର ଦୋଷ ନାହିଁ । ତୁ ସେମିତି ମୁହଁ ଶୁଖାଇ ବୁଲନା ।" ଅନୁସନ୍ଧାନକାରୀମାନେ ବାହାରକଲେ ଯେ ମାମୁଙ୍କର ଦୂରସମ୍ପର୍କୀୟ ଭାଇମାମୁ ଯେ ବରାବର ପୁଅ ଝିଅ ନେଇ ମାମୁ ଘରେ ରହନ୍ତି, ତାଙ୍କ ପୁଅ ଏ କାମ କରିଛି । ସେ ଅତି ଗରିବ । ବଡ଼ ମାମୁ ସବୁ କଥା ଶୁଣିଲେ । ତାଙ୍କୁ ଅନ୍ୟମାନେ ପରାମର୍ଶ ଦେଲେ ଯେ ପୁଲିସକୁ ଏତଲା ଦିଆଯାଉ । ମାମୁ ମନାକଲେ, କହିଲେ—"ଭାଇଙ୍କ ପୁଅକୁ ପୁଲିସ ବାଡ଼େଇବ, ମୁଁ ଏହା ଦେଖିବି—ଏ ଗହଣା ଦିଖଣ୍ଡ ପାଇଁ ?"

ମାମୁଘରେ ଦଶହରା ପ୍ରଭୃତି ବେଳେ ଆମେ ଅନେକ ପିଲା ସାଙ୍ଗହୋଇଯାଉ । ନୂଆ ଲୁଗା ହେଲେ ସମସ୍ତେ ଆମେ ଏକାଠି ପିନ୍ଧି ଯାଉଁ ବଡ଼ମାମୁଙ୍କୁ ଦଣ୍ଡବତ କରିବାକୁ ।

ଆମ ପିଲାଦିନେ ଚଳଣି ଥିଲା ନୂଆ ଲୁଗା ପିନ୍ଧିଲେ ଗୁରୁଜନଙ୍କୁ ଦଣ୍ଡବତ କରିବାକୁ ହୁଏ । ଆମେ ଦିଲେ ପିଲା ଯେତେବେଳେ ଏକାଠି ଯାଇ ଦଣ୍ଡବତ କରୁଁ, ମାମୁ ଖୁବ୍ ହସନ୍ତି ଓ କହନ୍ତି, "ମୋର ଦଣ୍ଡବତ ଦରକାର ନାହିଁ । ତମେ ଏତେ ଲୁଗା ଚିରନାହିଁ, ମୁଁ ଏତେ କିଣିପାରିବିନାହିଁ ।"

ବଡ଼ମାମୁଙ୍କର ଝିଅ ନଥିଲା । ସେ ଖାଲି ଝିଅ ଚାହୁଁଥିଲେ । ତାଙ୍କର ଝିଅ ନ ଥିବାରୁ ଓ ମୋ ମା'ର ପୁଅ ନ ଥିବାରୁ, କେହି କେହି ପ୍ରସ୍ତାବ କଲେ ଯେ ମୋତେ ମାମୁ ଝିଅ କରନ୍ତୁ, ତାଙ୍କ ପୁଅରୁ ମୋର ମା' ଗୋଟିଏ ପୁଅ କରୁ । ଏ ପ୍ରସ୍ତାବ ବୋଧହୁଏ ମନକୁ ପାଇଲା । ମାମୁ ମୋତେ ଖାତିମତ ଖୋସାମତ କରିବାକୁ ଆରମ୍ଭକଲେ । ଆମେ ମାମୁଘରକୁ ଗଲେ ଭଲ ଲୁଗା କୁର୍ତ୍ତା ଆମ ଦୁଇ ଭଉଣୀଙ୍କୁ ଦେବାକୁ କହି ମାମୁ କହନ୍ତି —ମୋର ତ ମାତ୍ର ଦୁଇଟି ଭଣିଜୀ—ତାଙ୍କୁ ଭଲ ଲୁଗା ସୁନ୍ଦର କୁର୍ତ୍ତା ଦିଅ । ମୋତେ ଖୁସାମତ କରିବା ବଢ଼ିଗଲାରୁ ଭଲ ଲୁଗାକୁର୍ତ୍ତା, ଖେଳଣା, ଗହଣା ଆଣି ମାମୁ ମୋତେ ଦେଖେଇବେ, ମୋର ଯାହା ଇଚ୍ଛା ମୁଁ ନେବି । ନେଇ ସାରିବା ପରେ ମୋତେ ଯେତେବେଳେ ପଚାରନ୍ତି, "ମୋ ଝିଅ ହେବୁ ?" ମୁଁ କହେ, "ମୁଁ ମାକୁ ଛାଡ଼ିବି ନାହିଁ । ତା ପାଖରେ ରହିବି ।" ଏମିତି ଚାଲିଥାଏ । ବଡ଼ ମାମୁଙ୍କ ସାନ-ମଝିଆଁ-ପୁଅ ଉପେନ୍ଦ୍ର କିଶୋରକୁ ଘରେ କହିଲେ ଯେ ତୁ ବଡ଼ଅପାଙ୍କ ପୁଅ ହେବୁ । ଏ କଥାରେ ସେ ଏତେ ଲାଜ କଲା ଯେ ଆଉ ମାକୁ କଥା ବି କହିଲା ନାହିଁ । ମାମୁ ତ କହନ୍ତି, ତାହା ଛଡ଼ା ମାଇଁ ହେରିକା ମଧ୍ୟ ମତେ କେତେ ଲୋଭ ଦେଖାନ୍ତି—ମୁଁ ମାମୁଙ୍କ ଝିଅ ହେଲେ ଏ କଥା ହେବ, ସେ କଥା ହେବ । ମୋ ମନ ତ କାହାରି କଥାରେ ଭୁଲେ ନାହିଁ । ମା'କୁ ଛାଡ଼ି ମୁଁ ଅଲଗା ରହିବି, ଏ କଥା ମୁଁ ଭାବିପାରେନାହିଁ । ମା'କୁ ଛାଡ଼ି ରହିବା କଥା ଶୁଣିଲେ ମୋ ଛାତି ଭିତର କଅଁଳ ହୋଇଯାଏ । ଏହିପରି କିଛି ଦିନ ଗଲା ପରେ ଏ କଥା ବାପାଙ୍କ କାନକୁ ଗଲା । ବାପା ସଫା ଘୋଷଣା କଲେ ଯେ ଉପ (ଉପେନ୍ଦ୍ର କିଶୋର ଦାସ) ଓ ବେଲୁ (ରମା)କୁ ପୁଅ କରିବା ଝିଅ କରିବା କଥା କେହି କୁହ ନାହିଁ । ସେ ଦୁହିଁଙ୍କ ମନରେ ଡ଼ର ହେବ ଏବଂ ସେମାନେ ଅନିଚ୍ଛାସତ୍ତ୍ୱେ ବାଧ୍ୟହୋଇଗଲେ ଦୁହିଁଙ୍କ ମନ ତୁଟିଯିବ । ସେ ବଡ଼ ହୋଇ ଯେତେବେଳେ ବୁଝିବ ଯେ ମାମୁଙ୍କର ଝିଅ ନାହିଁ ବୋଲି ସେ ଦୁଃଖିତ, ମୁଁ ତାଙ୍କ ଝିଅ ହେଲେ ସେ ଖୁସି ହେବେ, ସେ ଦିନ ସେ ଝିଅ ହେବ ତିମାନ ତାକୁ ଝିଅ ହେବା କଥା କେହି କୁହ ନାହିଁ । କହିବା ସିନା ବନ୍ଦ ହେଲା, ଅନ୍ୟମାନଙ୍କ ମନରେ ଯେ ସେ କଥା ଥାଏ, ତାହାର ପ୍ରଭାବ ମୋ ଉପରେ ପଡ଼ି ମୋ ମନ ଶଙ୍କିତ ଥାଏ । ଆମେ ମାମୁଘରେ ଥାଉ । ଦିନେ ରାତିରେ ମୋ ନିଦ ଭାଙ୍ଗିଗଲା । ମୁଁ ଦେଖିଲି ଯେ ମୋର ମା' ମୋ ପାଖରେ ଶୋଇନାହିଁ । ସେ ଘରେ ଯିବା ଆସିବା କରି କ'ଣ ସବୁ ଦେଉଛି ନେଉଛି । ରାତି ବେଶି ହେଲଣି । ମୁଁ ଚେଇଁ କରି ଶୋଇଥାଏ ଓ ମାକୁ ଡ଼ାକୁଥାଏ । କିଛିକ୍ଷଣ ପରେ ମା' ଆସି କହିଲା, "ତୁ ଉଠ୍, ଯା' ମାମୁକୁ କହିବୁ, ମଝିଆଁ ମାଇଁଙ୍କର ଗୋଟିଏ ଝିଅ

ହୋଇଛି ।" ମୁଁ ତ ଭାରି ଖୁସିହୋଇ ଉଠି ମାମୁଙ୍କ ପାଖକୁ ଗଲି । ଝିଅ ହେବା ଖବର କହିବା ସଙ୍ଗେ ସଙ୍ଗେ ମାମୁ କହିଲେ, "ହଉ ଯା ଖୁସିରେ ଶୋଇବୁ । ଆମର ତ ଝିଅ ହେଲାଣି—ମୁଁ ଆଉ ତୋତେ ଝିଅ କରିବ ନାହିଁ ।" ପ୍ରକୃତରେ ମୋ ମନ ଭାରି ଖୁସି ହେଲା । ମୋତେ କେତେ କଷ୍ଟ ଲାଗିଲା ଯେ ମୁଁ ମାମୁଙ୍କ ଝିଅ ହେବିନାହିଁ ।

ମୋର ନିଜ ଅନୁଭୂତିରୁ, ଅର୍ଥାତ୍ ଝିଅ ହୋଇଯିବା କଥାରେ ମୋ ମନରେ ଯେଉଁ ଦୁଃଖ ହେଉଥିଲା, ସେ କଥା ମନେପକାଇଲେ ବର୍ତ୍ତମାନ ସୁଦ୍ଧା କିଏ କାହାକୁ ପୁଅ ବା ଝିଅ କରିଦେବା କଥା ଶୁଣିଲେ ମୋ ମନ କିଅଣ ହୋଇଯାଏ । ମୁଁ ପୋଷ୍ୟପୁତ୍ର ବା କନ୍ୟା କଥାକୁ ପସନ୍ଦ ତ ଆଦୌ କରେ ନାହିଁ, ବରଂ କହିବାକୁ ସୁବିଧା ଥିଲେ ବିରୋଧ କରେ । ସେହି କଥାର ପ୍ରଭାବ ବର୍ତ୍ତମାନ ସୁଦ୍ଧା ମୋ ଉପରେ ଅଛି । ମାମୁ ମୋତେ ଝିଅ କରି ନେବାର ପ୍ରସ୍ତାବ ମୋର ପାଞ୍ଚ ବର୍ଷ ବୟସରେ ଶେଷହେଲା । ଅର୍ଥାତ୍, ମଝିଆଁ ମାମୁଙ୍କର ଝିଅ ହେଲା ବେଳକୁ ମୋର ବୟସ ପାଞ୍ଚ ବର୍ଷ । କିନ୍ତୁ ଆଜିଯାଏ ସେ କଥା ମନରେ ଅଛି । ମା'କୁ ଛାଡ଼ି ପିଲା ରହିବ, ଏ କଥା ମୋତେ ଭାରି କଷ୍ଟବୋଧହୁଏ । ଆଜି ପର୍ଯ୍ୟନ୍ତ ଛୋଟ ପିଲାକୁ ନିଜର ମା ପାଖରୁ ଆଣି ଅନ୍ୟ ପାଖରେ ରଖିବା ମୋ ଦ୍ୱାରା ହୋଇନାହିଁ । କେହି ତାହା କରିବାକୁ ଗଲେ ମୁଁ ତା'ର ବିରୋଧକରେ । ପାଳିତା କନ୍ୟା ଓ ପାଳିତ ପୁତ୍ର ପ୍ରଥା ତ ଚାଲୁଛି—ମାତ୍ର ତାହାର ଭଲ ଫଳ କ୍ୱଚିତ୍ ଦେଖାଯାଏ ।

ସହିଷ୍ଣୁତା ଓ କର୍ତ୍ତବ୍ୟ ପାଳନ କଥା ମୋ ଠାରେ ଯାହା ସାମାନ୍ୟ ଅଛି, ତାହା ମୁଁ ମୋ ମାମୁ ଓ ଆଈଙ୍କଠାରୁ ପାଇଛି । ସ୍ନେହକରିବା ଓ ପରସ୍ପର ପ୍ରତି ସୌହାର୍ଦ୍ଦ୍ୟ ରଖିବା ଗୁଣ ମଧ୍ୟ ସାମାନ୍ୟ ମାତ୍ରାରେ ସେହି ଦୁହିଁଙ୍କଠାରୁ ପାଇଛି ।

## ୪ । ବଡ଼ମାମୁ ଓ ମାଈଁ

ଉଣେଇଶ-ତିରିଶ ମସିହାରେ ବିଲାତି ଲୁଗା ପୋଡ଼ା କାମ ଚାଲିଥାଏ । ମୁଁ ଦିନେ ମାମୁ ଘରକୁ ଯାଇ ଭାଇ ଓ ଭାଉଜମାନଙ୍କୁ ବିଲାତି ଲୁଗା ମାଗିଲି । ମୋର ଭାଗ୍ୟ ଭଲ ଯେ ଭାଉଜମାନେ ମଧ୍ୟ ମୋତେ ଭଲପାନ୍ତି, ମୋ କଥା ଶୁଣନ୍ତି । ମୋ କଥା ଶୁଣି କେତେଜଣ ଖଦଡ଼ ଲୁଗା ପିନ୍ଧିଲେ । ରାଷ୍ଟ୍ରଭାଷା କାମ ଯେତେବେଳେ ପଣ୍ଡିତ ଅନସୂୟା ପ୍ରସାଦ ପାଠକ କଟକରେ ଆରମ୍ଭ କଲେ, ସେତେବେଳେ ଛାତ୍ରଛାତ୍ରୀ ଜୁଟିଲେ ନାହିଁ । ରାଷ୍ଟ୍ରଭାଷା ପଢ଼ିବାର ଆବଶ୍ୟକତା ବୁଝାଇ କେତେ ଜଣ ଭାଉଜଙ୍କୁ ହିନ୍ଦୀ ପଢ଼ିବାର ଛାତ୍ରୀ କଲି । ମୁଁ ଯେତେବେଳେ ହରିଜନ ସେବକ ସଂଘର ପ୍ରାଦେଶିକ ସେକ୍ରେଟାରୀ ହେଲି, ବିସ୍ତାରିତ ବାହାରେ କହିବା ପୂର୍ବରୁ ଘରେ କରାଇବା ଉଚିତ । ମା'କୁ କହିଲାରୁ ମା' କହିଲା, "ତୁ ହରିଜନ ସେବକ ସଂଘର ସେକ୍ରେଟାରୀ ହେଲୁ ବୋଲି ମୁଁ ହରିଜନଙ୍କୁ ବାରଣ କରିବା

ଗୁଣ୍ଡିଲା ଏବଂ ମୋ ଠାକୁରଘରେ ହରିଜନଙ୍କୁ ପ୍ରବେଶ କରାଇ ମୋ କାମ ସାରିଛୁ ।" ମାମୁଘରେ ବଡ଼ମାଈଁ ସେତେବେଳକୁ ମରିଯାଇଥିଲେ । ସାନ ମାଈଁ ମଧ୍ୟ ତତ୍‌ପୂର୍ବରୁ ମରିଯାଇଥିଲେ । ମଝିଆଁ ମାଈଁ ଘରକୁ ମୁରବୀ । ମୁଞ୍ଚା ମାଈଁ ଦୁହେଁ ବୁଝିଲା ପୁଝିଲା ଲୋକ ଥିଲେ । ସାନ ମାଈଁ ତ ମୋ କଥା ମାନୁଥିଲେ । ଭାଉଜମାନେ ହରିଜନ' ଛୁଆଁ କଥାକୁ ଡରିଲେ; ତେବେ ସେମାନେ ବ୍ୟକ୍ତିଗତ ଭାବରେ ଛୁଆଁ ଛୁଇଁ ବାରଣ ଗୁଣ୍ଡିଲେ । ସେମାନଙ୍କର ପିଲାଙ୍କ କାମ ଆଦି ହରିଜନଙ୍କ ହାତରେ କରାଇଲେ । ମଝିଆଁ ମାଈଁଙ୍କ ଅଧିକୃତ ସ୍ଥାନକୁ ହରିଜନ ପ୍ରବେଶ ନିଷିଦ୍ଧ ରହିଲା ।

ମୁଁ ପୋଡ଼ିବାକୁ ନେବାପାଇଁ ଭାଇ ଓ ଭାଉଜମାନେ ବିଲାତି ଲୁଗା ଆଣି ଗଦା କଲେ । ଏମାନେ ବହୁତ ଲୋକ ହୋଇଥିବାରୁ ଲୁଗା ବହୁତ ହେଲା । ମାମୁ ଖାଇବା ପାଇଁ ଘରକୁ ଆସି ସ୍ତୂପିକୃତ ଲୁଗାକୁ ଦେଖି ଆଶ୍ଚର୍ଯ୍ୟ ହୋଇ କହିଲେ, "ଏତେ-ଗୁଡ଼ାଏ ଲୁଗା କ'ଣ ଏକା ସାଙ୍ଗରେ ଧୋବାଘରକୁ ଯିବ ? ଧୋବା ନେବ କେମିତି ଓ କାଚିବ କେମିତି ?" ପିଲାଙ୍କ ଭିତରୁ କିଏ କହିଦେଲା —"ବେଲ ଅପା ମାଗିବାରୁ ସମସ୍ତେ ସେହି ଲୁଗା ଦେଇଛନ୍ତି ପରା—ସେ ବିଲାତି ଲୁଗା ପୋଡ଼ିବାକୁ ନେବେ ବୋଲି !" ମାମୁ ଟିକିଏ ସ୍ତବ୍ଧ ହୋଇ କିଛିକ୍ଷଣ ରହି ମୋତେ କହିଲେ —"ତମେ ଏ କଣ କରୁଛ ? ଏତେଗୁଡ଼ାଏ ଲୁଗା ଅକାରଣରେ ଯେ ପୋଡ଼ିଦେବ, ଫଳ କଣ ପାଇବ ?" ମାମୁ ମତେ ତାଙ୍କର ଯଥାସାଧ୍ୟ ସ୍ନେହ ଓ ଆଦର କରୁଥିଲେ ମଧ୍ୟ ମୁଁ ତାଙ୍କୁ କଥା କହିବାକୁ ଡରୁଥିଲି । ମାମୁ ଯେତେବେଳେ ଗମ୍ଭୀର ସ୍ୱରରେ ମତେ ଏପରି କହିଲେ, ମୁଁ ତାଙ୍କୁ କ'ଣ ଜବାବ ଦେବି ? ମୁଁ କହିଲି--"ଫଳ ଭଗବାନଙ୍କ ହାତରେ ।" ମୋଠାରୁ ଏତିକି ଶୁଣି ମୋ ପିଠି ଆଉଁସି ଦେଇ ମାମୁ କହିଲେ, "ତୁ ତ ମତେ ଆଚ୍ଛା ଶିକ୍ଷାଦେଲୁ ! ହଉ ଲୁଗା ନେଇଯା, ତୋ କାମ ତୁ କର ।" ଅନ୍ୟମାନଙ୍କ ମୁରବୀ ପରି ମୋର ମୁରବୀ ମୁଁ କଂଗ୍ରେସ-କାମ କଲାବେଳେ ମେତେ କେହି ତୁଚ୍ଛ-ତାଚ୍ଛଲ୍ୟ କରି କେବେ କିଛି ନ ଥିଲେ । ଅଧିକନ୍ତୁ ମୁଁ ଯେ ଭଲ କାମ କରୁଛି,ଏକଥା ବୁଝିଲା ପରି ମୋ ସହିତ ସେମାନେ ବ୍ୟବହାର କରୁଥିଲେ । ୧୯୨୦ ରେ ବନ୍ୟା (କଟକ ଜିଲାର ବଣ୍ଟିଆରପୁର ଥାନାର ଖରସ୍ରୋତା ନଦୀର ଉତ୍ତରାଂଶ ବନ୍ୟାପ୍ଲାବିତ ଅଞ୍ଚଳ । ବିରିଠାରୁ ଏହା ଭିନ୍ନସ୍ଥାନ । ) ବନ୍ୟା ପରେ ଯେତେବେଳେ ଗୃହକର୍ମ ଗୁଣ୍ଡିବାର ପ୍ରଶ୍ନ ତାଙ୍କ ମନରେ (ତାଙ୍କର ଅର୍ଥ ଗୋପବନ୍ଧୁ ଚୌଧୁରୀଙ୍କର) ଉଠିଲା, ସେତେବେଳେ ଚିଠି ଲେଖି ବଡ଼ମାମୁଙ୍କ ମତ ନିଆଗଲା । ମାମୁ ଜବାବରେ ଲେଖିଥିଲେ, "ତୁ ଯେଉଁ କାରଣରୁ ଗୃହକର୍ମ ଗୁଣ୍ଡିବା କଥା ଭାବୁଛୁ, ସେଥିରେ ମୋର ଆଉ ଅନ୍ୟ ପରାମର୍ଶ ଦେବାର କିଛି ନାହିଁ । କାରଣ, ମୁଁ ଗୃହକର୍ମ କରୁଥିବାରୁ ମର୍ମେ ମର୍ମେ ବୁଝିଛି ଯେ ଗୃହକର୍ମ କଲା ଲୋକର କଦାପି ଆତ୍ମୋନ୍ନତି ହେବ ନାହିଁ । ତୁ ଯଦି ବୁଝି ବିଚାରି ଗୃହକର୍ମ ଗୁଣ୍ଡିବାକୁ ପ୍ରସ୍ତୁତ ହେବୁ ତ ମୁଁ ତହିଁରେ କଦାପି ବାଧା ଦେବି ନାହିଁ—ବରଂ ତୋର ସାହସିକତାରେ ଖୁସିହେବି ।"

କ୍ରମେ ଏ ସଂସାର ଜଞ୍ଜାଳ ମାମୁଙ୍କୁ ବିଷବତ୍ ବୋଧହେଲ । ବୈରାଗ୍ୟ ଆଡକୁ ମନ ଗଲ । ଯେତେବେଳେ ପ୍ରଥମେ ଓଡ଼ିଶାରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠାହେଲ, ତା' ପରେ ମୋର ମାମୁଙ୍କ ସଙ୍ଗେ ଦେଖାହେଲ । ନିତ୍ୟାନନ୍ଦ (କାନୁନ୍‌ଗୋ) ମନ୍ତ୍ରୀମଣ୍ଡଳରେ ଥିଲେ । ନିତ୍ୟାନନ୍ଦ ମାମୁଙ୍କର ଗେହ୍ଲା ଭଣଜା, କାରଣ ଆଉ ଦୁଇ ଭଣଜା ବଡ଼ ମାଉସୀଙ୍କର ଦୁଇ ପୁଅଙ୍କ ଭିତରୁ ହରଭାଇ ପିଲଦିନୁ ମୃଗୀ ରୋଗରେ ପୀଡ଼ିତ । କୃଷ୍ଣଭାଇ ମା-ଛେଉଣ୍ଡ ହୋଇ ପିଲ ଦିନୁ ମାମୁ ଘରେ ରହୁଥିବାରୁ ସେ ପୁଅପରି ବ୍ୟବହାର ପାଉଥିଲେ । ଭଣଜାର ସ୍ନେହାଦର ନିତ୍ୟାନନ୍ଦ ପାଇଲେ । ମାମୁ ମୋତେ କହିଲେ , "ତମ ବଅଁଶ (ବଂଶ) ଭାରି ସୁଆଣା । ଟୁଙ୍କୁ ମନ୍ତ୍ରୀଟିଏ ହେଲ ସିନା ବୁଦ୍ଧିମାନ୍‌ର କାମ କଲ ନାହିଁ—ସେ ବୁଝି ପାରିଲନାହିଁ, ତାକୁ ଏଥିରେ ପକେଇ ଦେଲେ । " ଏମିତି କଥା ବେଳେ ବେଳେ କହନ୍ତି, କଥାବାର୍ତ୍ତା ବେଳେ ବେଶି ନିଜ କଥା କହନ୍ତି—କେମିତି ଏ ସଂସାର ଜଞ୍ଜାଳରୁ ତାଙ୍କ ମନ ଶୀଘ୍ର ଛାଡ଼ିଯିବ, ଭଗବାନଙ୍କଠାରେ ଲୟ ରଖିପାରିବେ, କେମିତି ସେ ଶୀଘ୍ର ସନ୍ନ୍ୟାସ ନିଅନ୍ତେ । ମାତ୍ର ଘର-ସଂସାରରୁ ସମ୍ପୂର୍ଣ୍ଣ ଆସକ୍ତି ନତୁଟେଇ ସନ୍ନ୍ୟାସ ନେବାରେ ଆହୁରି ଅଶାନ୍ତିହୁଏ—ମାମୁ ଏକଥା କହନ୍ତି । ବର୍ମାରେ ଥାଇ ଶୁଣିଲି ଯେ ମାମୁ ପୁରୀ ଯାଇ ସନ୍ନ୍ୟାସ ନେଲେ । ସନ୍ନ୍ୟାସ ଦୀକ୍ଷା ଗ୍ରହଣ ପରେ ପ୍ରଥମ କାର୍ଯ୍ୟ ସାତ ଘରେ ଯାଇ ଭିକ୍ଷା ମାଗି ଆଣିଲେ । ଗୃହସ୍ଥ ସନ୍ନ୍ୟାସ ଗ୍ରହଣର ତାତ୍ପର୍ଯ୍ୟ ମୁଁ ସେହିଦିନ ବୁଝିପାରିଲି ଯେ ସନ୍ନ୍ୟାସ ଗ୍ରହଣ କଲେ ମଣିଷକୁ କେତେ ନମ୍ର ହେବାକୁ ହୁଏ । ଯେଉଁ ଲୋକ ଜଗନ୍ନାଥ ମନ୍ଦିରରେ ଦଶ ବର୍ଷରୁ ଅଧିକ କାଳ ମ୍ୟାନେଜର କାମ କରିଥିଲେ, ଯେ ମ୍ୟାନେଜର ଭାବରେ ସହରବାସୀଙ୍କଠାରୁ ସମ୍ମାନ ପାଉଥିଲେ, ସେ ଭିକ୍ଷାପାତ୍ର ଧରି ଭିକ୍ଷା ମାଗିବା ଯୋଗୁଁ ଭିକ୍ଷୁକ ହିସାବରେ ସମ୍ମାନ ପାଇବେ । ମାମୁଙ୍କର ସହିଷ୍ଣୁତା ଗୁଣର ତୁଳନା ନାହିଁ । ମଧୁର ବ୍ୟବହାର ଯୋଗୁ ତାଙ୍କୁ ସମସ୍ତେ ଭଲପାଉଥିଲେ । ବଡ଼ଦେଉଳରେ ଘଟିଥିବା ବିଭ୍ରାଟକୁ ମଜାଡ଼ି ଠାକୁରଙ୍କ ନୀତି ଆଦିର ସୁବ୍ୟବସ୍ଥା କରିଥିବାରୁ ସେ ସମସ୍ତଙ୍କର ପ୍ରଶଂସାର ପାତ୍ର ମଧ୍ୟ ଥିଲେ । ବାପାଙ୍କ ମୃତ୍ୟୁ ପରେ ମୋ ମନରେ ଯେତେ ଦୁଃଖ ହୋଇଥିଲ, ମାମୁଙ୍କ ମୃତ୍ୟୁରେ ସେହିପରି ଦୁଃଖ ହେଲ । ଗୃହସ୍ଥଜୀବନରେ ଏବଂ ସାର୍ବଜନୀନ ଜୀବନରେ ମୁଁ ତାଙ୍କ ଗୁଣର ଅନୁସରଣକାରୀ ଥିଲି । ମାମୁଙ୍କ ସହନଶୀଳତା ଗୁଣକୁ ମନେପକେଇ ବହୁତ କଡ଼ା ରାଗୀ ଲୋକଙ୍କୁ ମୁଁ ସମ୍ଭାଳି ନେଇଛି । ବଡ ମାଈଁଙ୍କଠାରୁ ମଧ୍ୟ ଶିଖିବାର କଥା ଅନେକ ଥିଲ । ସେ ବେଶି ପାଠ ପଢ଼ି ନଥିଲେ, କିନ୍ତୁ ସବୁ ଶ୍ରେଣୀର ଆତ୍ମୀୟ ସ୍ୱଜନଙ୍କୁ ମର୍ଯ୍ୟାଦାପୂର୍ଣ୍ଣ ଭାବରେ ଚଳାଉଥିଲେ । ବଡମାଈଁ ବାହା ହୋଇ ଆସିବାବେଳେ କୁଆଡ଼େ ଆଦୌ ପାଠ ପଢ଼ି ନ ଥିଲେ—କେଳକ ଶ୍ରୀ ନନ୍ଦକିଶୋର ଦାସ ତାଙ୍କୁ ପଢ଼ାଇଥିଲେ । କେଜେ ବୋଧହୁଏ ମୁହେଁ ମୁହେଁ ମାଈଁଙ୍କୁ ଭୂଗୋଳ ଓ ଇତିହାସ ପଢ଼ାଇଥିଲେ । କାରଣ, ମାଈଁଙ୍କ ପଢ଼ା ବେଳର ଲେଖା ଖାତା ମୁଁ ପିଲଦିନେ ଦେଖିଛି । ମାମୁ ସରକାରୀ ଚାକିରୀ କରୁଥିଲେ ମଧ୍ୟ ସଂସ୍କାରପ୍ରିୟ ଥିଲେ । ସେ କୁଆଡେ ତାଙ୍କ ବାହାଘର ବେଳେ ଜିଦ୍ ଧରିଲେ ଯେ ଗଉଡ଼ କାନ୍ଧରେ ଯିବେ ନାହିଁ ।

ସେତେବେଳେ ପାଲ୍‌କି ଓ ସବାରି ଛଡ଼ା ମୋଟର ବା ଅନ୍ୟ ବାହନ କିଛି ନ ଥିଲା । କନ୍ୟାଘର ଏ ପ୍ରସ୍ତାବରେ ଆପତ୍ତି କରିଥିଲେ । କିନ୍ତୁ ନନ୍ଦକିଶୋର ଦାସଙ୍କ ପୁଅ, ପୁଣି ସେ ବି. ଏ. ପାସ୍ କରି ଡେପୁଟି ଚାକିରି ପାଇଥିଲେ । ସେହି ଲୋଭରେ ମାମୁଙ୍କ ଜିଦ୍‌କୁ ମାନି ନେଲେ । ବରଯାତ୍ରୀମାନେ ବର ନେଇ ଚାଲିକରି ଗଲେ ।

ମାମୁଙ୍କର ପ୍ରବଳ ଇଚ୍ଛା ଥିଲା ଯେ ତାଙ୍କର ପୁଅ-ପୁତୁରାମାନଙ୍କ ଭିତରୁ କେହି ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଉ । ବେଳେବେଳେ ମାମୁ ମନ-ଦୁଃଖରେ ମା'କୁ ଓ ଅପା (ନିତ୍ୟାନନ୍ଦଙ୍କ ମା) ଙ୍କୁ କହନ୍ତି ଯେ—ତମ ପିଲା ଦେଶକାମ କଲେ,ମୁଁ ହତଭାଗ୍ୟ, ମୋ ପିଲା ସେଥିରେ ପଶିଲେ ନାହିଁ । ଲବଣ ସତ୍ୟାଗ୍ରହ ଜୋର୍‌ସୋର୍‌ରେ ଚାଲିଥିଲାବେଳେ ସେ ପୁଅ ପୁତୁରାଙ୍କୁ କହିଲେ ଯେ ତମ ଭିତରୁ ଯେ ଆନ୍ଦୋଳନରେ ଯୋଗ ଦେବାକୁ ଚାହିଁ, ସେ ନିଶ୍ଚିନ୍ତ ମନରେ ଯାଇ ଯୋଗଦିଅ । ତମ ପିଲାପିଲିଙ୍କ ଦାୟିତ୍ୱ ମୁଁ ନେବି, ମୁଁ ତାଙ୍କର ଦେଖା ଶୁଣା କରିବି; ତାଙ୍କର କୌଣସି ଅସୁବିଧା ହେବାକୁ ଦେବି ନାହିଁ ।

ବେଳେ ବେଳେ ମାମୁ ମୋତେ କହନ୍ତି—ତୋ ମା' ଭାଗ୍ୟରେ ଥିଲା, ତୁ ଦେଶ କାମ କଲୁ । ମୋ ଭାଗ୍ୟରେ ସେ ସୁଖ ନାହିଁ ।

ମୋ ମା'ର ବାର ଭାଇ-ଭଉଣୀ ଭିତରୁ ଆମେ ଦେଖିବା ବେଳକୁ ପାଞ୍ଚ ଜଣ ଥିଲେ—ତିନି ଭାଇ ଓ ଦୁଇ ଭଉଣୀ । ଏ ପାଞ୍ଚ ଜଣ ସମାନ ଭାବରେ ଶାନ୍ତ ଓ ସହନଶୀଳତାର ପ୍ରତୀକ ଥିଲେ । ବଡ଼ ମାଉସୀ କଣାମଣି କୁଆଁରେ ଅତ୍ୟନ୍ତ ଗୁଣବତୀ ଥିଲେ । ଓଡ଼ିଶାରେ ସେ ପ୍ରଥମ ଓଡ଼ିଆ ଝିଅ ଯେ ଭର୍ଣ୍ଣାକ୍ୟୁଲାର [ ୧୯୨୭ ମସିହା ପୂର୍ବେ ନିମ୍ନପ୍ରାଥମିକ ପରେ ମି. ଭ. (ମିଡ଼ଲ ଭର୍ଣ୍ଣାକ୍ୟୁଲାର) ଓ ମି. ଇ. (ମିଡ଼ଲ୍ ଇଂଲିଶ୍) ଏହି ଦୁଇ ପ୍ରକାରର ବିଦ୍ୟାଳୟ ଥିଲା । ଅନ୍ୟାନ୍ୟ ପାଠ ଉଭୟରେ ସମାନ ଥିଲା । ମି. ଇ ସ୍କୁଲରେ ଛାତ୍ରଛାତ୍ରୀମାନେ ଇଂରାଜୀକୁ ବାଧ୍ୟତାମୂଳକ ଭାବରେ ଅଧିକା ପଢ଼ୁଥିଲେ । ] ପାସ୍ କରିଥିଲେ । ସେ ମୋ ବାପାଙ୍କର ପ୍ରଥମ ସ୍ତ୍ରୀ ଥିଲେ । ବଡ଼ବାପା ତାଙ୍କୁ ଅତ୍ୟନ୍ତ ସ୍ନେହ କରୁଥିଲେ । ସେ ମରିଯିବା ପରେ ତାଙ୍କ ଛବି ବଡ଼ବାପା ତାଙ୍କ ଶୋଇବା ଘରେ ରଖିଥିଲେ ଓ ତାକୁ କୁଆଡ଼େ ପ୍ରତିଦିନ ଥରେ ଦେଖୁଥିଲେ । ମୋର ସେ ମାଉସୀଙ୍କର ଗୋଟିଏ ଝିଅ ହେଲା । ସେତେବେଳେ କଟକରେ କୌଣସି ଲେଡ଼ି ଡାକ୍ତର ନ ଥିଲେ । ମାଉସୀକୁ ଡାକ୍ତରୀ (ଆଲୋପାଥିକ୍) ଚିକିତ୍ସାରେ ରଖାଯାଇଥିଲା । ମାତ୍ର ପିଲା ଜନ୍ମ ପରେ ମାଉସୀର ସେପ୍‌ଟିକ୍ ଜ୍ୱର ହେଲା । ଡାକ୍ତରମାନେ ଠିକ୍‌ଭାବରେ ରୋଗ ନିର୍ଣ୍ଣୟ କରି ପାରିଲେ ନାହିଁ । ପିଲା ଜନ୍ମ ହେବାର ଛ' ଦିନରେ ମାଉସୀର ମୃତ୍ୟୁ ଘଟିଲା । ତାହା ପରେ ବଡ଼ ମାଈଁଙ୍କର ଗୋଟିଏ ଝିଅ ହେଲା । ପ୍ରସବବେଳର ଉପଯୁକ୍ତ ଚିକିତ୍ସାର ଅଭାବରୁ ସେ ଝିଅ ଜନ୍ମ ହେବା ସଙ୍ଗେ ସଙ୍ଗେ ମରିଗଲା । ମାମୁଘରେ ପିଲା ଜନ୍ମ ବିଷୟରେ ଯେଉଁ ଆତଙ୍କ ସୃଷ୍ଟି ହେଲା, ତାହା ଆମର ପିଲା ଜନ୍ମ ହେବା ପର୍ଯ୍ୟନ୍ତ ଅର୍ଥାତ୍ ଆଈ ବଞ୍ଚିଥିବା ପର୍ଯ୍ୟନ୍ତ ଥିଲା । ଆମେ ଜନ୍ମ ହେବାବେଳେ କଟକରେ ମଧ୍ୟ କୁଆଡ଼େ

ଲେଡ଼ି ଡ଼ାକ୍ତର ନ ଥିଲେ । ସେଥିପାଇଁ ଆମ ଜନ୍ମବେଳେ ମାନ୍ଦ୍ରାଜରେ କୁଆଡ଼େ ଜଣେ ଭଲ ଲେଡ଼ି ଡ଼ାକ୍ତର ଥିଲେ— ତାଙ୍କୁ ଅଣାଯାଇଥିଲା ! ମୋର ପିଲା ଜନ୍ମ ବେଳେ ମଧ୍ୟ ମୋ ଆଈ ଓ ବଡ଼ମାଈଁ ମୋ ପାଖରେ ରହି ମୋର ସମସ୍ତ ତତ୍ତ୍ୱ ନେଉଥିଲେ । ତାଙ୍କର ଏ ଅତ୍ୟଧିକ ଆଗ୍ରହ ସଂଘର୍ଷ ସୃଷ୍ଟି କରିଥିଲା । କାରଣ, ପ୍ରସବ ସମୟରେ ଡ଼ାକ୍ତରୀ ଚିକିତ୍ସାର ମା (ଶାଶୁ) ଘୋର ବିରୋଧୀ ଥିଲେ । ତାଙ୍କର ଯୁକ୍ତି ଥିଲା ଯେ ତାଙ୍କର ଏଗାରଟି ପିଲା ବିନା ଡାକ୍ତରୀ ଚିକିତ୍ସାରେ ଜନ୍ମ ହୋଇଛନ୍ତି, ଇତ୍ୟାଦି । ଆଈଙ୍କର ଯୁକ୍ତି ଭିନ୍ନ ପ୍ରକାରର ଥିଲା—ଡାକ୍ତରୀ ଚିକିତ୍ସା ପୂର୍ବେ ନଥିଲା, କିନ୍ତୁ ଏବେ ଯେତେବେଳେ ହେଲାଣି ସେ ଚିକିତ୍ସାର ସୁବିଧା ଛାଡ଼ିବା ନାହିଁ । ବୁଲୁ (ମୋର ପ୍ରଥମ ସନ୍ତାନ) ଜନ୍ମ ପୂର୍ବରୁ ବଡ଼ମାଈଁ ଓ ଅପା (ମାଉସୀ) ଗୃହ ଛଅ ଦିନରେ ଥରେ ଆସି ବହୁତ ଅନୁନୟ ବିନୟ କରି ମା'ଙ୍କୁ କହୁଥିଲେ ଲେଡ଼ି ଡ଼ାକ୍ତର ଆଣି ମୋତେ ପରୀକ୍ଷା କରିବା ପାଇଁ । ମା ନାସ୍ତି କରିଦେଲେ । କହିଲେ, "ମୋ ଘରେ ଡ଼ାକ୍ତରୀ ଚିକିତ୍ସା ଚଳିବ ନାହିଁ ।" ବୁଲୁ ଜନ୍ମ ହେବା ଦିନ କାଳେ ମାଈଁ ଡାକ୍ତରଣୀ ନେଇଆସିବେ, ସେଥିପାଇଁ ବହୁତ ବିଳମ୍ବରେ ତାଙ୍କୁ ଖବରଦିଆଗଲା । ଶାଶୁ ଦୂତୀ ଗଉଡ଼ୁଣୀ ନାମଧେୟା ଧାଈଙ୍କୁ ଡକେଇଆଣିଲେ । ବୁଲୁ ଜନ୍ମ ହେବା ପରେ ମାଈଁ ଲେଡ଼ି ଡାକ୍ତର ପ୍ରଭାବତୀ ସିଂହଙ୍କୁ ନେଇଆସି ପହଞ୍ଚିଲେ । ସେ ପିଲାର ନାହିକାଟି, ଗାଧୁଆ ଆଦି କରେଇ, ମୋତେ ପରୀକ୍ଷାକରି ଦେଖିଲେ ଯେ ମୋ ଦେହରେ ଶହେ ଡ଼ିଗ୍ରୀ ଜ୍ୱର । ସେ ଚିନ୍ତିତ ହେଲେ ଓ ମାଈଁଙ୍କୁ କହିଲେ—ଖୁବ୍ ସାବଧାନରେ ରଖିବାକୁ ହେବ । ସେ ଡ଼ାକ୍ତରଣୀଙ୍କୁ ଦୁଇଓଳି ମାଈଁ ନେଇଆସି ମୋତେ ଦେଖାଉଥିଲେ । ସେ ପରୀକ୍ଷାକରିଦେଖନ୍ତି ଶହେ ତିନି ଡିଗ୍ରୀ ଜ୍ୱର ବରାବର ମୋ ଦେହରେ ରହୁଛି । ସେ କହନ୍ତି—ପାଣି ପିଇବାକୁ ଚାହିଁଲେ ଦିଅ । ସେ ଔଷଧ ଲେଖିଦେଇ ଯାଆନ୍ତି—ମା ଔଷଧ ଦିଅନ୍ତି ନାହିଁ କିମ୍ବା ପାଣି ପିଇବାକୁ ଦିଅନ୍ତି ନାହିଁ । ଶୁଣ୍ଠି, ପିପ୍ପଳୀ, ଦେଶୀ ଔଷଧ ଓ ଘୃତ ଘିଅ ଆଦି ପଥ୍ୟ ଦିଅନ୍ତି । ଏମିତି ଚାରିଦିନ ଗଲା । ମା ତାଙ୍କ ମତରେ ଅଟଳ ଥାନ୍ତି । ବଡ଼ ମାମୁ ଦଶରଥପୁରରେ କଟକ ଆସି ଏ ଘଟଣା ଶୁଣି ସଙ୍ଗେ ସଙ୍ଗେ ମୋତେ ଦେଖିବାପାଇଁ ଆସିଲେ ଏବଂ ଡାକ୍ତରୀ ଚିକିତ୍ସା କରିବାର ଅନୁମତି ଦେବାପାଇଁ ହାତଯୋଡ଼ି ମାଙ୍କୁ ଅନୁରୋଧ କଲେ । ମାମୁଙ୍କ ଅନୁରୋଧ ଏଡ଼ି ନ ପାରି ମା ଦୋଦୋପାଞ୍ଚ ହେଉଥିବାବେଳେ ମୋର ବଡ଼ ନଣନ୍ଦ ମାଗଅପା ଓ ତାଙ୍କ ସ୍ୱାମୀ ଦେବେନ୍ଦ୍ରବାବୁ (କଟକ ସହରସ୍ଥ ସାହେବଜାଦା ବଜାରର ୰ ବଳରାମ ଦାସଙ୍କର ପୁତ୍ର) ଆସି ମା'ଙ୍କୁ ଭାରି ଧମକେଇଲେ । ମାଗଅପା କହିଲେ – ତା' ମା'ର ସେମାନେ ମାତ୍ର ଦୁଇଟି ଝିଅ । ସେମାନେ ଚିକିତ୍ସାର ଭାର ନେବାକୁ ଚାହୁଁଥିବାବେଳେ ତୁ ଜିଦ୍ କରି ଚିକିତ୍ସାଭାର ତାଙ୍କୁ ନ ଦେବା ଅତି ଅନ୍ୟାୟ ହେଉଛି— ତୁ ଆଉ ଜିଦ୍ ନ କରି ଶୀଘ୍ର ତାଙ୍କ ହାତକୁ ଛାଡ଼ିଦେ । ଭଲମନ୍ଦ ହେଲେ ଦୋଷ ତ ତୋର ହେବ—ଚିରଦିନ ପାଇଁ ସେମାନେ ଦୁଃଖ ଭୋଗ କରିବେ ।" ମାଗଅପାଙ୍କ କଥାରେ ମା' ରାଜି ହେଲେ । ମାମୁ ବସିରହି ଡ଼ାକ୍ତର-ଡ଼ାକ୍ତରଣୀ ଡ଼କେଇ ଆଣି

ଚିକିତ୍ସା ଆରମ୍ଭ କରାଇଲେ । ଡାକ୍ତରୀ ଚିକିତ୍ସାରେ ଆଉ ଯାହା ହେଉ ପଛକେ ମୋତେ ଆରାମ ମିଳିଲା । ଗୃହବନ୍ଦ ଧରି ଯେ ଶୋଷରେ ଅନବରତ ତଣ୍ଟି ଶୁଖିଯାଉଥିଲା, ପାଣି ଟୋପାଏ ପିଇବାକୁ ନ ପାଇ ପାନ-ରଖା ଓଦାକନାକୁ ପାଟିରେ ଜାକି ଶୋଷ ମେଣ୍ଟାଉଥିଲି, ସେହି ଶୋଷ ଗଲା । ସକାଳ-ସନ୍ଧ୍ୟାରେ ଗରଗର ନିଆଁରେ ଧାଈଙ୍କଦ୍ୱାରା ମୋ ପେଟ ଆଉ ସେକା ବନ୍ଦ ହେଲା । ଜ୍ୱର ହେତୁ କଷ୍ଟ ସାଙ୍ଗରେ ଶୋଷ କଷ୍ଟ ଓ ନିଆଁରେ ସେକା କଷ୍ଟ ମୋତେ ଅତିଷ୍ଠ କରୁଥିଲା ।

ପୁରୁଣା ପ୍ରଥା ଅନୁସାରେ ମା' ପାହାରୁ ଗ୍ରେଟପିଲା ଥିବା ମା'ଙ୍କୁ ଡାକଆଣି ଯେ ବୁଲୁକୁ ତାଙ୍କ ସ୍ତନରୁ ଦୁଧ ଖୁଆଉଥିଲେ, ତାହା ବନ୍ଦହେଲା । ବର୍ଷେ ଦେଢ଼ବର୍ଷ ବୟସର ପିଲାର ମା ଦୁଇ ତିନି ଦିନର ପିଲାକୁ ନିଜ ସ୍ତନରୁ ଦୁଧ ଖୁଆଉଥିଲେ । ତାହାର ଦୁଷ୍ପରିଣାମ ବୁଲୁ ପିଲାଦିନେ ଭୋଗିଛି । ମାମୁ ଆସିବାର ପୂର୍ବଦିନ ମୋ ଆଈ ଓ ମା ପ୍ରଥମକରି ମୋ ପାଖକୁ ଆସିଲେ । ପୂର୍ବରୁ ନ ଆସିବାର କାରଣ—ମୋ ବାହାଘରର କୋଡ଼ିଏ ଦିନରେ ମଝିଆଁ ମାମୁ ଓ ଚାଳିଶ ଦିନରେ ବାପାଙ୍କର ମୃତ୍ୟୁ ହେଲା । ପୁଅ ଓ ଜ୍ୱାଇଁଙ୍କ ମୃତ୍ୟୁରେ ଶୋକାଭିଭୂତା ମା ବିଛଣାରେ ପଡ଼ିରହିଥିଲେ । ବୁଲୁ ଜନ୍ମହେବା କଷ୍ଟ ମୁଁ ପାଇଲିଣି—ଏ ଖବର ପାଇବାମାତ୍ରେ ଆଈ ପ୍ରଥମକରି ବିଛଣାରୁ ଉଠି ଗାଡ଼ିଖାନାକୁ ଆସିଲା ଏବଂ ସଇସ ଓ କୋଚମ୍ୟାନକୁ ଡାକି ଗାଡ଼ି ଠିକ୍‌କରିବାକୁ କହିଲା । ବଡ଼ମାଈଁ ସେହି ଗାଡ଼ିରେ ସଙ୍ଗେ ସଙ୍ଗେ ଡାକ୍ତରାଣୀ ପାଖକୁ ଯାଇ ତାଙ୍କୁ ନେଇ ମୋ ପାଖକୁ ଆସିଲେ । ମାମୁଘରେ ବୁଲୁ ପ୍ରତି ଗୋଟାଏ ବିଶେଷ ସ୍ନେହ ଥିଲା । କାରଣ, ମାମୁ କହନ୍ତି—"ମୋ ମା ଘରେ ପଡ଼ିଥିଲା । ମୋ ମାକୁ ସେ (ବୁଲୁ) ବିଛଣାରୁ ଉଠେଇଛି ଓ କଥା କୁହାଇଛି ।" ମାମୁ ବୁଲୁକୁ ମନେ ମନେ ଏତେ ଗେହ୍ଲା କରୁଥିଲେ ଯେ ସେ ମାମୁଘରକୁ ଗଲେ ଯାହା ଇଚ୍ଛା ତାହା ସେ କରିବ—କେହି କିଛି କୁହନ୍ତି ନାହିଁ । ଥରେ ଆମେ ଲଞ୍ଚରେ ଧବଳେଶ୍ୱର ଯାଇଥିଲୁ । ଫେରିବାବେଳେ ଲଞ୍ଚ ଭିତରେ ମାମୁ ଓ ଅନ୍ୟମାନେ ବସି ଜଳଖିଆ ଖାଉଥିଲେ । କିଏ କ'ଣ ଟିକିଏ ଥଟ୍ଟାରେ କହିଦେଲା । ବୁଲୁ ସେଥିରେ ରାଗିଯାଇ ଗିଲାସ ଓ ତାଟିଆ ଥାଳି ଗୋଟି ଗୋଟି କରି ନଈକୁ ପକେଇ ଦେବାକୁ ଲାଗିଲା । ମାମୁ ଆଖି ଠାରି ସମସ୍ତଙ୍କୁ ଜଣାଇଲେ ତାକୁ ପକାଇବାକୁ ଦିଅ— ସେ ଯେତେ ପକଉଛି ପକଉ । ମୋ ବାହାଘର ପରେ ମଝିଆଁ ମାମୁ, ବାପା, ତାହାପରେ ମୋ ଶ୍ୱଶୁରଙ୍କର ମୃତ୍ୟୁ ହୋଇଥିବାରୁ ତିନୋଟି ଘରେ ସମ୍ପୂର୍ଣ୍ଣ ବିଷାଦର ଛାୟା ଘୋରି ରହିଥିଲା । ବୁଲୁ ଜନ୍ମ ହେଲାରୁ ସମସ୍ତଙ୍କ ମନରୁ ସେ ବିଷାଦ ଦୂରହେଲା । ସେଥିପାଇଁ ବୁଲୁ ତିନିଘରେ ଏତେ ସ୍ନେହ ଆଦରର ପାତ୍ର ହେଲା ଯେ ନାତି, ଭଣଜା, ପୁତୁରା ହିସାବରେ ଆତ୍ମୀୟସ୍ୱଜନଙ୍କଠାରୁ ଏତେ ସ୍ନେହ ପାଇବା କେଉଁଠି ଦେଖାଯାଏ ନାହିଁ । ମୃତବ୍ୟକ୍ତିମାନଙ୍କର ତିନି ପରିବାର ଓ ସେମାନଙ୍କର ସମ୍ପୃକ୍ତ ପରିବାରରୁ ବୁଲୁର ଆବିର୍ଭାବ ସେ ବିଷାଦର ଛାୟା ଦୂର କରିଦେଲା—ଏ କଥା ସମସ୍ତେ କହିଲେ ଏବଂ ବୁଲୁର ଉପକାରିତା ମାନି ତାକୁ ସ୍ନେହାଦରରେ ବୁଡ଼େଇଥିଲେ ।

ମାମୁଘର କଥା କହିବାକୁ ଯାଇ ମୁଁ ଜଣକର କଥା କହି ନାହିଁ । ସେ ହେଉଛନ୍ତି ମୋ ମାଉସୀ, ତାଙ୍କେ ଅପା ବୋଲି, କତ୍ୟାନନ୍ଦ କାନୁନ୍ଗୋଙ୍କ ମା, ହେମନ୍ତକୁମାରୀ — ତାଙ୍କର ଡାକନାମ ଥିଲା ହାଡ଼ । ଆଈଙ୍କର ସେ ହେଲେ ଦଶମ ସନ୍ତାନ । ସେ ଓ ମୋ ମା ମାତ୍ର ବର୍ଷକର ସାନବଡ଼ । ସେତେବେଳେ ଜେଜେଙ୍କ ସହିତ ଫକୀରମୋହନ ସେନାପତିଙ୍କର ଘନିଷ୍ଠ ସମ୍ପର୍କ ଥିଲା ଗଡ଼ଜାତ ଶାସନ ଯୋଗୁଁ । ସେମାନଙ୍କ ପାଖରେ ମା ଓ ଆପା 'ପାଲି' 'ହାଡ଼' ନାମରେ ପରିଚିତ ଥିଲେ ।

## ୬ । ବିବାହ

୧୯୧୪ ନଭେମ୍ବର ଏଗାର ତାରିଖରେ ମୋର ବାହାଘର ହେଲା । ବାପା ଓ ଶ୍ୱଶୁର ପଡ଼ାସାଙ୍ଗ । ଶ୍ୱଶୁର ବଡ଼ବାପାଙ୍କ ପାଖରେ ଜୁନିଅର ଓକିଲ ଥିଲେ । ପିଲାଦିନରୁ ଆମର ଘରବର ଯିବାଆସିବା । ବାପାଙ୍କର ପ୍ରଥମ ପତ୍ନୀ ଶାଶୁଙ୍କ ସାଙ୍ଗରେ ବନ୍ଧୁ ବସିଥିଲେ । ସେଥିପାଇଁ ମୋ ଆଈଶାଶୁଙ୍କୁ ଝିଅ ସମ୍ପର୍କ କରି, ରଜ କୁମାରପୂର୍ଣ୍ଣିମା ଭାଇବୋଉର ଉଆଁକଥା ମଧ୍ୟ ଚାଲୁଥିଲା । ମୋ ମା ଓ ମାଉସୀ ସ୍କୁଲରୁ ଫେରିବାବେଳେ ଶାଶୁ ତାଙ୍କୁ ବାଟରୁ ଡାକନେଇ ମୁଣ୍ଡ ବାନ୍ଧଦେଇ ଜଳଖିଆ ଖୁଆଇ ଛାଡ଼ନ୍ତି । ମା ଓ ଅପା ଦୁହେଁ କହିବାର ଶୁଣିଛି — ଚୌଧୁରାଣୀଙ୍କ ପାଖରେ ସୋମବାର ଦିନ ତାଙ୍କର ଯେଉଁ ସୋମବାର ଅରୁଆଭାତ ସ୍କୁଲରୁ ଫେରି ଖାଉ, ସେପରି ସୁଆଦ ଆଉ କେଉଁଥିରୁ ପାଉନାହିଁ । ସେତେବେଳେ କଟକରେ ଅଳ୍ପ କେତୋଟି ଅଭିଜାତ ପରିବାର ରହୁଥିଲେ । ତା' ମଧ୍ୟରେ ଗୋଟିଏ ସୁଦାମ ନାୟକଙ୍କ ଘର । ସୁଦାମବାବୁ ଗଡ଼ଜାତରେ କାମକରୁଥିଲେ । ଗଡ଼ଜାତ ରଜାଙ୍କ ଜିନିଷ-ପତ୍ର, ଖୁବ୍ ଦାମୀ ଦାମୀ ଗହଣା ଓ ପାଟ ତାଙ୍କଘରେ ବହୁତ ଦେଖିବାକୁ ମିଳୁଥିଲା । ସୁଦାମବାବୁଙ୍କ ପରି ସ୍ନେହୀ ଲୋକ ସାଧାରଣତଃ ଦେଖାଯାନ୍ତି ନାହିଁ । ମୋ ଶାଶୁଙ୍କୁ ସୁଦାମ-ବାବୁ ଝିଅ କରିଥିଲେ । ତାଙ୍କଠାରୁ ଓ ଆମଘରୁ ମଧ୍ୟ ଶୁଣିଛି ସୁଦାମବାବୁଙ୍କ ସ୍ତ୍ରୀ ସମସ୍ତଙ୍କୁ ସ୍ନେହ କରୁଥିଲେ । ତାଙ୍କ କଥା କୁଆଡ଼େ ଯେ ଶୁଣିଥିବ ସେ ତାଙ୍କୁ ଭୁଲିପାରିବ ନାହିଁ । ରକ୍ତସମ୍ପର୍କ ନ ଥିଲେ ମଧ୍ୟ କଟକ ସହରରେ ସେତେବେଳେ ଏହିପରି ଅଳ୍ପ କେତୋଟି ପରିବାର ପାରିବାରିକ ସ୍ନେହବନ୍ଧନରେ ଚଳୁଥିଲେ ।

ବାପାଙ୍କର ଜନ୍ମଦିନ ଦିନ ମୁଁ, ଅପା ଓ ଦୁର୍ଗାଅପା ବାପାଙ୍କୁ ନୂଆଲୁଗା ପିନ୍ଧାଉ । ପିଠା କରି ନାଗିଦେଉ । ଟିମଅପା ବାହାହୋଇ ଶାଶୁଘରେ ଥାଏ । ଦୁର୍ଗାଅପା (ମୋ ପିଉସୀ) ମରିଯାଇଥାନ୍ତି, ତେଣୁ ବାପାଙ୍କ ଜନ୍ମଦିନ କାମର ଦାୟିତ୍ୱ ଏକା ମୋ ଉପରେ । ପିଠା କରିବାରେ ସମସ୍ତେ ସାହାଯ୍ୟ କରୁଥାନ୍ତି । ମୁଁ ଭାବୁଥାଏ କାମଟା ମୋର । ନୂଆ ଲୁଗା ଓ ଚାଦର କୁଞ୍ଚେଇକରି ବାପାଙ୍କୁ ପିନ୍ଧିବାକୁ ଦେଲି । ଭୋଗ ଦେବାପାଇଁ ସବୁ ସଜାଡ଼ିଲି । ବାପାଙ୍କ କପାଳରେ ଚନ୍ଦନ ଲଗାଇଦେଲି । ପିଠା ପାଣିଛଡ଼େଇଦେଇ ବାପା ଝିଅ

ଖାଇବସିଲୁ । ଆମ ଖିଆ ଅଧା ହେଲାବେଳକୁ ଦାଣ୍ଡରେ 'ଗୋପାଳ' 'ଗୋପାଳ' ଡାକ ଶୁଭିଲା। ବାପା ବଡ଼ ପାଟି କରି କହିଲେ, "ତୁ ବସ୍, ମୁଁ ଖାଇବସିଛି। ଖାଇସାରି ଯାଉଛି।" ବାପା ମା'ଙ୍କୁ କହିଲେ "ଗୋକୁଳାନନ୍ଦ ଆସିଛି।" ଖାଇସାରି ବାପା ବୈଠକଖାନାକୁ ଗିବା ମାତ୍ରେ ଶ୍ୱଶୁରଙ୍କ ପାଟି ଶୁଭିଲା । ସେ ବଡ଼ ପାଟି କରି କହିଲେ, "ତୁ ମତେ ନ ପଚାରି ଝିଅ ବାହାଘର କଥା ଅନ୍ୟ ଜାଗାରେ ପକାଇଛୁ ?" ତା'ପରେ କଣ କଥାବାର୍ତ୍ତା ହେଲା ମୁଁ ଜାଣେନାହିଁ । ତା'ର କେତେଦିନ ପରେ ଜାଣିଲି ଯେ ସେଠି ମୋ ବାହାଘର କଥା ଠିକ୍ ହେଲା । ମୋ ବାହାଘର ପ୍ରସ୍ତାବରେ ସମସ୍ତେ ଖୁସି । ସବୋପରି ବଡ଼ବାପା ଖୁବ୍ ଖୁସି ବୋଲି କୁହାକୁହିହେଲେ । ତା' ମଧ୍ୟରେ ଗୋଟିଏ ପ୍ରଶ୍ନ ଉଠେ—ବେଲୁ ଚଳିବ କେମିତି ? ମା'ର ସାଙ୍ଗ ଚନ୍ଦ୍ରଭାଗା, ଶ୍ରୀମୁଖ ଏମାନେ କହନ୍ତି ବାହାଘର ଭାଙ୍ଗିଦିଅ । ମା' କିନ୍ତୁ ଶାନ୍ତ ଭାବରେ କୁହେ—"ଝିଅ ଯଦି ଗୁଣର ହେବ ସବୁ ଚଳେଇନେବ ।"

ହଠାତ୍ ଦିନେ ଧାଈ ଆସି ପହଞ୍ଚିଲେ । ଧାଈଙ୍କୁ କି ଆଦର ଯତ୍ନ ! ସେ ମୋ ଶ୍ୱଶୁରଙ୍କ ବାପାଙ୍କ ରକ୍ଷିତା ସ୍ତ୍ରୀ । ତାଙ୍କ ବ୍ୟବହାର ଭାରି ମର୍ଯ୍ୟାଦାପୂର୍ଣ୍ଣ । ମୁଁ ପିଲାଦିନେ ମା ଓ ଆଈ ସାଙ୍ଗରେ ଶାଶୁଘରକୁ ଯାଇଛି—ତେଣୁ ଦେଖିବା ପ୍ରଶ୍ନ ତ ନାହିଁ । କ୍ରମେ ବାହାଘର ଦିନ ନିକଟ ହେଲା । ବାହାଘରର କିଛିଦିନ ପୂର୍ବରୁ ଆମେ ଗାଁକୁ ଗଲୁ । ବାହାଘରକୁ ମଝିଆଁ ମାମୁ ଓ ମାଈଁ ଆସିଲେ ନାହିଁ । ମଝିଆଁ ମାମୁ ସେତେବେଳକୁ ଶକ୍ତ ବେମାର । ମଝିଆମାଈଁ ମଧ୍ୟ ସେଥିପାଇଁ ଆସି ନ ଥିଲେ । ବାହାଘର ହେଲା ମାର୍ଗଶିର ମାସ ପ୍ରଥମାଷ୍ଟମୀ ଦିନ । ସେଦିନ ସକାଳେ ମା ମୋ ପାଖରେ ଆସି ବସିଲା । କେତେଦିନ ଆଗରୁ ସେ ଓ ବାପା ମୋ ମୁହଁକୁ ଚାହିଁପାରୁ ନ ଥାନ୍ତି କି ମୁଁ ମଧ୍ୟ ତାଙ୍କ ମୁହଁକୁ ଚାହିଁପାରୁନଥାଏ । ମା ସେତେବେଳେ ଲୁହକୁ ଖୁବ୍ ସମ୍ଭାଳି କରି ମୋ ପିଠି ଆଉଁଷି ଦେଇ ଦେଇ କହିଲା "ଆଜିଠାରୁ ତୋର ପିଲାଦିନିଆ କଥା ସରିଗଲା । ଆଜି ଯେ ତୋର ପର ହୋଇଛନ୍ତି, କାଲି ସେ ତୋର ଆପଣାର ହେବେ । ତୁ ତାଙ୍କୁ କେତେ ଆପଣାର କରିବୁ ସେ କଥା ତୋ ଉପରେ ନିର୍ଭର କରେ । କେତୋଟି କଥା ମନେରଖି ଚଳିଲେ ମନରେ ଦୁଃଖ ପାଇବୁ ନାହିଁ । କିଏ ତୋତେ କେତେ ଭଲ ପାଉଛି, ସ୍ନେହାଦର କରୁଛି କି ଭଲ ବ୍ୟବହାର କରୁଛି ସେ କଥା ପ୍ରତି ଆଦୌ ଦୃଷ୍ଟି ନ ଦେଇ ତୁ ସମସ୍ତଙ୍କୁ ଭଲପାଇବୁ । ତୋର ଦିଅର, ନଣନ୍ଦ, ଭଣଜା ଅଛନ୍ତି ତାଙ୍କୁ ଆଦର ଯତ୍ନ ଯେତେଦୂର କରାଯାଇପାରେ କରିବୁ । ସମସ୍ତଙ୍କର ସେବା ଯତ୍ନ କରିବୁ । ତୋତେ ଅନେକ କଡ଼ା କଥା ଶୁଣିବାକୁ ହେବ । ତୋ ମନକୁ ତୁ ଠିକ୍ ରଖିବୁ ଯେପରି ତୋ ପାଟିରୁ କେବେହେଲେ କଡ଼ା କଥା ବାହାରିବ ନାହିଁ । କିଏ କିପରି କଥା କହିଲା, କିଏ କିପରି ବ୍ୟବହାର କଲା, ସେଗୁଡ଼ାକ ଆଦୌ ମନରେ ଧରିବୁ ନାହିଁ । ତୋ ଶାଶୁ ଭାରି କଡ଼ା ଲୋକ । ତାଙ୍କ ମୁହଁରୁ ତୋ ପ୍ରଶଂସା ଶୁଣିଲେ ଆମେ ଧନ୍ୟ ହେବୁ ।" ସେ କଥାଗୁଡ଼ିକ ଦିନଯାକ ଭାବୁଥାଏ । ମା ଓ ବଡ଼ମାଈଁ ମଝିଆଁ ମାମୁଙ୍କ ଦେହ ବେମାର ଯୋଗୁ ଭାରି ବ୍ୟସ୍ତ ହେଉଥାନ୍ତି । ମଝିଆଁ ମାମୁ ଆଗରୁ କହୁଥିଲେ "ଗୋକୁଳାନନ୍ଦଟା ବଡ଼ ଭାଗ୍ୟବାନ୍, ଏପରି ବୋହୂ

ପାଇଲି ।" ବଡ଼ମାମୁ କହିଥିଲେ, "ମୁଁ କଟକରେ ତ ରହିବି, ଘର ପାହିଲେ ତୋ ଖବର ଆଗେ ନେଇଲେ ପଛେ ଯୋଉ କଥା । କିନ୍ତୁ ତୋ କଥା ଯେପରି ମୋତେ ଶୁଣିବାକୁ ନ ପଡ଼ିବ । ତୋ ଶାଶୁ ଖୁବ ରାଗୀଲୋକ । ତାଙ୍କ ପାଖରେ ତୁ ଯଦି ଭଲରେ ଚଳିବୁ ତୋର ଜୀବନଟା ଭଲହୋଇଯିବ । ତାହେଲେ ସମସ୍ତଙ୍କୁ ନେଇ ଚଳିପାରିବୁ ।" ସମସ୍ତେ ମନେ ମନେ ଭାବନ୍ତି—ଶାଶୁ ତ ରାଗୀ ଇଏ କେମିତି ଚଳିବ ! ମା'ଙ୍କୁ ତା'ର ସାଙ୍ଗମାନେ କହନ୍ତି—ଝିଅ କେମିତି ସେଠି ଚଳିବ ? ଚୌଧୁରାଣୀ ତ ଖୁବ ରାଗୀଲୋକ ' ଏସବୁ ଶୁଣି ମୁଁ ଚୁପ୍ ରହୁଥାଏ । ସେ ବିଷୟରେ କିଛି ଭାବୁ ନ ଥାଏ । ବାହାଘର ଯଥାସମୟରେ ସରିଲା । ବାହାଘର କୁଆଡ଼େ ଖୁବ୍ ଧୂମ୍‌ଧାମ୍‌ରେ ହେଲା ବୋଲି କହନ୍ତି । ବରପକ୍ଷର ବରଯାତ୍ରୀଙ୍କ ସହ ଯେଉଁ ଲୋକ ବାହାଘର କାମରେ ଆସିଥିଲେ, ସେମାନଙ୍କ ଠାରୁ ମୁଁ ପରେ ଶୁଣିଛି ଯେ ଏତେ ଭଲ ଖାଇବାକୁ ସେମାନେ ଆଉ କେଉଁଠି ପାଇନାହାନ୍ତି । ମୋ ମା'ର ସେ ଗୋଟାଏ ସଉକ ଥିଲା—ଗଉଡ଼, ଭଣ୍ଡାରୀ, ବାଜାଦାର, ପୁରୋହିତ ଆଦି ନାଜମାନ୍ତିମାନେ ଯେପରି ମନଇଚ୍ଛା ମାଛ, ଖିରି ଓ ଆରିସା ପିଠା ଖାଇବାକୁ ପାଇବେ ।

ମୋର ତ ଏକମାତ୍ର ଚିନ୍ତା ମୁଁ ମା'ଙ୍କୁ ଛାଡ଼ି କେମିତି ରହିବି ? ମଙ୍ଗଳପାକ ଦିନ ମୁଁ ଓ ମୋ ଅପା ଗୋଟିଏ ସବାରିରେ ଗୁଣ୍ଡେଶ୍ୱରଙ୍କ ମନ୍ଦିରକୁ ଯାଇ ମହାଦେବ ଓ ପାର୍ବତୀଙ୍କୁ ଦର୍ଶନ କରି ଆସିଲୁ । ତା' ପୂର୍ବରୁ ଦଶବାର ଦିନ କନିଆ ଡ଼ାକରେ ଗଲା । ହିମଅପା ବାହା-ଘରକୁ ଦୁର୍ଗାଅପା ଥିଲା, ସେ ମରଯାଇଥିବାରୁ ତା ଅଭାବ ବିଶେଷଭାବରେ ଲାଗୁଥାଏ । ଶେଷରେ ରାତିରେ ପହଞ୍ଚିଲି । ସକାଳେ ସବାରିରେ ବସିଲି, ରାତିରେ ଓହ୍ଲାଇଲି । ଗୋଟିଏ ଦୁଇଟି ଘଟଣା ମୋ ମନକୁ ବ୍ୟଥିତ, ଚିନ୍ତାଗ୍ରସ୍ତ କରିଦେଇଥାଏ । ଶାଶୁଘରୁ ଧାଈମାନେ ବର ସାଙ୍ଗରେ ଯା'ନ୍ତି । ସେହି ପ୍ରଥା ଅନୁସାରେ ଆମ ଧାଈ ଯାଇଥିଲେ ବରଯାତ୍ରୀ ଗହଣରେ । ଧାଈ ଆମ ଘରେ କହିଲେ ଯେ ବାହାଘର ସରିଲା, ଏଣିକି ବୋହୂ ଆମ ପ୍ରଥା ଅନୁସାରେ ଚଳିବ । ସେ ଜୁଡ଼ା ପାରିକରି ଓ କଚ୍ଛା ମାରି ଲୁଗା ପିନ୍ଧିକରି ଯିବ । ଏ କଥା ଶୁଣି ଆମଘରେ କାନ୍ଦବୋବାଳି ପଡ଼ିଗଲା । ମା, ମାଈଁ, ମାଉସୀ ଓ ଆଈ ଚିନ୍ତାଗ୍ରସ୍ତ ହେଲେ, ମାତ୍ର ସ୍ଥିରହେଲା ଯେ ତାଙ୍କ ଘର ବୋହୂ, ତେଣୁ ସେ ଯାହା କହୁଛନ୍ତି ସେୟା ହେବ । ଧାଈଙ୍କ କଥା ରହିଲା । ମା ମୋତେ କହିଲ, "ଏହିପରି ଅନେକ କଥା ତୋତେ ତୋ ଇଚ୍ଛା ବିରୁଦ୍ଧରେ କରିବାକୁ ପଡ଼ିବ—ସେଗୁଡ଼ାକ କରିଯିବୁ—ମାତ୍ର ମନରେ ରାଗ ରଖିବୁ ନାହିଁ । ଯେ କୌଣସି କାମ କରିବାକୁ ପଡ଼ିଲେ ଆସିବ ନାହିଁ ବା ପାରିବ ନାହିଁ କହି ମନା କରିବୁ ନାହିଁ । ଖାଇବାରେ ସୁଆଦ ଅସୁଆଦ କେବେ କହିବୁ ନାହିଁ—ଯାହା ଦେବେ ତା ଖୁସିରେ ଖାଇବୁ । ଯାହା ନାଇବାକୁ ପିନ୍ଧିବାକୁ ଦେବେ ବା କହିବେ ତା ନାଇବୁ, ପିନ୍ଧିବୁ । ବାଧରେ ପିନ୍ଧୁଛୁ ବା ବଳକରେ ପିନ୍ଧୁଛୁ, ନାଇଛୁ ବୋଲି ଯେପରି ସେମାନେ ନଭାବିବେ । ଯାହା କାମ ଦେବେ ପାରୁ କି ନପାରୁ ତାକୁ କରିବୁ ।" ଏ କଥାକୁ ତ ମୁଁ ବେଦବାକ୍ୟ ବୋଲି ମନେକଲି । କିନ୍ତୁ ଯେତେବେଳେ ବିଦାୟ ହେବା ପୂର୍ବରୁ ମୋ ମୁଣ୍ଡରେ ଜୁଡ଼ା ପାରିଦେଲେ, ସେତେବେଳେ ମୁଁ ସମ୍ଭାଳି ପାରିଲି ନାହିଁ ।

ଆମ ଘରେ ତ କେହି ଜୋତା ପାଦ ଜାଣନ୍ତି ନାହିଁ—କିଏ ଆସି ପାରିବେନି । ରାଧାମଣି ମାଉସୀଙ୍କ କଥା ମନେପଡ଼ିଲା । ସେ ମୋ ମା'ଙ୍କୁ 'ଚନ୍ଦ୍ରଭାଗା' ଡାକନ୍ତି । ସେ କହନ୍ତି "ଚନ୍ଦ୍ରଭାଗା, ଟେଲିଙ୍କୁ ତ ଏପରି ବଢ଼ାଇଛ, ସେ ଚୌଧୁରାଣୀଙ୍କ କଥା ସମ୍ଭାଳି ପାରିବ ତ ? ମୁଁ ତ କଟକ ଆସି ପ୍ରଥମ ପ୍ରଥମ ତାଙ୍କର ପାଖରେ ଚଳିଲି । ସେ ମୋର ମୁରବି ଥିଲେ । ତାଙ୍କ ପାଖରେ ଚଳିବା କଷ୍ଟ ।" ମା ତାଙ୍କୁ କଣ ଜବାବ ଦିଏ ମନେନାହିଁ । ବାହାଘର ପରଦିନ ପୀତବାସ ମଉସା ଓ ଜଗବନ୍ଧୁ ମଉସା ମୋ ପାଖକୁ ଆସି ମୋତେ କହିଲେ, ମାଉସୀମାନେ ତାଙ୍କୁ କହିଥିଲେ ମୋ ପାଖରେ ବସି ମୋତେ ଦେଖିଯିବା ପାଇଁ । ମୋ ପାଖରୁ ଉଠିଯାଇ ଆଈଙ୍କୁ କହିଲେ—"ଏ ଝିଅ ତାଙ୍କ ଘରେ କେମିତି ଚଳିବ ?"

ଏଣେ ଆମ ଘରେ ଭାଳେଣି ପଡ଼ିଛି—ମୁଁ ଶାଶୁଘରେ କେମିତି ଚଳିବି ? ତେଣେ ଶାଶୁଘରେ ଭାଳେଣିପଡ଼ିଥାଏ ଯେ କିରସ୍ତାନ ଘରର ଝିଅ ଆସି କେମିତି ଚଳିବ ? ଶ୍ୱଶୁର ଯେତେବେଳେ ଶାଶୁଙ୍କୁ ମୋତେ ବୋହୂ କରିବାର କଥା କହିଲେ, ଶାଶୁ ଦୁଇଟି କଥାରେ ଆପତ୍ତିକଲେ । ଗୋଟିଏ ହେଉଛି ଯେ ମୋ ମାର ପୁଅ ନାହିଁ—କାଳେ ମାଈଁଓଲା ଆଣି ମୋର ପୁଅ ନ ହେବ । ଅନ୍ୟଟି ମୁଁ କିରସ୍ତାନ ଘରେ ଚଳିଛି—ଜୋତା ମୋଜା ମାଡ଼େ । ମଧୁ ବାରିଷ୍ଟର ଘରେ ରହେ । ମୁଁ ଶାଶୁଙ୍କ ରୁଚି ଅନୁସାରେ ଚଳି ପାରିବି କି ନାହିଁ । ତାହା ଉପରନ୍ତୁ ଭାଇ-ବରାଦର ଓ ବନ୍ଧୁ ବାନ୍ଧବ କହିବେ ଯେ ପ୍ରଥମ ବୋହୂଟି ଖ୍ରୀଷ୍ଟିୟାନ୍ ଘରୁ କଲ । ଶ୍ୱଶୁର ବୁଝେଇବାଝେଇ ସେ ଆଶଙ୍କା ମନରୁ ଦୂର କଲେ । ପ୍ରକୃତରେ ତାହା ହିଁ ହେଲା । ପ୍ରାୟ ସମସ୍ତେ ଗୃହିଁରହିଥାନ୍ତି ଯେ କିରସ୍ତାନ ଘର ଝିଅ କମିତି ଚଳପ୍ରଚଳ ହେବ, ଶାଶୁଙ୍କୁ ମାନିବ କି ନାହିଁ, ଇତ୍ୟାଦି । ବାହାଘର ପରଦିନ ଗୁରୁବାର ବୋଲି ବାପଘରେ ରହିଲି । ଶୁକ୍ରବାର ସକାଳେ ବିଦାହେଲି । ଗଉଡ଼ମାନେ ଖୁବ୍ ଜୋର୍‌ରେ ଗୃଳିଥାନ୍ତି । ବାପା ସବାରି ବାଡ଼ ଧରି ଅଳ୍ପ ଟିକିଏ ବାଟ ଆସି ମୋ ମୁଣ୍ଡକୁ, ଦେହକୁ ଆଉଁସିଦେଇ ଗ୍ରୁଡ଼କରିଗଲେ । ବହୁତ୍ଦୂର ପର୍ଯ୍ୟନ୍ତ ଲୋକ ଠାଆକୁଠାଆ ଠିଆ ହୋଇଥାନ୍ତି ଦେଖିବାପାଇଁ । ସାରାଦିନ ସବାରିରେ ବସିରହିଥାଏ—ପାଣି ସୁଦ୍ଧା ପିଇନାହିଁ । ଦେହ ବହୁତ କ୍ଳାନ୍ତ । ଖରାବେଳେ ଆସ୍ତିପୁରରେ ସମସ୍ତେ ଖାଇଲେ । ଆମଘର ଲୋକ ଭାବରେ ଆମଘରେ କାମ କରୁଥିବା ବୁଧୀ ମୋ ସବାରି ଧରି ଆମଗାଁରୁ ଖୋରସଯାଏ ଗଉଡ଼ ସାଙ୍ଗରେ ସମାନ ଗୃଳିଥାଏ । ମୋତେ ଜଳଖିଆ ଖାଇବାକୁ, ପାଣି ପିଇବାକୁ ଆସ୍ତିପୁରରେ ବୁଧୀ ବହୁତ ଲଗାଇଲା । ମୁଁ ଖାଇଲି ନାହିଁ କମ୍ବା ପିଇଲି ନାହିଁ । ସବାରି ଖୋରସ ଦାଣ୍ଡରେ ଥୁଆହେଲା । କେତେ ରାତି ହେବ କେଜାଣି, ବହୁତ ରାତି ପରି ମନେ ହେଉଥାଏ, ଅନେକ ଲୋକଙ୍କ ପାଟି ଶୁଭୁଥାଏ । ମୁଁ ପହଞ୍ଚିଲି ମାତ୍ରେ ମହିଳା ଗୁରୁଜନ-ମାନଙ୍କର ଯେ ମୋ ଉପରେ ସତର୍କ ଦୃଷ୍ଟି ରହିଛି, ତାହା ଜାଣିପାରିଲି । ସବାରି ପହଞ୍ଚିବା ମାତ୍ରେ ଜେଠେଇ ବଡ଼ପାଟିକରି କହିଲେ—"ସବାରି ଭିତରେ ମୁଁ ଆଗ ବୋହୂ ମୁହଁ ଦେଖିସାରିଲା ପରେ ଆଉ ଯାହା ହେବ ।" ମୋ ମୁହଁ ଦେଖିସାରି କହିଲେ—"ମାଗୁଣୀ ବୋଉତ ଦେଖିଗୃହିଁକରି ବୋହୂ କରିଛନ୍ତି, ଏକା ମାନିଲେ ହେଲା !"

ପରଦିନ କାଣିଲି ବହୁତ ଲୋକ, ବଡ଼ ନଣନ୍ଦମାନେ, ପିଉସୀ-ଶାଶୁ, ତାଙ୍କ ଝିଅମାନେ ଆସିଛନ୍ତି । ସମସ୍ତଙ୍କ ମନ ସନ୍ଦିଗ୍ଧ ଯେ କରସ୍ତାନ ଘରର ଝିଅ କପରି ଚଳିବ, ଆମ ଢଙ୍ଗରେ ଚଳିବ କମ୍ବା ତାହାର ବାପଘର ଢ଼ଙ୍ଗରେ ଚଳିବାକୁ ଗ୍ରହିବ । ଏହି କଥା ପରସ୍ପର ଭିତରେ କଥାବାର୍ତ୍ତା ହେବା ବି ମୋ କାନରେ ପଡ଼ୁଥାଏ । କାହାରି ସାଙ୍ଗରେ କଥାବାର୍ତ୍ତା କହିବା ପ୍ରଶ୍ନ ତ ନ ଥାଏ । ମୁଁ ଚୁପ୍ ହୋଇ ବସି ଭାବୁଥାଏ ଏମାନଙ୍କୁ କେମିତି ସନ୍ତୁଷ୍ଟ କରିବି ? ଏହା ହେଲା ମୋର ଧୈର୍ଯ୍ୟ । ଆମଘରୁ ଗୋଟିଏ ବାକ୍ସରେ ମନୋହାରୀ ଜିନିଷମାନ ଯାଇଥିଲା । ମା (ଶାଶୁ ) ବାକ୍ସ ଫିଟାଇ ଦେଖିବା ପାଇଁ ସମସ୍ତଙ୍କୁ ଡ଼ାକିଲେ ଏବଂ ଯେ ଯେଉଁ ଜିନିଷ ପସନ୍ଦ କଲେ ସେ ତାକୁ ଦେଲେ ।

ଗୁରୁଜନମାନଙ୍କୁ ଚନ୍ଦନ-କାମ କରି ସେଥିରେ ଚନ୍ଦନ ଦେବାକୁ ହେବ । ଯେମାନେ ଗାଧୋଇସାରି ଆସିବାବେଳକୁ ଝିଅମାନେ ନେଇ ଚନ୍ଦନ-ପେଡ଼ି ବା ଥାଳିଆରେ ଚନ୍ଦନ-କାମ ଭିତରେ ଚନ୍ଦନ ଥିବା ଥାଳିଆ ବା ପେଡ଼ି ଦେବେ । ମାଉଅପା ବଡ଼ ଝିଅମାନଙ୍କୁ ଚୁପ୍‌କରି କହିଲେ, "ସେ ତ ସହରରେ ବଢ଼ିଛି, ସେ ଚନ୍ଦନ-କାମ କମା ଜାଣି ନଥିବ । ତମେମାନେ ଗୋଟିଏ ଗୋଟିଏ କରିଦିଅ । ମୋ, ଚଞ୍ଚଳାହେଉଛୁ ଚଡ଼ ବଡ ଝିଅମାନେ ଚନ୍ଦନ-କାମ କରି ଗୁରୁଜନମାନଙ୍କୁ ଦେବାପାଇଁ ନେଲେ । ନେଲାବେଳେ ବଡ଼ ଖୁଡ଼ୀ (ଶାଶୁ) ଡାକି କହିଲେ, "ଦେଖେଇଲ ବୋହୂ କେମିତି ଚନ୍ଦନ କାମ କରିଛୁ ?" ଚନ୍ଦନ କାମ ଦେଖି ସାଙ୍ଗେ ସାଙ୍ଗେ ଗୋଟିଏ କାଠି ଓ ଟିକିଏ ଚନ୍ଦନ ଆଣି ମୋତେ ଦେଇ କହିଲେ—ଏ ପେଡ଼ିରେ ତମେ ଗୋଟିଏ ଗାର ପକେଇଦିଅ । ମୁଁ ଗୋଟିଏ ଗାର ପକେଇ ଦେବାମାତ୍ରେ କହିଲେ—"ଚନ୍ଦନ-କାମ କଏ କରିଛୁ ଜଣାଗଲା ।" ମାଉ ଅପା କହିଲେ —"ଖୁଡ଼ି , ସେଗୁଡ଼ାକ ସେ କେଉଁଠୁ ଜାଣିବ ? ସମସ୍ତେ ତାକୁ ଚଳେଇ ନେବେ ନା ତମେ ଏମିତି କହିବ ?"

ଚନ୍ଦନ-କାମରେ ସିନା ହାରିଲି, ଯେଉଁ ରୁଚି ଅନୁସାରେ ପାନ ଭାଙ୍ଗି ଦେବା, ମୁଣ୍ଡ ବାନ୍ଧିଦେବା କାମରେ ପୂରାକୁ ପୂରା ପାସ୍ ହେଲି । ବିଶିଷ୍ଟ ପାନ ଖାଇବା ଲୋକେ ପ୍ରଶଂସା ବି କଲେ । ନଣନ୍ଦମଣି ଅପାଙ୍କ ମନକୁ କାହାରି ପାନ-ଭଙ୍ଗା ଅସୁନଥାଏ । ସେ ମୋତେ କହିଲେ, "ତୁ ମୋ ପାନ ଏମିତି ଭାଙ୍ଗି ଦେ ।" ମୁଁ ତାଙ୍କ ପାନ ଭାଙ୍ଗିଲି ।

ବସିବା, ଉଠିବା, ଚାଲିବା, ଖାଇବା ସବୁ କଥାକୁ ତୀକ୍ଷ୍ଣ ଦୃଷ୍ଟିରେ ସହିତ ଲକ୍ଷ୍ୟ କରା-ଯାଉଥାଏ । ମୁଁ ଖୁବ୍ ସାବଧାନ ହୋଇ ଚଳେ ଯେପରି କୌଣସି କଥାରେ ଅସଣୁଣା ଦେଖା ନ ଯିବ । ମା'ର କଥାକୁ ମନେରଖି ଭଲ ନ ଲାଗୁଥିବା ଜିନିଷକୁ ମଧ୍ୟ ଖୁସିରେ ଖାଇଲି । କାରଣ ତାହାପର ଦିନ ସକାଳେ ମା କହିଥିଲା—"ଶାଶୁଘରେ ଯାହା ଖାଇବାକୁ ଦେବେ ଖୁସି ହୋଇ ଖାଇବୁ ।" ଏମିତି ପନ୍ଦର ଦିନ କଟିଲା । କଥାବାର୍ତ୍ତା କାହାରି ସାଙ୍ଗରେ ହେବାକୁ ନଥାଏ । ଚୁପ୍‌ଚାପ୍ ବସିରହିଥାଏ । ମନେ ମନେ ଭାବୁଥାଏ ବ୍ୟାପାର ସହଜ ନୁହେଁ । ଏମାନଙ୍କୁ ଖୁସି କରିବାକୁ ହେଲେ ମୋର ବୋଲି କିଛି ରହିବ ନାହିଁ । ଏମାନଙ୍କୁ ସନ୍ତୁଷ୍ଟ

କରିବା ହିଁ କାମ ହେବ । ଦିନ ପନ୍ଦରଟା ଭିତରେ ମୋର ବୟସ ଯେପରି ଅନେକ ବଢ଼ିଗଲା । ପିଲାବୁଦ୍ଧି କୁଆଡ଼େ ଗୁଡ଼ିଗଲା । କାହାପାଇଁ କ'ଣ କଲେ ସେ ଖୁସି ହେବ, ଏହା ହେଲା ମୋର ପ୍ରଧାନ ଚିନ୍ତା । ଖାଇବା ପିନ୍ଧିବା ଆଦିରେ ସଉକ କୁଆଡ଼େ ଉଭେଇଗଲା ମୁଁ ଜାଣିପାରିଲି ନାହିଁ ।

ପାଇଖାନା ଯାଇ ଦେଖିଲି ଡାଟି ଯେସ୍ତୋଇ ତାହା ଭିତରେ ଇଟା ରଖା ହୋଇଛି । ବୁଧୀ କହିଲା—"ଦେଇ, ସକାଳୁ ଯାହା ଝାଡ଼ା ପରିସ୍ରା କରିବାକୁ ଯିବୁ— ଆଉ ଦିନସାକ ଆସିବାକୁ ବାଟ ପାଇବୁ ନାହିଁ । ବହୁତ ଲୋକ ଅଛନ୍ତି ।" ସେତେବେଳେ ଜାଣି ନ ଥିଲି, ପରେ ଧାଈଙ୍କଠାରୁ ଜାଣିଲି ବୋହୂମାନେ ଘରୁ ବାହାରି ପାରନ୍ତି ନାହିଁ । ଧାଈ ତ ଅନେକ ଝିଅଙ୍କ ସଙ୍ଗେ ଶାଶୂଘରକୁ ଯାଆନ୍ତି—ସେ ଲୁଚେଇକରି ହଳଦୀ-କାଠୁଆରେ ଝିଅଙ୍କୁ ପରିସ୍ରା କରାଇ ଲୁଚେଇକରି ନେଇ ଫୋପାଡ଼ିଦିଅନ୍ତି । ପରିସ୍ରା କରାଇବା ପାଇଁ ତାଙ୍କ ପାଖରେ ହଳଦୀକାଠୁଆ ଛଡ଼ା ଅନ୍ୟ ପାତ୍ର ମଧ୍ୟ ନ ଥାଏ । ଷୋଳ-ମଙ୍ଗଳା ଦିନ କଟକ ଆସିଲୁ । ସମସ୍ତେ ସବାରିରେ ଆସିଲୁ । ଆମଘର ସବାରିଟା ବେଶ୍ ବଡ଼ । ସେଥିରେ ମୁଁ ଓ ଭଉଣୀଟି ବୁଲି ଆସିଲୁଁ । ବୁଲି ସାତ ଆଠ ବର୍ଷର ଝିଅ । ସବାରି କବାଟ ଟିକିଏ ଟିକିଏ ମେଲା କରି ବାହାରକୁ ଦେଖୁଥାନ୍ତି ଓ ଅଜସ୍ର ପ୍ରଶ୍ନ କରୁଥାନ୍ତି । ଗପ ସପ ହେବାର ପ୍ରବୃତ୍ତି ମୋ ଠାରୁ ଚାଲିଯାଇଥାଏ । ମୁଁ ତ ଚିନ୍ତା-ମଗ୍ନ । କଟକ ଯାଉଛି— କେମିତି କଥା କରିଣିବ ।

## ୭ । ଶାଶୂଘର

କଟକ ଆସିଲାରୁ ଶ୍ୱଶୁର ଶାଶୂଙ୍କୁ କହିଲେ, 'ବୋଲ ରାନ୍ଧିବ—ତମେ ତାକୁ କିଛି ବତେଇବ ନାହିଁ । ତା' ମନକୁ ଯାହା ଆସିବ ସେ କରିବ ।' ଶାଶୂ ପ୍ରତିବାଦ କରି କହିଲେ, 'ସେ ପିଲାଟାଏ, ତାକୁ ବତେଇ ନ ଦେଲେ ସେ କଣ ରାନ୍ଧିବ ?' ଶ୍ୱଶୁରଙ୍କର ନିର୍ଦ୍ଦେଶ ହେଲା ଯେ ଅନ୍ୟମାନେ ଭଜା ତରକାରି କରିବାପାଇଁ ପରିବା ମସଲା ପ୍ରଭୃତି ସବୁ ମୋ ପାଖରେ ଦେଇଦେବେ । ଶାଶୂ ଆଦୌ ମୋ ରନ୍ଧା ପାଖରେ ରହିବେ ନାହିଁ । ଶ୍ୱଶୁର ଜାଣିଥିଲେ ଯେ କଲକତାର ବଡ଼ ହୋଟେଲର ଜଣେ ଲୋକ ଆମକୁ ମାଛ-ମାଂସ ରନ୍ଧା ଶିଖାଇଥିଲା । ତାଙ୍କର ଇଚ୍ଛା, ମୁଁ ସେହି ସବୁ ରନ୍ଧା ରାନ୍ଧିବ ।

ରନ୍ଧା ତ ଆମଘରୁ ମୁଁ ଶିଖିଥାଏ—ପ୍ରତିଦିନ କିଛି କିଛି ରାନ୍ଧିବା ଥିଲା ମୋର କାମ । ନାରଣ ଓ ରାମ ଦୁହିଁଙ୍କ କଲକତାରେ ହୋଟେଲରେ ରନ୍ଧା ଶିଖିଥାନ୍ତି—ତେଣୁ ରନ୍ଧା କାମରେ ଦକ୍ଷ । ରାମ କାଞ୍ଚୀ ଦହିକଡ଼ିଠାରୁ କୋର୍ମା କାଲିଆ ପର୍ଯ୍ୟନ୍ତ ସବୁ ରୋଷେଇରେ ଦକ୍ଷ । ତାହାଛଡ଼ା ଉଅଜ୍ ନାମକ ଜଣେ ମୁସଲମାନ ଲୋକ ଆମକୁ ମାଂସ, ଅଣ୍ଡା ପ୍ରଭୃତି

ରନ୍ଧା ଶିଖାଇଥିଲେ । ସେ କାକୁଡ଼ି ପ୍ରଭୃତି କଞ୍ଚା ଫଳରେ ବଡ଼ ସୁନ୍ଦର ସାଲାଡ୍ କରୁଥିଲେ । ତାଙ୍କ କାଟିବାର ଢଙ୍ଗ ଅତି ସୁନ୍ଦର । କିନ୍ତୁ ଶ୍ୱଶୁରଙ୍କ ପାଇଁ କ'ଣ ରାନ୍ଧିବି, ମୋତେ ବୁଝି ହଶିଲା ନାହିଁ । ଶାଶୁଶ୍ୱଶୁରଙ୍କ ମଧ୍ୟରେ ଖୁବ୍ ସଦ୍‌ଭାବ ଥାଏ, ପୁଣି ଟିକିଏ କଥାରେ କଳି ବି ହୁଏ । ଶାଶୁ କହନ୍ତି, ଯେତେହେଲେ ପିଲାଟାଏ ତ ! ତାହା ଉପରେ ଏତେ ଭାର ଦେଲେ ସେ କ'ଣ କରିବ ? ଶାଶୁ ଲୁଚେଇକରି ଆସି ମୋତେ ପରାମର୍ଶ ଦିଅନ୍ତି । ଶାଶୁ-ଶ୍ୱଶୁରଙ୍କର କଳିର କାରଣ ଅତି ସାମାନ୍ୟ । ଭଉଣୀ ରାଜ୍ ସାତ ଆଠ ବର୍ଷର ହୋଇଥାନ୍ତି । ସେ ଅଝଟ ହେଲେ—ଚିନି ଦେଲେ ରସଗୋଲାରେ ଲଗେଇ ଖାଇବେ—ରସଗୋଲା ମିଠା ଲାଗୁ ନାହିଁ । ଶ୍ୱଶୁର କହନ୍ତି—ଚିନି ମାଗୁଛି ତ ଦିଅ । ଶାଶୁ କହନ୍ତି, 'ଦିଆଯିବ ନାହିଁ ।' ଶାଶୁଙ୍କ ଜିଦ୍ ଦେଖି ଶ୍ୱଶୁର ବୈଠକଖାନାକୁ ଯିବେ । କୋର୍ଟକୁ ଯିବା ବେଳ ହେଲେ ପ୍ରସ୍ତୁତ ହେବା ଦେଖି ତାଙ୍କ ଚାକର ଶନିଆ ଆସି ଖବର ଦେବ । ଧାଇଁ ଆସି ମୋତେ ଧରିବେ । ମୁଁ ଯାଇ ଖାଇବାକୁ ଆସିବା ପାଇଁ ଶ୍ୱଶୁରଙ୍କୁ ଅନୁରୋଧ କରିବି । ମୋ କଥା ରକ୍ଷାକରି ସେ ଆସି ଖାଇବେ । ମୁଁ ମାଛମୁଣ୍ଡ ଭଲ ପାଏ ବୋଲି ଶ୍ୱଶୁର ଆମ ଘରୁ ବୁଝି ଯାଇଥିଲେ । ଶ୍ୱଶୁରଙ୍କ ବରାଦରେ ମୋତେ ପ୍ରତିଦିନ ମାଛମୁଣ୍ଡ ଦିଆଯାଏ । ଗୁରୁବାର ପଡ଼ିଲା । ଶାଶୁ କହିଲେ, "ଘରର ବୋହୂ, ଗୁରୁବାର ଦିନ ମାଛ ଖାଇବ ନାହିଁ ।" ଶ୍ୱଶୁରଙ୍କର ଯୁକ୍ତି ଯେ, ଶାଶୁ ଥାଉଁ ଥାଉଁ ବୋହୂ, କାହିଁକି ଏଗୁଡ଼ାକ କରିବ ? ଦୁହିଁଙ୍କର ଯୁକ୍ତିତର୍କ ଆରମ୍ଭ ହେଲା । ଶ୍ୱଶୁର କହିଲେ, 'ତମେ ଆଉ ବାର ତିଥି କଥା ତାକୁ ଶିଖାଅ ନାହିଁ । ସେ ଗୁଣ ତମ ପାଖରେ ଥାଉ—ପାଳିବ ।' ଏଣେ ସମସ୍ତେ ପ୍ରମାଦ ଗଣିଲେ ଯେ ନିଶ୍ଚୟ ଖିଆ ବନ୍ଦହେବ, ଶ୍ୱଶୁର ଉପାସରେ କୋର୍ଟକୁ ଯିବେ ଇତ୍ୟାଦି । ଧାଇଁ ସାହସକରି ପାଖକୁ ଚାଲିଯାଇ ଶାଶୁଙ୍କୁ କହିଲେ, "ବୋଉ' ତମେ କାହିଁକି ବ୍ୟସ୍ତ ହେଉଛ ? ବୋହୂ, ପରା ସୁଦଶାବ୍ରତ କରେ ନାହିଁ—ମାଛ ଖାଇଲେ ଦୋଷ ନାହିଁ—ମାଛ ଖାଉ । "ଏତିକିରେ ତୁମୂଳ କାଣ୍ଡ ହେବାକୁ ଯାଉଥିବା ବ୍ୟାପାରର ନିଷ୍ପତ୍ତି ହେଲା । ଶ୍ୱଶୁର ବଞ୍ଚିଥିବାବେଳେ ସୁଦଶାବ୍ରତ ପଡ଼ିନଥିଲା, ତେଣୁ ଗୁରୁବାର ଦିନ ତାଙ୍କ ସାଙ୍ଗରେ ମୁଁ ମାଛ ଖାଉଥିଲି । ପୁଷମାସରେ ବି ସକାଳେ ଗାଧୋଇ ଶ୍ୱଶୁରେ ଜଳଖିଆ ଖଆନ୍ତି । ମୁଁ ଓ ବେଙ୍ଗ (କନିଷ୍ଠା ନଣନ୍ଦ ବସନ୍ତକୁମାରୀ) ଖାଇବାକୁ ଦେଉଁ । ଶ୍ୱଶୁର ଗୋଟିଏ କପ୍ ଚା ମୋ ଆଡ଼କୁ ବଢ଼େଇ ଦେଇ କହିଲେ, "ଥଣ୍ଡା ହେଉଛି, ଟିକିଏ ଚା ଖା ।" ଆମ ଘରେ ଚାର ଚଳଣି ନ ଥିବାରୁ ମୁଁ ଚା ଖାଇବାରେ ଅଭ୍ୟସ୍ତ ନ ଥିଲି, ତେଣୁ ମନାକଲି । ଶ୍ୱଶୁର ଭାବିଲେ ମୁଁ ଚା ଖାଇବାକୁ ଭଲପାଏ—ଶାଶୁଙ୍କ ଡରରେ ବା ମନାରେ ନାହିଁକରୁଛି । ଶାଶୁଙ୍କ କଥା କିଏ ଶୁଣୁଛି ? ମନାକରିବା ବା ଡରାଇବା ଯେ ଦୋଷ, ତାହାର ଉପରେ କଥା ଚାଲିଲା । ଧାଇଁ ଦେଖିଲେ ଯେ ଆଉ ବିଳମ୍ବ କଲେ ପରିସ୍ଥିତି ଖରାପ ହେବ । ସେ ଆସି କହିଲେ, "ମୁଁ ପରା ପାଳ ଦେଇକୁ ପଚାରି ବୁଝିଆସିଛି—ବୋହୂ ଚା ଖାଆନ୍ତି ନାହିଁ ।" ଏହିପରି ଧାଇଁ ବହୁତ ସମସ୍ୟାର ସମାଧାନ ବୁଦ୍ଧିପୂର୍ବକ କରୁଥିଲେ । ଶାଶୁ-ଶ୍ୱଶୁର ଦୁହେଁ ବନା ସନ୍ଧିରେ

ଗୋଟାଏ ବୁଢ଼ୀବାମଣୀ କାମ ଆପେ କରନ୍ତି । ଶ୍ୱଶୁର ରାଗିଗଲେ ଶାଶୂ ତୁନି ହୋଇଯିବେ । ଶାଶୂ ରାଗିଗଲେ ଶ୍ୱଶୁର ବି ତୁନିହୋଇଯିବେ । ଶ୍ୱଶୁର ବେଳେ ବେଳେ ମୋ ରହିଲା ଘର ପାଖରେ ବୁଲିଯିବେ । ଚୁପ୍‌ଚାପ୍ ଠିଆହୋଇ ଶୁଣିବେ । ଦିନେ ସେ ବେଙ୍ଗଙ୍କୁ କହିଲେ, "ମୁଁ ଶୁଣିଲି ତୁ ବେଲକୁ କହୁଛୁ 'ମୁଁ ବୋଉକୁ କହିଦେବି ଯେ ।' ଏପରି ଡରେଇକରି କଥା ତାକୁ ଆଉ ଦିନେ କହିବୁ ନାହିଁ ।" ଶ୍ୱଶୁର ଖୁବ ସ୍ନେହୀ ଥିଲେ । ତାଙ୍କର କଥା କହିବାର ଢଙ୍ଗରେ ଏପରି ଆକର୍ଷଣୀ ଶକ୍ତି ଥିଲା ଯେ ତାଙ୍କ ଆଡ଼କୁ ଆକୃଷ୍ଟ କରିନେଉଥିଲା । ନାତି- ନାତୁଣୀ ଦୁହେଁ ଖୁବ ଗେହ୍ଲା ହେବା ଫଳରେ ସ୍ୱାମୀ-ସ୍ତ୍ରୀଙ୍କ ଭିତରେ କଜିଆ । ଶାଶୂଙ୍କର ସାରାଦିନର କାମ ରନ୍ଧାବଢ଼ା କରିବା । କେଉଁଠି କିଛି ନୂଆ ଦେଖିଲେ ବା ଶୁଣିଲେ ତାକୁ ତିଆରି କରି ଖୁଆଇବା । ସନ୍ତାନଙ୍କ ପାଇଁ ଠାକୁରଙ୍କ ପାଖରେ ପୂଜା ଭୋଗ କରି ବାଲାଲୀଳା କରାଇବା ଇତ୍ୟାଦି । ଏସବୁ କଥାରେ ଶ୍ୱଶୁର କିଛି କହନ୍ତି ନାହିଁ । ଶାଶୂଙ୍କର ନିଜ ପାଇଁ ଗହଣାଗାଣ୍ଠି, ଭଲ ଲୁଗାପଟା କରିବାକୁ ମନ ନଥାଏ । ଶ୍ୱଶୁର ବହୁତ ଟଙ୍କା ରୋଜଗାର କରୁଥିଲେ ସୁଦ୍ଧା ଶାଶୂ କେବଳ ରାନ୍ଧି ବାଢ଼ି ଖୁଆଇବା, ଠାକୁର-ପୂଜା କାମରେ ବ୍ୟସ୍ତ ରହନ୍ତି । ତଥାପି ଘରେ ଶାନ୍ତି ନ ଥାଏ । ଶାଶୂ ଯେ ଅନ୍ୟ କାରଣରୁ ସବୁବେଳେ ଅଶାନ୍ତ ମନଟେ ରହନ୍ତି, ସେ କଥା ପରେ ବୁଝିଲି । ମୁଁ ତ ତଉଆଖିଆ ନ ଥିଲି—ଘର ଭିତରେ କଣ କେତେବେଳେ ଘଟୁଛି ତାହା ଜାଣିପାରୁ ନ ଥାଏ । ହଠାତ୍ ଧାଇଁ ବା ବେଙ୍ଗ ଡାକି ନେଇଯିବେ ଶ୍ୱଶୁରଙ୍କ ପାଖକୁ । ମୁଁ ଯିବା ବେଳକୁ ଶ୍ୱଶୁର କୋର୍ଟକୁ ଯିବା ପୋଷାକ ପିନ୍ଧିବାକୁ ଯାଉଥିବେ । ମତେ ଯେ ଡାକି ନିଆଯାଉଛି, ତାହା ସେ ସ୍ପଷ୍ଟ ଜାଣିପାରନ୍ତି । ତଥାପି ମୁଁ ଖାଇବା ପାଇଁ କହିଲେ ଆସି ଖାଆନ୍ତି । ବେଙ୍ଗ ସବୁବେଳେ ମୋ ପାଖରେ ଥାନ୍ତି । ପ୍ରାୟ ପ୍ରତିଦିନ କିଏ ନା କିଏ ରୁଷୁଛି, ସେ କେମିତି ଖାଇବ, ଏହି ଚିନ୍ତା । ଜିଏ ରାଗିକରି ବଢ଼ାହୋଇଥିବା ଥାଳି ଫୋପାଡ଼ି-ଦେବା ଆଦି ଅଶାନ୍ତି ପ୍ରତିଦିନ ଲାଗିଥାଏ । ମାଉଅପା ପ୍ରତି ଦୁଇ ତିନି ଦିନରେ ଥରେ କିଛି ସମୟ ପାଇଁ ଆସନ୍ତି । ମୁଁ ତାଙ୍କୁ କଥା କହେ, ମାତ୍ର ଗପସପ କରେ ନାହିଁ । ମୁଁ ଲକ୍ଷ୍ୟ କଲି ଯେ ମାଉଅପା ଯେଉଁ ଦିନ ଛଅଘଣ୍ଟା ରହୁଛନ୍ତି ସେ ସମୟତକ ଅଶାନ୍ତି ନାହିଁ ।

ମୋତେ ସବୁବେଳେ ଧାରଣା ଦିଆହେଉଥାଏ ଯେ ଏ ଘର ମୋର, ମୋତେ ଏ ଘର ସମ୍ଭାଳିବାକୁ ହେବ । ସେହି ଧାରଣା ମୋତେ ବ୍ୟସ୍ତକରୁଥାଏ । ମାମୁ, ମାଈଁ, ଆଈ, ମାଉସୀ ସମସ୍ତେ କହୁଛନ୍ତି, ତୁ ଆମ ଆଗରେ ରହିବୁ—ପ୍ରତିଦିନ ତୋ ଖବର ଆମକୁ ମିଳିବ, ତୋ ନିନ୍ଦା ଯେପରି ଆମେ ନ ଶୁଣିବୁ ସେପରି କଥା ତୁ ମନେରଖି ଚଳିବୁ । ମା' ମଧ୍ୟ ସେହି କଥା କହୁଥାଏ । ବାପା ମୁହଁରେ ନ କହିଲେ ମଧ୍ୟ ସେ ମଧ୍ୟ ପ୍ରଶଂସା ଶୁଣିବାର ପ୍ରୟାସୀ । ଜଣେ ସିଲାଇ-ଶିକ୍ଷୟିତ୍ରୀ ମୋ ଆଈ ଓ ମା' ମାଉସୀଙ୍କୁ ସିଲାଇ ଶିଖାଉଥିଲେ । ଏଣେ ସେ ଶାଶୂ ଓ ନଣନ୍ଦଙ୍କୁ ମଧ୍ୟ ସିଲାଇ ଶିଖାଇଛନ୍ତି । ମୋତେ ମଧ୍ୟ ସେ ପ୍ରଥମେ ସିଲାଇ ଶିଖାଇଥିଲେ । ସେ ମୋତେ ଯାହା ସିଲାଇ କାମ ଦିଅନ୍ତି, ମୁଁ ତାହାଠାରୁ ଅଧିକ କରି

ରଖିଥାଏ ବୋଲି ସେ ମୋତେ ମନୋରମା ତାଙ୍କଠୁ ଓ ଅଧିକ ସ୍ନେହ କରନ୍ତି । ସେ ପ୍ରତି ଦୁଇ ଗୃହବାସରେ ଏଠାକୁ ଆସନ୍ତି ଓ ମାମୁଘରକୁ ଯାଇ ମୋର ଠିକ୍ଣାଣି ଖବର ସବୁ ବୁଝନ୍ତି ।

ମୋ ମା' ଓ ଆଈଙ୍କ ଘର ଚଳାଇବାର କଳା ମୋ ମନ ଉପରେ ବହୁତ ପ୍ରଭାବ ପକାଇଥିଲା । ଅନ୍ୟକୁ ଶାନ୍ତି ଦେବାପାଇଁ ନିଜ ଶାନ୍ତିକୁ ଯେ ଜଳାଞ୍ଜଳି ଦେବାକୁ ହେବ, ମୁଁ ସେ କଥା ମା' ଓ ଆଈଙ୍କଠାରୁ ଶିଖିଥିଲି । ମୁଁ ଦେଖିଛି ବାପା ମୋର ଭାରି ରାଗୀ ଓ ଅସନ୍ତୁଷ୍ଟ । ମା' ଅତ୍ୟନ୍ତ ଶାନ୍ତ ଓ ଧୀର ପ୍ରକୃତିର ଥିବାରୁ ବାପାଙ୍କ ରାଗକୁ ସମ୍ଭାଳିନିଏ । ବାପା ଯେମିତି କାହାରି ଉପରେ ନ ରାଗନ୍ତି, ତାଙ୍କୁ ଜଗିବା ମା'ର କାମ । ମା'ର ଧୈର୍ଯ୍ୟ ଅସୀମ । ମଣିଷର ସବୁ ସଦ୍‌ଗୁଣ ଯେପରି ଭଗବାନ ତାହାଠାରେ ଠୁଳ କରିଦେଇଥିଲେ । ମୋ ଆଈ ତ ଦୟା-କ୍ଷମାର ପ୍ରତିମୂର୍ତ୍ତି । ଆଈଙ୍କ ଗୁଣରୁ ମାମୁଘରେ ଦିନପୁରୁଷର ଗରିବ ବନ୍ଧୁ-ବାନ୍ଧବ, ଆତ୍ମୀୟ କୁଟୁମ୍ବ ଆସି ରହନ୍ତି । ଗରିବ ବୋଲି ସିନା ଆସି ରହନ୍ତି, କିନ୍ତୁ ସ୍ୱଭାବ ଛାଡ଼ନ୍ତି ନାହିଁ । କଳିକଜିଆ ଆରମ୍ଭ ହୁଏ । ଆଈ ପାଠ ନାମକୁ ମାତ୍ର ପଢ଼ିଥିଲେ, ମାତ୍ର ସେ ସଦ୍‌ଗୁଣ-ଭୂଷିତା ଥିଲେ । ସେ ବିରାଟ ପରିବାରର ସୁଖ ଦୁଃଖ, ହାନିଲାଭ ବୁଝି ପରିବାରକୁ ଶାନ୍ତି ଦେଉଥିଲେ । ପୂଷ୍ୟାଶ୍ରିତଙ୍କର ବହୁ ସଂଖ୍ୟାରେ ଥିଲେ । ସେମାନଙ୍କର ମନରେ ସୁଦ୍ଧା ଅସନ୍ତୋଷ ଦୁଃଖ ଯେପରି ନ ହେବ ସେଥିପ୍ରତି ସେ ଦୃଷ୍ଟି ରଖୁଥିଲେ ।

ତେଣୁ ଅନ୍ୟକୁ ସୁଖ ଶାନ୍ତି ଦେବାପାଇଁ ନିଜକୁ ଯେ ବହୁ ପ୍ରକାରର ଦୁଃଖ, ଅଶାନ୍ତି ଓ ଜ୍ୱାଳା-ଯନ୍ତ୍ରଣାରେ ପୋଡ଼ିଜାଳି ହେବାକୁ ପଡ଼ିବ, ସେ କଥା ମୁଁ ଜାଣିଶୁଣି ଘର-ଜଞ୍ଜାଳ ମୁଣ୍ଡେଇଥିଲି । ନୂଆବୋହୂ ହୋଇ ଖୁବ୍ ଆଦର ଯତ୍ନରେ ରହିଥିଲେ ସୁଦ୍ଧା ମୋ କର୍ତ୍ତବ୍ୟ ବିଷୟରେ ମୁଁ ସଚେତନ ଥିଲି । ଶାଶୁଘରେ ମୁଁ ଯେଉଁ ସ୍ନେହ ଆଦର ପାଇଛି, ତାହା କେଉଁଠି ଦେଖାଯାଏ ନାହିଁ । ଶ୍ୱଶୁରଙ୍କର ସ୍ନେହର ତୁଳନା ନାହିଁ । ଦେଖିବାଲୋକେ କହୁଥିଲେ ଯେ ଶ୍ୱଶୁର ବୋହୂକୁ ଏତେ ଭଲପାଇବା କେଉଁଠି ଦେଖା ନାହିଁ । ନଣନ୍ଦ, ଦିଅର, ଶାଶୂ, ଭଉଜା, ଭାଣିଜା ସମସ୍ତେ ମୋତେ ଭଲପାଉଥିଲେ । ସେଠିସର ଦେଢ଼ଶାଶୁର ଖୁଡ଼ୁଶାଶୁର, ଶାଶୁମାନେ, ଯାଆ, ଦେଢ଼ଶୁର ସମସ୍ତେ ମୋତେ ସ୍ନେହ କରୁଥିଲେ । ମୋର ସେପରି ଗୁଣ ବା କାର୍ଯ୍ୟ ନଥିଲା । ସେମାନେ କାହିଁକି ସ୍ନେହ କରୁଥିଲେ ମୁଁ ତାହା ଜାଣେ ନାହିଁ । ଏତେ ସ୍ନେହ ଆଦର ଭିତରେ ଥାଇ ମୁଁ ଭାବୁଥାଏ ମୋତେ ଏ ସ୍ନେହର ଯୋଗ୍ୟା ହେବାକୁ ହେବ—ନହେଲେ ଏ ସ୍ନେହ ସ୍ଥାୟୀ ହେବନାହିଁ । ଏକତରଫା ସ୍ନେହ-ସଦ୍‌ଭାବ କେତେଦିନ ରହିବ ?

ମୁଁ କିପରି ଚଳୁଥିଲି ଓ ଚଳାଉଥିଲି ତାହା ଲେଖି ପକାଇବାକୁ ସରଳା ଦେବୀଙ୍କର ଅନୁରୋଧ । ମୁଁ ତ ଲେଖିବାର ଆବଶ୍ୟକତା ଭାବୁ ନ ଥିଲି । କାରଣ, କେତେ ବଡ଼ ବଡ଼ ଲୋକ କେତେ ଭଲ ଭଲ ମହତ୍ତ୍ୱ କଥା କହିଯାଇଛନ୍ତି, ତାଙ୍କ କଥା କିଏ ଶୁଣୁଛି

ନା ମାନୁଛ ? ପୁଣି ମୋର ମନେପଡ଼ିଲା ରାଧାକୃଷ୍ଣ ସର୍ବସେବା ସଂଘର ସେକ୍ରେଟାରୀ ଥିବାବେଳେ ଗୋଟିଏ ପରିପତ୍ର ପଠାଇଥିଲେ । ସେଥିରେ ସେ ପଚାରିଥିଲେ ମୁଁ କେମିତି ଶାନ୍ତିସେନାଭିଦାପନ୍ନ ହେଲି ଏବଂ କାହା ପ୍ରେରଣାରେ ଏ କାମରେ ପଶିଲି ? ସେହିପରି, ସରଳା ଦେବୀଙ୍କର ଓ ଅନ୍ୟମାନଙ୍କର ବୋଧହୁଏ ଧାରଣା ଯେ, ୧୯୨୧ରେ ଗାନ୍ଧୀଜୀଙ୍କୁ ଦେଖିକରି ବା ଅସହଯୋଗ ଆନ୍ଦୋଳନରେ ଗୋପବାବୁ ପଶିବାରୁ ବାଧ୍ୟ ହୋଇ, ମୋର ମନ ବିଦ୍ରୋହ କରୁଥିଲେ ହେଁ, ଖଦି ପିନ୍ଧୁଥିଲି ଏବଂ ମୋ ପିଲାଙ୍କୁ ସ୍କୁଲରେ ପଢ଼ାଇବା ବନ୍ଦକରିଦେଇଥିଲି ଇତ୍ୟାଦି । ମାତ୍ର ପ୍ରକୃତରେ କାରଣ ତାହା ନୁହେଁ । ମୁଁ ଶାଶୁଘରକୁ ଆସିବାର ଦୁଇ ଦିନରେ ମୋର ଏ ଚିନ୍ତା ମୋ ମନକୁ ଆସିଲା । ଶାଶୁଘରକୁ ଆସିବାର ଅଳ୍ପଦିନ ଭିତରେ ମୋ ଜୀବନର ଲକ୍ଷ୍ୟ ମୁଁ ତାଙ୍କୁ ଜଣାଇ ଦେଇଥିଲି ଯେ ମୁଁ କେବଳ ଘରସଂସାରରେ ବୁଡ଼ି ରହିବି ନାହିଁ, ପରୋପକାର ତଥା ଦେଶ କାମ କରିବା ମୋ ଜୀବନର ଲକ୍ଷ୍ୟ । ତାହା ସଙ୍ଗେ ସଙ୍ଗେ ମୁଁ ବୁଝିଲି ଯେ (ଗୋପବନ୍ଧୁ ଚୌଧୁରୀ) ତ ଉପାର୍ଜନ କରିବେ, ବାହାରର କେତେ କଥାରେ ସଂପୃକ୍ତ ହେବେ । ସେ ଯେତେ ବେଶି ବାହାର କାମ କରିବେ ତାଙ୍କ ପାଇଁ ତାହା ଲାଭଜନକ, ମୁଁ ଯଦି ତାଙ୍କୁ ଘରଜଞ୍ଜାଳରୁ ମୁକ୍ତ ନକରିବି, ତାଙ୍କ ପୌରୁଷ ଅର୍ଜନରେ ବାଧା ଦେବି, ତେବେ ମୁଁ ସ୍ୱାର୍ଥପର ହେବି । ତେଣୁ ଘରଜଞ୍ଜାଳର କୌଣସି କଥାରେ ତାଙ୍କୁ ନ ପକାଇବାକୁ ମୁଁ ସେହି ବେଳୁ ସ୍ଥିର କରିଥିଲି ।

ଦିନେ ବାପାଙ୍କ ଚାକର ଚନ୍ତା ମୋ ପାଇଁ କାଶ ଔଷଧ ଓ ଆଉ କେଣସବୁ ଆଣି ଆସିଲା । ମୋତେ କହିଲା— "ବାବୁ କଟକ ଅସିଛନ୍ତି । ଆଜି ସଂଧ୍ୟାବେଳେ ଆପଣଙ୍କୁ ଦେଖିବାକୁ ଆସିବେ ।" ମୁଁ କାନ୍ଦିପକାଇଲି । କିଛି କହିପାରିଲି ନାହିଁ । ସେହିଦିନ ଚାରିଟାବେଳକୁ ଚନ୍ତା ଆସି କହିଲା, "ଖରାବେଳୁ ବାବୁଙ୍କୁ ଜ୍ୱର, ସେ ଆସି ପାରିବେ ନାହିଁ ।" ବାପା ନଆସିବା କଥା ଶୁଣି ମୁଁ କାନ୍ଦିପକାଇଲି । ସେ ଯେଉଁ ଜ୍ୱର ଆସିଲା, ଛାଡ଼ିଲା ନାହିଁ, ନେଇକରି ଗଲା । ମଝିଆଁ ମାମୁ ସେତେବେଳେ ସାଂଘାତିକ ବେମାର । ଅତ୍ୟଧିକ ମଦ ଖାଇଲେ ଯେଉଁସବୁ ରୋଗ ହୁଏ, ସେ ସବୁ ରୋଗରେ ସେ ଆକ୍ରାନ୍ତ । ବଞ୍ଚିବାର ଆଶା ନ ଥାଏ । ମା ଗାଁରୁ ଆସିଲା । ଗୋଟିଏ ଘରେ ଦୁଇଜଣ ରୋଗୀ ରହିବା ଉଚିତ ହେବନାହିଁ କହି ବାପା କାହାରି କଥା ନମାନି ଆମର ଅତି ପୁରୁଣା ତଗରପଡ଼ା ବସାକୁ ଗଲେ । ବାପାଙ୍କ ଅସୁସ୍ଥତା ବଢ଼ିଲା ସିନା କମିଲା ନାହିଁ । ଦିନେ ସକାଳେ ମଝିଆଁ ମାମୁଙ୍କ ମୃତ୍ୟୁ ଖବର ପାଇଲି । ବେଙ୍ଗଭାଇଙ୍କ ବିପନ୍ନ ମୁହଁ ଦିଶିଲା । ମୁଁ କାନ୍ଦିଲି । ମାମୁଘରର ଦୃଶ୍ୟ ଆଖି ଆଗରେ ଦିଶିଯାଉଥାଏ । କ'ଣ ଆଉ କାହାକୁ କହିବି ? ସମଦୁଃଖୀ ତ କେହି ନାହିଁ । ଅନ୍ୟକୁ ନିଜ ଦୁଃଖ କହି ଦୁଃଖୀ କାହିଁକି କରିବି ?

ବାପାଙ୍କ ଦେହକଥା ମୁଁ କିଛି ଜାଣି ପାରୁ ନ ଥାଏ । ଦିନେ ସଂଧ୍ୟାବେଳେ ଶାଶୁ କହିଲେ, "ଚାଲ ତୋ ବାପାଙ୍କୁ ଦେଖିଆସିବୁ ।" ମୁଁ ଆଶ୍ଚର୍ଯ୍ୟ ଓ ଆନନ୍ଦରେ ଭାସିଗଲି । ଏ କି କଥା !

ମୋତେ ଆମ ଘରକୁ ନେବାକୁ କହୁଛନ୍ତି ! ମନ ଦୁଃଖରେ ମୁଁ ଭାବିପାରୁନଥାଏ । ବାପା ଯେ ଅତି ବେମାର, ବଞ୍ଚିବାର ଆଶା କମ୍, ସେ କଥା ମୋତେ କେହି କହି ନ ଥାନ୍ତି, ତେଣୁ ମୁଁ ତାଙ୍କ ଅବସ୍ଥା ବିଷୟରେ ଅଜ୍ଞ । ଶାଶୁ ମୋତେ ଓ ବେଙ୍ଗକୁ ନେଇ ଘର ଘୋଡ଼ା-ଗାଡ଼ିରେ ବକ୍ସିବାଜାରଠାରୁ ଉଗରପଡ଼ା ଘରକୁ ଗଲେ । ହିମ ଅପା, ମା ଓ ମୋ ମାଉସୀ ଆଥାନ୍ତି । ମୋତେ ଦେଖି କେହି ଖୁସି ହେଲେ ନାହିଁ ।

ସମସ୍ତଙ୍କ ମୁହଁ ବିଷଣ୍ଣ । ମୁଁ ଯାଇ ବାପାଙ୍କ ଖଟ ପାଖରେ କିଛି ସମୟ ଠିଆହେଲି । ଆଉଁଷି ଦେବି କି ନାହିଁ ଠିକ୍ କରି ପାରିଲି ନାହିଁ । ବାପା ଶଶୁରଙ୍କୁ କୃତଜ୍ଞତା ଜଣାଇ କହିଲେ —'ମୋ ଝିଅକୁ ଯେ ମୋତେ ଦେଖେଇବାକୁ ଆଣିଲ ଏହା ତମର ମୋ ପ୍ରତି ଅସୀମ ଦୟା, ମୁଁ ସେଥିପାଇଁ କୃତଜ୍ଞ ।" ଯେଉଁ ଶାଶୁଙ୍କ ବନ୍ଧୁ ପତ୍ନୀ ଭାବରେ ବହୁତ ହଇରାଣ କରିଛନ୍ତି, ତାଙ୍କୁ ସେ ବ୍ୟାକୁଳ କଣ୍ଠରେ କୃତଜ୍ଞତା ଜଣାଇଲେ । ଶାଶୁ ସେଇଠି କାନ୍ଦିପକାଇଥିଲେ । ମା ଓ ମାଉସୀ ଖାଲି କାନ୍ଦୁଥାନ୍ତି । ହିମଅପା କାନ୍ଦି କାନ୍ଦି କହିଲୁ ଯେ ବାପାଙ୍କ ଅବସ୍ଥା ଖରାପ ଆଡ଼କୁ ଯାଉଛି । କାଠ ପିତୁଳାଟି ପରି ଗଲି ଓ ଆସିଲି । ଦୁଇ ପାଞ୍ଚ ଦିନ ପରେ ଭୋରରୁ ଶାଶୁ କହିଲେ, "ଚଞ୍ଚଳ ଗାଧୋଇପଡ଼, ତୋ ବାପାକୁ ଦେଖିବାକୁ ଯିବା ।" ମୋ ଛାତିଟା ଦାଉଁକନା ହେଲା । ଶୀତଦିନ, ମୁଁ ଖାଲି ନାଁକୁମାତ୍ର ଗାଧୋଇପଡ଼ି ଆସିଲି । ଶାଶୁ ସାଙ୍ଗରେ ନେଇ ଘର ଘୋଡ଼ାଗାଡ଼ିରେ ଗଲେ । ଯାଇ ବାପାଙ୍କ ଖଟ ପାଖରେ ଛିଡ଼ା ହେଲି । ଖଣ୍ଡେ କାଗଜରେ ବାପା ଲେଖିଦେଲେ, "ଖାଲି ଦେଖିବାକୁ ଚାହୁଁଥିଲି ।" କାଗଜ ଖଣ୍ଡିକ ମୋ ହାତକୁ ମାମୁ ବଢ଼ାଇଦେଇ ଠାରଦେଲେ ଯେ ମୁଁ ଯେପରି କାନ୍ଦି ନ ଉଠେ । ମାମୁ ଠାରି ନ ଥିଲେ ମୁଁ କାନ୍ଦିଥାନ୍ତି । ହିମଅପା ମୋ ପାଖରେ ଠିଆ ହୋଇଥାଏ । ବାପା ଅତି କ୍ଷୀଣ ସ୍ୱରରେ କହିଲେ—"ତମେ ଦୁହେଁ ମୋ ମନରେ କେବେ ଦୁଃଖ ଦେଇନାହଁ, ବରାବର ଶାନ୍ତି ଓ ଆନନ୍ଦ ଦେଇଛ, ମୋତେ ସନ୍ତୁଷ୍ଟ ରଖିଛ, ଏହାକୁ ମୁଁ ପରମ ଭାଗ୍ୟ ମନେକରୁଛି । ତମେ ଦୁହେଁ ମୋ ପାଖରେ ବସି 'ଜୟ ଜଗନ୍ନାଥ ଅନାଥର ନାଥ' ଜଣାଣଟି ଯେପରି ଗାଅ ସେପରି ଗାଅ । ମୁଁ ଶୁଣିଲେ ଖୁସି ହେବି ।" ଆମେ ଦିଭଉଣୀ ବାପାଙ୍କ ପାଖରେ ବସି ଜଣାଣଟି ଗାଇଲୁ । କିଛି ସମୟ ପରେ ଶାଶୁ ଯେପରି ଡାକିଲେ ଚାଲିଆସିଲି । କାହାରିଠାରୁ ପଦେ କଥା ଶୁଣିଲି ନାହିଁ କି କହିଲି ନାହିଁ । ତାର ଦୁଇଦିନ ପରେ ପାହାନ୍ତାରେ 'ବାବୁ ବାବୁ' ଡାକ ଶୁଭିଲା । ଅଜାଣତରେ ସେ ଡାକ ଶୁଣି ଛାତିଟା ଥରିଉଠିଲା । ସକାଳେ ଗାଧୋଇସାରି ଶୁଣିଲି ବାପା ଆଉ ନାହାନ୍ତି । ପାହାନ୍ତାରେ ସେହି ଲୋକ ଏ ଖବର ଦେଇଯାଇଛି । ମୋ ମାମୁଙ୍କ ମୁହଁରୁ କୋଡ଼ିଏ ଦିନପରେ ମୋ ବାପା ଗଲେ । ମୋ ଦୁଃଖର କୂଳ କିନାରା ନାହିଁ ।

ବଡ଼ବାପା ବାପାଙ୍କୁ ଦେଖିବାକୁ ଯାଆନ୍ତି । ମୁଁ ଯେଉଁଦିନ ଯାଇଥିଲି ବାପା ବଡ଼ବାପାଙ୍କୁ ମଧ୍ୟ ଦେଖିବାକୁ ଚାହିଁଥିଲେ । ତାଙ୍କୁ ମଧ୍ୟ ସେହିପରି ଲେଖି ଦେଇଥିଲେ । ତାପରେ ମାମୁଙ୍କ ପୁଅକୁ ବାପା ପୁଅ କରିବା କଥା ହେଲାରୁ ବଡ଼ବାପା ଆଉ ଗଲେ ନାହିଁ । କିନ୍ତୁ

ସାନଭାଇଙ୍କ ମୃତ୍ୟୁ ଖବର ପାଇ କୁଆଡ଼େ ହାଡ଼ିଆକୁ କହିଲେ, "ଗୋପାଳ ରାଜୁର ପୁଅକୁ ପୁଅ କଲା । ତା'ଠାରେ କଣ ସତୀର ରକ୍ତ ଅଛି ?" ହାଡ଼ିଆ ବଡ଼ବାପାଙ୍କର ବିଶ୍ୱସ୍ତ ଚାକର । ତାଙ୍କ ମନକଥା ଅନେକ ସମୟରେ ସେ ହାଡ଼ିଆ ଆଗରେ କହନ୍ତି । ହାଡ଼ିଆକୁ ଏହା କହିସାରିବା ପରେ କହିଲେ, "ମୋ ଭାଇ କେବଳ ଚନ୍ଦନ କାଠ ଓ ଘିଅରେ ପୋଡ଼ା ହେବ । ସେଥିପାଇଁ ଯେତେ ଚନ୍ଦନକାଠ ଓ ଘିଅ ଲାଗିବ ଶ୍ମଶାନକୁ ନେଇଯାଅ ।" ସେହି ଦିନୁ ବଡ଼ବାପା ଆମଠୁ ଦୂରେଇଗଲେ । ମା ବିକଳ ହୋଇ କାନ୍ଦୁଛି, ଏହି ମୁହଁ ମୋତେ ସବୁବେଳେ ଦେଖାଗଲା । ମୋର ଭଲ ଲୁଗା ପିନ୍ଧିବାର ସଉକ ବଡ଼ ବେଶି ଥିଲା । ପ୍ରଥମେ ତାହା ଛାଡ଼ିବା ସ୍ଥିର କଲି । ମାଠାରୁ କିଛି ପାଇବାର ଆଣିବାର ଆଶା ରଖିବି ନାହିଁ ବୋଲି ମନେ ମନେ ସ୍ଥିର କଲି । କିନ୍ତୁ ଏ ସଂକଳ୍ପ ରକ୍ଷା କରିବାରେ ମୋର ବାହାଦୁରୀ କିଛି ନାହିଁ । ମା ତ ଖୋଜି ଲୋଡ଼ି ଯାହା ଯେତେବେଳେ ଦରକାର ଆପେ ଦିଏ, ମୁଁ ଆଉ ମାଗିବି କଣ ?

ବାପାଙ୍କ ମୃତ୍ୟୁର ଅଳ୍ପ କିଛି ଦିନ ପରେ ଶ୍ୱଶୁର ମୋତେ ଦିନେ କହିଲେ, "ତୋ ପାଖକୁ କେହି କୌଣସି କାଗଜ ଆଣି ଦସ୍ତଖତ କରିବାକୁ କହିଲେ ତୁ କେଭେ ଦସ୍ତଖତ କରିବୁନାହିଁ ।" ଏହାର ଅର୍ଥ ମୁଁ ସେତେବେଳେ ବୁଝିନଥିଲି । ପରେ ଜାଣିଲି, ମା ମାମୁଙ୍କ ପୁଅ ଉପେନ୍ଦ୍ରକୁ ଯେ ପୁଅ କରିଛନ୍ତି ସେଥିଯୋଗୁଁ ସମ୍ପତ୍ତିରେ ମୋ ଦାବୀକୁ ମୁଁ ଛାଡ଼ିଦେବା ଶ୍ୱଶୁର ଚାହାନ୍ତିନାହିଁ । ବାପାଙ୍କ ଶୁଦ୍ଧିକ୍ରିୟା ପରେ ମା'କୁ ମାମୁ କଟକ ଆଣିଲେ । ମା ଓ ଟିମଅପା ମାମୁଘରେ ରହିଲେ । ଧାଈ ବରାବର ଫେରିବେଳେ ମାମୁଘରକୁ ଯାଆନ୍ତି, ଖବର ସଂଗ୍ରହ କରି ଆଣି ମୋତେ କହନ୍ତି । ମୋର ଆଉ ଯିବା ପ୍ରଶ୍ନ ନାହିଁ ।

ଶିବରାତ୍ରି ପଡ଼ିଲା । ଦେବେନ୍ଦ୍ରବାବୁ ( ଦେବେନ୍ଦ୍ରନାଥ ଦାସ, ଗୋକୁଳାନନ୍ଦ ଚୌଧୁରୀଙ୍କର ବଡ଼ ଜ୍ୱାଇଁ ) ସ୍ୱାମୀଙ୍କୁ ସକାଳୁ ଡାକନେଇ ପରମହଂସ ଗଲେ । ଧାଈ ତା' ଆଗଦିନଠାରୁ ଆଈଶାଶୁଙ୍କ ସାଙ୍ଗରେ କପିଳାସ ଯାଇଥିଲେ । ମା'ଙ୍କର ଶିବରାତ୍ରି ଉପାସ ଯୋଗୁ ଘର ଧୂଆଧୋଇ ହେଲା । ଦୋମହଲାର ପାହାଚ ମଧ୍ୟ ଧୂଆହେଲା । ଶ୍ୱଶୁର ଖରାବେଳେ ବିଶ୍ରାମ ପରେ ତଳକୁ ଓହ୍ଲାଇ ଆସୁଆସୁ ପାହାଚରେ ଗୋଡ଼ଖସି ପଡ଼ିଗଲେ । ସେ ତ ତାଙ୍କ ଅଫିସ ଘରେ ବସିଲେ— ଆମେସବୁ ବ୍ୟସ୍ତହୋଇପଡ଼ିଲୁ । ତାଙ୍କ ପାଖକୁ ଗଲୁ, ସେ କହିଲେ କିଛି ହୋଇନାହିଁ । ବାପା ପଡ଼ିଯାଇଛନ୍ତି ଶୁଣି ମାଗଅପା ଆସିଲେ । ଆମେ ରାତିରେ ଖାଇବସିଛୁ, ଶ୍ୱଶୁର ଆମ ଖାଇବାପାଖକୁ ଆସିଲେ । ଶାଶୁଙ୍କୁ କହିଲେ—"ଦିନେ ଛୁଟିଦିନ ଦେଖି ରନ୍ଧାବଢ଼ାକରିବ, ସମସ୍ତେ ଏକାଠିବସି ଖାଇବା, ମାଗ ଦେବେନ୍ଦ୍ର ଆସିବେ—ସେମାନେ ବି ଖାଇବେ । ମାଗ ତୁ ଲାଜ କରିବୁ ନାହିଁ । ବେଲା ତୁ ବି ଲାଜ କରିବୁ ନାହିଁ । କିନ୍ତୁ ଗୋଟିଏ କଥା, ତମେ ମଧ୍ୟ ସେ ଦିନ ସମସ୍ତଙ୍କ ସାଙ୍ଗରେ ବସି ଖାଇବ ।" ଶାଶୁ କହିଲେ, "ତା କିପରି ହେବ ? ମୁଁ ପରଷିବି, ସମସ୍ତେ

ଖାଇବେ, ସେଇ ମୋର ଶାନ୍ତି । ମୁଁ ନ ପରଷିଲେ ମୋର ମନବୋଧ ହେବନାହିଁ ।” ଶ୍ୱଶୁର କହିଲେ, “ସେ କଥା ହେବନାହିଁ । ତମକୁ ସେଦିନ ଆମ ସାଙ୍ଗରେ କିଛି ଖାଇବାକୁ ହେବ, ନ ହେଲେ ଆନନ୍ଦ ପୂରା ହେବ ନାହିଁ ।”

ଶାଶୁ ଶିବରାତ୍ରି ପୂଜା ସାରିଲେ । ମାଉ ଅପା ତାଙ୍କ ଘରକୁ ଗଲେ । ତା ପରଦିନ ସକାଳେ ମୁଁ ଗାଧୋଇସାରି ଶ୍ୱଶୁରଙ୍କ ପାଇଁ ଜଳଖିଆ ସଜାଡ଼ୁଛି, ଶ୍ୱଶୁର ଗାଧୁଆ ଘରକୁ ଗଲେଣି । ସେ ଗାଧୁଆଘରୁ ବାହାରିବା ବେଳକୁ ଗରମ ଜଳଖିଆ ଠିକ୍ ରହିବା ଦରକାର । ଜଳଖିଆ ସଜାଡ଼ୁ ସଜାଡ଼ୁ ଶନିଆର ପାଟି ଶୁଣିଲି । ଶନିଆ ଶ୍ୱଶୁରଙ୍କର ଖାସ ଚାକର । ଗାଧୁଆ ଘରେ ସେ ଥିଲା । ସେ ତେଲ ଲଗେଇ ଦେଉଦେଉ ଶ୍ୱଶୁରଙ୍କର ଅସ୍ୱାଭାବିକ ଭାବ ଦେଖିଲା । ସେ ସଙ୍ଗେ ସଙ୍ଗେ ପାଟିକରିଉଠିଲା । ସମସ୍ତେ ଦଉଡ଼ିଗଲେ । ଶ୍ୱଶୁରଙ୍କୁ ଗାଧୁଆଘରୁ ନେଇଆସି ଖଟ ଉପରେ ବସାଇଲେ । ସେ କଣ କହିବାକୁ ଚେଷ୍ଟା କରୁଥାନ୍ତି, କହିପାରୁନଥାନ୍ତି । ଦୃଷ୍ଟି ନିରର୍ଥକ, ମୁହଁର ଭାବ ଅସ୍ୱାଭାବିକ । ଶାଶୁ କହିଲେ —“ତାଙ୍କୁ କଣ ଖୁଆଇ ଦେଲୁ ।” ମୁଁ ଦୁଇଟି ସନ୍ଦେଶ ଆଣି ଗୋଟିକରୁ ଟିକିଏ ଭାଙ୍ଗି ପାଟିରେ ଦେଲି । ପାଟି ବୁଲେଇ ସେତିକ ଖାଇଲେ । ମାତ୍ର ତାଙ୍କ ପାଟିରେ ଆଉ ସନ୍ଦେଶ ଦେବାକୁ ମୋତେ ଡରମାଡ଼ିଲା—କାଳେ ତଣ୍ଟିରେ ଲାଗିଯିବ । ତାଙ୍କୁ ଶୁଆଇ ଦିଆଗଲା । ଆମେ ସେ ଘରୁ ଚାଲିଆସିଲୁ । ଡାକ୍ତରମାନେ ଓ ଅନ୍ୟ ଭଦ୍ରଲୋକ ବହୁତ ଆସି ଜମାହେଲେ । ଚିକିତ୍ସା ଚାଲିଲା । ସନ୍ଧ୍ୟା ପୂର୍ବରୁ ଆମକୁ ସେ ଘରକୁ ଡାକନେଲେ । ମୁଁ, ବେଙ୍ଗ, ମାଉଅପା ଓ ଶାଶୁ ଗଲୁ । ଶ୍ୱଶୁର ଘଡ଼ ଘଡ଼ ହେଉଥାନ୍ତି । ଦେଖିକରି ଆସିଲୁ । ଲୋକ ଆଥାନ୍ତି । ରୋଗୀ ଘଡ଼ ଘଡ଼ ହେଉଥାନ୍ତି । ଆମେ ସେବା ବା ଚିକିତ୍ସାରେ କୌଣସି ସାହାଯ୍ୟ କରୁନଥିଲେ ମଧ୍ୟ ରାତି ସାରା ବସି ବସି କଟାଇଲୁ । କେବଳ ଭଉଣୀ ରାଜ୍ କଳଖିଆ ହାଣ୍ଡିରୁ ଜଳଖିଆ ନେଇ ଖାଉଥାନ୍ତି—ଆଉ ସମସ୍ତେ ଖାଡ଼ାଉପାସ ଓ ଅନିଦ୍ରା । ତା ପରଦିନ ସକାଳେ ସୂର୍ଯ୍ୟୋଦୟ ପରେ ପୁଣି ଆମକୁ ସେ ଘରକୁ ଡାକନେଇଗଲେ । ଦେଖିଲି, ମୁଣ୍ଡ ଉପରେ ତୁଳସୀ ଗଛ ରଖାହୋଇଛି । ମୋ ହାତରେ ଗଙ୍ଗା ପାଣି ଦେଇ ଶ୍ୱଶୁରଙ୍କ ପାଟିରେ ଦେବାକୁ କହିଲେ । ମୁଁ ଗଙ୍ଗାପାଣି ଓ ମହାପ୍ରସାଦ ପାଣି ପାଟିରେ ଦେଲି । ତା ପରେ ସବୁ ଶେଷ । ମୁଁ ଓ ବେଙ୍ଗ ପାଖ ଘରେ ବସିଥାଉ—କିଛି ଦେଖି ପାରୁ ନ ଥାଉ । ମାତ୍ର ଶୁଣାଯାଉଥାଏ ଲୋକଙ୍କ କଥାବାର୍ତ୍ତା । ବୁଝିଲୁ, ଶ୍ମଶାନକୁ ନେବାର ଆୟୋଜନ । ସେତିକବେଳେ ପ୍ରଣାମ କରି ଆସିଥିଲୁ । ଆଉ ଆମେ ଶବ ଦେଖିବାକୁ ପାଇଲୁ ନାହିଁ । ଘର ଶୂନ୍‌ଶାନ୍ ।

ଦେବେନ୍ଦ୍ରବାବୁ ଘର ଧୁଆଧୋଇ ଆଉ କରାଇଲେ, ଶାଶୁଙ୍କୁ ଆଉ ଗୋଟାଏ ଘରକୁ ନେଇଗଲେ । ଦେବେନ୍ଦ୍ରବାବୁ ଗୁଡ଼ାଏ ଚାବି ଆଣି ମୋ ପାଖରେ ରଖିଦେଇ ନିଜେ ବସି-ପଡ଼ିଲେ । କହିଲେ, “ଆଉ କାନ୍ଦିଲେ ଚଳିବ ନାହିଁ । ଏ ଘର ଆଜଠୁଁ ତମକୁ ସମ୍ଭାଳିବାକୁ ହେବ । ବେଙ୍ଗ ଓ ନୂଆଁ (ନବକୃଷ୍ଣ ଚୌଧୁରୀ) ଆଜଠାରୁ ତମର ନନ୍ଦେ

ହଅର ନୁହଁନ୍ତି, ତାଙ୍କୁ ପୁଅ ଝିଅ ଭାବରେ ଦେଖିବ । ତାଙ୍କ ଦାୟିତ୍ୱ ତମ ଉପରେ । ଦୁଃଖ ସୁଖ ବୋଲି କିଛି ମନରେ ରଖିବ ନାହିଁ । କେତେ କଥା ଶୁଣିବାକୁ ହେବ, କେତେ ଦୁଃଖ କଷ୍ଟ ପଡ଼ିବ, ସବୁ ପଥର ପରି ସହିଲେ ଯାଇ ଘର ସମ୍ଭାଳିବ । ଶାଶୁଙ୍କ ଉପରେ ଆଉ କୌଣସି ଦାୟିତ୍ୱ ପକାଇବ ନାହିଁ—ସବୁ ନିଜ ମୁଣ୍ଡକୁ ନେଇ କାମ କରିଯିବ ।" ଏତିକି ଉପଦେଶ ଦେଇ ସେ ତାଙ୍କ ଘରକୁ ଗଲେ ।

ସକାଳଓଳି ମାଉଅପାଙ୍କ ଘରୁ ଜଳଖିଆ ଆସେ, ଆମେ ଖାଉ । ବେଳାକଥା ଭାତ ଧୋବା ଅପା ରାନ୍ଧିଲେ, ମୋତେ ରାନ୍ଧିବାକୁ ଦେଲେ ନାହିଁ । ଶଙ୍ଖୋଳିବା ପାଇଁ ବନ୍ଧୁ ବାନ୍ଧବ ଅଜାଡ଼ି ହୋଇ ପଡ଼ିଲେ । ତା ଭିତରେ ଦିନେ ମୋ ମଉଳା ଶ୍ୱଶୁର ଆସିଲେ । ଶାଶୁଙ୍କୁ କହିଲେ, "ଦେଖ ଅପା ! ତୋ ଭାଗ୍ୟରେ ଯାହା ଥିଲା ଘଟିଲା, ମୁଁ କେବଳ ତୋତେ ଗୋଟିଏ କଥା କହିବାକୁ ଆସିଛି । ତୋ ମନକୁ ଯେପରି ନ ଆସିବ କି ତୋ ପାଟିରୁ ବି ଥରେ ହେଲେ ନବାହାରିବ ଯେ ବୋହୂ ଘରକୁ ଆସିଲା, ଶଶୁର ମଲେ ।" ଶାଶୁଙ୍କଠାରୁ ସେହି ଅବସ୍ଥାରେ ଜବାବ ନେଇକରି ଗଲେ ।

ମୃତ୍ୟୁ ପୂର୍ବରୁ ଶ୍ୱଶୁରଙ୍କ ସଙ୍ଗେ ଦିନେ ବଡ଼ବାପାଙ୍କର କୋର୍ଟରେ ଦେଖା ହୋଇଥିଲା । କଥାବାର୍ତ୍ତା କିଛି ନାହିଁ—କେବଳ ଯିବା ଆସିବା ବାଟରେ ଦେଖା । ବଡ଼ବାପା ଘରକୁ ଫେରି ତାଙ୍କର ପ୍ରିୟ ଓ ବିଶ୍ୱସ୍ତ ଚାକର ହାଡ଼ିଆକୁ କହିଲେ, "ମୁଁ ଆଜି ଗୋକୁଳାନନ୍ଦକୁ କୋର୍ଟରେ ଦେଖିଲି । ସେ ଆସୁଥିଲା ମୁଁ ଯାଉଥିଲି । ଆମେ କଥା କହି ନାହୁଁ । କିନ୍ତୁ ତା ମୁହଁକୁ ଦେଖି ମନେହେଲା ସେ ଆଉ ବେଶିଦିନ ବଞ୍ଚିବ ନାହିଁ, ଏହି ଦୁଇମାସ ଭିତରେ ଚାଲିଯିବ—ତୁ ଆଜି ତାରିଖ ମନେରଖ । ମୋ କଥା ସତ ହେବ କି ନାହିଁ ଦୁଇମାସ ପରେ କହିବୁ ।" ଶ୍ୱଶୁର ବଡ଼ବାପାଙ୍କର ଜୁନିଅର ଓକିଲ ଥିଲେ । ରାଜନୀତିକ କାରଣରୁ ଶେଷବେଳକୁ ଅପଡ଼ ହୋଇଥିଲେ । ଶ୍ୱଶୁରଙ୍କ ମୃତ୍ୟୁଦିନ କୁଆଡ଼େ ବଡ଼ବାପା ଷ୍ଟେସନରେ ବସି କାନ୍ଦୁଥିବାର ଲୋକେ ଦେଖିଲେ ।

## ୯। ଘରକରଣା

ଶ୍ୱଶୁରଙ୍କ ମୃତ୍ୟୁ ପରେ ଦେଖାଗଲା ଘରର ଆର୍ଥିକ ସ୍ଥିତି ଭଲ ନୁହେଁ । ବାପା ମରି ଯାଇଥିବାରୁ ମାମୁ ମୋର ମୁରବି । ସେ ଆସି ଶ୍ୱଶୁରଙ୍କ ଶୁଦ୍ଧିକ୍ରିୟା ବିଷୟରେ ବୁଝାବୁଝି କରି ଜାଣିଲେ ଯେ ଟଙ୍କା ଦରକାର । ଶ୍ୱଶୁର ମାମୁଙ୍କର ଜଣେ ବଡ଼ ବନ୍ଧୁ । ମା ସଙ୍ଗେ ସଙ୍ଗେ ଟଙ୍କା ପଠାଇଦେଲା । ଏ ଦଶଦିନ ସବୁକାମ ସେ ଯେମିତି କରିଗଲେ—ମୋ ଉପରେ କିଛି ପଡ଼ିଲା ନାହିଁ । ଏଗାର ଦିନ ମୋତେ ରାନ୍ଧିବାକୁ ହେବ । ମୁଁ ଭାତ ରାନ୍ଧି ଦେଇ-ପିଣ୍ଡିରେ ଚରାଣଦେବ । ସେପେଇ ଘରକୁ ଆସି ଦେଖିଲି ମାଟିହାଣ୍ଡି, ପଲମ ଓ

ମାଠିଆ ରଖାହୋଇଛି । କୁଣ୍ଡାରେ ଘିଅ ଗୁଡ଼ ପକେଇ ଚୂଲି ଲଗିବ—ଚୂଲି ଆଦୌ ଫୁଙ୍କା ହେବନାହିଁ । ମୁଁ ମାଠିଆରେ କୂଅରୁ ପାଣି ଆଣି ଗାଧିବ । ତାହା ଦେଖିବା ପାଇଁ ଦୁର୍ଗାଚରଣବାବୁ, ରାଘବବାବୁ ପ୍ରଭୃତି କେତେକଣ ଜଣହୋଇ ଆସି ପିଣ୍ଡାରେ ବସିଲେ । ମୋ ହାତ ଗୋଡ଼ ଆଉ ଚଳିଲା ନାହିଁ । ମାଗଥପା ପୁରୁଣା ଗୃହର ଗଙ୍ଗାକୁ ଡ଼ାକି କହିଲେ—ତୁ ଯା ସେଠି ରହି ପାଣିଦେବୁ । ସେ କଣ କେଉଁଦିନ କୂଅରୁ ପାଣି କାଢ଼ିଥିବ ଯେ ଆଜି କାଢ଼ିବ ? ଗଙ୍ଗା ଓ ଧୋବଥପାକୁ ଦେଖି ଜଣହୋଇମାନେ ଉଠିଗ୍ଲଲଗଲେ ।

ଶୁଦ୍ଧି କ୍ରିୟା ପରେ ଭଣଜା ଭଣିଜୀ ବୁଲୁ ଓ ରାଜୁ ତାଙ୍କ ଘରକୁ ଗଲେ । ଆଉ ସମସ୍ତେ ଯେ ଯୁଆଡ଼େ ଗଲେ । ଏବେ ନିତ୍ୟନୈମିତ୍ତିକ ଭାବରେ ଘର ଚଳାଇବାକୁ ହେବ । ଦେବେନ୍ଦ୍ରବାବୁ ହିସାବ ଲେଖିବାପାଇଁ ଖାତା କିଣିଦେଇଗଲେ ଏବଂ କହିଗଲେ ପ୍ରତିଦିନ ଯାହା ଖରଚ ହେବ ସେ ସବୁ ଲେଖାହେବ—ସେ ମଝିରେ ମଝିରେ ଆସି ଦେଖିବେ । ପଇସାଟିଏ କାହାକୁ ଦେଲେ ବି ଲେଖା ହେବ । ମାଗଥପା ପ୍ରତିଦିନ ଉପରଓଳି ଆସି ସବୁକଥା ବୁଝିକରି ତାଙ୍କ ଘରକୁ ଯାଆନ୍ତି । ଘର ଘୋଡ଼ାଗାଡ଼ି ଯାଏ ତାଙ୍କୁ ଆଣେ ଓ ଛାଡ଼ିଦେଇ ଆସେ । ଦେବେନ୍ଦ୍ରବାବୁ ପ୍ରତିଦିନ ସକାଳଓଳି ଆସି ବାହାର କଥା ସବୁ ବୁଝନ୍ତି । ମଝିରେ ମଝିରେ ଦିନେ ଦିନେ ଟୁକୁକୁ ( ନବକୃଷ୍ଣ ଚୌଧୁରୀ ) ପଠାଇ ମୋଠାରୁ ହିସାବଖାତା ମଗାଇନେଇ ଦେଖନ୍ତି । ଦିନେ ଖଜଣା ନେବାକୁ ସରକାରୀ ଲୋକ ଆସିଲେ । ଟଙ୍କା ତ ଦିଆଯିବ, କେତୋଟା ପଇସା ଓ ଦୁଇଟି ପାହୁଲା ମଧ୍ୟ ଦିଆଯିବ । ମୋ ପାଖରେ ପାହୁଲା ନ ଥାଏ । ଦେବେନ୍ଦ୍ରବାବୁ ଟୁକ ହାତରେ କହିପଠାଇଲେ— ଭାଉଜବୋହୂକୁ କହିବୁ ପଇସା ଓ ପାହୁଲା ବରାବର ହାତରେ ରଖିବେ, ନ ହେଲେ ଏମିତି ବେଳ ପଡ଼ିଲେ ହଇରାଣ ହେବେ । ସେହିଦିନଠାରୁ ଯେତେଦିନ ପାହୁଲାର ପ୍ରଚଳନ ଥିଲା, ମୋ ପାଖରେ ବରାବର ପାହୁଲା ରହୁଥିଲା । ଦେବେନ୍ଦ୍ରବାବୁ ସାବଧାନ କରିଦେବା ପାଇଁ କହିଲେ, "ଘରେ ବର୍ତ୍ତମାନ ରୋଜଗାର କିଛି ନାହିଁ; କିନ୍ତୁ ଖରଚ ତ ସବୁ ରହିଛି । ବୁଝି ଖରଚକରି ବ୍ୟୟସଙ୍କୋଚ କରି ଚଳିବାକୁ ପଡ଼ିବ ।" ଅବଶ୍ୟ ସବୁ କଥାରେ ସେ ସ୍ୱାମୀ ସ୍ତ୍ରୀ ଦୁଇଜଣ ବୁଦ୍ଧି ପରାମର୍ଶ ଦେବାବାଲା । ସେ ତ ମୋର ପ୍ରଧାନ ବଳ । ଦିନେ ମାଗଥପା ତାଙ୍କ ଅତୀତ କଥା କହିଲେ । ତାଙ୍କ ବାହାଘର ପରେ ଦେବେନ୍ଦ୍ରବାବୁଙ୍କ ଗାଁ ବାଗଲପୁରରେ ସାତଦିନ ରହିବା ପରେ ସେ କଟକ ଆସିଲେ । କଟକ ଆସିବା ସଙ୍ଗେ ସଙ୍ଗେ ତାଙ୍କ ଶ୍ୱଶୁର ବଳରାମବାବୁ କହିଲେ ଘରକଥା ସବୁ ବୋହୂ ବୁଝିବ । ଟଙ୍କାପଇସା ତାଙ୍କୁ ଦିଆଗଲା—ସେ ଖରଚକରିବେ ଓ ହିସାବ ରଖିବେ । ଦୁଇବର୍ଷର ଝିଅର ରବିକୁ ତାଙ୍କ କୋଳରେ ଦେଇ କହିଲେ—ଏ ତୋର ପୁଅ, ତୁ ତାକୁ ପାଳିବୁ । ରବି ରାତିରେ ମାଗଥପାଙ୍କ ପାଖରେ ଶୋଇଲା । ସ୍ତ୍ରୀଲୋକ କେବଳ ଝିଅଆବୋଉ, ସେ ତ କିଛି ଜାଣନ୍ତି ନାହିଁ । ମାଗଥପାଙ୍କୁ ସବୁ କରିବାକୁ ପଡ଼ିଲା । ବଡ଼ ବଡ଼ ଝିଅର ଦୁଇଟିଙ୍କ ତତ୍ତ୍ୱ ବି ନେଲେ । ତେବେ ଏ ଅବସ୍ଥାରେ ଦେବେନ୍ଦ୍ରବାବୁ ତାଙ୍କୁ ସବୁମନ୍ତେ

ସାହାଯ୍ୟ କଲେ । ମାଉଅପାଙ୍କ ବୟସ ସେତେବେଳେ ଚଉଦ ବର୍ଷ । ମାଉଅପା ଓ ଦେବେନ୍ଦ୍ରବାବୁଙ୍କ ସ୍ନେହ, ସହାନୁଭୂତି ଓ ସାହାଯ୍ୟର ତୁଳନା ନାହିଁ । ତାଙ୍କ ଦୃଷ୍ଟି ଏପରି ଯେ, ଆମର କେତେବେଳେ କ'ଣ ଦରକାର ହେବ, ତାହା ସେ ଜାଣିପାରି ଆମକୁ ଦିଅନ୍ତି । ସେ ଦୁହେଁ ଓ ମୋ ମା' ଯୋଗେ ଆମେ ଚଳିଯାଉଥାଉ । ଶାଶୁ ଏ ଅନଟନ ଅବସ୍ଥାକୁ ଖୁବ୍ ସମ୍ଭାଳିଲେ । ସେ କେବେ ପଇସା କଥା ଭାବୁନଥିଲେ । ଘରଖରଚ ପାଇଁ ସେ ଯେତେ ଟଙ୍କା ଦରକାର କରୁଥିଲେ ତାହା ସେ ପାଉଥିଲେ । ଟଙ୍କା ପଇସା ଦ୍ୱାରବନ୍ଧ ତଳେ ଟିଣ ବା ଘଡ଼ିରେ ଯେଉଁଠି ସେଠି ରଖିଦେଉଥିଲେ—ସେଥିରୁ କିଏ କେତେ ନେଇଗଲା ତାହା ଜାଣୁ ନଥିଲେ କି ଜାଣିବାର ଉପାୟ ନଥିଲା । ଟଙ୍କାର ଅଭାବ କ'ଣ ସେ ଜାଣିନଥିଲେ । ହେ ଘରର ତଥା ଟଙ୍କା ପଇସା ଦାୟିତ୍ୱ ଛାଡ଼ିଦେଇ ବସିଲେ । ପୁଣି କଣ ସେ ଚାହାଁନ୍ତି, ତାଙ୍କର ଓଷାପର୍ବରେ କ'ଣ ଦରକାର ତାହା କହୁନଥିଲେ—ଅଥଚ ତାଙ୍କ ମନମୁତାବକ ନ ହେଲେ ଖୁବ୍ ରାଗିବେ । ତାଙ୍କ କଥାରେ କିଏ କ'ଣ ଆଘାତ ପାଇଲା, ତାହା ସେ ବୋଧହୁଏ ଜୀବନରେ କେବେ ଭାବି ଦେଖି ନାହାଁନ୍ତି—ଅଥଚ ସେ ଭାରି ସ୍ନେହଶୀଳ ଓ ବତ୍ସଳଶୀଳ । ଦେଖାଗଲା ଯେ ଶାଶୁ ଯାହା ଚାହୁଁଛନ୍ତି ତାହା ସେ ପ୍ରକାଶ କରିବେନାହିଁ, ଅଥଚ ସେ ଯାହା ଚାହୁଁଛନ୍ତି କାର୍ଯ୍ୟରେ ତାହାହିଁ ହେବ । ମୁଁ ବିଷମ ସଙ୍କଟରେ ପଡ଼ିଲି । ମାଉଅପା ମୋତେ ଏଥିରୁ ଉଦ୍ଧାର କରି ପାରିଲେ ନାହିଁ । ସେ ପରାମର୍ଶ ଦେଲେ, "ଏ ବଉଳ ତ ସେମିତି ରାଗିବେ, ରୁଷିବେ, ଖାଇବେନାହିଁ । ତୁ ସେଗୁଡ଼ାକ ଗ୍ରାହ୍ୟ କରିବୁନାହିଁ ।'' ସବୁ କରି ନ ପାରିଲେ ମଧ୍ୟ ବେଳେବେଳେ ତାଙ୍କର କେତେକ କଥା ଅଗ୍ରାହ୍ୟ କରିବାକୁ ପଡ଼ିଲା । ଏମିତି ଦିନ ଗତାନୁଗତିକ ଭାବରେ ଗଡ଼ିଥାଏ । ଦିନେ ଦିନେ ସଞ୍ଜବେଳେ ମାଈଁ ବା ଅପା (ମାଉସୀ) ଆସି ଦେଖିଯାଆନ୍ତି ।

ବୁଲୁର ସ୍ୱାସ୍ଥ୍ୟ ବରାବର ଖରାପ ହେଲା । ମାଙ୍କର ଡାକ୍ତରୀ ଚିକିତ୍ସା ଉପରେ ଘୋର ଅଶ୍ରଦ୍ଧା, ଗୋପବାବୁଙ୍କର ମଧ୍ୟ ଆସ୍ଥା ନଥାଏ । ସେ କଲିକତାରେ ପଢ଼ୁଥିବା ବେଳେ ଡାକ୍ତର କଣ ଭୁଲ ରୋଗ ନିର୍ଣ୍ଣୟ କରି ଚିକିତ୍ସା କରିବା ଫଳରେ ତାଙ୍କର ଅବସ୍ଥା ସାଙ୍ଘାତିକ ହୋଇଥିଲା । ସେହି ସମୟରୁ ସେ ଡାକ୍ତରୀ ଚିକିତ୍ସା ଉପରେ ବୀତସ୍ପୃହ । ସେ ସ୍କୁଲରେ ପଢ଼ିବା ସମୟରେ ନାରାୟଣ ଦାସ ପଣ୍ଡିତେ ତାଙ୍କୁ ଘରେ ସଂସ୍କୃତ ପଢ଼ାଇ କାବ୍ୟତୀର୍ଥ ପରୀକ୍ଷାରେ ପାଶ୍ କରାଇଥିଲେ । ସେ ଗୋଟିଏ ପ୍ରକାର ଚିକିତ୍ସା କରନ୍ତି, ତା'ର ନାଁ ନାହିଁ । କଣେ ସାଧୁଙ୍କଠାରୁ ସେହି ଚିକିତ୍ସା ସେ ଶିଖିଥିଲେ । ଜଡ଼ିବୁଟି ଦିଅନ୍ତି । ସବୁ ରୋଗ ପେଟରୁ ଉଦ୍‌ଭବ ଏ ହେଲା ମୂଳକଥା । ସେ ପେଟକୁ ପ୍ରତିଦିନ ଦୁଇ ତିନଥର ଚିପିବେ । ଭିନ୍ନ ଭିନ୍ନ ରୋଗ ପାଇଁ ସେ ପେଟଚିପା ପ୍ରକାର ଭିନ୍ନ । ସେ ପ୍ରତିଦିନ ରାତି ପାହାନ୍ତି ଗାଧୋଇ ପୂଜା ଓ ହୋମ କରନ୍ତି । ଏ ହୋମଟା ଖାସ୍ ଚିକିତ୍ସାର ଅଙ୍ଗ । ସେ ହେଲେ ଆମମାନଙ୍କର ଚିକିତ୍ସକ । ଆମ ଘରେ ସେ ରହିଲେ । ସନ୍ଧ୍ୟାବେଳେ ହୋମ

ସରଞ୍ଜାମ ଓ ଭୋଗପାଇଁ କଦଳୀ ପ୍ରଭୃତି ତାଙ୍କ ଘରେ ରଖିହୋଇଥିବ । ସେ ଗୃହ ଉଆଣ୍ଟାରେ ଉଠି ନିତ୍ୟକର୍ମ ସାରି ହୋମ କରିବେ । ସେ ଲେଖକେଲୁଁ ଉଠିଲାବେଳୁ ପୂର୍ଣ୍ଣାହୁତି ବାହାରିବା ପର୍ଯ୍ୟନ୍ତ କାହାର ମୁହଁ ଦେଖିବେ ନାହିଁ । ସେଥିପାଇଁ ଆମକୁ ସତର୍କ ରହିବାକୁ ପଡ଼େ । ଆମ ବନ୍ଧୁ ବାନ୍ଧବ ତଥା ପରିଚିତ ଅନେକ ଲୋକ ତାଙ୍କ ଚିକିତ୍ସାରେ ରହିଲେ । ସେ ଟଙ୍କା ପଇସା ନିଅନ୍ତି ନାହିଁ । ଆମେ ତାଙ୍କର ଏପରି ଆଶ୍ରିତ ହେଲୁ ଯେ ସେ କୁଆଡ଼େ ବାହାରକୁ ଗଲେ ଆମେ ଅସହାୟ ବୋଧକଲୁ । ଏ ଚିକିତ୍ସା ପାଇଁ ମୋତେ ବହୁତ ଥଟ୍ଟା ପରିହାସ ସହିବାକୁ ପଡ଼ିଛି । କଂଗ୍ରେସବାଲା, ଖଦଡ଼ ଲୁଗା, ତା ସାଙ୍ଗକୁ ଏ ମୂର୍ଖ ଚିକିତ୍ସା କହି ବହୁତ ଲୋକ ବହୁତ କଥା ଶୁଣାନ୍ତି ।

ଗୋପବାବୁ କଲିକତା ଯାଇ 'ଲ' ପଢ଼ିଲେ । ମା ତାଙ୍କୁ 'ଲ' ପଢ଼ିବାକୁ ପଠାଇଲା । ଲ' ପରୀକ୍ଷାର ପ୍ରଥମ ଭାଗ ପରୀକ୍ଷାରେ ସେ ପ୍ରଥମ ସ୍ଥାନ ପାଇଲେ । ମା'ର ଏ ଉଦ୍ୟମ ଓ ପଇସା ଖରଚ ସାର୍ଥକହେଲା ବୋଲି ଅନ୍ୟମାନେ ମା'କୁ ପ୍ରଶଂସା କଲେ । ଦେବେନ୍ଦ୍ରବାବୁ ପରାମର୍ଶ ଦେଲେ ଯେ ଲ' ପାସ୍ କରି ପ୍ରାକ୍ଟିସ ଜମାଇବାକୁ ସମୟ ଲାଗିବ । ଚାକିରି ପାଇଁ ମଧ୍ୟ ଚେଷ୍ଟା କରିଯାଉ । ଚାକିରି ପାଇଁ ମଧ୍ୟ ଚେଷ୍ଟା ଚାଲିଥାଏ । ଇତିମଧ୍ୟରେ ଶ୍ୱଶୁରଙ୍କର ବୈଠକଖାନା ଘରଗୁଡ଼ିକ ଭଡ଼ାହୋଇଗଲା । ସେଥିରେ ଯେ ଭଡ଼ାରେ ରହିଲେ ସେମାନେ ଅତି ଉତ୍ତମ ଲୋକ । ଆମେ ଦୁଇ ପରିବାର ଗୋଟିଏ ପରିବାର ପରି ଚଳିଲୁ । ତାଙ୍କ ଘରେ ମୁରବି ଉମାକାନ୍ତ ମହାପାତ୍ର ଆମ ଘରର ମୁରବି ପରି ବ୍ୟବହାର କରନ୍ତି । ମା' ବି ତାଙ୍କ ପିଲାଙ୍କ ଉପରେ ମୁରବିଗିରି କରନ୍ତି । ଉମାକାନ୍ତବାବୁ ପ୍ରତିଦିନ ସନ୍ଧ୍ୟାବେଳେ ବୁଲୁକୁ ନେଇ ବସି ଇଂରାଜୀ ଶବ୍ଦ ଶିଖାନ୍ତି । ବର୍ଣ୍ଣବୋଧର ଗୀତ ଶିଖାନ୍ତି । ବୁଲୁ ଏସବୁ ଖେଳଖେଳକେ ଶିଖିଗଲା ।

ବୁଲୁକୁ ଦୁଇବର୍ଷ ହେବାବେଳେ ଚମ୍ପା ଜନ୍ମହେଲା । ସେତେବେଳକୁ ମା' ଡାକ୍ତରୀ ଚିକିତ୍ସାର ବିରୋଧ କଲେ ନାହିଁ । ବୁଲୁ ଜନ୍ମ ପରେ ଦେଶୀଚିକିତ୍ସାରେ ମୁଁ ଯେଉଁ କଷ୍ଟ ପାଇଲି, ସେଥିରେ ମାମୁ ବିଶେଷଭାବରେ ବିଚଳିତ ହୋଇଥିଲେ । ସେ କୁଆଡ଼େ ବ୍ୟସ୍ତ ହୋଇ କହନ୍ତି, "ମୁଁ ଜାଣିଛି ବୋଲି କେତେ ସହିପାରେ । ସେ ତ ଯେତେ କଷ୍ଟ ପାଇଲେ ବି କିଛି କହିବନାହିଁ, ସବୁ ସହିଯିବ ।" ପିଲାଦିନେ ମାମୁଙ୍କ ଉପସ୍ଥିତିରେ ଫଳ କିଣା ହେଉଥିଲା । ସେତେବେଳେ କଟକରେ ଫଳ ପ୍ରଚୁର ପରିମାଣରେ ମିଳୁ ନ ଥିଲା । ତେଣୁ ଭଲ ଫଳ ଦେଖି ଖୁସିରେ କିଣାହେଲା । ମୁଁ ସେଠି ଥିଲି । କବାଟ ସନ୍ଧିରେ ଆଙ୍ଗୁଠି ରହିଥିଲା । ହଠାତ୍ କବାଟଟି ଆଉଜିହୋଇପଡ଼ିଲା । ମୋ ଆଙ୍ଗୁଠି କବାଟସନ୍ଧିରେ ଥାଏ । ସମସ୍ତେ ପସନ୍ଦ କରି ଫଳ କିଣିବାରେ ଲାଗିଛନ୍ତି । ଭାଇ ମୋତେ ଡାକିଲେ । ମୁଁ ତ ନିର୍ବାକ୍ ହୋଇ ଠିଆ ହୋଇଛି । ମୁହଁ କଳାପଡ଼ି ଆସିଲାଣି । ମାମୁ ଜାଣିବେ ଏହି ଲାଜରେ ମୁଁ କାହାରିକୁ କହୁନାହିଁ ଯେ କବାଟଟା ଫିଟାଇଦିଅ । ମାମୁ ମୋର ଏହି ଅବସ୍ଥା ଦେଖି ଅଭିଭୂତ ହୋଇପଡ଼ିଲେ । ଚମ୍ପା ଯେଉଁଦିନ ଜନ୍ମହେଲା

ସେଦିନ ସକାଳେ ମାଛତରକାରି ରାନ୍ଧି ସମସ୍ତଙ୍କୁ ଖୁଆଇଲି । ନିଜେ ଖିଆପିଆ କାମ ସାରି ଶୋଇଲି । କଷ୍ଟ ଆରମ୍ଭ ହେଲାଣି ଆଗରୁ । କାମ କରିବାର ଶକ୍ତି ଆଉ ନ ଥାଏ । ମା, ଅନ୍ନପୂର୍ଣ୍ଣାଦିଦି ଏମାନଙ୍କୁ ନେଇ ସନ୍ଧ୍ୟାଏ ତାସ୍ ଖେଳନ୍ତି । ମୁଁ ଜଳଖିଆ ତିଆରି ଆଦି ସବୁ କରେ । ସେଦିନ ଜଳଖିଆ ତିଆରିପାଇଁ ଧାଈ ବାରମ୍ବାର ଡାକଲେ ବି ଉଠିଲିନାହିଁ, ଶୋଇରହିଲି । ଧାଈ ମା'ଙ୍କୁ ଏକଥା କହିଲାରୁ ସମସ୍ତେ ସମସ୍ୱରରେ କହିଲେ—ସେ ତ . ଅସମୟରେ ଶୋଇବା ଲୋକ ନୁହେଁ । ଆଜି ଶୋଇଛି ଅର୍ଥ ତାର ବେଦନା ଆରମ୍ଭ ହେଲାଣି । ସମସ୍ତେ ତାସ୍ ଫୋପାଡ଼ିଦେଇ ମୋ ପାଖରେ ହାଜରହେଲେ । ମା ମୋ ମା ପାଖକୁ ଖବରଦେଲେ । ଡାକ୍ତରଭୟ ମା'ଙ୍କ ମନରୁ ସେତେବେଳକୁ ଚାଲିଗଲାଣି । ଡାକ୍ତର ପ୍ରଭାବତୀ ସିଂହ ଆସିବାବେଳକୁ ଚୁନା ଜନ୍ମ ହେଲାଣି । ସେ ବାକି ସବୁ କଲେ । ଏଥର ମୋ ଦେହ ଭଲ ।

## ଧାଈ ଓ ଚେଙ୍ଗୁବାରବାର

ପିଲାଦିନେ ଧାଈ କଥା ମୁଁ ଜାଣିନଥିଲି, କାରଣ ଆମ ଘରେ ଧାଈ ନଥିଲେ । ମାମୁଘରେ ମାଉସୀ ଘରେ ବି ଧାଈ ଦେଖିନଥିଲି । ଶାଶୁଘରକୁ ଆସି ଜାଣିଲି ଆମର ଯେ ଧାଈ ଅଛନ୍ତି ତାଙ୍କୁ ଆମ ଶ୍ୱଶୁରଙ୍କ ବାପା ରକ୍ଷିତା ସ୍ତ୍ରୀ ଭାବରେ ରଖିଥିଲେ । ସେ ସାତବର୍ଷ ବୟସର ଥିଲେ । ତାଙ୍କୁ କିଏ ଆଣି ଛାଡ଼ିଦେଇ ଗଲେ । ଆଈଶାଶୁ କୋଳକୁ ନେଇ ତାଙ୍କୁ ପାଳିଲେ । ବଡ଼ହେବାରୁ ବାହାଦେବା ସମସ୍ୟା ହେଲା । ଅଜଣା କାତିଗୋତର ଝିଅକୁ ବାହାହେବାକୁ କେହି ମଙ୍ଗିଲେ ନାହିଁ । ମୋ ଅଜାଶ୍ୱଶୁର ବ୍ରଜସୁନ୍ଦର ମଙ୍ଗରାଜ ତାଙ୍କୁ ରକ୍ଷିତା ସ୍ତ୍ରୀ ଭାବରେ ରଖିଲେ । ସେ ଯୁଗରେ ସ୍ୱାମୀ ରକ୍ଷିତା ସ୍ତ୍ରୀ ରଖିଲେ ବିବାହିତା ସ୍ତ୍ରୀ ତାକୁ ଗୋଟିଏ ସୁବିଧା ଭାବୁଥିଲେ । ଇଏ ସାଆନ୍ତାଣୀ ହେବେ । ଗୃହିଣୀର କାମ ସବୁ ଶ୍ରଦ୍ଧାରେ ନିଜଘର ପରି ମନେକରି କରିବ । ସ୍ୱାମୀଙ୍କ ପିଲାଙ୍କର ସେବା ଯତ୍ନ କରିବ । ଇଏ ହାକିମୀ କରିବେ । ଧାଈ କହନ୍ତି, ମୋ ଆଈଶାଶୁ ଅସନ୍ତୁଷ୍ଟ ହେବା ଡରରେ ଅଜାଶଶୁର ଗୁହାଳରେ ବା ଏଠି ସେଠି ଧାଈଙ୍କ ସଙ୍ଗେ ଆଳାପ କରନ୍ତି । ତାଙ୍କ ନାଆଁ ସାଧବୀ । ତାଙ୍କର ଗୋଟିଏ ପୁଅ ହେଲା । ଆମ ଶ୍ୱଶୁର ପାଞ୍ଚଭାଇ ଥିବାରୁ ସେ ପୁଅଙ୍କ ନାମ ଦେଲେ ବନ୍ଧୁର । ସେ ବାଇଶବର୍ଷ ବୟସରେ ମରିଗଲେ । ଅଜାଶଶୁର ମରିଯିବା ପରେ ଧାଈଙ୍କର କାମ ହେଲା ସେ ଘରର ଯେ ଝିଅ ବାହାହେବେ, ତାଙ୍କ ସାଙ୍ଗରେ ଯାଇ ତାଙ୍କୁ ଶାଶୁଘରେ ଚଳାଇବେ । ଧାଈ ଯେମିତି ବୁଦ୍ଧିମତୀ ସେମିତି ସ୍ନେହଶୀଳା ଓ ସେବାଯତ୍ନ କରିବାବାଲୀ । ଧାଈ ମୋ ଶାଶୁଙ୍କ ସାଙ୍ଗରେ କଟକରେ ଆସି ରହିଲେ ।

ଏପରି ଧାଈ ଆଉରି ଦେଖିଲି । ମୋ ଶାଶୁଙ୍କର ସାଆନ୍ତବାପା ବୁଧୀଧାଈ ନାମରେ ଜଣଙ୍କୁ ରଖିଥିଲେ । ଶାଶୁଙ୍କ ପାଳକବାପା ମୁକୁନ୍ଦ ଧାଈଙ୍କୁ ଓ ଦାଦା ମାଳୀ ଧାଈଙ୍କୁ ରଖିଥିଲେ । ସେମାନେ ଦେଖିବାକୁ ଯେପରି ସୁନ୍ଦର, ସେମାନଙ୍କ ଆଗ୍ରହ ବ୍ୟବହାର, କଥାବାର୍ତ୍ତା ସେହିପରି ମାର୍ଜିତ । ସେମାନେ ଆସିଲେ ସେମାନଙ୍କ ବରାଦ ମୁତାବକ ରାନ୍ଧିବାଢ଼ି

ଖୁଆଇବା, ପାନ ଭାଙ୍ଗି ଦେବା ମୋର କାମ । ଗୁଲ୍‌ଅପାଙ୍କ ଘରୁ ଜଣେ ଅପିଧାଈ ଆସନ୍ତି । ତାଙ୍କ ବ୍ୟବହାର ଅମାର୍ଜିତ । ଯାହା ମୁଁ ଆମଘରେ ଆଦୌ ଦେଖିନଥିଲି ଏଠାରେ ତାହା ଖୁବ୍ ଦେଖିଲି ।

ଆମ ସାଧବୀ ଧାଈଙ୍କ ପାଟିରେ ଗୋଟଏ ଘା ଥିଲା । କେତେ ଚକିତ୍ସାରେ ତାହା ଗଲା ନାହିଁ । ଅବଶ୍ୟ ସେତେବେଳେ ଏତେ ଉନ୍ନତ ଧରଣର ଚକିତ୍ସା ନଥିଲା । ତରକାରିରେ ଟିକିଏ ଲୁଣ ବେଶିହେଲେ ତାଙ୍କ ପାଟି ପୋଡ଼ିବ । ପାଟି ଆଁ କରିପାରନ୍ତି ନାହିଁ । ପାଣିଆ ଗୋଳା ଭାତ ଟିକିଏ ଟିକିଏ କରି ପାଟିରେ ଗୁଞ୍ଜି ଗୁଞ୍ଜି ଖାଆନ୍ତି । ନରମ ଜିନିଷ ଖାଇପାରନ୍ତି । ଧାଈଙ୍କ ପାଇଁ ମୋତେ ଅନେକ ଚେଷ୍ଟା କାରବାର କରିବାକୁ ପଡ଼େ । ଧାଈ ଲଡ଼ୁ ଭଲପାଆନ୍ତି । ଆମ ଘରେ ପ୍ରାୟ ଲଡ଼ୁ ଥାଏ । ମୁଁ ଶାଶୁଙ୍କୁ ଲୁଚାଇ ଧାଈଙ୍କ ଘରେ ଲଡ଼ୁ ରଖିଦେଇ ଆସେ, ନହେଲେ ଲୁଚେଇକରି ମୋହନଭୋଗ ରଖିଦିଏ । ତାଙ୍କ ରୁଚି ଅନୁସାରେ ତରକାରି ରାନ୍ଧି ଲୁଚେଇକରି ରଖିଦିଏ । ଧାଈଙ୍କର ଗୋଟିଏ ଘର ଥାଏ । ଏ ଲୁଗ୍ଗେର ଜିନିଷ ସବୁ ସେହି ଘର ଶିକା ଉପରେ ରହେ । ଶାଶୁ ଧାଈଙ୍କୁ ଖୁବ ଭଲପା'ନ୍ତି, କିନ୍ତୁ ସ୍ୱତନ୍ତ୍ର ଭାବରେ ଖାଇବା ପିଇବାକୁ ଦେବା ସେ ପସନ୍ଦ କରନ୍ତି ନାହିଁ । ବରଂ କ୍ରୁଦ୍ଧ ହୋଇ ସିଧା ନ କହି ବୁଲେଇ କରି କହନ୍ତି । ଧାଈଙ୍କ ମନରେ ଦୁଃଖ ହୁଏ । ସେ ମତେ କହନ୍ତି—ତମେ କିଛି ଖାଇବା ଜିନିଷ ମତେ ଦେବ ନାହିଁ କି ଅଲଗା ତରକାରୀ ପଜ ରାନ୍ଧିବ ନାହିଁ । ମୁଁ କାହିଁକି ଶୁଣିବ ? ଏ ବାବଦରେ ତ ମାଙ୍କଠାରୁ କଥା ଶୁଣିବାରେ ମୁଁ ଅଭ୍ୟସ୍ତ ହେଲିଣି । ନାଥିଅମା ଅତି ଦୁଃଖୀ । ତାଙ୍କୁ ଲୁଚେଇକରି ମୁଁ ଅଧିକ ଗୁହାଳ ଦିଏ । ମୋତିକୁ ମା ସ୍ନେହ କରନ୍ତି, କିନ୍ତୁ ତା ଦୁଃଖ ବୁଝନ୍ତି ନାହିଁ । ତାଙ୍କୁ ଲୁଚେଇକରି ସାହାଯ୍ୟ ନ କଲେ ସେ କିପରି ଚଳିବ ? ସେ ଲୋକମାନେ କୃତଜ୍ଞତା ଦେଖାଇବେ ବୋଲି ମୁଁ ସତର୍କ ଥାଏ । ଶାଶୁଙ୍କର ଟଙ୍କାପଇସାର ଲୋଭ ନାହିଁ । ସେ ଚାହିଁଥିଲେ ବହୁତ ଟଙ୍କା ପାଣ୍ଠି କରି ରଖିଥାନ୍ତେ, କିନ୍ତୁ ସେ ତାହା କରିନାହାନ୍ତି । ନିଜପାଇଁ ଗହଣାପତ୍ର ମଧ୍ୟ କିଛି କରିନଥିଲେ । ଦାମିକା ଲୁଗାପଟା ମଧ୍ୟ ନଥିଲା । ଘରେ ଚଳଣି ନାହିଁ, ତେଣୁ ସୁନା ପିନ୍ଧିଲେ କାଳେ ପିଲଙ୍କର ଅମଙ୍ଗଳ ହେବ ବୋଲି ମୋ ବାହାଘରର ପୂର୍ବ ପର୍ଯ୍ୟନ୍ତ ସେ ହାତରେ ରୁପା ଗହଣା ପିନ୍ଧିଥିଲେ ।

ଏଥର ଆସିଲା ବେଙ୍ଗ ବାହାଘରର ପ୍ରଶ୍ନ । ବର ଖୋଜା ଚାଲିଲା । ମୋ ମାଆର ବଡ଼ ବାପା, ପୁଅ ଭାଇଙ୍କର ନାତି ବି. ଏ. ପରୀକ୍ଷା ଶେଷ ବର୍ଷରେ ପଢ଼ୁଥାନ୍ତି । ମୋ ମା ଓ ଆଈ ତାଙ୍କ ସଙ୍ଗେ ବେଙ୍ଗ ବାହାଘର ପ୍ରସ୍ତାବ ପକାଇଲେ । ସେହିଠାରେ ବାହାଘର ହେବା ସ୍ଥିର ହେଲା । ଶାଶୁଙ୍କର ଇଚ୍ଛା—ସବୁ ମୁଁ କରିବ କିନ୍ତୁ ତାଙ୍କ ଇଚ୍ଛାନୁସାରେ କରିବ—ମାତ୍ର ସେ ଇଚ୍ଛା ପ୍ରକାଶ କରିବେ ନାହିଁ—ମୁଁ ତାଙ୍କ ମନ ଜାଣି କାମ କରିବ । ମହାଜନମାନଙ୍କ ଉପରେ ଶ୍ୱଶୁରଙ୍କର ବାକି ଥିବା ଟଙ୍କା ମିଳିଲା । ଦେବେନ୍ଦ୍ରବାବୁ ଓ ନାଗଅପା ବାହାଘରର ସବୁ କାମ କରାଇଲେ । ସେମାନଙ୍କଠାରୁ ମୁଁ ଅନେକ କଥା ଓ କାମ ଶିଖିଲି

ଯାହା ମୋ ଜୀବନପାଇଁ ଲାଭଦାୟୀ ହେଲା । ସେମାନଙ୍କ କାମ ଅତି ବ୍ୟବସ୍ଥିତ । ସମୁଦାୟ କାମ ମୋ ଦ୍ୱାରା କରାଇଲେ ଓ ସବୁ ଜିନିଷପତ୍ର ମୋ ଜିମ୍ମାରେ ରଖାଇଲେ । ଅଳ୍ପ ଟଙ୍କାରେ ବାହାଘର ସାରିବାକୁ ହେବ । ମୋର କେତେକ ଗହଣା, ପାଟଶାଢ଼ୀ, ସବାରି ଖର୍ଚ୍ଚ ଆଦି ବେଙ୍ଗଙ୍କୁ ଦେବା ପ୍ରସ୍ତାବହେଲା । ମୁଁ ସେ ବିଷୟରେ କିଛି ଭାବିଲି ବି ନାହିଁ—କାରଣ ମୁଁ ଧରିନେଇଥିଲି, ସେ ସମସ୍ତ ସାମଗ୍ରୀ ଏମାନଙ୍କର । ଯାହାହେଉ ବେଙ୍ଗ ବାହାଘର ସରିଲା, ମାଙ୍କର କଥା ସରିଲାନାହିଁ—ବାପ ନ ଥିବା ଝିଅ, ଶାଶୁ ଶଶୁର ନ ଥିବା ଘରେ ଦିଆଗଲା । ପଞ୍ଚାମୁଣ୍ଡେଇଆଡ଼େ ଆମ ଘର ପୁରୁଷରେ କେହି ବନ୍ଧୁ କରି ନ ଥିଲେ । ତାପା ନାହିଁ ବୋଲି ଝିଅ ଦେଖି ଦେଲି । ତାଙ୍କ ପରିବାରରେ ସମସ୍ତେ ଦୁଇ ଘରଥର ଲେଖା ବାହାହୋଇଛନ୍ତି, ତେଣୁ ମୋ ଝିଅ ଭାଗ୍ୟରେ ସେପରି ଘଟିବା ସ୍ୱାଭାବିକ । ଜଗନ୍ନାଥବାବୁ ଜିଲ୍ଲା ଜଜ ହେବା ପର୍ଯ୍ୟନ୍ତ ଏହି କଥା ଶାଶୁ କହୁଥିଲେ ।

୧୯୬୦ ଅପ୍ରେଲ ମାସରେ ମାମୁଙ୍କ ଝିଅ ବାହାଘର ହେଲା । ଜ୍ୱାଇଁ କଣ୍ଡାପାଖର ଜମିଦାରଙ୍କ ପୁଅ ଜଗନ୍ନାଥ ଦାସ । ବଡ଼ ଜମିଦାର । ଜ୍ୱାଇଁ ଏମ୍. ଏ. ପାସ୍ କରିଛନ୍ତି । ମାମୁ କଥାପ୍ରସଙ୍ଗରେ ଦିନେ କହିପକାଇଲେ—ଏମ୍. ଏ. ପାସ୍ କରିଥିବା ଜ୍ୱାଇଁ ଆମେ ପାଇଲୁ—ମାତ୍ର ପୁଅ କେହି ଏମ୍. ଏ. ପାସ୍ କଲେ ନାହିଁ । ଏ କଥାଟା ପୁଅମାନଙ୍କୁ ବାଧିଲା, ମାତ୍ର ଉପାୟ ନାହିଁ ଜିଦ୍ ରକ୍ଷା କରିବାପାଇଁ । ମାମୁ ପୁଅ ଭାଇଙ୍କ ବାହାଘର ତାଙ୍କ ଗାଁ କୁମୁଡ଼ାଜୟପୁରରେ ହେଲା । ନିକଟ ବନ୍ଧୁ କୁଟୁମ୍ବ ତ ଆସିଲେ, ଦୂରସମ୍ପର୍କୀୟ ବନ୍ଧୁଙ୍କୁ ମଧ୍ୟ ମାମୁ ଡାକିଲେ ଓ ସେମାନେ ଆସିଲେ । କେତେ ବର୍ଷ ପରେ ପୁରୁଣା ସାଙ୍ଗମାନଙ୍କୁ ଦେଖିଲି । ତାଙ୍କ ସଙ୍ଗେ ରହିଲି ।

ସେଠାରେ ଲୋକେ କପରି ଖାଇବାକୁ ପିନ୍ଧିବାକୁ ନ ପାଇ ଆକୁଳ ହେଉଛନ୍ତି ତାହା ଦେଖିଲି । ଗାଧୋଇସାରି ଲୁଗା ଶୁଖାଇଦେଇ ତାହା ଆଉ ତୋଳା ହେଉନାହିଁ—ମାଗିକରି ବା ଲୁଚେଇକରି ଲୋକେ ନେଇଯାଉଛନ୍ତି । ଦଳ ଦଳ ଲୋକ ପିଲାଙ୍କୁ ଆଣି ଖାଇବାକୁ ବସେଇ ଦେଉଛନ୍ତି । ମାମୁ ଏସବୁ ଦେଖି ତାଙ୍କ ଗୁମାସ୍ତାଙ୍କୁ ଆଦେଶଦେଲେ ଅମାରରେ ଯେତେ ଧାନ ଅଛି ତାକୁ କୁଟାଇଦେଇ ଚାଉଳ କରାଇଆଣ—ଯେତେଦିନ ପର୍ଯ୍ୟନ୍ତ ସେ ଚାଉଳ ଥିବ ସେତେଦିନ ପର୍ଯ୍ୟନ୍ତ ଏ ଗାଁର ଯେ ଖାଇବାକୁ ଆସିବ ସେ ଖାଇବ । ଚାଉଳ ନ ସରୁଣୁ କଦଳୀପତ୍ର ଓ ପଦ୍ମପତ୍ର ସେ ଅଞ୍ଚଳରୁ ସରିଗଲା । ପତ୍ର ବ୍ୟବସ୍ଥା ମାମୁ କଲେ ନାହିଁ, ଯେ ଯାହାର କଲେ । କିଏ ଡାଲାରେ ନିଏ, କିଏ କୁଲାରେ ନିଏ, କିଏ ଅବା ବାଉଁଶିଆରେ ଲୁଗାପାରି ଖାଇଲେ । ପକ୍କା ଅଗଣାକୁ ଟିକିଏ ଜାଗା ଧୋଇ ସଫାକରି ସେ ପକ୍କା ଉପରେ ଲୋକେ ଖାଇଲେ । ଆମେ ଯେତେ ଯାଇଥିଲୁ ଆମ ପିନ୍ଧିବା ଲୁଗା କେହି ଫେରାଇ ଆଣିଲୁ ନାହିଁ । ଏହା ପ୍ରଥମ ବିଶ୍ୱ ମହାଯୁଦ୍ଧ ଶେଷ ହେବା ପରର ଅବସ୍ଥା । ଗରିବ ବନ୍ଧୁକୁଟୁମ୍ବ ଯେ ନିମନ୍ତ୍ରିତ ହୋଇ ଆସିଥିଲେ ସେମାନେ ଫେରିଯିବାକୁ ଚାହିଁଲେ ନାହିଁ—ଚାଉଳ ସରିଲାରୁ ସମସ୍ତେ ଗାଁ ଛାଡ଼ି କଟକ ଆସିଲେ ।

## ୧୦ । ବଡ଼ୀ ବନ୍ୟା ଓ ଗୋପବାବୁଙ୍କ ମନୋମନ୍ଥନ

୧୯୨୦ ମସିହା ବର୍ଷାଦିନେ ବଡ଼ୀ ଅଞ୍ଚଳରେ ବଡ଼ ବଢ଼ି ହେଲା । ଗୋପବାବୁ ଯାଜପୁରରେ ସେକେଣ୍ଡ ଅଫିସର୍ ହୋଇଥିଲେ, ଦମ୍ପାକନିଧିବାବୁ ଏସ୍. ଡ଼ି. ଓ. ଥିଲେ । ଗୋପବାବୁ ଇନ୍‌କୁଆରି ପାଇଁ ବଡ଼ୀ ଯାଇ ସେଠା ଅବସ୍ଥା ଯାହା ଦେଖିଲେ ତା'ର ସତ ରିପୋର୍ଟ ପେଶ୍ କଲେ । ଦମ୍ପାକନିଧିବାବୁ ତାଙ୍କୁ ସତର୍କ କରାଇ କହିଲେ—ଏ ପ୍ରକାର ରିପୋର୍ଟ ଦେଲ, ତମ ଚାକିରି ରହିବ ନାହିଁ ଯେ ! ସତକୁସତ ସେ ରିପୋର୍ଟ ଉପରେ କୈଫିୟତ୍ ମଗାଗଲା ଉପରୁ । ଗୋପବାବୁ ଠିକ୍ କଲେ ସତ୍ୟ ଘଟଣା ହିଁ କହିବେ ଓ ଲେଖିବେ । ଆମେ କଟକରେ ଥାଉ । ମୋତେ ଚିଠିରେ ପଚାରିଲେ—ଅବସ୍ଥା ଏଯା, କଣ କରାଯିବ ? ମୁଁ ଲେଖିଲି ତମେ ବିବେକ ଅନୁମୋଦିତ କାମ କର । ଚାକିରି ଗଲେ ମୋର ଦୁଃଖ ନାହିଁ । ସେହି ସମୟରୁ ଚାକିରି ଛାଡ଼ିବା ପ୍ରଶ୍ନ ମନକୁ ଆସିଲା ।

ଦ୍ୱାଦଶୀ ଦିନ ମା' ଅରୁଆ ଖା'ନ୍ତି । ସକାଳେ ଭାଗବତପୂଜା ସାରି ଗଙ୍ଗାଧର (ପୂଜକ) ଜଳଖିଆ ଖାଇ ଭୋଜନକାମ ସାରିଲେ ମା ଟିକିଏ ଜଳଖିଆ ଖାଇବେ । ମୁଁ ଏସବୁ କାମ ଓ ପିଲାଙ୍କ କାମ ସାରି ମା'ଙ୍କ ପାଇଁ ଅରୁଆ ରାନ୍ଧୁଥାଏ । ମା' ମୋ ପାଖରେ ବସି ପରିବା ବନେଇଦେଉଥାନ୍ତି । ଟୁକ (ନବକୃଷ୍ଣ ଚୌଧୁରୀ) ଆସି ଅତି ସହଜଭାବରେ କହିଲେ, "ବୋଉ ! ଭାଇ ଲେଖିଛନ୍ତି ସେ ଚାକିରି ଛାଡ଼ିଦେବେ ।" ମା' ଚମକିପଡ଼ିଲା ପରି କହିଲେ, "କାହିଁକି ? କଣ ହେଲା ?" ଟୁକ ଚିଠିଟା ପଢ଼ିଦେଲେ ! ଚିଠିର ସାରାଂଶ—ବନ୍ୟାପୀଡ଼ିତଙ୍କୁ ରିଲିଫ୍ ଦେବା କାମରେ ସରକାର ମୋତେ ସିନା ପଠାଉଛନ୍ତି କିନ୍ତୁ ସରକାରଙ୍କର ମତିଗତି ଯାହା ଦେଖୁଛି ସେଥିରେ ମୋଦ୍ୱାରା ଏ କାମ ହୋଇପାରିବ ନାହିଁ । ବାଧ୍ୟହୋଇ ଚାକିରିରେ ରହିବା ମୋ ପକ୍ଷରେ କଷ୍ଟକର ହେବ । ଏ କଥା ମୋତେ କିଛି ନୂଆ ଲାଗିଲା ନାହିଁ । ଏହି ବିଷୟରେ ତ ଆଗରୁ ମୋ ପାଖକୁ ଚିଠିମାନ ଆସିଥିଲା । ବଢ଼ିବନ୍ୟାପାତ ଯୋଗୁ ଲୋକେ କିପରି ଦୁଃଖକଷ୍ଟ ଭୋଗୁଛନ୍ତି, ଉପରସ୍ଥ କର୍ମଚାରୀଙ୍କ ବ୍ୟବହାର, ସେଥିଯୋଗୁ ତାଙ୍କର ମାନସିକ ଅବସ୍ଥା ସବୁ ବର୍ଣ୍ଣନା କରି ଲେଖିଥିଲେ । ଏସବୁ କଥା କହିବି କାହାକୁ ? ଚୂପ୍ ହୋଇ ଥାଏ । ଆମେ ଯାହା ଆଶା କରି ନ ଥିଲୁ ମା' ତାହା କରିଲେ । ଟୁକ ପଢ଼ିସାରିବା ପରେ ମା' ଅଳ୍ପ ସମୟ ଚୂପ୍ ରହିଲେ । ତା'ପରେ ସହଜଭାବରେ କହିଲେ—"ମୋ ପାଇଁ ତ ସବୁଠାରୁ ତା' ଜୀବନଟା ବଡ଼, ତାକୁ ଯଦି କଷ୍ଟ ହେଉଛି ଚାକିରି ଛାଡ଼ିଦେଉ । ଯେପରି ହେଉ ଦୁଃଖେକଷ୍ଟେ ଚଳିବା । କେତେ ଗରିବାନାରେ ଲୋକେ ଚଳୁଛନ୍ତି ଆ—ମେ ସେମିତି ଚଳିବା ।" ଖିଆପିଆ ହେଲା, ଘରକାମ ସରିଲା । ମାତ୍ର ମା'ଙ୍କ ମନ ବ୍ୟାକୁଳ ଥିଲାପରି ଜଣାପଡୁଥାଏ । ମଝିରେ ମଝିରେ ପାଟିରୁ ବାହାରିପଡେ—"ହେ ଭଗବାନ ଗୋସେଇଁ ! ତା' ଆଗରେ କେମିତି ମୋ ଦିନ ସରିଯାଉ ।"

କ୍ରମେ ଏକଥା ପ୍ରଗ୍ରଶତ ହେଲା । ଅନ୍ନପୂର୍ଣ୍ଣା ଦିଦିଙ୍କ ଘରେ ଶୁଣି ସମସ୍ତେ ଆଶ୍ଚର୍ଯ୍ୟ ହେଲେ । ଉମାକାନ୍ତବାବୁ ମା'ଙ୍କୁ କହିଲେ—ଆପଣ ବୁଝାଇ ଚିଠିଲେଖନ୍ତୁ—ପିଲାଟୁଆ ଅଛନ୍ତି, ନବ ପାଠ ପଢ଼ିବ । ଗୃହକର୍ମ ଛାଡ଼ିବେ, ଚଳିବେ କିପରି ?—"ସେ ତ ବାପ୍ୟାଂଶେ, ବଡ଼ ହେଲା ବୋଲି ସେ ବୁଝି କ'ଣ ତା'ର ଗଲାଣି ? ସେ କ'ଣ ମୋ କଥା ଶୁଣିବ ? ସେ ଯେଉଁଥିରେ ଶାନ୍ତି ପାଇବ, ତା' ମନରେ ଦୁଃଖକଷ୍ଟ ନ ହେବ, ସେ ତାହା କରୁ । ମୋର ତ ପିଲା ବଞ୍ଚୁ ନ ଥିଲେ ବୋଲି ଭଗବାନଙ୍କୁ ଡାକୁଛୁ—ଯୋଗୀ ଫକୀର ପଛେ ହେଉ ବଞ୍ଚି ଥାଇ ରହୁ । ମୁଁ ତ ଭଗବାନଙ୍କୁ ଯାହା ଜଣାଇଥିଲି ସେ ତାହା କରିବାକୁ ଯାଉଛନ୍ତି, ସେ ତ ମୋ କର୍ମଫଳ । ସେ ଯୋଗୀ ଫକୀର ହୋଇ ପଛେ ବୁଲୁ, ବଞ୍ଚି ଥାଇ କରି ପୃଥିବୀରେ ରହୁ ।"

ଅନ୍ନପୂର୍ଣ୍ଣା ଦିଦି, ନାଲିଆମା (ଉମାକାନ୍ତ ବାବୁଙ୍କ ବିଧବା ଖୁଡ଼ୀ) ମୋତେ କହିଲେ, "ଭୁଢ଼ା ବୋଉ ! ଏ କି କଥା ? ଟୁକିକୁ ପଢ଼ାଇବା, ବାହା କରିବା ତମର କାମ । ଏ କଥା ସବୁ ବୁଝାଇକରି ଲେଖ । ଗୃହକର୍ମ ଛାଡ଼ିଦେଲେ ତମେ ଯେ କଷ୍ଟ ପାଇବ, ସେ କଥା ତାଙ୍କୁ ଲେଖ ।"

ମୁଁ କିଛି ନ କହି ଚୁପ୍ ରହିଲି । ଲେଖିବି ନାହିଁ ବୋଲି ସତ କହିବା ପାଇଁ ସାହସ ନାହିଁ । ଆମ ପ୍ରତି ତାଙ୍କର ସ୍ନେହ ମମତା ଏତେ ବେଶୀ ଯେ ଭବିଷ୍ୟତର ଆର୍ଥିକ ଦୁର୍ଗତି ଯୋଗୁ ଶୋଚନୀୟ ଅବସ୍ଥାର କଳ୍ପନାରେ ସେମାନେ ବିଚଳିତ । ଧାଇଙ୍କ ବ୍ୟକ୍ତିତ୍ୱ କିଛି କମ୍ ନୁହେଁ । ସେ ତ କାନ୍ଦିପକାଇଲେ । ଧାଇ ଯାଇ ମାଗ ଅପାଙ୍କୁ ଏକଥା କହିଲେ । ସେତେବେଳେ ଦେବେନ୍ଦ୍ରବାବୁ (ବଡ଼ ଭିଣୋଇ) ଗୃହକର୍ମ ଛାଡ଼ିବା ବିଷୟରେ ଚିଠି ପାଇ ସାରିଲେଣି ଏବଂ ଗୃହକର୍ମ ଛାଡ଼ିବା ପରେ ତା'ର ପରିଣତି କଣ ହେବ ସେ କଥା ପୁଙ୍ଖାନୁପୁଙ୍ଖ ରୂପେ ବୁଝାଇ ଲେଖିଥାନ୍ତି ।

ମାଗଅପା ଓ ଦେବେନ୍ଦ୍ରବାବୁ ଅଲଗା ଅଲଗା ଆସି ଗୃହକର୍ମ ଛାଡ଼ିବାର ପରିଣତି କଣ ହେବ ତାହା ବର୍ଣ୍ଣନା କରି କହିଲେ । ଗୃହକର୍ମ ନ ଛାଡ଼ିବାକୁ ପ୍ରବର୍ତ୍ତାଇବା ପାଇଁ ନାନା ପ୍ରକାର ପରାମର୍ଶ ଦେଇ କହିଲେ । ସମସ୍ତଙ୍କର ଏକ କଥା—ପିଲା କେମିତି ମଣିଷ ହେବେ ? ଟୁକିଙ୍କର ବାପା ନାହାନ୍ତି । ତାଙ୍କୁ ଭଲଭାବରେ ପଢ଼ାଇବା ଓ ବାହା କରିବା ଆମର କର୍ତ୍ତବ୍ୟ । ଗୃହକର୍ମ ଛାଡ଼ିଲେ ଅର୍ଥାଭାବ ତ ନିଶ୍ଚୟ ହେବ, ଟୁକିଙ୍କ ପାଠପଢ଼ା ହୋଇପାରିବ ନାହିଁ । ତେଣୁ ଆମେ ନିନ୍ଦିତ ହେବୁ । ମା'ଙ୍କ ମନରେ ମଧ୍ୟ ଦୁଃଖ ହେବ ଇତ୍ୟାଦି । ବନ୍ଧୁ ବାନ୍ଧବମାନେ ଯେ ଯେଉଁଠି ଶୁଣିଲେ ଆସି ମତେ ଉପଦେଶ ଦେଲେ । ସବୁ ନୀରବରେ ଶୁଣେ, କିଛି ଜବାବ ଦିଏ ନାହିଁ । ଗୃହକର୍ମ ଛାଡ଼ିବା ବିଷୟରେ (ଗୋପବାବୁ) ଗୁରୁଜଣଙ୍କୁ ଲେଖି ମତ ପଚାରିଥିଲେ । ମା'ଙ୍କୁ ଲେଖିବା ଚିଠିଟା ଟୁକିଙ୍କୁ ଲେଖିଥିଲେ । ବାକିଗୁଡ଼ିକ ଖଣ୍ଡିକୁ ଖଣ୍ଡେ ଦେବେନ୍ଦ୍ରବାବୁ, ଖଣ୍ଡେ ବଡ଼ମାମୁ ଓ ଖଣ୍ଡେ ମୋ ମା'ଙ୍କୁ ।

ବଡ଼ମାମୁ ଜବାବ ଦେଲେ—"ମୁଁ ତ ଜଣେ ସରକାରୀ ଚାକିରିଆ । ମୁଁ ଅନୁଭବ କରୁଛି ଯେ ସରକାରୀ ଗୃହକର୍ମରେ ମଣିଷର ମାନବିକତାର ବିକାଶ ହେବ ନାହିଁ । ରୁ

ଯେତେବେଳେ ଗୃହକର୍ତ୍ତ୍ରୀ ଛାଡ଼ିବା କଥା ବିଚାରୁଛୁ, ମୁଁ ତୋତେ କଦାପି ଗୃହକର୍ତ୍ତ୍ରୀରେ ରହିବା କଥା କହିବି ନାହିଁ । ତେବେ ତୋ ଉପରେ ପରିବାରର ଦାୟିତ୍ୱ ରହିଛି । ତା'କୁ ସମ୍ଭାଳିବାର ସାହସ ଯଦି ତୋର ଥିବ, ତେବେ ମୋର ମତ ଯେ ଗୃହକର୍ତ୍ତ୍ରୀ ଛାଡ଼ିବା ଭଲ ।" ଏ ଚିଠିଖଣ୍ଡ ବୁଆଡ଼େ ଗୃହକର୍ତ୍ତ୍ରୀ ଛାଡ଼ିବା ବିଚାରକୁ ଆହୁରି ଦୃଢ଼ କଲା । ମୋ ମା' ଲେଖିଲା— "ତମେ ଗୃହକର୍ତ୍ତ୍ରୀ ଛାଡ଼ିବ ଏ କଥା ଭାବିବା ବେଳକୁ ପିଲାଙ୍କୁ ମଣିଷ କରିବା ପ୍ରଶ୍ନ ମନରେ ଉଠୁଛି; ମାତ୍ର ପଇସା ବେଶି ନ ଥିଲେ ଯେ ପିଲାଙ୍କୁ ଭଲ ମଣିଷ କରିହେବ ନାହିଁ, ଏପରି କିଛି କଥା ନୁହେଁ । ପିଲାଙ୍କୁ ଭଲ ମଣିଷ କରିବାର ଇଚ୍ଛା ରଖିଲେ ପଇସାର ଅଭାବ ବାଧା ଦେବ ନାହିଁ । ଗୃହକର୍ତ୍ତ୍ରୀ ଏପରି କିଛି ଭଲ କାମ ନୁହେଁ ଯେ ତମେ ଛାଡ଼ିବାକୁ ଚାହୁଁଥିବା ସ୍ଥଳେ ମୁଁ ତମକୁ ରହିବାକୁ କହିବି । ମାତ୍ର ତମ ଉପରେ ଥିବା ପରିବାରର ଦାୟିତ୍ୱକୁ ଦୂରଦୃଷ୍ଟିରେ ବିଚାରକରିବ ଓ ମନରେ ସାହସ ହେବ ତ ଛାଡ଼ିଦେଇପାର ।" ମା' ଏ କଥା ଦିନେ ମତେ ଏକାନ୍ତରେ କହିଲା । ମାମୁଙ୍କ ମନ ମଧ୍ୟ ଜାଣିଲି । ଏ ଦୁଇଜଣଙ୍କ ମତ ମଧ୍ୟ ଜାଣିଲି । ଏ ଦୁଇଜଣଙ୍କ ମତ ମୋ ମନରେ ବହୁତ ବଳ ଦେଲା ବାକ୍ୟବାଣ ସହିବାପାଇଁ ।

ଏ ଘଟଣା ହେଲା ୧୯୨୦ ସେପ୍‌ଟେମ୍ବର ଶେଷ ବା ଅକ୍‌ଟୋବର ଆରମ୍ଭରେ ।

## ୧୧ । ଗାନ୍ଧୀ ଓ କଂଗ୍ରେସ

କଂଗ୍ରେସ କଥା, ଗାନ୍ଧୀ କଥା କାଁ ଭାଁ ଟିକିଏ କାନରେ ପଡ଼ୁଥାଏ । ସେସବୁ କଥା ମୋ କାନକୁ ଆସିବାର ବାଟ ଥିଲା ଠକ, ଗୋବିନ୍ଦ (ଗୋବିନ୍ଦ ଚୌଧୁରୀ, ଗୋପବାବୁଙ୍କ ଖୁଡ଼ିତୁତା ଭାଇ) ଓ କଣ୍ଡୁ (ଜଣେ ଦୂରସମ୍ପର୍କୀୟ ଆତ୍ମୀୟ) । ସେମାନେ ବାହାରେ ଯାହା ଶୁଣିଥାନ୍ତି ସେମାନଙ୍କୁ ଖାଇବାକୁ ଦେବାବେଳେ ସେ ସବୁ କଥା ମୁଁ ଶୁଣିନିଏ । ମୋ ପରି ଆଗ୍ରହୀ ଶ୍ରୋତା ବି ତାଙ୍କର ଅନ୍ୟ କେହି ନ ଥାନ୍ତି । ତେଣୁ ସେମାନେ ମତେ ଏକମାତ୍ର ଆଗ୍ରହୀ ଶ୍ରୋତା ପାଇ ସବୁ ଶୁଣାନ୍ତି । ମୋତେ ଏ ସବୁ ଚର୍ଚ୍ଚା ସାବଧାନତାର ସହିତ ଶୁଣିବାକୁ ପଡ଼ୁଥାଏ, କାରଣ ମା'ଙ୍କୁ ଏସବୁ ଚର୍ଚ୍ଚା ଭଲ ଲାଗୁ ନ ଥାଏ । ତାଙ୍କର ଭୟ ହେଉଥାଏ ଯେ ବାହାର ଚର୍ଚ୍ଚା ଶୁଣିଲେ ମୋ ମନ ସେ ଆଡ଼କୁ ଟାଣିହୋଇଯିବ । ସରଳା ଦେବୀଙ୍କ ଆଚରଣ ମା'ଙ୍କ ମନରେ ଭୀତି ଆଣିଦେଇଥାଏ । ତାଙ୍କର ସ୍ୱାଧୀନ ମନୋବୃତ୍ତି ଅନୁସାରେ ସେ କାମ କରିଯାଉଥାନ୍ତି—ପର୍ଦ୍ଦାପ୍ରଥା ନ ମାନିବା, ହରିଜନ ଛୁଆଁ ନ ମାନିବା ଇତ୍ୟାଦି । ମା ମନେ ମନେ ଭାବୁଥାନ୍ତି ମୁଁ ସରଳା ଦେବୀଙ୍କ ପ୍ରଭାବରେ ପ୍ରଭାବିତ ହୋଇଯିବି କି ?

୧୯୨୦ ଡିସେମ୍ବର ମାସରେ ନାଗପୁରଠାରେ କଂଗ୍ରେସ ଅଧିବେଶନ ବସିବ ବୋଲି କାଗଜରେ ବାହାରିଲା । କଂଗ୍ରେସ ଅଧିବେଶନ ସମ୍ବନ୍ଧରେ ମୋର ସେତେବେଳେ କୌଣସି

ଜ୍ଞାନ ନ ଥିଲେ ମଧ୍ୟ ସେ ଖବର ଏପରି ହାଓ୍ୱା ସୃଷ୍ଟିକଲା ଯେ ମନଭିତରେ ସ୍ପନ୍ଦନ ଅନୁଭବକଲି ।

ଉମାକାନ୍ତବାବୁ ପ୍ରତିଦିନ ଅଫିସରୁ ଫେରିଆସିବା ମାତ୍ରେ ଅଫିସରେ ଯାହା ଶୁଣି ଆସିଥିବେ ତାହା କହିବେ । ତା'ଛଡ଼ା ଘରକୁ ତାଙ୍କର ସାଙ୍ଗସାଥୀମାନେ ଆସନ୍ତି । କଥା ତ ଗୋଟିଏ—ନାଗପୁରରେ କଂଗ୍ରେସ ହେବ—ସେଠିକୁ ଗାନ୍ଧୀ ଆସିବେ । ଭାରତର ସ୍ୱାଧୀନତା ବା ସ୍ୱରାଜ କଥା ସେଠାରେ ପଡ଼ିବ । ସ୍ୱରାଜ୍ୟ ଶବ୍ଦଟି ପୂର୍ବରୁ କାହାରି ମୁହଁରେ ନ ଥିଲା । ବର୍ତ୍ତମାନ ସ୍ୱରାଜ୍ୟ କଥା ହିଁ ସବୁରି ମୁହଁରେ । ହଠାତ୍ ନୂଆ ବାୟୁମଣ୍ଡଳ ସୃଷ୍ଟି ହୋଇଥିବା ପରି ବୋଧହେଲା ।

ତା'ପରେ ଶୁଣାଗଲା ଦାସେ ଆପଣେ (ଗୋପବନ୍ଧୁ ଦାସ) ନାଗପୁର କଂଗ୍ରେସରେ ଯୋଗ ଦେବାକୁ ଯିବେ । କଂଗ୍ରେସ ବିଷୟରେ ମୋର କୌଣସି ଧାରଣା ନ ଥିଲା । ପରେ ମୋର ମନେହେଲା ମୋରି ପରି ଅନେକ ଲୋକଙ୍କର ବି ଧାରଣା ନ ଥିଲା ।

ଦାସେ ଆପଣେ ନାଗପୁର କଂଗ୍ରେସକୁ ଗଲେ । ସେ କଂଗ୍ରେସରୁ ଫେରି କ'ଣ କହିବେ ଓ କରିବେ ତାହାରି ପ୍ରତୀକ୍ଷାରେ ମୋରି ପରି କେତେ କେଉଁଠି ଥିବେ । ସେତେବେଳକୁ ନବବାବୁଙ୍କର କଲେଜ ଛାଡ଼ିବାକୁ ଟିକିଏ ଟିକିଏ ମନ ହେଲାଣି । ଦାସେ ଆପଣେ କଂଗ୍ରେସରୁ ଫେରିଲେ । ସେତେବେଳେ କାଠଯୋଡ଼ି ନଈବାଲି ଥିଲା ପ୍ରଧାନ ସ୍ଥାନ ସାଧାରଣ ସଭାପାଇଁ । ନଈବାଲିରେ ଏକ ବଡ଼ ସଭା ହେଲା । ଦାସେ ଆପଣେଙ୍କ ବକ୍ତୃତା ହେଲା । ପଞ୍ଚବିଧ ବର୍ଜ୍ଜନର କଥା ସେ ସଭାରେ କହିଲେ—(୧) ସରକାରୀ ଉପାଧି, (୨) ସରକାରୀ ସ୍କୁଲ କଲେଜ, (୩) ପ୍ରାଦେଶିକ କାଉନ୍‌ସିଲ ଓ କେନ୍ଦ୍ର ଆସେମ୍ବ୍ଲି, (୪) ଓକିଲାତି ଓ ସରକାରୀ ଚାକିରି, (୫) ବିଲାତି ଲୁଗା । ସେ ବକ୍ତୃତା ଲୋକଙ୍କ ମନକୁ ଚହଲେଇଦେଲା । ସ୍କୁଲ-କଲେଜର ପିଲା ମାତିଉଠିଲେ । ଦାସେଆପଣେଙ୍କର ନଈବାଲି-ସଭାରେ ଭାଷଣ ଶୁଣିବାର ସୁଯୋଗ ମୋତେ ଥରେ ଦୁଇ ଥର ମିଳିଥିଲା । ଭାଷଣ ଶୁଣିବାର ଇଚ୍ଛାକୁ ସମ୍ବରଣ କରି ପାରିଲି ନାହିଁ, ହାରିଗଲି । ମା'ଙ୍କୁ କହିଲି—"ଚାଲନ୍ତୁ ନଈକୂଳକୁ ଯିବା । ଗୋପବନ୍ଧୁ ଦାସ କ'ଣ ସବୁ ନୂଆ କଥା କହିବେ ଶୁଣିବା ।" ମା'ଙ୍କ ମନରେ ସେଥିପ୍ରତି ଆଗ୍ରହ ନ ଥିଲେ ମଧ୍ୟ ସେ ମୋତେ କିଛି ନ କହି ବାମୀଦିଦିକୁ ସାଙ୍ଗ କରିଦେଲେ । ମା ନ ଯାଇ ବାମୀଦିଦି ଯିବାରୁ ମୁଁ ନିଃସଙ୍କୋଚରେ ନଈବନ୍ଧ ତଳକୁ ଯାଇ ବସି ଶୁଣିଲି । ବାମୀଦିଦି ଜଣେ ଘରଲୋକ ପରି । ମା'ଙ୍କର ଘର-କାମରେ ସାହାଯ୍ୟକାରୀ । ତାଙ୍କ କାମରେ ଶଣୁଣା ମା'ଙ୍କ ମନକୁ ଆସେ—ସେ ଖାଲି ପଡ଼ିଥିବା ଆମ ଗାଡ଼ିଶାଳାରେ ରହୁଥିଲେ । ତାଙ୍କର ଦୁଇ ଭାଇ ମଧ୍ୟ ଥାନ୍ତି । ଭାଇମାନଙ୍କ ରୋଜଗାର ଗୁଲିଖଟିରେ ଯାଏ । ବାମୀଦିଦି ଧାନକୁଟାରୁ ପରିବା ବନେଇବା, ମୁଣ୍ଡ କୁଣ୍ଡେଇ ଦେବା ଆଦି ସବୁ କାମ କରନ୍ତି । ସେ ମା'ଙ୍କ ପାଖେ ଚଳିଥାନ୍ତି । ଘରକୁ କିଛି ସାହାଯ୍ୟ ମଧ୍ୟ ଦିଅନ୍ତି । ସେ ସଭାରେ ଲୋକେ ଯେତେ ଆଗ୍ରହରେ ମନଦେଇ ବକ୍ତୃତା ଶୁଣୁଥାନ୍ତି ସେପରି ମନ ଦେଇ ଭାଷଣ ଶୁଣିବାର ଆଗ୍ରହ ମୁଁ କେବେ ଦେଖି ନାହିଁ । ଦାସେଆପଣେଙ୍କ ବକ୍ତୃତା ଶୁଣି ସ୍କୁଲ କଲେଜ ପିଲାମାନେ ପଢ଼ା ଛାଡ଼ିବା ପାଇଁ ତିଆରି ହୋଇଗଲେ ।

ପୁରୀରେ ଜଗବନ୍ଧୁ ସିଂହ ଓ କଟକରେ ଭଗୀରଥି ମହାପାତ୍ର ଓକିଲାତି ଓ ବାଲେଶ୍ୱରରେ ମୁକୁନ୍ଦପ୍ରସାଦ ଦାସ ମୁକ୍ତିଆରି ଛାଡ଼ିଲେ । କବି ବୀରକିଶୋର ଦାସ ଚାକିରି ଛାଡ଼ିଲେ ।

ପ୍ରତିଦିନ ସନ୍ଧ୍ୟାବେଳେ ଆମ ଘରେ ଧମାଧମ୍ ଆଲୋଚନା । ସକାଳଓଳି ପଢ଼ିବାବାଲାଙ୍କର ପଢ଼ା ଓ ମୋର ଘରକାମ । ସନ୍ଧ୍ୟାରେ ପଢ଼ିସାରି ଖାଇବା ବେଳକୁ ଆଲୋଚନା । କଣ୍ଠ ଓ ଗୋବିନ୍ଦ ସ୍କୁଲ ପିଲା । ନବବାବୁ ସେତେବେଳେ କଲେଜ ଛାତ୍ର । ବାହାରେ ଯେ ଯାହା ଶୁଣି ଆସିଥାନ୍ତି ତାହାରି ଉପରେ ଚର୍ଚ୍ଚା ହୁଏ । ନବବାବୁ କଲେଜ ଛାଡ଼ିବା ପାଇଁ ମନେ ମନେ ପ୍ରସ୍ତୁତ ହେଉଥାନ୍ତି । ମୁଁ ସେ କଥା ଜାଣିଥିଲେ ମଧ୍ୟ ନଜାଣିଲା ପରି ରହୁଥାଏ । ମୁଁ ତ ଜାଣେ—ନବବାବୁ କଲେଜ ଛାଡ଼ିବା ମାନେ ମୋ ଉପରେ ସମସ୍ତଙ୍କର ମନ୍ତବ୍ୟ ଚାଲିବ । ଫଳରେ ତାହା ହିଁ ହେଲା । ନବବାବୁ କଲେଜ ପାଠ ଛାଡ଼ିଲେ । ମୋ ଉପରେ ଗାଳି, ମନ୍ତବ୍ୟ, ଉପଦେଶ ଆଦିର ବର୍ଷଣ ପାଞ୍ଚବର୍ଷ ପର୍ଯ୍ୟନ୍ତ ଚାଲିଲା । ଏ ମଧ୍ୟରେ ଚଳିତ ବର୍ଷ ଶେଷହେଲା । ପ୍ରସିଦ୍ଧ ୧୯୨୧ ମସିହା ଚାଲିଲା । କଟକ ସହର ପୁରା ସରଗରମ୍ । ବୟସ୍କ ଲୋକମାନେ ବିସ୍ମୟ ପ୍ରକାଶ କରି କହିବାକୁ ଲାଗିଲେ ଏ କ'ଣ ହେଲା ? ଦେଶଟା ଯେପରି ପଚିଶ ବର୍ଷ ଆଗକୁ ଚାଲିଗଲା । ପିଲାଙ୍କର ଏ ଉତ୍ତେଜନାକୁ ସମ୍ଭାଳିବ କିପରି ? ମନେ ମନେ ଭାରି ଭୟ, ଉତ୍ତେଜନାଟା ଉଚ୍ଛୃଙ୍ଖଳତାରେ କାଳେ ପରିଣତ ହେବ ।

ସେତିକିବେଳେ ଉତ୍କଳଗୌରବ ମଧୁସୂଦନ ଦାସ ବିହାର ଓଡ଼ିଶାର ମନ୍ତ୍ରୀପଦ ଗ୍ରହଣ କରିଥାନ୍ତି । ସେତେବେଳେ ବିହାର ଓଡ଼ିଶା ଗୋଟିଏ ପ୍ରଦେଶ ଥିଲା । ତାହାର ରାଜଧାନୀ ପାଟନା ଥିଲା । ତେଣୁ ସେକ୍ରେଟେରିଏଟ୍ ବିହାରରେ ଥିଲା । ପ୍ରାଦେଶିକ କାଉନସିଲ୍ ପାଟନାରେ ବସୁଥିଲା । ତେଣୁ ମନ୍ତ୍ରୀମାନେ ପାଟନାରେ ରହୁଥିଲେ । ନାଗପୁର କଂଗ୍ରେସର ପ୍ରସ୍ତାବରେ ସରକାରଙ୍କ ସଙ୍ଗେ ଅସହଯୋଗ କରିବାକୁ ସ୍ଥିରକରାଯାଇଥିଲା । ସେତେବେଳେ ସରକାରଙ୍କ ସଙ୍ଗେ ଅସହଯୋଗ କରିବା କଥା କଳ୍ପନାର ଅତୀତ ଥିଲା । ସାଧାରଣ ପାଠପଢ଼ୁଆ ଲୋକଙ୍କ କଥା ଛାଡ଼ିଦେଲେ ମଧ୍ୟ ରାଜନୀତିର ଲୋକମାନେ ପୁରା ଅସହଯୋଗ କଥାଟାକୁ ଧରିପାରୁ ନଥିଲେ । ୧୯୨୦ ସେପ୍ଟେମ୍ବର ମାସରେ କଲିକତାରେ ଯେଉଁ କଂଗ୍ରେସ ଅଧିବେଶନ ବସିଥିଲା, ସେଥିରେ ଏହାର ସୂଚନା ମିଳିଥିଲା । ଦେଶବନ୍ଧୁ ଚିତ୍ତରଞ୍ଜନ ଦାସ ପ୍ରଭୃତି ଏହାର ବିରୋଧରେ ଥିଲେ । ଚିତ୍ତରଞ୍ଜନ ଦାସ ଗୋଟିଏ ଦଳ ସୃଷ୍ଟି କଲେ ଏବଂ ସେ ଦଳକୁ ନେଇ ସ୍ପେଶାଲ ଟ୍ରେନରେ ନାଗପୁର ଆସିଲେ । ଦେଖିଲା ଲୋକେ କହନ୍ତି ଯେ କଂଗ୍ରେସ ଅଧିବେଶନରେ ଗାନ୍ଧୀଜୀଙ୍କ ଭାଷଣ ଚିତ୍ତରଞ୍ଜନ ଦାସ ମନ୍ତ୍ରମୁଗ୍ଧ ଭଳି ଶୁଣିଲେ ଓ ତାଙ୍କ ବିଚାର ବଦଳିଗଲା । ସେ ଅସହଯୋଗର ସପକ୍ଷ ହୋଇଗଲେ ।

ଅସହଯୋଗ ଆନ୍ଦୋଳନ ଆରମ୍ଭ ହେବାର ବର୍ଷେ ଦୁଇବର୍ଷ ପୂର୍ବରୁ ନବବାବୁ,ନିକୁଞ୍ଜବାବୁ (ନିକୁଞ୍ଜ କିଶୋର ଦାସ, ମାମୁ ରାଜକିଶୋର ଦାସଙ୍କର ପୁଅ ), ନିତ୍ୟାନନ୍ଦ କାନୁନ୍‌ଗୋ, ପ୍ରହ୍ଲାଦ ସାହୁ, ବଶିର ସାହେବ, ଭଗୀରଥି ମହାପାତ୍ର ପ୍ରଭୃତି ମିଶି ଗୋଟିଏ ପାଠାଗାର କରିଥାନ୍ତି । ଦୁଇ ତିନୋଟି ଆଲମାରିରେ ବହି ଥାଏ । ପାଠାଗାରର ନାମ ଭାରତୀ ମନ୍ଦିର ।

ସନ୍ଧ୍ୟାବେଳେ ସେଠି ଏକାଠି ହୋଇ ପଢ଼ାପଢ଼ି ଓ ଚର୍ଚ୍ଚା ଆଲୋଚନା ଚାଲେ । ଦେଶର ଏ ଉତ୍ତେଜନାପୂର୍ଣ୍ଣ ବାୟୁମଣ୍ଡଳ ଭିତରେ ମଧୁସୂଦନ ଦାସ ମନ୍ତ୍ରିତ୍ୱ ଗ୍ରହଣ କରିବା କଥାକୁ ଭାରତୀ ମନ୍ଦିରର ସଭ୍ୟମାନେ ନାପସନ୍ଦ କଲେ । ଏହି ନାପସନ୍ଦକୁ କିପରି ପ୍ରମାଣ କରିବେ, ସେ ବିଷୟରେ ଆଲୋଚନାକରି ସ୍ଥିର କଲେ ଯେ କଟକରେ ମଧୁବାବୁଙ୍କର ଗୋଟିଏ ପ୍ରତିମୂର୍ତ୍ତି ତିଆରିକରି ନଈବାଲିରେ ସଭାକରି ତାକୁ ପୋଡ଼ିବେ ।

ଏଣେ ମଧୁବାବୁ ମନ୍ତ୍ରୀତ୍ୱ ଗ୍ରହଣ କରିବା ପରେ କଟକ ଆସିଲେ । ସେ ବୋଧହୁଏ ଆଶା କରିଥିଲେ କଟକ ସହରବାସୀ ତାଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜଣାଇବେ । କିନ୍ତୁ କଟକ ଷ୍ଟେସନରେ ପହଞ୍ଚି ଦେଖିଲେ ସମ୍ବର୍ଦ୍ଧନା କରିବାକୁ କେହି ଲୋକ ନାହାନ୍ତି । ସେ ମନ୍ତ୍ରୀପଦ ନେଇ ଆସିଛନ୍ତି ବୋଲି ସାଧାରଣଙ୍କଠାରୁ ଯେଉଁ ସମ୍ମାନ ଆଶା କରୁଥିଲେ, ତାହାର ଲେଶ ସୁଦ୍ଧା ନାହିଁ । ସେ ସଙ୍ଗେସଙ୍ଗେ ବୁଝିପାରିଲେ—ଏ ହେଲା ଅସହଯୋଗ ଆନ୍ଦୋଳନର ବାତାବରଣର ଗୁଣ । ସେ କୁଆଡ଼େ କାହା ଆଗରେ କହିଲେ—"ମୁଁ ମନ୍ତ୍ରୀ ହୋଇ ଏମିତି କଅଣ ଅପରାଧ କଲି ଯେ ମତେ ମେହେନ୍ତର ସୁଦ୍ଧା ସଲାମ କଲାନାହିଁ ?" ଅସହଯୋଗ ଆନ୍ଦୋଳନ ଯୋଗୁ ଏପରି ମନୋଭାବ ସୃଷ୍ଟି ହୋଇଛି ବୋଲି ସେ ଧରିନେଲେ ଏବଂ ଆଶଙ୍କା କଲେ ଯେ ପରମ୍ପରା ଭାଙ୍ଗିଯିବ ଓ ଲୋକେ ଉଚ୍ଛୃଙ୍ଖଳ ହେବେ । ମଧୁବାବୁଙ୍କ ସ୍ତାବକମାନଙ୍କ ମନରେ ଦୁଃଖ ଯେ ସେ ମନ୍ତ୍ରୀ ହେଲେ, ତାଙ୍କୁ ଉଚିତ ସମ୍ମାନ ଦିଆହେଲା ନାହିଁ । ମଧୁବାବୁଙ୍କୁ ଶ୍ରଦ୍ଧାକରୁଥିବା ଜଣେ ବୁଢ଼ାଲୋକ ମଧୁବାବୁ ମନ୍ତ୍ରୀ ହେବା କଥା ଶୁଣି ଆନନ୍ଦ ବିହ୍ୱଳ ହୋଇ ଆଉ ଜଣଙ୍କୁ ପଚାରିଲେ "ହଇହେ ବାବୁ ! ଇଷ୍ଟ (ମିଷ୍ଟର) ଦାସ କୁଆଡ଼େ ବସୁଧାର ଚକ୍ରବର୍ତ୍ତୀ ହେଲେ ?" ଆଜକୁ ପଚାଶ ବର୍ଷ ତଳେ ମନ୍ତ୍ରୀ ପ୍ରଭୃତିଙ୍କ ବିଷୟରେ କିପରି ଧାରଣା ଥିଲା ତାହା ଏଇ କଥାରୁ ଜଣାପଡ଼ୁଛି ।

'ଇଷ୍ଟ ଦାସ ବସୁଧା ଚକ୍ରବର୍ତ୍ତୀ ହେବା' କଥା କୁହାବୋଲା ହେବା ଏବଂ ମଧୁବାବୁଙ୍କ ପ୍ରତିମୂର୍ତ୍ତି ନଡ଼ାରେ ତିଆରି ହୋଇ ସାଧାରଣ ସଭାରେ ପୋଡ଼ାହେବା ସିଦ୍ଧାନ୍ତ ସବୁ ମୁଁ ଶୁଣୁଥାଏ । ମୋହର ଭାଇ, ଭଉଣୀ, ଦାଦା ତ ସେମାନଙ୍କ ଭିତରେ ଅଛନ୍ତି । ଯେ ଯାହା କରୁ ଜଣେ ଲୋକର ପ୍ରତିମୂର୍ତ୍ତି ତିଆରିକରି ପୋଡ଼ିବା କଥାଟା ମୋତେ ଆଦୌ ଭଲ ଲାଗୁ ନ ଥାଏ । ଟିକଠାରୁ ଓ ମୁଖୁଭାଇଙ୍କଠାରୁ ସବୁ ଶୁଣେ, ମାତ୍ର ମୋ ମତାମତ ପ୍ରକାଶ କରେ ନାହିଁ । ମୋ ମନରେ ଖାଲି ପ୍ରଶ୍ନ ଉଠୁଥାଏ, ସାମାନ୍ୟ ଲୋକଟିଏ ହେଉ ପଛେ ତାହାର ପ୍ରତିମୂର୍ତ୍ତି ତିଆରି କରି ପୋଡ଼ିବା ଭଲ ସଂସ୍କୃତିର ଲକ୍ଷଣ ନୁହେଁ—ଏ ତ ଗୋଟାଏ ଚଳନ ହୋଇଯିବ ।

ଉମାକାନ୍ତ ମହାପାତ୍ର ସରକାରୀ ଟ୍ରାନ୍‌ସଲେଟର୍ କାମ କରୁଥିଲେ । ଆମ ସାନ ଘରେ ସେମାନେ ଭଡ଼ାରେ ରହୁଥିଲେ । ଦାଣ୍ଡପାଖର ବାରଣ୍ଡାରେ ସନ୍ଧ୍ୟାବେଳେ ଗୋଟିଏ ଗପସପର ଆଖଡ଼ା ବସେ । ଲକ୍ଷ୍ମୀନାରାୟଣ ସାହୁ ପ୍ରଭୃତି ଆସି ସେ ଗପରେ ଯୋଗଦିଅନ୍ତି ।

ସେତେବେଳେ ପ୍ରଧାନ ଆଲୋଚ୍ୟ ବିଷୟ ଥାଏ ଅସହଯୋଗ ଆନ୍ଦୋଳନର କଥା । ମନରେ ଯେ ଅସହଯୋଗ ଆନ୍ଦୋଳନର ବାତାବରଣ ଗୋଟିଏ ଭାବ ସୃଷ୍ଟି କରିଦେଇଛୁ, ଏ କଥା ପ୍ରତ୍ୟେକେ ଅନୁଭବ କରୁଥାନ୍ତି । ମଧୁବାବୁ ଏପରି ସମୟରେ ମନ୍ତ୍ରୀ ହେବା କଥାଟା ମଧ୍ୟ କଟକ ସହରରେ ଆଲୋଚନାର ବିଷୟବସ୍ତୁ ହୋଇଥାଏ । ଓଡ଼ିଶାର ଲୋକ ଜଣେ ମନ୍ତ୍ରୀ ହେଲେ, ଏ କଥାରେ ବୟସ୍କ ଲୋକମାନେ ଗୌରବ ବୋଧ କରୁଥାନ୍ତି । ମାତ୍ର ସେ ଗୌରବକୁ ଯେଉଁ ଭାବରେ ସେମାନେ ପ୍ରକାଶ କରିବାକୁ ଚାହୁଁଥାନ୍ତି, ଆନ୍ଦୋଳନର ହାଉଆ ତାହା କରାଇ ଦେଉ ନ ଥାଏ । କେହି କେହି କହୁଥାନ୍ତି—ମଧୁବାବୁ ଯଦି ମନ୍ତ୍ରୀପଦ ଛାଡ଼ି ଦିଅନ୍ତି, ତେବେ ଅସହଯୋଗ ଆନ୍ଦୋଳନର ତୁଙ୍ଗ ନେତା ସେ ହୋଇଯାନ୍ତେ । ମିଷ୍ଟର ଦାସ ନିଜେ ମଧ୍ୟ ଆନ୍ଦୋଳନର ବାତାବରଣ ଦେଖି ବିସ୍ମିତ ହେଉଥାନ୍ତି । ଲୋକଙ୍କର ଏ ପ୍ରକାରର ଜାଗରଣ ଉଚ୍ଛୃଙ୍ଖଳତା ବୋଲି ତାଙ୍କର ଧାରଣା ହେଲା । ପୁଣି ଏ ଆନ୍ଦୋଳନ ହେଲା ସର୍ବଭାରତୀୟ । ସେଥିରେ ଖାସ୍ ଓଡ଼ିଶାର କଥା କିଛି ନ ଥିଲା । ତେଣୁ ଆନ୍ଦୋଳନରେ ଯୋଗଦେବାର ଆବଶ୍ୟକତା ସେ ଅନୁଭବ କରୁନଥିଲେ ।

## ୧୬ । ଗୋପବାବୁଙ୍କର ଚାକିରୀରୁ ଇସ୍ତଫା

୧୯୨୧ ମସିହା ଫଗୁଣ ମାସ ହେଲା । ଶିବରାତ୍ରି ପରଦିନ ଶ୍ୱଶୁରଙ୍କର ଶ୍ରାଦ୍ଧ ଦିବସ । ଉମାଚରଣ ଦାସ ମଧ୍ୟ ସେତେବେଳେ ବରଗଡ଼ରେ ଥା'ନ୍ତି । ଉମାଚରଣବାବୁ ଆମ ଘରେ ରହୁଥିବା ଉମାକାନ୍ତ ମହାପାତ୍ରଙ୍କ ଶଳା । ସେ ଯେପରି ରସିକ ସେହିପରି ସ୍ନେହୀ । ଗୋପବାବୁ ଓ ତାଙ୍କ ଭିତରେ ବନ୍ଧୁତ୍ୱ ଖୁବ୍ ଜମିଥାଏ । କିନ୍ତୁ ଗୋପବାବୁ ଚାକିରୀଛାଡ଼ିବା କଥାଟି କାହାକୁ ନ କହି ନିଜେ ନିଜ ମନକୁ ପ୍ରସ୍ତୁତ କରୁଥାନ୍ତି ଏବଂ ଅଭ୍ୟାସର ପରିବର୍ତ୍ତନ କରୁଥାନ୍ତି । ସେ ଶିବରାତ୍ରିର ଦୁଇଦିନ ପୂର୍ବରୁ କଟକରେ ପହଞ୍ଚିଲେ । ବାପାଙ୍କ ଶ୍ରାଦ୍ଧଦିନ ଇସ୍ତଫା ଦେବା କଥା ଭାବୁଥାନ୍ତି । ସେଦିନ ଦେବେ କି ଆଉ କେତେଦିନ ପରେ ଦେବେ ମୋତେ ସେ କଥା ପଚାରିଲେ । କହିଲି—ଚାକିରୀ ଛାଡ଼ିଦେବା ସ୍ଥିରହେଲା ତ ଛାଡ଼ିଦେବା ଭଲ । ଚାକିରୀ ଛାଡ଼ିଦେଲେ ତମକୁ କେହି କିଛି କହିବେ ନାହିଁ, ମୁଁ ଭଲକରି ଜାଣେ । ସବୁ ବାକ୍ୟବାଣ ମୋତେ ନୀରବରେ ହଜମ କରିବାକୁ ପଡ଼ିବ ବୋଲି ମୁଁ ମୋ ମନକୁ ଠିକ୍ କରି ନେଇଛି । ଆଉ ବିଳମ୍ବ କରି ଲାଭ କଣ ? ବେଶିଦିନ ଅନିଶ୍ଚିତ ଅବସ୍ଥାରେ ରହିବା ଠିକ୍ ହେବନାହିଁ । ଯାହା କରିବ ବୋଲି ସ୍ଥିରକଲ ତାହା ସାରିଦେବା ଭଲ—ତା'ପରେ ଯାହା ହେବାର ହେବ ।

ଶ୍ୱଶୁରଙ୍କ ଶ୍ରାଦ୍ଧଦିନ ପିଣ୍ଡ ପକେଇ ଆସିଲେ । ବ୍ରାହ୍ମଣ କେତେଜଣ ଖାଇଲେ । ବ୍ରାହ୍ମଣ ଭୋଜନ ଆରମ୍ଭ ହେବା ମାତ୍ରେ ମା' ବ୍ୟସ୍ତ ହୁଅନ୍ତି କେମିତି ପୁଅ ଖାଇବ । ମା ଯେତେ ବ୍ୟସ୍ତ ହେଲେ ବି ସେ ଖାଇବାକୁ ମନାକଲେ । ବ୍ରାହ୍ମଣ ଖାଇସାରି ବିଦା ହୋଇଗିବା

ପରେ ଇସ୍ତଫାପତ୍ର ଖଣ୍ଡିକ ନେଇ ଉପରୁ ତଳକୁ ଆସି "ବୋଉ ବୋଉ" ଡ଼ାକ ଇସ୍ତଫାପତ୍ର ଦେଖାଇ ବିଷୟଟି କହିଦେଲେ । ମା' ତାହା ଶୁଣି ନିର୍ବାକ୍ ହୋଇ ପୁଅର ମୁହଁକୁ ଟିକିଏ ଅନେଇଲେ । ତା'ପରେ ନିଜକୁ ସମ୍ଭାଳି ନେଇ କହିଲେ, "ଚାଲ, ବହୁତ ଡେରି ହୋଇଗଲାଣି, ଖାଇବୁ ଆଉ କେତେବେଳେ ? ତୋର ଯାହା ମନହେବ ତାହା ତ କରିବୁ— ମତେ କହୁଛୁ ଯେ ମୁଁ ଆଉ କ'ଣ କରିବି ?" ତା' ପରେ ଘର କାମ ତ ବିଧିପୂର୍ବକ ଚାଲିଲା । ପୁଅଙ୍କୁ ଖୁଆଇସାରି ମା' ଠାକୁର ଘରକୁ ଆସି ଠାକୁରଙ୍କୁ ମୁଣ୍ଡି ଆମାରି କାନ୍ଦି କାନ୍ଦି ତାଙ୍କ ମନର ଦୁଃଖ ଜଣାଇଲେ । ମା' ବିଚଳିତ ହୋଇ ପଡ଼ିଲେ, ଲୁଚେଇ ଲୁଚେଇ ଅନବରତ କାନ୍ଦିଲେ । ପିଲାଙ୍କୁ ତ ମୋଟେ ଚାହିଁ ପାରିଲେ ନାହିଁ । ସେ ଯଦିବା ନିଜକୁ ସମ୍ଭାଳିବାକୁ ଖୁବ୍ ଚେଷ୍ଟା କରୁଥାନ୍ତି, କିନ୍ତୁ ପିଲାଙ୍କୁ ଦେଖିବାମାତ୍ରେ ତାଙ୍କ ମନ ହୃଦୟ ଯେପରି ଗର୍ଭି ବିଦାରି ହୋଇ ଯାଉଛି, ସେପରି ମନେହେଉଥାଏ । ମୋତେ ଖୁବ ଡ଼ର ମାଡ଼ୁଥାଏ । ମୁଁ ବି ଭଗବାନଙ୍କୁ ଡାକୁଥାଏ ଯେ ଏ ଧକ୍କା ସହିବାପାଇଁ ପ୍ରଭୁ ବଳ ଦିଅନ୍ତୁ । ଗୋପବାବୁ ଯେତେବେଳେ ଚାକିରୀରୁ ଇସ୍ତଫା ଦେବାକଥା ପ୍ରଚାରିତହୋଇଗଲା ସମସ୍ତେ ସ୍ତବ୍ଧ ହୋଇଗଲେ । ସମସ୍ତଙ୍କର ସବୁ ରାଗ ମୋ ଉପରେ ପଡ଼ିଲା । ମୁଁ ଯୋର୍ କରି କହିଥିଲେ ସେ କଦାପି ଇସ୍ତଫା ଦେଇନଥାନ୍ତେ ଇତ୍ୟାଦି ନାନାପ୍ରକାର ମନ୍ତବ୍ୟ କରି ମୋରି ଉପରେ ଦୋଷଦେଇ ଯେ ଯାହା ପାରିଲେ କହିଲେ । ଶାଶୁଙ୍କର ରାଗ ପଡ଼ିଲା ମୋ ମା' ଓ ବଡ଼ ମାମୁଙ୍କ ଉପରେ । ଶାଶୁ କହିଲେ—ତା'ର ବାପା ମରିଯିବା ଦିନୁଁ ମୁଁ ଭାବିଥିଲି ରାଜୁବାବୁ ତା'ରଙ୍କମୁରବି । ସେ ଥାଉଁ ଥାଉଁ ଏପରି କଥା ହେଲା ? ସେ କେମିତି ବୁଝାଇ କରି ତା' ମନକୁ ବଦଳାଇଲେ ନାହିଁ ? ମନ୍ତବ୍ୟ, ଭର୍ତ୍ସନା ଆଦି ଯେ ହେଲା ସେଗୁଡ଼ାକ ଲେଖିଲେ ଗୋଟାଏ ବହି ହେବ । ତା'ର ପରିସମାପ୍ତି ହେଲା ୧୯୩୧ ମସିହାରେ ଗାନ୍ଧୀ ଇର୍‌ୱିଇନ୍ ପ୍ୟାକଟ୍ ହେଲାରୁ । ଯେଉଁଦିନ ଜେଲ୍‌ରୁ ଖଲାସହୋଇ ବାଲେଶ୍ବରରେ ଓ ତା'ପରେ କଟକରେ ପହଞ୍ଚିଲୁ, ସେ ଦିନ ଦେଖିଲୁ ଆମ ପ୍ରତି ଶ୍ରଦ୍ଧାଜାତ ହୋଇଛି ଯେ କଂଗ୍ରେସ କାମ ଦ୍ୱାରା ମାନସମ୍ମାନ ଅଛି । ଗାନ୍ଧୀ ଦେଶ ବିଷୟରେ ବଡ଼ଲାଟଙ୍କ ସହିତ କଥାବାର୍ତ୍ତା କଲେ ସମ୍ମାନର ସହିତ । କଂଗ୍ରେସବାଲାଗୁଡ଼ାକ କିଛି ନୁହନ୍ତି ବୋଲି ଯେ ଅନାସ୍ଥାଭାବ ଥିଲା ତାହା ଦୂରହେଲା ।

ଟୁକ ତ କଲେଜ ଛାଡ଼ିଲେ । ଯଦୁମଣି ମଙ୍ଗରାଜ, ରାଜକୃଷ୍ଣ ବୋଷ୍, ହରେକୃଷ୍ଣ ମହତାବ ଏମାନେ କଲେଜ ଛାଡ଼ି ଆନ୍ଦୋଳନରେ ଯୋଗ ଦେଲେ ବୋଲି ଖବର ଚହଲ ପଡ଼ିଗଲା । ଟୁକ କଲେଜ ଛାଡ଼ିବାରୁ ମା'ଙ୍କ ମନରେ ଯେପରି ଦାରୁଣ ଦୁଃଖ ସେହିପରି ପ୍ରଚଣ୍ଡ ରାଗ ହେଲା । କଥାକଥାକେ କାନ୍ଦିଲେ । ରାଗ ତ ମୋରି ଉପରେ ପ୍ରତ୍ୟକ୍ଷରେ ପରୋକ୍ଷରେ ଯେତେ ପାରିଲେ କହିଲେ । ମୁଁ ଚେଷ୍ଟାକରିଥିଲେ ସେ ଚାକିରୀଛାଡ଼ିବା, ଟୁକ କଲେଜଛାଡ଼ିବା ସବୁ ବନ୍ଦହୋଇଥାନ୍ତା । ବନ୍ଧୁ ବାନ୍ଧବ, ଚିହ୍ନା ପରିଚିତ ଯେ ଯେଉଁଠି ଦେଖିଲେ କହିଲେ— "ତମରି ତମେ ଯାହା ଇଚ୍ଛା କଲ । ବାପା ମରିଯାଇଥିଲେ ପିଲାଟିଦିନୁ । ତାକୁ ପଢାଶୁଣା

କରାଇ, ଯୋଗ୍ୟ କରି ବାହାସାହା କରାଇବା ତମର କାମ । ତମ କର୍ତ୍ତବ୍ୟରେ ତୁମେ ତ୍ରୁଟି କଲ । ନବବାବୁ ପଢ଼ା ଛାଡ଼ିବା ମୁଁ ଯେ ବନ୍ଦ କଲି ଏହା ମୋର ଘୋର ଅନ୍ୟାୟ, ଶାଶୁଙ୍କ ଦୁଃଖ ବୁଝିଲ ନାହିଁ, ଇତ୍ୟାଦି ।

ଘରର ଚଳଣି ବଦଳାଇବା ପାଇଁ ଚେଷ୍ଟା କରାଗଲା । ଗୋପବାବୁଙ୍କ ସାଙ୍ଗ ପୂଜାରୀ ପୂର୍ଣ୍ଣାନନ୍ଦଙ୍କୁ ବିଦାୟ ଦିଆଗଲା । ଧନା ତାଙ୍କ ସାଙ୍ଗ ଚାକର । ସେ ଗାଈ କାମ କରିବାପାଇଁ ରହିଲା । ମୋ ମା'ର ଇଚ୍ଛା ଯେ ପିଲାଘରର, ଦୁଧ ଖାଇବେ । ସେହି ଲକ୍ଷ୍ୟରେ ସେ ବରାବର ଦୁହାଁଳିଆ ଗାଈ ପିଲାଙ୍କ ପାଇଁ ପଠାଏ, ଦୁଧ ଛାଡ଼ିଗଲେ ତାକୁ ସତ୍ୟଭାମାପୁର ନେଇଯାଏ । ମଫସଲ ସମ୍ପତ୍ତିବାଡ଼ି କଥା ବୁଝିବାପାଇଁ ବୃନ୍ଦି ଶ୍ୟାମ ଗୁମାସ୍ତା ଥାନ୍ତି । ସେ ଶଶୁରଙ୍କ ଅମଳର ଲୋକ । ମା' ବି ତାଙ୍କୁ ଲାଜ କରି ସାମନାରେ କଥାବାର୍ତ୍ତା କରନ୍ତି ନାହିଁ । କଲେଜ ପାଠ ଓ ରାଜକାର୍ଯ୍ୟ ଘରୁ ଯିବା ଦିନଠାରୁ ଚାକର, ପୂଜାରୀ, ଗୁମାସ୍ତା, ଖମାରୀ ଯେ ଠିକ୍ଏ କାମରେ ତ୍ରୁଟି କଲେ ବା ମା'ଙ୍କ କଥାକୁ ସାଙ୍ଗେ ସାଙ୍ଗେ କାର୍ଯ୍ୟକାରୀ ନ କଲେ ମା' ଭାବିଲେ ଯେ, ତାଙ୍କ ପୁଅ ରାଜକାର୍ଯ୍ୟ ଛାଡ଼ିଦେବାରୁ ତାଙ୍କ କଥାକୁ ସେମାନେ ଗ୍ରାହ୍ୟ କରୁନାହାନ୍ତି—ତାଙ୍କପ୍ରତି ଖାତିର ତୁଟିଗଲାଣି । ସେଥିପାଇଁ ମୁଁ ଯେପରି ଦାୟୀ । ଯେଉଁମାନେ ଖାତିର କରୁନାହାଁନ୍ତି ବା କଥା ମାନୁନାହାନ୍ତି ବୋଲି ଧାରଣା ହୁଏ ତାକୁତ ଯାହା ଇଚ୍ଛା ତାହା କହନ୍ତି, ତା'ପରେ ମୋ ଉପରେ ନାନା ଭାବରେ ବିରକ୍ତି ପ୍ରକାଶ କରନ୍ତି । ବିରକ୍ତି ପ୍ରକାଶ କରୁଥିବାର କାରଣ ମୁଁ ଜାଣିଥିବାରୁ ମୁଁ ବ୍ୟସ୍ତ ହୁଏ ନାହିଁ । ମୋତେ ବାଧେ ଚାକର ପୂଜାରୀ ଓ ଧାଈଙ୍କ ପାଇଁ । ଏଥିପାଇଁ ଘରେ ଭାରି ଅଶାନ୍ତି ହେଲା । ମୋ ମା'ର ଗୋଟିଏ କାମ ଥିଲା ଚାକର ପୂଜାରୀଙ୍କ ଦୋଷ ଘୋଡ଼ାଇବା, ଅର୍ଥାତ୍ ସେମାନଙ୍କ କାମର ଦୋଷତ୍ରୁଟି ଯେପରି ମୋ ବାପାଙ୍କ ଆଖିରେ ନପଡ଼ିବ ସେଥିପାଇଁ ଚେଷ୍ଟା କରିବା, ସେ କାମ ନିଜେ କରିନେବା । ମା'ର ସେ ଗୁଣ ବା ଦୋଷରୁ ମୋତେ କିଛି ମିଳିଥିଲା । ତେଣୁ ମୁଁ ପ୍ରାଣପଣେ ଚେଷ୍ଟା କରେ ଚାକରଙ୍କ ଦୋଷ ଘୋଡ଼ାଇବାକୁ । ଫଳ ସ୍ୱରୂପ ମା'ଙ୍କୁ ଲୁଚେଇ କରି ମତେ ଅନେକ କାମ କରିବାକୁ ପଡ଼େ । ଧାଈଙ୍କୁ ସମ୍ଭାଳିବା ମଧ୍ୟ ମୋର ଗୋଟିଏ କାମ ହେଲା । ଧାଈ ବୁଢ଼ୀ ହୋଇ ତାଙ୍କର କାମ କରିବା ଶକ୍ତି ବହୁତ କମିଯାଇଥିଲା । ସେ ସାହିରୁ ସ୍ତ୍ରୀଲୋକ ଡ଼ାକିଆଣି ଅନେକ କାମ କରେଇନିଅନ୍ତି । ମୁଁ ମା'ଙ୍କୁ ଲୁଚେଇ ସେମାନଙ୍କୁ ପ୍ରାପ୍ୟରୁ ଅଧିକ ଚାଉଳ ଦେଇଦିଏ ।

ତେଣେ କଂଗ୍ରେସ କାମ ଖୁବ୍ ଘମାଘୋଟିଆ ଲାଗିଥାଏ । ସ୍ୱରାଜ୍ୟ ଆଶ୍ରମରେ ଅନେକ ସ୍ୱେଚ୍ଛାସେବକ ରହିଗଲେ । ଦାସେ ଆପଣେଙ୍କ ତଳକୁ ଭାଗୀରଥି ମହାପାତ୍ର ମୁଖ୍ୟ ହେଲେ । ଦାସେ ଆପଣେ ତ ଏଣେ ତେଣେ ବୁଲୁଥାନ୍ତି –ଭାଗୁବାବୁଙ୍କ ପରାମର୍ଶ ଅନୁସାରେ କଂଗ୍ରେସ କର୍ମୀମାନେ କାମ କରନ୍ତି । କବି ବୀରକିଶୋର ଦାସ ପ୍ରଭୃତି କେତେଜଣ ନାଁକୁ ଘରେ ରହୁଥିଲେ ମଧ୍ୟ ସବୁବେଳେ କଂଗ୍ରେସ ଅଫିସରେ ରହନ୍ତି । କଂଗ୍ରେସ ଅଫିସକୁ ସ୍ୱରାଜ୍ୟ ଆଶ୍ରମ କୁହାଯାଉଥାଏ । ଏତେ ଅଳ୍ପ ଦିନରେ ଏପରି ଆଶ୍ରମ ପ୍ରତିଷ୍ଠା ହେଲା ଦେଖି ଲୋକେ ଚକିତହେଲେ । ସବୁବେଳେ ଲୋକଗହଳି । ସମସ୍ତଙ୍କ

ମନରେ କାମ କରିବାର ଅଦମ୍ୟ ଉତ୍ସାହ, ସାରଦର୍ପରେ କାମ କରିବାର ଭାବଭଙ୍ଗୀ । ପ୍ରଚୁର କାମ କରିବା ପାଇଁ ମଫସଲକୁ ଚାଲିଯାଉଛନ୍ତି ପୁଣି ଆସୁଛନ୍ତି । ସାଧାରଣ ଲୋକଙ୍କ ମନରେ ଧାରଣା ହେଉଥାଏ ଏମାନେ କିଛି କରିବେ । କିନ୍ତୁ ପାଠୁଆଲୋକେ ଦେଖି ଖୁସିହେଉଥିଲେ ମଧ୍ୟ ଭାବୁଥାନ୍ତି ଏମାନଙ୍କଦ୍ୱାରା କଣ ହେବ ? ଏଇ ଲୋକଙ୍କର ଏଇ କାମରେ କଣ ବ୍ରିଟିଶ ସରକାରଙ୍କ ଗାଦି ଟଳିବ ? ଗାନ୍ଧୀଜୀ ଘୋଷଣା କରିଥିଲେ, ବର୍ଷକ ମଧ୍ୟରେ ତିଲକ ସ୍ୱରାଜ ପାଣ୍ଠି ପାଇଁ କୋଟିଏ ଟଙ୍କା ଚାନ୍ଦା ଉଠିବ ଏବଂ ଲକ୍ଷେ ଲୋକ ସୂତାକାଟିବେ । ପାଣ୍ଠି କଥାଟାରେ ଲୋକଙ୍କ ମନରେ ସାହସ ହେଉଥାଏ । ମାତ୍ର ସୂତାକଟା ମୋଟେ କେହି ଦେଖି ନାହାନ୍ତି । ଯାହାହେଉ ମଫସଲ ଓ ସହର ସବୁରେ ସୂତାକଟା କଥା କୁହାଯାଉଥାଏ । ପ୍ରାଣକୃଷ୍ଣ ପଢ଼ିହାରୀ ସ୍କୁଲ ଶିକ୍ଷକତା ଛାଡ଼ିଥିଲେ ଏବଂ ତାଙ୍କ ଗୁଣରେ ସେ ମୁରବିପଣିଆ କରି ପାରୁଥିଲେ । ରାଜକୃଷ୍ଣ ବୋଷ ଓ ଯଦୁମଣି ମଙ୍ଗରାଜ ଓଜସ୍ୱିନୀ ଭାଷାରେ ବକ୍ତୃତା ଦେଇ ପାରୁଥିଲେ । ରାଜକୃଷ୍ଣବାବୁ ଛାତ୍ର ଓ ଯୁବକ ନେତା ବୋଲାଇଲେ ।

**ଅଳକାଶ୍ରମ —**

ଏହି ଅବସ୍ଥାରେ ଜାତୀୟ ବିଦ୍ୟାଳୟ କଥା ମନରେ ଉଠିଲା । ସେତେବେଳେ ସାପ୍ତାହିକ ଉତ୍କଳ ଦୀପିକା, ସମାଜ ପତ୍ରିକା ବାହାରୁଥାଏ । ଦୈନିକ ପତ୍ରିକାର ନାଆଁ ନାହିଁ । ଇଂରାଜୀ କାଗଜ ହିଁ ଖବର ସରବରାହ କରୁଥାଏ । ଜାତୀୟ ବିଦ୍ୟାଳୟ କଥା ଅନ୍ୟ ପ୍ରଦେଶରେ ମଧ୍ୟ ଚର୍ଚ୍ଚା କରାଯାଉଥାଏ । ଆମର ଓଡ଼ିଶାରେ ଜଗତ୍‌ସିଂହପୁରରେ ଜାତୀୟ ବିଦ୍ୟାଳୟ କରିବା ସ୍ଥିର ହେଲା । ପୁରୀ ଜିଲ୍ଲାରେ ସାକ୍ଷୀଗୋପାଳ ବନବିଦ୍ୟାଳୟକୁ ମଧ୍ୟ ଜାତୀୟ ବିଦ୍ୟାଳୟ କରିଦିଆଗଲା । ଭାଗୁବାବୁ ଓ ତାଙ୍କ ଭାଇ ବଂଶୀବାବୁ ବିଦ୍ୟାଳୟ କରିବା ପାଇଁ ଜମି ଦେଲେ । ସେଥିରେ ବିଦ୍ୟାଳୟ କରିବାପାଇଁ ଆୟୋଜନ ହେଲା । ଜାଗାଟା ଭାରି ସୁନ୍ଦର । ଗୋଟାଏ ପାଖରେ କେନାଲ, ଆରପାଖରେ ଅଳକା ନଈ, ଗ୍ରେଟିଆ ଆମ୍ବତୋଟା ଥାଏ । ଅଳକା ନଈ ଅନୁସାରେ ଅଳକାଶ୍ରମ ନାମ ଦିଆଗଲା । ଅଳକାଶ୍ରମକୁ ଛାତ୍ର ଆସିଲେ । ଛାତ୍ର ସଂଖ୍ୟା ୧୦୦ ପର୍ଯ୍ୟନ୍ତ ହେଲେ । ସେଥିରେ ଅଳ୍ପ ପାଠ ପଢ଼ିଥିବା ବଡ଼ ବଡ଼ ପିଲା ମଧ୍ୟ ଥାନ୍ତି । ଯେଉଁମାନେ କଲେଜପାଠ ଛାଡ଼ିଥିଲେ ସେମାନଙ୍କ ମଧ୍ୟରୁ ଗୋକୁଳାନନ୍ଦ ମହାନ୍ତି ଜଣେ । ସେ ଓ ନବବାବୁ ଏକାଠି ରେଭେନ୍‌ସା କଲେଜରେ ପଢ଼ୁଥିଲେ—ଏକାଠି କଲେଜ ଛାଡ଼ିଲେ । ଅଳକାଶ୍ରମର ଶିକ୍ଷକଙ୍କ ମଧ୍ୟରେ ସେ ଦୁହେଁ ଥିଲେ । ଅଳକାଶ୍ରମର ଅତି ପାଖରେ ଭାଗୁବାବୁ ଓ ପ୍ରାଣକୃଷ୍ଣ ପଢ଼ିହାରୀଙ୍କ ଘର । ନୀଳମଣି ପ୍ରଧାନଙ୍କ ଘର ଅଧିକ ଦୂରରେ । ସେ ସେଠାରେ ଅଧିକାଂଶ ସମୟ ରହି କାମ କରୁଥାନ୍ତି ।

ବାହାର କାମ କରିବାପାଇଁ ମୋର ପ୍ରବଳ ଇଚ୍ଛା ଥାଏ । କିନ୍ତୁ ମୁଁ ବିଚାର କରି ଦେଖିଲି ଯେ ଗ୍ରେଟପିଲାଙ୍କୁ ଅଯତ୍ନ କରି ବାହାରେ କାମ କରିବା ଉଚିତ ହେବ ନାହିଁ । ମନ ସ୍ଥିର କରିନେଲି ଯେ ପିଲାଏ ବଡ଼ ହେବାଯାଏ ମୁଁ ଘର ଭିତରେ ରହି ଯେତିକି ପାରିବି କରିବି । ବାହାର କାମ ନ କରିବାକୁ ଯେତେବେଳେ ସ୍ଥିରକଲି ସେତେବେଳେ ଛାଡ଼ି ମାଙ୍କ

ମନରେ ଅସନ୍ତୋଷ ସୃଷ୍ଟି କରିବା କି ଦରକାର ? ମୁଁ ଯର୍ଦ୍ଧା ମାନୁଥାଏ, ମାତ୍ର ପ୍ରତିଦ୍ୱାରୀ ମହାଶୟ, ରାଜକୃଷ୍ଣ ଏମାନଙ୍କ ସଙ୍ଗେ କଥାବାର୍ତ୍ତା କରେ । ମୁଁ କଳୁ ସତ୍ୟଭାମାପୁରର ଦହଡ଼ା ପଥରକୁଣ୍ଡିଆ ଅରଟରେ ସୂତା କିଛି କିଛି ପ୍ରାୟ ପ୍ରତିଦିନ କାଟୁଥାଏ । ସେତେବେଳେ ନଟେଇର ମାପ ନ ଥିଲା କି ସୂତା ଫେରି ଗଣା କଥା ନଥିଲା । ମୁଁ ସୂତା କାଟିଲେ ମା ଖୁସି ହୁଅନ୍ତି । ଘର କାମ ସେ କରି ମୋତେ ସୂତା କାଟିବା ପାଇଁ ଛାଡ଼ିଦିଅନ୍ତି । ସେ ଧରିନେଇଥିଲେ ଯେ ସୂତାକଟା ମୋର ଗୋଟାଏ କର୍ତ୍ତବ୍ୟ ।

## ୧୩ । ଗାନ୍ଧୀ-ଦର୍ଶନ

ଗୋପବାବୁ ସ୍କୁଲରୁ ଇସ୍ତଫା ଦେବାର ଦୁଇ ଚାରିଦିନ ପରେ ସ୍ୱରାଜ୍ୟ ଆଶ୍ରମକୁ ଯିବା ଆରମ୍ଭକଲେ । ସେତେବେଳକୁ ଗାନ୍ଧୀଜୀଙ୍କର କଟକ ଆସିବା ଖବର ଆସିଗଲାଣି । କର୍ମୀ ଓ ସ୍ୱେଚ୍ଛାସେବକମାନଙ୍କ ମନରେ ନୂଆ ଉନ୍ମାଦନା ଖେଳିଯାଇଥାଏ । ସ୍ୱରାଜ୍ୟ ଆଶ୍ରମକୁ ନୂଆ ନୂଆ ଲୋକ ଆସୁଥାନ୍ତି । ସେମାନଙ୍କ କଥା ଅଟଳଦା (ସ୍ୱର୍ଗତ ଡାକ୍ତର ଅଟଳ ବିହାରୀ ଆଚାର୍ଯ୍ୟ) ବୁଝନ୍ତି । ଅଟଳଦା ଧୀରେ ଧୀରେ କଥା କହନ୍ତି ସିନା, ସେ ଜଣେ ବିପ୍ଳବୀ । ସେ କଲିକତା ମେଡ଼ିକାଲ କଲେଜରେ ପଢ଼ୁଥିବା ବେଳେ ସନ୍ତ୍ରାସବାଦୀଙ୍କ ସହିତ ସମ୍ପର୍କ ରଖିଥିଲେ । ସେ ମେଡ଼ିକାଲ କଲେଜ ହଷ୍ଟେଲରେ ଯେଉଁ ଘରେ ରହୁଥିଲେ ତାଙ୍କ ଶୋଇବା ଖଟ ପାଖରେ କାଳୀଙ୍କ ଚିତ୍ର ଖଣ୍ଡେ ଟଙ୍ଗାହୋଇଥାଏ । ସମସ୍ତେ ଜାଣନ୍ତି ଅଟଳଦା ଜଣେ କାଳୀଭକ୍ତ । ଅଟଳଦାଙ୍କୁ ସନ୍ଦେହ କରି ପୁଲିସ ତାଙ୍କ ଘର ସର୍ଚ୍ଚ କଲେ । କାଳୀଙ୍କ ଫଟୋଟି ଭକ୍ତିରେ ପରୀକ୍ଷା ନ କରି ଛାଡ଼ି ଦେଇ ଆସିଲେ । ଅଟଳଦା କୁଆଡ଼େ ସେହି କାଳୀଙ୍କ ଚିତ୍ର ପଛପଟେ ପିସ୍ତଲ ଲୁଚାଇ ରଖିଥିଲେ ।

ଅସହଯୋଗ ଆନ୍ଦୋଳନ ଆରମ୍ଭ ହେଲାରୁ ଅଟଳଦା ସେ ବାଟ ଛାଡ଼ି ଆନ୍ଦୋଳନରେ ଯୋଗ ଦେଇ କାମ କରିଲେ । ଏପରି ଦିନ ଯାଇଛି, ଭସ୍ମରେ ଯେତେବେଳେ କେହି କଂଗ୍ରେସ ସଭାରେ ଯୋଗ ଦେଉ ନ ଥିଲେ ବା ଶୋଭାଯାତ୍ରାରେ ଯୋଗ ଦେଉ ନ ଥିଲେ, ବିଶେଷ ଦିନମାନଙ୍କରେ ଅଟଳଦା ଏକା କଂଗ୍ରେସ ପତାକା ଧରି ରାସ୍ତାରେ ବୁଲିଯିବେ ଓ କଣବାଲିରେ ପତାକା ପୋତିଦେଇ ତାଙ୍କ ବକ୍ତବ୍ୟ ସେ କହି ଚାଲିଆସିବେ । ସେହି ଅଟଳଦା ସ୍ୱରାଜ୍ୟ ଆଶ୍ରମରେ ସ୍ୱେଚ୍ଛାସେବକ ଓ କର୍ମୀମାନଙ୍କୁ କାମ ବାଣ୍ଟ କରୁଥିଲେ । ମଫସଲକୁ ବି କର୍ମୀ ପଠାଉଥିଲେ ।

ଦୋଳ ପୂର୍ଣ୍ଣିମା ଦିନ ଗାନ୍ଧୀଜୀ କଟକ ଆସିଲେ । ଆନନ୍ଦ ଉତ୍ସାହରେ ସେ ଦିନ ସମସ୍ତଙ୍କ ମନ ଭରପୂର । କାମ ଏତେ ଲାଗିଥାଏ ଯେ କଥା କହିବାକୁ ବି କାହାରିକୁ ବେଳ ନାହିଁ । କାର୍ଯ୍ୟ ନିର୍ଘଣ୍ଟରେ ସ୍ଥିର ହେଲା ବିନୋଦବିହାରୀରେ ମହିଳା ସଭା ହେବ । ଦିନ ଦୁଇଟା

ବେଳେ ମହଲା ସଭା ହେବ ବୋଲି ପ୍ରଚାର ହୋଇଥାଏ । ମହଲା ସଭାକୁ ମୁଁ ଯିବି ବୋଲି ଧରିନେଇ ମା (ଶାଶୁ) କହିଲେ ଚଞ୍ଚଳ କାମ ସାରିଦେ—ପିଲାଙ୍କୁ ମୁଁ ରଖିବି, ତୁ ସଭାକୁ ଯିବୁ । ସନ୍ଧ୍ୟାବେଳେ ନଈବାଲିରେ ସଭା ହେବ । ସେ ସଭାକୁ ନ ଗଲେ ମଧ୍ୟ ବନ୍ଧଉପରେ ବସି ବକ୍ତୃତା ଶୁଣିବାପାଇଁ ଯେ ମୁଁ ଚାହିଁବି, ସେ କଥା ସେ ଅନୁମାନ କରି ସନ୍ଧ୍ୟାବେଳର ରୋଷେଇ କାମର ଝଂଝଟ ଯେପରି ନ ରହିବ, ସେ କଥାକୁ ଲକ୍ଷ୍ୟକରି କାମ ସାରିଦେବାକୁ କହିଲେ । ମୁଁ ବାରଟାବେଳକୁ ବିନୋଦବିହାରୀକୁ ଗଲି । ଦେବୀମଣ୍ଡପ ସଫା ହୋଇ ସଭାରେ ଶତରଞ୍ଜି ପଡ଼ିହୋଇଥାଏ । ସଭାରେ ଗୋଟିଏ ଗୀତ ବୋଲା ହେଲେ ଭଲହୁଅନ୍ତା ବୋଲି ମୋର ମନେହେଲା । ଏମିତି ଭାବୁ ଭାବୁ ଅଧ୍ୟାପକ ମୋହିନୀ ମୋହନ ସେନାପତିଙ୍କ ସ୍ତ୍ରୀ ଆସି ପହଞ୍ଚିଲେ । ସେ ତ ମୋର ଭାରି ସାଙ୍ଗ, ତାଙ୍କୁ ଗୀତ ବୋଲାହେବା କଥା କହିବାରୁ ସେ ରାଜି ହେଲେ; ମାତ୍ର ତାଙ୍କର ଗୋଟିଏ ହାରମୋନିୟମ୍ ଦରକାର । ବେଳ ତ ଅଳ୍ପ ଅଛି । ବିନୋଦବିହାରୀ ହତା ଭିତରେ ହେମବତୀ ଦେବୀ ରହୁଥାନ୍ତି । ସେ ଏ କଥା ଶୁଣି ସାଙ୍ଗେ ସାଙ୍ଗେ ହାରମୋନିୟମଟିଏ ଅଣାଇଦେଲେ । ଗାନ୍ଧୀଜୀ ସଭାକୁ ଆସିବାବେଳ ଯହୁଁ ଯହୁଁ ପାଖ ହେଉଥାଏ, ତହୁଁ ତହୁଁ ବାୟୁମଣ୍ଡଳ ଶାନ୍ତ ଓ ଗମ୍ଭୀର ହେଉଥାଏ । ଆମେ ସ୍ତ୍ରୀଲୋକ ପ୍ରାୟ ଚାଳିଶ ଜଣ ହେବ ସଜାଡ଼ି ହୋଇ ବସିଗଲୁ । ବାହାରେ ନାନା ଧ୍ୱନି ଶୁଣାଗଲା । ଗାନ୍ଧୀଜୀ, କସ୍ତୁରବା ଓ ଦେବଦାସ ଗାନ୍ଧୀ ଆସିଲେ । ଆଉ କଏ କଏ ମଧ୍ୟ ଆସିଲେ । ଗାନ୍ଧୀଜୀ ଅଳ୍ପ ଦୁଇଚାରିପଦ କଥା କହିଲେ । ତା ଭିତରେ ଗହଣା ଛାଡ଼ିବା ଓ ତାଙ୍କୁ ଚାନ୍ଦା ଦାନ ଦେବା କଥା ମଧ୍ୟ ଥିଲା । ମୁଦି, କାନଫୁଲ ପ୍ରଭୃତି ଛୋଟ ଛୋଟ ଗହଣା କେତେଜଣ ଦେଲେ । କିଛି ଟଙ୍କା ମଧ୍ୟ ଦେଲେ । ମୁଁ ସତ୍ୟଭାମାପୁରର ଦକ୍ଷଡ଼ା ପଥରକୁଣ୍ଡି ଲଗା ଅରଟରେ କାଟିଥିବା ସୂତାରୁ ମୋଡ଼ାଟିଏ ନେଇ ଯାଇଥିଲି । ମୁଁ କାଳେ ଗହଣା ଦେଇଦେବି, ଏହି ଆଶଙ୍କାରେ ମା ମୋତେ କହିଥିଲେ—"ସେ ଗହଣା ମାଗିଲେ କଅଣ ହେଲା, ତୁ ଦେହରୁ କାଢ଼ି ଗହଣା କିଛି ଦେବୁ ନାହିଁ ।" ମୁଁ ତାଙ୍କର ସବୁ କଥାକୁ ଯେପରି ମାନେ ଏ କଥାଟି ମଧ୍ୟ ମାନି ଗହଣା ଦେଲି ନାହିଁ । ଅନ୍ୟମାନେ ଟଙ୍କା ଓ ଗହଣା ଦେଲେ । ମୁଁ ସୂତା ମୋଡ଼ାଟିଏ ତାଙ୍କ ହାତକୁ ଦେଲାରୁ ସେ ମୋ ଆଡ଼କୁ ଟିକିଏ ଚାହିଁଲେ । ସେ ଚାହାଣିରେ କଣ ଥିଲା କେଜାଣି ଆଜି ମଧ୍ୟ ତାକୁ ମନେପକାଉଛି ।

ମୁଁ ତ ଗାନ୍ଧୀଙ୍କୁ ଦେଖିଲି । ମା'ଙ୍କର ମଧ୍ୟ ଦେଖିବାର ଇଚ୍ଛା—ମାତ୍ର ସେ ପ୍ରକାଶ କରୁ ନ ଥାନ୍ତି । ସଭାବେଳେ ନଈକୂଳରେ ବସି ଶୁଣିବା ପାଇଁ ମୋ ସାଙ୍ଗରେ ବାମିଦଧଙ୍କୁ ନ ପଠାଇ ମା ନିଜେ ମୋ ସାଙ୍ଗରେ କାଠଯୋଡ଼ି କୂଳ ବନ୍ଧ ପାଖକୁ ଆସିଲେ । ସେତେବେଳେ ମାଇକ୍ ନ ଥାଏ । କେବଳ ଗାନ୍ଧୀଜୀ ଓ କସ୍ତୁରବାଙ୍କୁ ଦେଖିବା ବାସନା ଚରିତାର୍ଥ କରି ଘରକୁ ଫେରିଲୁ ।

ଅପ୍ରେଲ୍ ଛଅ ତାରିଖରୁ ତେର ତାରିଖ ପର୍ଯ୍ୟନ୍ତ ଜାତୀୟ ସପ୍ତାହ ପାଳନ କରାଯିବା କଥା । ଦିନଯାକ ଉପାସ ରହି ସନ୍ଧ୍ୟାବେଳକୁ ଖିଆ ହେବ । ଦୋକାନ ବଜାର ବନ୍ଦ

ରହିବ । ଏସବୁ ତ ଆଗରୁ ଶୁଣାନଥିଲା—ସମସ୍ତଙ୍କୁ ନୂଆ ଲାଗୁଥାଏ । କର୍ମୀମାନେ ବୁଲେଇ ବୁଲେଇ ଦୋକାନ ବଜାର ବନ୍ଦ କରାଇଲେ । ହରତାଳ ଭଲ ହେଲା । ମୁଁ ଓ ଗୋପବାବୁ ଉପବାସ କଲୁ । ମା'ଙ୍କୁ ଅଡ଼ୁଆ ଲାଗୁଥାଏ ଯେ ଉପବାସ କରୁଛନ୍ତି—ମାତ୍ର ଅରୁଆ ଉଷୁନା ବାରଣ ନାହିଁ । ଉପାସ ପରେ ନିତିଦିନିଆ ଖାଦ୍ୟ ଖାଇବ । ପୂଜାପାଠ କିଛି ନାହିଁ ଇତ୍ୟାଦି ମା'ଙ୍କୁ ଯେତିକି ଅଡ଼ୁଆ ଲାଗୁଥାଏ ମୋତେ ସେତିକି ଭଲଲାଗୁଥାଏ ଯେ ଉପାସ କରି, ଖାଇଲି—ଭୋଗ ତିଆରି ଆଦିର ଝମେଲା କିଛି ନାହିଁ । ଆମ ଉପାସ ଯୋଗୁ ଅନ୍ୟମାନଙ୍କର ସଶଂକ ଭାବ ନାହିଁ ଯେ କଅଣ କୋଉଠି ଅରୁଆ ଉଷୁନା ବାରଣରେ ଜଣା ଥିଲେ ତାଙ୍କୁ ଗାଳି ଖାଇବାକୁ ହେବ । ଆମର ଉପାସ ଯୋଗୁଁ କାହାରି ମନରେ କୌଣସି ଉଦ୍‌ବେଗ ନାହିଁ, ଏହାହିଁ ମୋତେ ଶାନ୍ତ ଲାଗିଲା । ସେ ଦିନ ମୁଁ ଅନେକ ସମୟ ଧରି ସୂତା କାଟିଲି । ଚଳଣା ଓ ଅରଟ ଖରାପ । ମୋତେ ବି ଭଲ କାଟି ଆସେ ନାହିଁ ବୋଲି ସୂତାର ପରିମାଣ ଅଳ୍ପ ହେଲା ।

## ୨୪ । ପିଲାଙ୍କ ଶିକ୍ଷା

ବୁଲୁକୁ ସେତେବେଳକୁ ପାଞ୍ଚବର୍ଷ ହୋଇଗଲାଣି । ବୟସ ତୁଳନାରେ ପଢ଼ାପଢ଼ି ଜ୍ଞାନ କିଛି କମିନଥାଏ । ମୋର ଇଚ୍ଛା ଥିଲା ଘରେ ଟିକିଏ ଆଗ ପଢ଼ିଯିବ—ତାପରେ ମାଷ୍ଟର ପାଖରେ ପଢ଼ିବ । ଆରମ୍ଭରୁ ମାଷ୍ଟର ପାଖରେ ପଢ଼ିଲେ ତାର ଡର ଆସିଯିବ ବୋଲି ମୋର ଭୟ ଥାଏ । ପ୍ରକୃତରେ ପଢ଼ା ତାର ଦୁଇବର୍ଷ ଦିନୁଁ ଆରମ୍ଭ ହୋଇଥାଏ—ମାତ୍ର ତାହା ଖେଳଖେଳକେ । ମା' ଖୁବ ଭଲ ଚିତ୍ର ଲେଖନ୍ତି ଓ ମୁରୁଜ ପକେଇ ପାରନ୍ତି । ବୁଲୁର ବି ପିଲାଦିନରୁ ଚିତ୍ର ଆଙ୍କିବାରେ ମନ । ମା ଖଡ଼ି ଖଣ୍ଡେ ଧରି ବିଲେଇ କୁକୁର ଆଦି ଚିତ୍ର ଆଙ୍କିଦେଇ ତା ନାଁ ଲେଖି ଦିଅନ୍ତି । ବୁଲୁ ତାକୁ ଦେଖିକରି ଚିତ୍ର ଆଙ୍କେ ଓ ଅକ୍ଷର ଶିଖିଯାଏ । ଏହା ତ ବାରଣ୍ଡାରେ ବା ଘର ମେଝିଆରେ ଲେଖାଯାଏ—ଓଳାଓଳିରେ ତାହା ଲିଭିଗଲେ ବୁଲୁ ଭାରି ବିରକ୍ତ ହୁଏ । ସେଥିପାଇଁ ଗୋଟାଏ ପାଖ ବାରଣ୍ଡାର କାନ୍ଥ କଳାରଙ୍ଗ କରିଦିଆଯାଇଥାଏ । ମା ଓ ବୁଲୁର ତାହା ହେଲା ଚିତ୍ର ଆଙ୍କିବା ଓ ଅକ୍ଷର ଚିହ୍ନିବା ସ୍ଥାନ । ଅକ୍ଷର ଶିଖିଯିବା ମାତ୍ରେ ବୁଲୁ ବହି ପଢ଼ିଗଲା । ପ୍ରତିଦିନ ସନ୍ଧ୍ୟାବେଳେ ଉମାକାନ୍ତବାବୁ ବୁଲୁକୁ ଡାକନେବେ, ତାକୁ ଇଂରାଜୀ ଶବ୍ଦଗୁଡ଼ିକ ଶିଖାଇବେ । ମୁହେଁମୁହେଁ ଓଡ଼ିଆ ବି ଟିକିଏ ପଢ଼ାଇବେ । ସେ ଓ ତାଙ୍କ ଘରର ସମସ୍ତେ ବୁଲୁ ଚୁନୀକୁ ଭାରି ସ୍ନେହ କରୁଥିଲେ । ଉମାକାନ୍ତବାବୁ ମୁହେଁ ମୁହେଁ ବୁଲୁକୁ ଦୁଇବର୍ଷଠାରୁ ପଢ଼ାଇବା କାମ କରିଥିଲେ । ସେ ଭାବୁଥିଲେ ପଦ୍ୟ ପ୍ରଭୃତି ମୁଖସ୍ଥ କରାଇବା ଦରକାର; ସେଥିପାଇଁ ବୁଲୁକୁ ବର୍ଣ୍ଣବୋଧରେ ଥିବା ପଦ୍ୟ ଓ ସେହିପରି ପିଲାଙ୍କ ପଢ଼ାବହିର ପଦ୍ୟସବୁ ମୁଖସ୍ଥ କରାଇଥିଲେ ।

ମୋ ମା ମଧ୍ୟ ଚନ୍ଦ୍ରତା ବୁଲୁପାଇଁ ମାଷ୍ଟର ରଖା ନ ଯିବାରୁ, ସେ କନ୍ତୁ ନିଜେ ମାଷ୍ଟର ଠିକ୍ କରଦେବାକୁ ସାହସ କରୁ ନ ଥାଏ । ମୁଁ ଦେଖିଲି ଗୋପବାବୁଙ୍କର ପିଲାଙ୍କ ପଢ଼ା ବିଷୟରେ ଆଦୌ ଚନ୍ତା ନାହିଁ । ପଢ଼ା କଥା କହିଲେ କହନ୍ତ—ପଢ଼ିବାକୁ କେତେ ସମୟ ଲଗିବ—ପଢ଼ିଯିବେ ଯେ ! ମୋ ମା, ମାମୁ, ମାଉଅପା, ଦେବେନ୍ଦ୍ରବାବୁ ଓ ଉମାକାନ୍ତବାବୁ ଏମାନେ ଭରସି କର କଛ୍ଚ କହୁ ନ ଥାନ୍ତ । ସେମାନେ ଦୁଃଖର ସହିତ ଧରନେଲେ ଯେ ଏ ପିଲା ପାଠ ପଢ଼ିବେ ନାହିଁ । ମୋ ମନ ତ ବେଚଇନ୍ ହେଉଥାଏ । କଥା ଶୁଣିବାକୁ ମଧ୍ୟ ତାଙ୍କର ଫୁରୁସତ ନାହିଁ । ସେ ଗୃହକର୍ମ ଛାଡ଼ିବା ପ୍ରସ୍ତାବ ହେବା ଦିନଠାରୁ ମୁଁ ମନେ ମନେ ସ୍ଥିର କରିଥିଲି—ଘର ଚଳାଇବାର ସମସ୍ତ ଦାୟିତ୍ୱ ମୁଁ ନେବି—ତାଙ୍କୁ ବାହାର କାମ ପାଇଁ ପୂରା ଛାଡ଼ିଦେବି । ବାହାରକାମ କରିବାପାଇଁ ମୋର ପ୍ରବଳ ଇଚ୍ଛାଥାଏ । କନ୍ତୁ ମୁଁ ବିଚାର କର ଦେଖିଲି ଶ୍ରେଷ୍ଠ ପିଲାଙ୍କୁ ଅଯତ୍ନ କର ବାହାରେ କାମ କରିବା ଉଚିତ ହେବ ନାହିଁ ; ମନ ସ୍ଥିର କରିନେଲି ଯେ ପିଲାଏ ବଡ଼ହେବାଯାଏ ଘର ଭିତରେ ରହି ଯେତକ ପାରିବି କରିବି ।

ମୁଁ ବାହାରକୁ ବାହାରିଲି ନାହିଁ—ତେଣୁ ଆମ ପିଲାଙ୍କୁ ପଢ଼ାଇବା ଭଲ ମାଷ୍ଟର ଠିକ୍ କରିବା ମୋ ପକ୍ଷରେ ସମ୍ଭବ ହେଲା ନାହିଁ । ମାଉଅପା କହିଲେ—'ତମ ପିଲାଙ୍କ ପାଇଁ କିଏ ମାଷ୍ଟର ଠିକ୍ କରଦେବ—କାହା ଜଭରେ ହାଡ଼ ଅଛି ?'' ଜଣେ ମାଷ୍ଟର ଠିକ୍କର ଦେବାପାଇଁ ଗୋପବାବୁଙ୍କୁ କାରଣ ଦେଖାଇ ଜୋର୍ କର କହିବାରୁ ସେ କବ ବୀରକିଶୋର ଦାସଙ୍କୁ ଶିକ୍ଷକ ନିଯୁକ୍ତ କଲେ । ବୀରବାବୁ ପ୍ରତିଦିନ ସକାଳେ ଘଣ୍ଟାଏ ଆସି ଭାଇ-ଭଉଣୀ ଦୁହିଁଙ୍କୁ ପଢ଼ାନ୍ତ ଓ ଘରେ ପଢ଼ିବାପାଇଁ ପଢ଼ା ଦେଇଯାନ୍ତ । ମୁଁ ସେତେବେଳେ ପର୍ଦ୍ଦା ମାନୁଥାଏ । ବାହାର କାମ ନ କରିବାକୁ ଯେତେବେଳେ ସ୍ଥିରକଲି, ପର୍ଦ୍ଦାଛାଡ଼ି ମାଙ୍କ ମନରେ ଅସନ୍ତୋଷ ସୃଷ୍ଟି କରିବା କ ଦରକାର ? ତେଣୁ ପର୍ଦ୍ଦାରେ ଥାଏ, ମାତ୍ର ପଣ୍ଡିତ ମହାଶୟ ଓ ଗୋକୁଳ ବୋଷ ଏମାନଙ୍କ ସଙ୍ଗେ କଥାବାର୍ତ୍ତା କରେ । ପିଲାଙ୍କ ପଢ଼ା ବିଷୟରେ ଶିକ୍ଷକଙ୍କର ମତ କଣ, ମୋର ସେତେବେଳେ ଜାଣିବାର ଉପାୟ ନ ଥିଲା । ୧୯୩୦ ରେ ଯେତେବେଳେ ପର୍ଦ୍ଦା ଛାଡ଼ି ବାହାରେ କାମ କରିବାକୁ ବାହାରିଲି, ସେତେବେଳେ ବୀର-ବାବୁଙ୍କ ସଙ୍ଗେ କଥାବାର୍ତ୍ତା ହେବାର ସୁଯୋଗ ମତେ ମିଳିଲା । ବୀରବାବୁଙ୍କଠାରୁ ତାଙ୍କ ଛାତ୍ର ଛାତ୍ରୀଙ୍କ ପ୍ରଶଂସା ଶୁଣିଲି । ମାତ୍ର ବୁଲୁକୁ ବେଶି ପ୍ରଶଂସା କର କହିଲେ । ବୁଲୁ ତାଙ୍କ ପାଖରେ ପଢ଼ିବାବେଳେ ସେ ଗାଈ ବିଷୟରେ ଗୋଟିଏ ପ୍ରବନ୍ଧ ଲେଖିବାକୁ ବୁଲୁକୁ କହିଲେ । ତା ପରଦିନ ବୁଲୁ ତାଙ୍କୁ ପ୍ରବନ୍ଧ ଦେଖାଇଲା । ସେଥିରେ ଗାଈର ଚିତ୍ର ରହିଛି ଓ ତାର ପ୍ରତ୍ୟେକ ଅବୟବ ଚହ୍ନିତ କର ବର୍ଣ୍ଣନା କରାଯାଇଛି । ବୀରବାବୁ ତାହା ଦେଖି ଏତେ ଖୁସିହୋଇଥିଲେ ଯେ ସେ କଥା ସେ ମୋତେ ଏକାଧିକ ବାର କହିଛନ୍ତ । ବୁଲୁକୁ କେଉଁଦିନ ପଢ଼ିବାକୁ ଯିବାକୁ କହିବାକୁ ପଡ଼େ ନାହିଁ । ସେ ସକାଳେ ଜଳଖିଆ ଖାଇସାରି ଉପରତାଲା ଘରକୁ ଯାଇ ପଢ଼ିବସିବ । ତାର ଗୋଟିଏ ଟେବୁଲ ଥାଏ । ସେଥିରେ ତାର

ଆବଶ୍ୟକ ଜିନିଷ ସବୁ ଥାଏ, ସେଥିରେ ସେ କେତେପ୍ରକାର ଜିନିଷ ତିଆରି କରେ । ଥରେ ଗୋଟାଏ ଖେଳଣା ଉଡ଼ାଜାହାଜ ତିଆରି କଲା—ତାକୁ ଗୁଡ଼ିଦେଲେ ଦୁଇତିନି ହାତ ଉଡ଼ିଯାଏ । ଏହିପରି କଳକବ୍‌ଜା କାମ ତାର ଖେଳ ଥିଲା । ଉପରଓଲି ସନ୍‌ସାଇନ୍ ଫିଲ୍‌ଡ୍‌କୁ ଖେଳିବାକୁ ଯାଏ । ସେ ତ ସ୍କୁଲକୁ ଯାଏନାହିଁ--ଅନ୍ୟ ପିଲାମାନେ ତାକୁ ଚଢ଼ାନ୍ତି--ଖଳିଚ୍ଛୁଆ, ଚେଙ୍ଗଲିଛିପିଆ ଇତ୍ୟାଦି । ଦଶବର୍ଷ ବୟସରେ ସେ 'ବୟେଜ ଓନ୍ ପେପର'ର ଗ୍ରାହକ ହେଲା । ବଙ୍ଗଳା ପତ୍ରିକା 'ସନ୍ଦେଶ' 'ମୌଚାକ୍'ର ଗ୍ରାହକ ହେଲା । ଓକିଲ କିଶୋରୀ ମୋହନ ଜୁଆରଦାରଙ୍କର ଏକମାତ୍ର ପୁଅ ଖୋକନ ବୁଲୁର ବଡ଼ ସାଙ୍ଗ । ସେ ଦୁହେଁ ମିଶି ଘରେ ସୂତାର ଟେଲିଫୋନ୍ ଲଗାନ୍ତି ।

ପିଲା ସ୍କୁଲରେ ପଢ଼ିଲେ ନାହିଁ ବୋଲି ମୋର ଚିନ୍ତାର ସୀମା ନ ଥାଏ । ହାତରେ ଟଙ୍କା ପଇସା କାହିଁ ଯେ ଭଲ ମାଷ୍ଟର ରଖିବ ! ବୟସ ହୋଇଗଲେ କଣ ଆଉ ପଢ଼ି ପାରିବ ? ଶେଷରେ ଚନ୍ଦ୍ରଶେଖର ମିଶ୍ରଙ୍କୁ ଗୋପବାବୁ ରଖାଇଲେ । ମାଷ୍ଟର କହିଲେ—ବୁଲୁ ଅତି ବୁଦ୍ଧିମାନ୍—ତାକୁ ବିଲାତ ପଠାଯାଉ । ମୋ ମା ଏକଥା ଶୁଣି ଖୁସିଖୁସି—ମୋ ନାତିକୁ ବୁଦ୍ଧିମାନ୍ କହୁଛନ୍ତି ! ସେ କହିଲା—ମୋହନକୁ ଯଦି ବିଦେଶକୁ ପଢ଼ିବାପାଇଁ ପଠାଇବ, ମୁଁ ଖର୍ଚ୍ଚ ଦେବି ।

ଚନ୍ଦ୍ରଶେଖର ମିଶ୍ର ତାକୁ ଧାଡ଼ିରେ ପଢ଼ାଇଲେ । ସେ ଏକାଦଶ ଶ୍ରେଣୀ ପାଠ ପଢ଼ୁଥାଏ, ସେତେବେଳେ କଥା ଉଠିଲା ଯେ ବୁଲୁ ମ୍ୟାଟ୍ରିକ୍ୟୁଲେଶନ୍ ପରୀକ୍ଷା ଦେଉ । ଟୁଲୁ, ମିଲୁ, ମୋ ମା, ଦେବେନ୍ଦ୍ରବାବୁ, ବୁଲୁର ମାମୁମାନେ ଏ ସ୍ୱର ଉଠାଇଲେ । ବୁଲୁ ଯେଉଁ ବିଷୟରେ ଦୁର୍ବଳଥିଲା ଗୋପବାବୁ ସେଥିପ୍ରତି ମନଦେଲେ । ସେ ସଂସ୍କୃତରେ ଦୁର୍ବଳ ଥିବାରୁ ପ୍ରଫେସର୍ ଆର୍ତ୍ତବଲ୍ଲଭ ମହାନ୍ତିଙ୍କୁ କହି ତାଙ୍କ ପାଖରେ ପଢ଼ିବା ବ୍ୟବସ୍ଥା କଲେ । ମାଗଥପାଙ୍କ ଆନନ୍ଦ କହିଲେ ନ ସରେ । ବୁଲୁ ଯେଉଁଦିନ ଟେଷ୍ଟ ପରୀକ୍ଷା ଦେବାକୁ ଯିବ ଶାଶୁ ଯାହା ହେଉଥାନ୍ତି ଦେଖିଲେ ହସମାଡ଼ୁଥାଏ, କାନ୍ଦ ବ ମାଡ଼ୁଥାଏ । ବୁଲୁର ମ୍ୟାଟ୍ରିକ ପରୀକ୍ଷା ଫଳ ଯେଉଁଦିନ କାଗଜରେ ପ୍ରକାଶିତ ହେଲା ସେହି କାଗଜରେ ପ୍ରକାଶ ପାଇଲା—ଗୋପବାବୁ ପ୍ରଥମ ଦଳ ସତ୍ୟାଗ୍ରହୀଙ୍କୁ ନେଇ ବାଲେଶ୍ୱରରେ ଲୁଣଆଇନ୍ ଭଙ୍ଗ କରିବାକୁ ଯାଉଥିଲେ । ସରକାରଙ୍କର ୧୪୪ ଧାରା ଭଙ୍ଗକରି ନଈ ବାଲିରେ ସଭା କରିଥିବାରୁ ପୁଲିସ ତାଙ୍କୁ ଗିରଫ କଲେ । ବାଟରେ ଗୋଟିଏ କାଗଜରେ ବାପ ପୁଅଙ୍କର ଦୁଇଟି ଖବର ପଢ଼ି ମୋ ମାମୁ ଜୁଆଡ଼େ ମୋ ମାଙ୍କୁ କହିଲେ—ପଢ଼ କାଗଜରେ କଣ ବାହାରିଛି । ଦୁଇଟିଯାକ ଖୁସି ଖବର ବୋଲି କହିବାକୁ ହେବ । ଗୋପ ଯେ ଆରେଷ୍ଟ ହେଲା ଏହା କଣ ଆମପାଇଁ ଗର୍ବର ବିଷୟ ନୁହେଁ ? ମୋ ପୁଅଙ୍କ ଭିତରୁ ଅନ୍ତତଃ ଗୋଟିଏ ଯଦି ଦେଶ କାମ କରି ଆରେଷ୍ଟ ହୁଅନ୍ତି ତେବେ ମୁଁ ନିଜକୁ ଭାଗ୍ୟବାନ୍ ମନେକରନ୍ତି ।

## ୧୪ । ଜୀବନଯାତ୍ରା ସଂସ୍କାର ଓ ରାମଦାସ ବାବାଜି

ସୂତାକଟା ଓ ଖଦୀ ବିଷୟରେ ବକ୍ତୃତା ପୂରାଦମରେ ଖୁବ୍ ହେଉଥାଏ । ମାତ୍ର ଖଦଡ଼ ଲୁଗାର ଦେଖା ନାହିଁ । ସୂତାକଟା ବିଷୟରେ କାହାରି ଧାରଣା ନାହିଁ । ପୁରୀଜିଲ୍ଲା ନୟାଗଡ଼ର ଲୋକେ କପା କରୁଥିଲେ, ସୂତାକଟା ଓ ଲୁଗା ବୁଣା ହେଉଥିଲା । ବିଲାତି ଲୁଗା ପିନ୍ଧିବାକୁ ଆଦୌ ଇଚ୍ଛା ହେଉ ନ ଥାଏ । ମୁଁ ୧୯୨୧ ମଇ ବା ଜୁନ୍ ମାସରେ ଖଦଡ଼ ଲୁଗା ପିନ୍ଧିଲି । କେତେ ଖୋଜାଖୋଜି ହୋଇ ନୟାଗଡ଼ରୁ ଦୁଇଟି ଧୋତି ଓ ଅଳ୍ପ ଅଳ୍ପ କଳା ଧଡ଼ିଥିବା ଦୁଇଟି ଶାଢ଼ୀ ଆସିଲା । ସେ ଶାଢ଼ୀର ଓସାର ବୟାଳିଶ ଇଞ୍ଚ,ଲମ୍ବ ନଅହାତ । ତାଠାରୁ ବେଶି ଲମ୍ବ ଓସାରର ଶାଢ଼ୀ ଆଉ ମିଳିଲା ନାହିଁ । ସେ ଶାଢ଼ୀ ଦୁଇଟି ଅତି ମୋଟା ସୂତା ଅର୍ଥାତ୍ ନଅ ଦଶ ନମ୍ବର ସୂତାର ଥିଲା । ମୁଁ ତାକୁ ପିନ୍ଧିଲି । ଲମ୍ବ ଓସାରରେ ମୋତେ ପୂରୁ ନ ଥିବା ଶାଢ଼ୀ ପିନ୍ଧିବା ଦେଖି କେହି ହସିଲେ, ଥଟ୍ଟା କଲେ, କେହି କେହି ଖୁସି ହେଲେ ମୋ ନିଷ୍ଠା ଦେଖି, କେହି କେହି ଅତ୍ୟନ୍ତ ଦୁଃଖ ପ୍ରକାଶ କଲେ । ତାପରେ ମୁଁ ଖଦଡ଼ ଶାଢ଼ୀ ପାଇଲି ଓ ପିନ୍ଧିଲି । ମୋଟ ବା ଧଡ଼ିର କୌଣସି ବାଛବିଚାର ନରଖି ଲମ୍ବ ଓସାର ପ୍ରତି ବି ଦୃଷ୍ଟି ନଦେଇ ଖଦଡ଼ ପିନ୍ଧିବା କଥା, ପିନ୍ଧିଲି ।

ସେତେବେଳେ ବସ୍ ବା ଟ୍ୟାକ୍‌ସି କଟକରେ ଚାଲୁ ନ ଥାଏ । ଅଲକାଶ୍ରମରୁ କଟକ ତ ଲୋକେ ସବୁବେଳେ ଯିବା ଆସିବା କରନ୍ତି । ସାଇକେଲ୍‌ରେ ଆସିବାବାଲା ସାଇକଲ୍‌ରେ ଆସନ୍ତି । ଆଉ ଅନେକେ କେନାଲ୍‌ରେ ଚାଲୁଥିବା ଟଣା ବୋଟରେ ଆସନ୍ତି । ବୋଟ ଅର୍ଥ ଛପର ଥିବା ଗୋଟିଏ ଡ଼ଙ୍ଗା, ସେଥିରେ ଦୌଡ଼ି ବନ୍ଧା ହୋଇଥାଏ । ତାକୁ ମାଝିମାନେ ଟାଣି ଟାଣି ନବା ଆଣିବା କରନ୍ତି । ପଣ୍ଡିତହାରି ମହାଶୟ ଅଲକାଶ୍ରମରୁ କଟକ ଚଉଦ ମାଇଲ୍ ବାଟ ଚାଲିକରି ଯିବା ଆସିବା କରନ୍ତି । ଦରକାର ପଡ଼ିଲେ ଆଜି ଆସି କାଲି ଫେରି ଯାଆନ୍ତି । ବୋଟ୍ କଟକରୁ ସକାଳ ଆଠଟାରେ ଛାଡ଼େ—ଜଗତ୍‌ସିଂହପୁରଠାରେ ସନ୍ଧ୍ୟା ଛଅଟାରେ ପହଞ୍ଚେ ।

ରାମଦାସ ବାବାଜି କଟକ ଘରକୁ ଆସିଲେ । ରଙ୍ଗ କଳା, ଗେଡ଼ା, ମୋଟାମୋଟି, ମୁଣ୍ଡ ବାଳ କୁଞ୍ଚକୁଞ୍ଚିଆ ହୋଇ ଝାମ୍ପୁରା ହୋଇଥାଏ । ଦାଢ଼ୀ ଥାଏ । ବେକରୁ ତଳିପା ଯାଏ ଗୋଟିଏ କୁର୍ତ୍ତା ବ୍ୟବହାର କରନ୍ତି, ତା ନାଆଁ ଆଲଖାଲ୍ଲା । ବାବାଜି ଘରକୁ ଆସି ଏପରି ଆଚରଣ କଲେ ଯେପରି କେଉଁ ଦିନର ପୁରୁଣା ଲୋକ ଘରକୁ ଫେରିଆସିଲେ । ମାଙ୍କୁ ବୋଉ, ଗୋପବାବୁଙ୍କୁ ଭାଇ, ନବବାବୁଙ୍କୁ ଟୁଆଁ, ମୋତେ ଭାଉଜ ବୋଲି ଡାକିଲେ । ତାଙ୍କ ଗୁଣରେ ସେ ଆମକୁ ଅତି ନିକଟତମ ଆତ୍ମୀୟ କରିନେଲେ । ସେତେବେଳେ ଆମର ମାଛଖିଆ ବନ୍ଦ ହୋଇଯାଇଥିଲା । ତଥାପି ବାବାଜୀଙ୍କ ପାଇଁ ଅଲଗା ଅରୁଆ ଭାତ ତରକାରି ରନ୍ଧାହେବ; ତାକୁ ମୁଁ ରାନ୍ଧିବି । କଟକକୁ ସେ ମଝିରେ ମଝିରେ ଆସନ୍ତି । ତାଙ୍କର ବହୁତ ଲୋକଙ୍କ

ସାଙ୍ଗରେ ଚନ୍ଦ୍ରାପରିଚୟ । ସେ ଲୋକଙ୍କୁ ଅତି ଚଞ୍ଚଳ ଆପଣାର କରିନେଇ ପାରୁଥିଲେ । କାହାର ଟିକିଏ ଦୋଷ ଦୁର୍ବଳତା ଦେଖିଲେ ସ୍ପଷ୍ଟଭାବରେ ଗାଳି ମଧ୍ୟ ଦେଉଥିଲେ । କଟକ ସହରରେ ତାଙ୍କର କେତେଗୁଡ଼ିଏ ଘନିଷ୍ଠ ବନ୍ଧୁ ଥିଲେ—ଅଳକାଶ୍ରମ ପାଇଁ ତାଙ୍କଠାରୁ ଚାନ୍ଦା ନେଉଥିଲେ । ରାମଦାସ ବାବାଜି ଉତ୍ତର ପ୍ରଦେଶରେ ଜନ୍ମଗ୍ରହଣ କରିଥିଲେ । ସେ କହନ୍ତି ତାଙ୍କ ମାଙ୍କର ପିଲା ବଞ୍ଚୁ ନ-ଥିଲେ ବୋଲି ସେ ମାନସିକ କରିଥିଲେ ପୁଅ ବଞ୍ଚିଲେ ବାବାଜି କରିଦେବେ । ରାମଦାସ ବାବାଜି ପାଞ୍ଚ ଛଅ ବର୍ଷର ହୋଇଥିବା ବେଳେ ବାବାଜି ଜମାଉତ ତାଙ୍କ ଗାଁକୁ ଗଲେ । ତାଙ୍କ ମା ପୁଅକୁ ବାବାଜି କରିଦେଲେ ଜମାଉତଙ୍କ ସାଙ୍ଗରେ ଛାଡ଼ିଦେଲେ । ଜମାଉତମାନେ ବୁଲିବୁଲି ଆଠଗଡ଼କୁ ଆସିଲେ । ଆଠଗଡ଼ ରାଜାଙ୍କର ରାମଦାସଙ୍କୁ ଦେଖି ଲୋଭହେଲା । ସେ ତାଙ୍କୁ ଜମାଉତଙ୍କଠାରୁ ରଖି ସଂସ୍କୃତ ପଢ଼ାଇଲେ । ୧୯୨୧ରେ ଅସହଯୋଗ ଆନ୍ଦୋଳନର ହାଉଆରେ ସେ ଆଠଗଡ ଛାଡ଼ି ଗୋପବାବୁ ପ୍ରଭୃତିଙ୍କ ସଙ୍ଗେ ଯୋଗଦେଲେ । ସେ ଭାରି ତେଜସ୍ୱୀ; ଅଳକାଶ୍ରମ ପାଇଁ ଚାନ୍ଦା ସଂଗ୍ରହ କାମରେ ସେ ଓ ପ୍ରାଣକୃଷ୍ଣ ପଡ଼ିହାରୀ ଥିଲେ ମୁଖ୍ୟ । ଚାନ୍ଦା ସଂଗ୍ରହ ସାଙ୍ଗରେ ସଭା ମଧ୍ୟ ହୋଇଥାଏ । ବାବାଜି ରାମଦାସ ଓଜସ୍ୱିନୀ ଭାଷାରେ ବକ୍ତୃତା ମଧ୍ୟ ଦେଇପାରନ୍ତି । ବିଷୟ ତ ଥିଲା ରାଉଲଟ୍ ଆଇନ, ଜାଲିୟାନୱାଲାବାଗ ହତ୍ୟାକାଣ୍ଡ, ବିଦେଶୀ ବର୍ଜନ ଓ ଘରେ ଯେଉଁ ବିଦେଶୀ ଲୁଗା ଅଛି ତାକୁ ପୋଡ଼ିବା । ବିଦେଶୀ ଲୁଗା ପୋଡ଼ା କାମଟା କଟକ ସହରରେ ଭଲ ହେଉଥାଏ । କାଠବାଲିରେ ସଭା, ବ୍ରିଟିଶ ସରକାରଙ୍କ ଅତ୍ୟାଚାର ବର୍ଣ୍ଣନା, ତାପରେ ବିଲାତିଲୁଗା ପୋଡ଼ିବାକୁ ଦେବାପାଇଁ ଆହ୍ୱାନ । ଲୋକେ ଦେହରୁ କୁର୍ତ୍ତା ଚାଦର କାଢ଼ି ନିଆଁକୁ ଫିଙ୍ଗିଦିଅନ୍ତି । ସ୍ୱେଚ୍ଛାସେବକମାନେ ଦଳଦଳ ହୋଇ ଘର ଘର ବୁଲି ପୋଡ଼ିବା ପାଇଁ ବିଲାତି ଲୁଗା ସଂଗ୍ରହ କରନ୍ତି ।

ଅଳକାଶ୍ରମରେ ସୂତାକଟା ଚାଲିଲା, ଲୁଗାବୁଣା ମଧ୍ୟ ଚାଲିଲା । ସେଠି ଲୁଗାବୁଣା ଚାଲିଲାଠୁଁ ମୋର ଆଉ ଲୁଗାର ଅଭାବ ରହିଲା ନାହିଁ । ଯେଉଁ ଶାଢ଼ୀ, ଥାନ ଅତି ଖରାପ ଅର୍ଥାତ୍ ଯାହାକୁ କେହି ନେବେ ନାହିଁ, ତାହା ମୋ ପାଖକୁ ଆସେ । ଧୀରେ ଧୀରେ ସମସ୍ତେ ଖଦିଧାରୀ ହେବାକୁ ଲାଗିଲେ । ପିଲାଙ୍କ କୁର୍ତ୍ତାସବୁ ଖଦଡ଼ ହେଲା । ସେହି ମୋଟା ଖଦଡ଼ ଧୋତି ମା ମଧ୍ୟ ପିନ୍ଧିଲେ । ରାଜର ରାଜରାଣୀଙ୍କୁ ଖଦଡ଼ ଧୋତି ଦେଲି । କେବଳ ଧାଈ ପିନ୍ଧିଲେ ନାହିଁ । ସେ ଅତ୍ୟନ୍ତ ବୁଢ଼ୀ ହୋଇଥିଲେ; କହିଲେ—ମୁଁ ଟେକି ପାରିବ ନାହିଁ । ଧାଈ ବ୍ୟସ୍ତ ହୋଇ କହିଲେ—ମୋ ଲୁଗା ସେ ଧୋଇ ଚପୁଡ଼ି ପାରୁ ନାହାନ୍ତି । ସେହିଦିନୁ ମୁଁ ନିଜ ହାତରେ ଲୁଗା ଧୋଇବା ଅଭ୍ୟାସ କଲି ।

ଏଣେ ଖଦଡ଼ ପିନ୍ଧା ତେଣେ ଚିକିତ୍ସା ମଧ୍ୟ ସମ୍ପୂର୍ଣ୍ଣ ଭିନ୍ନପ୍ରକାର । ଏକାଡ଼େମୀରେ ଜଣେ ସଂସ୍କୃତ ପଣ୍ଡିତ ଶିକ୍ଷକତା କରୁଥିଲେ । ଗୋପବାବୁ ସଂସ୍କୃତରେ କାବ୍ୟତୀର୍ଥ ପରୀକ୍ଷା ଦେଇ ପାସ୍ କରିଥିଲେ । କାବ୍ୟତୀର୍ଥ ପରୀକ୍ଷା ଦେବାପାଇଁ ଏକାଡ଼େମୀର ସେ ସଂସ୍କୃତ ପଣ୍ଡିତ ତାଙ୍କୁ ପଢ଼ାଇଲେ । ତାଙ୍କ ନାଆଁ ନାରାୟଣ ଦାଶ । ସଂସ୍କୃତ ଭାଷାରେ ସେ ଜଣେ ବଡ଼

ପଣ୍ଡିତ । ତାଙ୍କର ଚିକିତ୍ସାବି ଅଦ୍ଭୁତ । ଯେ କୌଣସି ରୋଗପାଇଁ ସେ ପ୍ରଥମେ ପେଟ ଦେଖିବେ, ତଳପେଟ ଚିପିଚିପି କଣ ରୋଗ ଠିକ୍ କରିବେ, ତାପରେ ଔଷଧ ଦେବେ । ଗୋପବାବୁ ତାଙ୍କ ପାଖରେ ପଢ଼ିବାବେଳେ ତାଙ୍କ ଚିକିତ୍ସା ବିଷୟରେ କିଛି କିଛି ଜାଣିଥିଲେ । ସେ କଲିକତାରେ ପାଠ ପଢ଼ିବା ବେଳେ ଦିନେ ଖେଳପଡ଼ିଆରେ ଖେଳୁ ଖେଳୁ ବର୍ଷାରେ ଖୁବ୍ ଓଦାହେଲେ । ହଷ୍ଟେଲରେ ମଧ୍ୟ ଶୋଇବା ଅବସ୍ଥାରେ ପାଣିଗୁଣ୍ଡ ଖାଇ ଜ୍ୱର ଏବଂ ବ୍ରଙ୍କାଇଟିସ୍ ହେଲା । ଡାକ୍ତରୀ ଚିକିତ୍ସାରେ ତାହା ଭଲହୋଇଗଲା । ମାତ୍ର ସେ ସୁସ୍ଥ ହେଲେ ନାହିଁ । ଡାକ୍ତର ପରୀକ୍ଷା କରି କହିଲେ ତାଙ୍କୁ ଟି.ବି. ହୋଇପାରେ । ଏକଥା ସେ ଘରେ ନ ଜଣାଇ ପଣ୍ଡିତ ମହାଶୟଙ୍କ ସଙ୍ଗେ ପତ୍ର ବ୍ୟବହାର କଲେ ଏବଂ ତାଙ୍କ ନିର୍ଦ୍ଦେଶରେ ଚଳିଲେ । କିଛିଦିନ ପରେ ଡାକ୍ତର ପରୀକ୍ଷା କରି କହିଲେ ଟି. ବି.ର ଆଶଙ୍କା ଆଉ ନାହିଁ । ସେହି ଦିନଠାରୁ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ତାଙ୍କର ଡାକ୍ତରୀ ଚିକିତ୍ସାରୁ ଆସ୍ଥା ତୁଟିଯାଇଥିଲା ।

ବୁଲୁ ତିନିବର୍ଷ ବୟସରେ ବେମାର ପଡ଼ି ବହୁତ ଭୋଗିଲା । ସେତେବେଳେ କଟକରେ ବଡ଼ ଡାକ୍ତର ଥିଲେ ଶ୍ରୀ ଜୟନ୍ତ ରାଓ । ଜୟନ୍ତବାବୁଙ୍କ ଭଉଣୀମାନଙ୍କ ସାଙ୍ଗରେ ମୋର ମା'ର ଭାରି ସାଙ୍ଗ ଥିଲା । ତେଣୁ ସେ ମା'ଙ୍କୁ ଠିକ ଏ ବନ୍ଧୁଭାବରେ ଦେଖୁଥିଲେ । ମା'ର ଜୟନ୍ତବାବୁଙ୍କ ଚିକିତ୍ସାରେ ବିଶ୍ୱାସ । ପିଲାଙ୍କ ଦେହ ଖରାପ ହେବା ମାତ୍ରେ ସେ ଜୟନ୍ତ ରାଓଙ୍କୁ ଆଣି ଦେଖାଇବ । ବୁଲୁର ଚିକିତ୍ସା ଜୟନ୍ତ ରାଓ କଲେ; ମାତ୍ର ବୁଲୁକୁ ଭଲ କରି ପାରିଲେ ନାହିଁ । ବୁଲୁ ଦୁର୍ବଳ ହେଲା । ଗୋପବାବୁ ବିରକ୍ତ ହୋଇ କହିଲେ —ଡାକ୍ତରୀ ଚିକିତ୍ସା ବନ୍ଦହେବ । ନବବାବୁ ସାଙ୍ଗେ ସାଙ୍ଗେ ପୁରୀ ଯାଇ ନାରଣ ପଣ୍ଡିତଙ୍କୁ ଆଣିଲେ । ତାଙ୍କର ଚିକିତ୍ସାରେ ବୁଲୁ ରହିଲା । ପଣ୍ଡିତେ ପୁରୀରୁ କଟକ ଆସିଲେ —ରହିବେ କେଉଁଠି ? ସେ ପ୍ରତିଦିନ ହୋମ କରିବେ । ତାଙ୍କ ଖାଇବା ଭିନ୍ନ ପ୍ରକାରର । ସେ ନିତ୍ୟକର୍ମ ସାରି ହୋମରେ ବସିବା ପର୍ଯ୍ୟନ୍ତ କୌଣସି ଲୋକଙ୍କୁ ଦେଖିବେ ନାହିଁ ବା କଥା ଶୁଣିବେ ନାହିଁ । କଥା ହେଲା ଆମ ଘରେ ରହିବେ । ଆମ ଘରେ ଗୋଟିଏ ଛୋଟ କୋଠରୀରେ ରହିଲେ । ତାଙ୍କ ପାଇଁ ସବୁ ବ୍ୟବସ୍ଥା କରାଗଲା । ଘରେ ଯାହାର ଦେହ ଖରାପ ହେଲା ସେ ଦେଖିଲେ । ଧୀରେ ଧୀରେ ଅନେକ ଲୋକ ତାଙ୍କ ଚିକିତ୍ସାରେ ରହିଲେ । ତାଙ୍କ ଚିକିତ୍ସା ବହୁତ ଜଲ୍‌ଦି କାମ ଦିଏ । ତାଙ୍କ ଚିକିତ୍ସାରେ ସର୍ଦ୍ଦି ଜ୍ୱରରେ ମଧ୍ୟ ରୋଗୀ କାକରରେ ରଖାଯାଇଥିବା ବାସିପାଣିରେ ଗାଧୋଇବ—ଝାଡ଼ା ରୋଗୀ ଗରମ ଗରମ ପୁରି ଖାଇବ । ସକାଳେ ପିଲା ପୁରୁଣିଚେର ବଟା, କଞ୍ଚା ଦୁଧ ମିଶେଇ ପିଇବେ । ଏ ଅଦ୍ଭୁତ କାରବାର ଦେଖି ଅନ୍ନପୂର୍ଣ୍ଣାଦିଦିଙ୍କ ଘର, ମାଗଅପା, ମୋ ମା' ଓ ମାମୁଁ ଘରର ସମସ୍ତେ ବିସ୍ମିତ ହେଲେ । ନାପସନ୍ଦ କରୁଥିଲେ ମଧ୍ୟ କେହି କିଛି କହୁନଥାନ୍ତି । ଧୀରେ ଧୀରେ ଦେଖାଗଲା ମାଗ ପା ନିଜେ ଚିକିତ୍ସିତ ହେଲେ । ଖଦଡ଼ ପିନ୍ଧିବା ଓ ପଣ୍ଡିତଙ୍କ ଚିକିତ୍ସା ପ୍ରଚଳନରେ ମା' କୌଣସି ଆପତ୍ତି କରୁନଥିଲେ । ବିଲାତି ବର୍ଜନ ଭାବ ମୋ ମନରେ ଏତେ.ଉଗ୍ର ଥିଲା ଯେ ବିଛଣାପତ୍ର

ସୁନ୍ଦା ଖଦୀ କନାରେ କଣପକାଇଲି । କେହି ମୋତେ ସେଥିପାଇଁ ଉପହାସ କରୁନଥିଲେ । ବରଂ ମନେହେଉଥିଲା ସମସ୍ତେ ମୋର ଖଦୀ ନିଷ୍ଠା ଦେଖି ଖୁସି ହେଉଛନ୍ତି । ଯେ କୌଣସି କାମ ନିଷ୍ଠାର ସହିତ କରିଲେ ତାହା ଯେ ବାଧାପ୍ରାପ୍ତ ହୁଏ ନାହିଁ, ସେ କଥା ମୋର ସେହି ସମୟରୁ ମନରେ ଆସିଲା । ସ୍କୁଲ ଓ କଲେଜ ଛାଡ଼ିବା ଯୋଗୁ ଆମ ଭବିଷ୍ୟତ ଅନ୍ଧକାରମୟ, ଏହି କଳ୍ପନାରେ ସିନା ସମସ୍ତେ ବ୍ୟସ୍ତ ହେଉଥିଲେ, କିନ୍ତୁ ମୁଁ ସୂତା କାଟିବା, ଗ୍ରେଟ ଖଦଡ଼ ଲୁଗା ପିନ୍ଧିବା ଆଦି କଥାରେ କେହି ବ୍ୟଙ୍ଗ ବିଦ୍ରୂପ କରୁନଥିଲେ ।

ଅଲକାଶ୍ରମ ପାଖକୁ ଭଗୁବାବୁଙ୍କ ଗାଁ ଗୃଟଗ୍ର ଖୁବ୍ ପାଖ । ସେ ଗାଁରେ ହଇଜା ଲଗିଲା । ହଇଜାକୁ ସେତେବେଳେ ସମସ୍ତେ ଅତ୍ୟନ୍ତ ଡରୁଥିଲେ । ଠାକୁରାଣୀ ବୋଲି ମାନି ପଣାପାଣି ଭୋଗଦେଇ ଧନମୁଦ୍ରାଣି ଛକରେ ତାଙ୍କୁ ରଖିବା ଆଦି କରୁଥିଲେ । ସେତେବେଳେ ଜଗତ୍‌ସିଂହପୁରରେ ଗୋଟିଏ ଡିସ୍‌ପେନ୍‌ସାରୀ ଖୋଲୁଥିଲା ଓ ଜଣେ ଡାକ୍ତର ମଧ୍ୟ ଥିଲେ । ହଇଜାରେ ଡାକ୍ତର କଣ କରିବ—ଏହି ବିଶ୍ୱାସରେ ଲୋକେ ଡାକ୍ତରୀ ଚିକିତ୍ସା ନ କରାଇ ପୁରୁଣା ପ୍ରଥା ଅନୁସାରେ ରୋଗୀଙ୍କୁ ରଖିଲେ । ହଇଜା ହୁ ହୁ ବ୍ୟାପିଗଲା । ଅଲକାଶ୍ରମର ଶିକ୍ଷକମାନେ ହୋମିଓପାଥି ବାକ୍‌ସ ନେଇ ବାହାରିଲେ । ହଇଜା ରୋଗୀକୁ କପରି ରଖିବାକୁ ହୁଏ ଓ ତାର ସେବା ଶୁଶ୍ରୂଷା କପରି କରିବାକୁ ହୁଏ ତାହା ବତେଇଲେ ଓ ନିଜେ କଲେ । ରାତି ହେଲେ ଯେ ଯାହା ଘରେ ଯେ କବାଟ କିଳି ରହୁଥିଲେ, କେହି କାହାକୁ ପଚାରୁନଥିଲେ, ସେ ଚଳଣି ଭାଙ୍ଗିଲେ । ଶିକ୍ଷକମାନେ ରାତିରେ ଗାଁ ଭିତରେ ବୁଲିଲେ । ରୋଗୀ ପାଖରେ ରହିଲେ । ଶିକ୍ଷକମାନଙ୍କର କଲେରା ଚିକିତ୍ସା ଓ ସେବା ଦେଖି ଲୋକଙ୍କ ମନରେ ବିଶ୍ୱାସ ଆସିଲା ଯେ ଏମାନଙ୍କ ଭିତରେ କିଛି ବିଶ୍ୱାସଶକ୍ତି ଓ କାମ କରିବା ଶକ୍ତି ଅଛି । କଲେରା ଅଳ୍ପ ଦିନେ ବନ୍ଦହେଲା, କିନ୍ତୁ ହୋମିଓପାଥି ଔଷଧ ଦେବା କଥା ଖୋଲୁ ରହିଲା । ଦେଖାଗଲା ଗାଁ ଲୋକଙ୍କ ଭିତରେ ସମ୍ପର୍କ ରଖିବାର ତାହା ଗୋଟିଏ ଭଲ ସାଧନ । ସେ ଅଞ୍ଚଳରେ ଅଲକାଶ୍ରମ ଖ୍ୟାତି ଲାଭକଲା । କଟକର ଭିକାରୀବାବୁ (୬ଭିକାରୀ ଚରଣ ପଟ୍ଟନାୟକ, ଓକିଲ) ପ୍ରଭୃତିଙ୍କ ଭଳି ପୁରୁଣା ବ୍ୟକ୍ତିମାନଙ୍କର ମଧ୍ୟ ଅଲକାଶ୍ରମ ପ୍ରତି ଶ୍ରଦ୍ଧା ଆସିଲା । ଅଲକାଶ୍ରମର ଖଦଡ଼ ଲୁଗା କଟକରେ ବିକ୍ରୀହେଲା । କୃଷ୍ଣବଲ୍ଲଭ ଘୋଷ ପ୍ରଭୃତି ଶାଢ଼ୀ ଧୋତି ବରାଦ କଲେ । ମାତ୍ର ସେ ବରାଦୀ ଲୁଗା ବୁଣା ହେଉ ହେଉ ଯେଉଁଗୁଡ଼ିକ ରଦ୍ଦି ବିବେଚିତ ହେଲା ସେଗୁଡ଼ିକ ମୋ ଭାଗ୍ୟରେ ପଡ଼ିଲା ।

ସେହିପରି ଅଲକାଶ୍ରମର ଛାତ୍ରମାନେ ଯେ ବେମାର ହୁଅନ୍ତି, ସେଠା ଡାକ୍ତର ଓ ହୋମିଓପାଥି ଚିକିତ୍ସାରେ ଯେ ଭଲ ନ ହୁଅନ୍ତି, ସେମାନଙ୍କୁ କଟକ ପଠାଯାଏ । ସେତେବେଳେ ମ୍ୟାଲେରିଆ ଜ୍ୱର ପ୍ରବଳ ହେଉଥାଏ । ପିଲାମାନେ ଖୁବ୍ ଜ୍ୱରରେ ପଡ଼ନ୍ତି । ସେହି ପିଲାଙ୍କ ଚିକିତ୍ସା ଓ ସେବା କରି ମ୍ୟାଲେରିଆ ଜ୍ୱର ଛଡ଼ାଇବା ବିଷୟରେ ମୁଁ ଅଭ୍ୟସ୍ତ ହୋଇଗଲି । କେଉଁ ଅବସ୍ଥାରେ କପରି ଔଷଧ ଓ ପଥ୍ୟ ଦେବାକୁ ହେବ, ଅଟଳବାବୁଙ୍କ ପରାମର୍ଶରେ ସେଥିରେ ମୁଁ ପାରଙ୍ଗମ ହେଲି । ପଛକୁ ପଛକୁ ଅଟଳବାବୁଙ୍କ ରୋଗୀ

ଦେଖାଇବା ଦରକାର ହେଲା ନାହିଁ । ପିଲାଙ୍କର ଅଭ୍ୟାସ ଥିଲା ଯେ ଜ୍ୱର ହେଉଥିବ, ଖାଉଥିବେ, ବୁଲାଚଲା କରୁଥିବେ । ଦୁଇ ତିନିଜଣ ରୋଗୀଙ୍କପାଇଁ ଅଟଳବାବୁଙ୍କ ପରାମର୍ଶ ନେବା ପରେ ସେ ରୋଗୀଙ୍କୁ ସମ୍ଭାଳିବା ବିଷୟରେ ମୁଁ ବୁଝିଗଲି । ସେ ପିଲାଙ୍କ ସେବାରେ ମୋତେ ସମସ୍ତ ଦେବାକୁ ପଡ଼େ । ମୁଁ ଯେତେ ପାରେ ସାବଧାନରେ ଚଳେ,ମୋ ଅନୁପସ୍ଥିତି ଯେପରି ମା ଘରକାମରେ ଅନୁଭବ ନକରନ୍ତି । ବାମିତଭ ପ୍ରଭୃତିଙ୍କ ସାହାଯ୍ୟ ନିଏ । ସେ ପିଲାଙ୍କ ଚିକିତ୍ସା ଓ ସେବା କରି ମୋର ଗୋଟାଏ ମସ୍ତବଡ଼ ଲାଭହେଲା ଯେ ମ୍ୟାଲେରିଆ ଜ୍ୱର ବିଷୟରେ ମୋର ଅଭିଜ୍ଞତା ହେଲା । ସେ ରୋଗୀ ସମ୍ଭାଳିବା ପାଇଁ ମୋର ସାହସ ମଧ୍ୟ ଯଥେଷ୍ଟ ହେଲା । ଡାକ୍ତରଙ୍କ ସାହାଯ୍ୟ ନନେଇ ମୁଁ ରୋଗୀ ଚଳାଇ ନେଉଥିଲି । ମୁଁ ପିଲାଙ୍କପାଇଁ ଏତେ ସମସ୍ତ କାମ କରିବା କଥାଟା ମା' ପସନ୍ଦ କରୁନଥିଲେ । ବେଳେ ବେଳେ ପିଲାଙ୍କଉପରେ ବିରକ୍ତ ହେଉଥିବାରୁ ମୋତେ ଖରାପ ଲାଗୁଥିଲା । ମୋ ବାପାଙ୍କର ଦୁଇଟି ସଉକ ଥିଲା, ଗୋଟିଏ ହେଲା ଭଲ ରାନ୍ଧିବା, ଅନ୍ୟଟି ଉତ୍ତମ ରୋଗୀ ସେବା । ଏ ଦୁଇଟି କାମରେ ତାଙ୍କର ଝିଅ ଦୁହେଁ ନିପୁଣ ହୁଅନ୍ତୁ, ଏଥିପାଇଁ ସେ ସଚେଷ୍ଟ ଥିଲେ । ତାଙ୍କର ମାପକାଠି ଥିଲା, ବାହାର ଲୋକ ଯେ ଖାଇବେ ତାଙ୍କୁ ଏପରି ଯତ୍ନରେ ଖୁଆଇବ ଯେ ପରଘରେ ଖାଉଛନ୍ତି ବୋଲି ଭାବିବେ ନାହିଁ । ରୋଗୀ ସେବା ମଧ୍ୟ ସେହିପରି-ରୋଗୀ ଯେପରି ଅନୁଭବ କରିବ ତା ନିଜ ଲୋକ ତାର ସେବାଯତ୍ନ କରୁଛନ୍ତି । ସେଥିପାଇଁ ରୋଗୀକୁ କିପରି ସ୍ପଞ୍ଜ କରାଯିବ, ଶୋଇବା ଅବସ୍ଥାରେ ଖୁଆଯିବ, ସେସବୁ ଆମକୁ ଶିକ୍ଷା ଦିଆଯାଇଥିଲା । ମୋର ସେ ଶିକ୍ଷା ଅଲକାଶ୍ରମ ପିଲାଙ୍କ କାମରେ ଖୁବ୍ ଆସିଲା ।

## ୧୬ । ଆନ୍ଦୋଳନର ଧାସ

୧୯୨୨ରେ ଆଇନ୍ ଅମାନ୍ୟ ଅନୁସନ୍ଧାନ କମିଟି ଓଡ଼ିଶାକୁ ଆସିଲେ । ପଣ୍ଡିତ ମୋତିଲାଲ ନେହେରୁ ସେ କମିଟିର ସଭ୍ୟ ଥିଲେ । ସେମାନେ ଯେ କାଇଦା ଦୋରସ୍ତ ଭାବରେ ତଦନ୍ତ କରିବେ, ସବୁକଥା ଟିକିନିଖି ପଚାରିବେ, ଏହା ଆମ କର୍ମୀଙ୍କ କଳ୍ପନାରେ ନ ଥିଲା । କମିଟି ମେମ୍ବରମାନେ, ବିଶେଷକରି ପଣ୍ଡିତ ମୋତିଲାଲ ନେହେରୁ ତ ଆମ ସ୍ୱରାଜ୍ୟଆଶ୍ରମ ଦେଖି କାବ୍‌ବା ହେଲାପରି କୁଆଡ଼େ ଲାଗିଲା । ଏପରି ଘରେ ଯେ ତାଙ୍କୁ ରହିବାକୁ ହେବ, ତାହା ତାଙ୍କ କଳ୍ପନାର ଅତୀତ ପରି ଜଣାଗଲା । ସ୍ୱରାଜ୍ୟ ଆଶ୍ରମରେ ସେମାନେ ରହିଲେ, ମାତ୍ର ଖିଆପିଆ ଗଣେଶଲାଲ ପଣ୍ଡିତଙ୍କ ଘରେ ହେଲା ।

ଦିନେ ଉମାକାନ୍ତବାବୁ ଅଫିସରୁ ଆସି ଖବର ଦେଲେ ଯେ, ଗାନ୍ଧିଜୀ ଧରାହୋଇଗଲେ । ଏ ଦ'ଭାଇ ଘରେ ନଥିଲେ । ମୋ ମନ ତ ଆକୁଳ ହୋଇଉଠିଲା । ମୁଁ ଦେଖିଲି ଉମାକାନ୍ତ ବାବୁଙ୍କ ଘରର ସମସ୍ତେ ଓ ତାଙ୍କ ପାଖକୁ ଯେଉଁମାନେ ବୁଲି ଆସିଲେ ସମସ୍ତଙ୍କ ଭିତରେ

ବ୍ୟସ୍ତତା । ଏତେବଡ଼ ଆନ୍ଦୋଳନ ସ୍ଥଗିତ କପରି ?—ଏଇ କଥା ସବୁରି ମୁହଁରେ । ଚାଉରିଚଉରାର ଘଟଣା ଯେତେବେଳେ ଘଟିଲା,ସେତେବେଳେ ସବୁ ଦୋଷ ଗାନ୍ଧିଜୀ ନିଜ ମୁଣ୍ଡକୁ ନେବାରୁ ଏବଂ ଆନ୍ଦୋଳନକୁ ଜୋର୍‌ସୋର୍‌ରେ ଚଲାଇବାପାଇଁ ଲୋକଙ୍କ ମନ ପ୍ରସ୍ତୁତ ହୋଇନାହିଁ, ଏ କଥା ଘୋଷଣା କରିଦେବାରୁ ଗାନ୍ଧୀଜୀଙ୍କ ପ୍ରତି ଲୋକଙ୍କ ଶ୍ରଦ୍ଧା ବହୁତ ବଢ଼ିଯାଇଥିଲା । ଉତ୍କଳଗୌରବ ମଧୁସୂଦନଙ୍କ ମୁହଁରୁ ଶୁଣିବାକୁ ମିଳିଲା—ନିଜ ଭୁଲ ବା ଦୋଷ ଯେ ସ୍ୱୀକାର କରେ ସେ ନିଶ୍ଚୟ ଜଣେ ମହାନ୍ ବ୍ୟକ୍ତି । ସାମାନ୍ୟ ବ୍ୟକ୍ତିର କଥା ଏ ନୁହେଁ । ଗାନ୍ଧୀଙ୍କ ଗିରଫ ହେବା କଥା ତ ବ୍ୟସ୍ତତା ସୃଷ୍ଟି କରିଥିଲା, ତାଙ୍କୁ ଛ' ବର୍ଷ ଜେଲଦଣ୍ଡ ହେବାକଥା ଆଚମ୍ଭିତ କଲା । ଏତେ ଦୀର୍ଘଦିନ ଧରି ସେ ଜେଲ ଭୋଗିବେ ? ଆନ୍ଦୋଳନ ବନ୍ଦ କରିବା ପାଇଁ ସରକାରଙ୍କର ଏ ଗୋଟାଏ ଫିକର ଇତ୍ୟାଦି ଭିନ୍ନଭିନ୍ନ ବିଚାରର ଲୋକ ଭିନ୍ନଭିନ୍ନ କଥା କହିଲେ । କିଛି କାଳ ପରେ ପୁଣି ଦିନେ ଉମାକାନ୍ତବାବୁ ଅଫିସରୁ ଫେରି ଖବର ଦେଲେ ଯେ, ଗାନ୍ଧୀଜୀଙ୍କ ପେଟରେ ଆପେଣ୍ଡିସାଇଟିସ୍ ଜଣାଯିବାରୁ ତାଙ୍କୁ ସଙ୍ଗେ ସଙ୍ଗେ ଅପରେସନ୍ କରାଇବା ପାଇଁ ପଠାଇ ଦିଆଗଲା । ଯେଉଁ ଲୋକଟି ବ୍ରିଟିଶ ସରକାର ବିରୁଦ୍ଧରେ ଅସହଯୋଗ ଚଳାଉଛନ୍ତି ତାଙ୍କୁ ଜେଲରୁ ମୁକ୍ତ କରିଦେବା କଥା ମଧ୍ୟ ନୂଆ ଲାଗିଲା । ମାତ୍ର ଏ ଆନ୍ଦୋଳନ ଯେ ବ୍ରିଟିଶ ସରକାରକୁ ହଲଚଲ କରିଦେବ, ଏ ବିଶ୍ୱାସ ମନରେ ଆସୁନଥାଏ ।

ତାପରେ ଚହଲ ପକେଇବା ଭଳି ଘଟଣା ଘଟିଲା ସ୍ୱରାଜ୍ୟ ପାର୍ଟିର କଥାରେ । କଂଗ୍ରେସରେ ମତଭେଦ ସୃଷ୍ଟି ହେଲା । ଦଳେ କହିଲେ, କଂଗ୍ରେସ ଲୋକେ ପାର୍ଲିଆମେଣ୍ଟାରୀ ପ୍ରୋଗ୍ରାମ ଚାହାଁକୁ ନଅନ୍ତୁ; ଆସେମ୍ବ୍ଲି, କାଉନ୍‌ସିଲ୍ ଓ ଜିଲ୍ଲାବୋର୍ଡ଼ରେ ପଶନ୍ତୁ । ଆଉଦଳେ ମତ ଦେଲେ ଯେ ସେ କାର୍ଯ୍ୟକ୍ରମ ଗ୍ରହଣ କରିବା ଉଚିତ ହେବ ନାହିଁ । ଦୁଇଦଳଙ୍କ ନାମ ଦିଆଗଲା ପ୍ରୋ-ଚେଞ୍ଜର ଓ ନୋ-ଚେଞ୍ଜର । କଂଗ୍ରେସର ଖ୍ୟାତନାମା ବ୍ୟକ୍ତି ଚିତ୍ତରଞ୍ଜନ ଦାସ ପାର୍ଲିଆମେଣ୍ଟାରୀ କାର୍ଯ୍ୟକ୍ରମ ନେବା ସପକ୍ଷରେ ଥିଲେ । ଗୟା କଂଗ୍ରେସରେ ସେହି କଥା ଉପରେ ଧମାଧମ ଚର୍ଚ୍ଚା ହେଲା । ନବବାବୁ କାଉନ୍‌ସିଲ ପାଇଁ ପ୍ରାର୍ଥୀ ହେଲେ । ତାଙ୍କ ବିପକ୍ଷ ହୋଇଥାନ୍ତି ରାୟବାହାଦୁର ଲକ୍ଷ୍ମୀଧର ମହାନ୍ତି । ନିର୍ବାଚନ ପାଇଁ ତ ନବବାବୁ ଓ ଅନ୍ୟମାନେ ପ୍ରସ୍ତୁତ ହୋଇଥାନ୍ତି । ନିର୍ବାଚନ ପ୍ରଚାର ବିଷୟରେ କେତେ କଳ୍ପନା ଜଳ୍ପନା ଚାଲିଥାଏ । ପ୍ରାର୍ଥୀ ବାଛିବାଛି ବେଳେ ଦେଖାଗଲା,ନବବାବୁଙ୍କ ବୟସ ଅଳ୍ପ କିଛି କମ୍ ଅଛି । ତେଣୁ ସେ କଟିଗଲେ । ଲକ୍ଷ୍ମୀଧରବାବୁ ସ୍କୁଲରୁ ନବବାବୁଙ୍କ ବୟସ କଥା ବୁଝି କିଛି ନଜାଣିଲାପରି ଚୁପ୍‌ଚାପ୍ ବସିଥାନ୍ତି ।

ତାପରେ ଜିଲ୍ଲାବୋର୍ଡ ନିର୍ବାଚନ ବେଳ ଆସିଲା ୧୯୨୪ରେ । ସେଥିରେ ଗୋପବାବୁ, ମହତାବବାବୁ ପ୍ରଭୃତି ପ୍ରାର୍ଥୀ ହେଲେ । ଗୋପବାବୁ କଟକ ଜିଲ୍ଲାର ଏରସମା ଥାନାରୁ ପ୍ରାର୍ଥୀହେଲେ । ମୋ ବଡ଼ ମାମୁ ଶ୍ରୀ ରାଜକିଶୋର ଦାସ ମଧ୍ୟ ସେହିଠାରୁ ପ୍ରାର୍ଥୀ ହୋଇଥିଲେ । ସେତେବେଳେ କୁଜଙ୍ଗରେ ଜଣେ ବଙ୍ଗାଳୀ

ମ୍ୟାନେଜର ଥିଲେ । ମାମୁଙ୍କର ଇଚ୍ଛା ନଥିଲେ ମଧ୍ୟ ତାଙ୍କ ପ୍ରରୋଚନାକୁ ଏଡ଼ିନପାରି ସେ ପ୍ରାର୍ଥୀ ହୋଇଥିଲେ । କଂଗ୍ରେସ କର୍ମୀମାନେ ସଚ୍ଚୋଟ, ଲୋକଙ୍କ ହିତପାଇଁ ସେମାନେ ଜୀବନ ଦେଇଦେବେ, ତାଙ୍କଠାରେ ବିଳାସ ବ୍ୟସନର ନାମଗନ୍ଧ ନାହିଁ ଇତ୍ୟାଦି ଗୁଣଯୋଗୁ କଂଗ୍ରେସ ପ୍ରତି ଲୋକଙ୍କ ମନରେ ସ୍ୱତଃ ଶ୍ରଦ୍ଧା ଆସିଯାଇଥାଏ । ମୁହଁରେ କୁହାକୁହି ହୁଅନ୍ତି— ଏଗୁଡ଼ାଙ୍କ ହାତରେ କଣ ଅଛି ? ଏ ପୁଣି କୁଆଡ଼େ ଇଂରେଜ ସରକାରକୁ ହଟେଇବେ ?

କଂଗ୍ରେସ କର୍ମୀମାନେ ପ୍ରଚାରରେ ଲାଗିଗଲେ । ନିର୍ବାଚନ ଲଢ଼େଇରେ ରାଜକିଶୋର ଦାସ ହାରିଲେ । ଗୋପବାବୁ ଡିଷ୍ଟ୍ରିକ୍ଟ ବୋର୍ଡ଼କୁ ଆସିଲେ ଏବଂ ବୋର୍ଡର ଚେୟାରମ୍ୟାନ୍ ହେଲେ । ସେହିପରି ମହତାବବାବୁ ବାଲେଶ୍ୱର ଡିଷ୍ଟ୍ରିକ୍ଟ ବୋର୍ଡର ଚେୟାରମ୍ୟାନ୍ ହେଲେ । ଗସ୍ତଖର୍ଚ୍ଚ ନିୟମ ଅନୁସାରେ ନ ନେଇ ଯେତିକି ଖରଚ ହୋଇଥିବ ସେତିକି ନେବା, ସାଇକେଲରେ ଗସ୍ତ କରିବା, ମଫସଲରେ ସ୍କୁଲ ଇତ୍ୟାଦି ବସାଇବା ଦ୍ୱାରା ସେମାନେ ଲୋକଙ୍କର ଆସ୍ଥାଭାଜନ ହେଲେ । ଏଣେ ଅଲକାଶ୍ରମକୁ ଯାଇ ସେ କାମ ଦେଖାଶୁଣା କରିବା ସଙ୍ଗେ ସଙ୍ଗେ ଡିଷ୍ଟ୍ରିକ୍ଟ ବୋର୍ଡ଼ କାମକୁ ଉତ୍ତମ ରୂପେ କରିବାପାଇଁ ଚେଷ୍ଟାରେ ଗୋପବାବୁଙ୍କୁ ବହୁତ ପରିଶ୍ରମ କରିବାକୁ ପଡ଼ିଲା ।

ଶ୍ରୀ ଭିକାରି ଚରଣ ପଟ୍ଟନାୟକ ଓକିଲ ତାଙ୍କ ଘରେ କୁଟୀର ଶିଳ୍ପ କାମ ଆରମ୍ଭ କରାଇଥାନ୍ତି । କୁଟୀର ଶିଳ୍ପ ଭିତରେ ଏଣ୍ଡିପୋକ ଗୃହ ପ୍ରଧାନ ହୋଇଥାଏ । ଗୋପବାବୁ ଭିକାରିବାବୁଙ୍କ ଘରକୁ ଯିବା ଆସିବା କରୁଥିଲେ ଏବଂ ଆମ ଘରକୁ ଏଣ୍ଡିପୋକ ଆଣିଲେ । ସେ ଏକ ମୁସ୍କିଲ ବ୍ୟାପାର । ଏଣ୍ଡିପୋକମାନେ ଖୁବ୍ ଶୀଘ୍ର ବଢ଼ିଯାନ୍ତି । ସେମାନେ କେବଳ ଗବପତ୍ର ଖାଆନ୍ତି । ସେମାନଙ୍କୁ ଗବପତ୍ର ଯୋଗାଇବା ଗୋଟିଏ ଦୁରୁହ ବ୍ୟାପାର ହେଲା । ଆମ ଘରେ ଯେ ଚାକର ଥାନ୍ତି, ତାଙ୍କର ପ୍ରଧାନ କାମ ହେଲା ଗବପତ୍ର ଆଣିବା । ସେମାନେ ଯେପରି ବହୁତ ଖାନ୍ତି ଶୀଘ୍ର ବଢ଼ନ୍ତି; ସେହିପରି ବହୁ ପରିମାଣରେ ମଳ ତ୍ୟାଗ କରନ୍ତି । ବଡ଼ ବଡ ବାଉଁଶ ପଲାରେ ସେ ପୋକକୁ ରଖାଯାଇଥାଏ । ବାପ ଝିଅଦୁହେଁ ତାହା ସଫା କରିବା ଆଦି ସମସ୍ତ କାମ କରନ୍ତି । ସେତେବେଳକୁ ଅଲକାଶ୍ରମରେ ପିଲାସଂଖ୍ୟା କମିଗଲେଣି । ଯଦୁମଣି ମଙ୍ଗଳରାଜ ପ୍ରଭୃତି କଲେଜ ଛାଡ଼ିଥିବା କେତେଜଣଙ୍କ ମନରେ ଉଠିଲାଣି ଯେ ତାଙ୍କର ଭବିଷ୍ୟତ କଅଣ ? ପାଠ ପଢ଼ିଥିଲେ ମଧ୍ୟ ପାସ୍ ସାର୍ଟିଫିକେଟ୍ ନାହିଁ । ଏସବୁ କଥା ଚର୍ଚ୍ଚା ହୋଇ ସ୍ଥିର ହେଲା ଯେ ସ୍ୱରାଜ୍ୟ ଶିକ୍ଷାପରିଷଦ ନାମରେ ଗୋଟିଏ ସଂସ୍ଥା ଗଢ଼ାଯିବ– ସେହି ସଂସ୍ଥା ପରୀକ୍ଷା କରି ସାର୍ଟିଫିକେଟ୍ ଦେବ । ସେ ପରିଷଦର ସଭାପତି ହେଲେ ପଣ୍ଡିତ ଗୋପବନ୍ଧୁ ଦାସ । ସେକ୍ରେଟାରୀ ହେଲେ ଶ୍ରୀ ନନ୍ଦକିଶୋର ଦାସ ।

ନନ୍ଦବାବୁ ଏମ୍. ଏ. ପାସ୍ କରି ଓକିଲାତି ପାଠ ଅଧାରୁ ଛାଡ଼ି ଆନ୍ଦୋଳନରେ ପଶିଲେ । ୧୯୨୦ ସେପ୍ଟେମ୍ବର ମାସରେ କଲିକତାଠାରେ ଯେଉଁ କଂଗ୍ରେସ ଅଧିବେଶନ ବସିଥିଲା, ନନ୍ଦବାବୁ ସେତେବେଳେ ସ୍ୱେଚ୍ଛାସେବକ ଭାବରେ କାମ କରିଥିଲେ । ତାଙ୍କର ଏମ୍. ଏ. ପରୀକ୍ଷା ଅଳ୍ପ ଦିନ ଥାଏ । ସ୍ୱେଚ୍ଛାସେବକ ଭାବରେ କାମକରି କଂଗ୍ରେସ ଅଧିବେଶନରେ ଦିଆଯାଇଥିବା ଭାଷଣମାନ ସେ ଶୁଣିଲେ । ସେତେବେଳେ ଖବରକାଗଜ କଂଗ୍ରେସ

ଖବରରେ ସରଗରମ । ନନ୍ଦବାବୁଙ୍କ ମନ ଆଉ ପଢ଼ାରେ ରହିଲା ନାହିଁ । ଖବରକାଗଜ ପଢ଼ିବା ଓ ସାଙ୍ଗମାନଙ୍କ ସାଙ୍ଗରେ ଗରମାଗରମ ଆଲୋଚନା କରିବା ହେଲା ତାଙ୍କର କାମ । ପରୀକ୍ଷାର ଦଶ ପାଞ୍ଚ ଦିନ ପୂର୍ବରୁ ପଢ଼ି ପରୀକ୍ଷା ଦେଲେ ଓ ଭଲ ଭାବରେ ପାସ୍ କଲେ । ଓକିଲାତି ପାଠ ଅଧାରୁ ଛାଡ଼ି ଆନ୍ଦୋଳନରେ ଯୋଗଦେଲେ ଓ ସାକ୍ଷୀଗୋପାଳ ଜାତୀୟ ବିଦ୍ୟାଳୟରେ ଶିକ୍ଷକତା କଲେ । ଜାତୀୟ ବିଦ୍ୟାଳୟ ଦୁଇଟି ସାକ୍ଷୀଗୋପାଳ ଓ ଜଗତ୍ସିଂହପୁରରେ ଚାଲୁଥାଏ । ମାତ୍ର ଶିକ୍ଷକମାନଙ୍କ ମନ ଶିକ୍ଷକତାରେ ନ ଥାଏ । ପ୍ରଥମେ ଯେତେ ଗାମ୍ଭୀର୍ଯ୍ୟ ସହକାରେ କାମ ହେଉଥିଲା, ତାହା କ୍ରମେ ଶିଥିଳ ହେବାକୁ ଲାଗିଲା । ନିର୍ବାଚନ ପଡ଼ିବାରୁ ଝୁଙ୍କି ନିର୍ବାଚନରେ ରହିଲା । ମନ ରାଜନୀତି ଆଲୋଚନା ଉପରକୁ ବେଶି ଢଳିଲା ।

୧୯୨୪ରେ ଉତ୍କଳ ପ୍ରାଦେଶିକ କଂଗ୍ରେସ ସମ୍ମିଳନୀ କଟକ ସହର ମ୍ୟୁନିସିପାଲିଟି ପଡ଼ିଆରେ ହେଲା । ସେ ସମ୍ମିଳନୀରେ ସଭାପତିତ୍ୱ କଲେ ବିଶିଷ୍ଟ ବୈଜ୍ଞାନିକ ଆଚାର୍ଯ୍ୟ ପ୍ରଫୁଲ୍ଲଚନ୍ଦ୍ର ରାୟ । ସମ୍ମିଳନୀର ଅବ୍ୟବହିତ ପୂର୍ବରୁ ଶ୍ରୀ ଗୋପବନ୍ଧୁ ଦାସ ଓ ଭାଗୀରଥି ମହାପାତ୍ର ଦୁଇବର୍ଷ କାରାଦଣ୍ଡ ଭୋଗି ହଜାରିବାଗ ଜେଲରୁ ଖଲାସ ହୋଇ କଟକ ଆସିଲେ । ଆମ ଦୋମହଲା ଘରେ କଂଗ୍ରେସ କମିଟି ବୈଠକ ବସିଲା । ବାବାଜୀ ରାମଦାସ, ଯଦୁମଣି ମଙ୍ଗରାଜ, ରାଜକୃଷ୍ଣ ବୋଷ ପ୍ରମୁଖ ତାହା ପୂର୍ବରୁ ହଜାରିବାଗ ଜେଲରୁ ଖଲାସ ହୋଇ ଆସିଥା'ନ୍ତି । ସେମାନେ ସଶ୍ରମ କାରାଦଣ୍ଡ ପାଇଥିଲେ । ସେମାନଙ୍କୁ କିପରି ଧାନ କୁଟିବାକୁ, କତା ବଳିବାକୁ ପଡ଼ୁଥିଲା, ତାହା ତାଙ୍କଠାରୁ ଶୁଣାଯାଇଥିଲା ।

ସରୋଜିନୀ ଚୌଧୁରୀ, ହେମବତୀ ଦେବୀ ପ୍ରମୁଖ ଭଦ୍ରମହିଳାଙ୍କ ସଙ୍ଗରେ ମୁଁ ମଧ୍ୟ ସମ୍ମିଳନୀକୁ ଯାଇଥିଲି ଏବଂ ଚିକ୍ ପର୍ଦ୍ଦା ଟଙ୍ଗାଯାଇଥିବା ଗୋଟିଏ କଣକିଆ ଜାଗାରେ ଆମେ ମହିଳାମାନେ ବସି ସମ୍ମିଳନୀରେ ଦିଆଯାଉଥିବା ଭାଷଣମାନ ଶୁଣିଥିଲୁ । ସ୍ୱରାଜ୍ୟ ଆଶ୍ରମରେ ଗୋଟିଏ ଛୋଟିଆ ପ୍ରଦର୍ଶନୀ ହୋଇଥିଲା । ସେହି ପ୍ରାଙ୍ଗଣରେ ମହିଳାମାନଙ୍କର ସଭା ହେଲା, ସେଥିରେ ଦାସେ ଆପଣେ ଭାଷଣ ଦେଇଥିଲେ ।

ସେତେବେଳକୁ ଉତ୍କଳ ଟ୍ୟାନେରୀର ଆର୍ଥିକ ସ୍ଥିତି ବଡ଼ ଖରାପ ହେବାରୁ ସେ ପ୍ରତିଷ୍ଠିତ ସଂସ୍ଥାକୁ କିପରି ରକ୍ଷାକରାଯିବ ସେ କଥା ଗଭୀର ଭାବରେ ଚିନ୍ତାକରାଯାଉଥାଏ ।

## ତୃତୀୟ ସନ୍ତାନର ବିୟୋଗ ଓ ବୈରାଗ୍ୟ

୧୯୨୨ ବୈଶାଖ ମାସରେ ଆମ ଘରୋଇ ଚିକିତ୍ସକ ପଣ୍ଡିତ ମହାଶୟ ଚନ୍ଦନଯାତ୍ରା ଦେଖିବା ପାଇଁ ପୁରୀଯିବାକୁ ମୋ ପାଖରେ ଇଚ୍ଛା ପ୍ରକାଶ କଲେ । ମୁଁ ହଁ କହିଲି । ସେ ପୁରୀ ଯିବାପାଇଁ ପ୍ରସ୍ତୁତ ହେଲେ । ପଣ୍ଡିତଙ୍କ ଯିବା ପୂର୍ବଦିନ ମୋର କୋଳର ଶିଶୁକୁ ଦୁଇଥର ଉପେଣ୍ଡି ଝାଡ଼ା ହେଲା ।

ସେତିକିବେଳେ ବହ୍ମପୁରରେ ସମ୍ମିଳନୀ ହେଉଥାଏ । ଗୋପବାବୁଙ୍କର ସେଠିକୁ ଯିବା କଥା । ମୁଁ ତ ନିଜ ପିଲାଙ୍କ ଯୋଗୁ ବା ଘର କାମ ଯୋଗୁ ତାଙ୍କୁ କୌଣସି କଥାରେ ବାଧା

ଦେଉ ନ ଥାଏ । ବ୍ରହ୍ମପୁର ଯିବାବାଲା ବ୍ରହ୍ମପୁର ଗଲେ । ପଣ୍ଡିତେ ପୁଷ୍ପ ଗଲେ । ପୁଷ୍ପ ଯିବା ପୂର୍ବରୁ ଡସେଂଟି୍ର ପାଇଁ ଔଷଧ ଓ ପଥ୍ୟ କଣ ଦିଆଯିବ, ତାହା କହିଗଲେ । ଔଷଧ ନିୟମ ଅନୁସାରେ ଦିଆଯାଉଥାଏ, ପଥ୍ୟ ମଧ୍ୟ । କିନ୍ତୁ ଝାଡ଼ା ବେଶୀ ହେଲା । ତୃତୀୟ ଦିନ ଶାଶୁ ଓ ମା' ପରାମର୍ଶ କରି ସ୍ଥିର କଲେ ପଣ୍ଡିତେ ଅନୁପସ୍ଥିତ ଥିବାବେଳେ ତାଙ୍କ ଔଷଧ ଉପରେ ନିର୍ଭର ନ କରି ଡ଼ାକ୍ତରୀ ଚିକିତ୍ସା କରିବା । ସେତେବେଳେ କଟକରେ ଭଲ ଡାକ୍ତର ହେଉଛନ୍ତି ଆନନ୍ଦବାବୁ । ଆନନ୍ଦବାବୁ ରୋଗୀ ଦେଖି ଭୟର କାରଣ ନାହିଁ କହି ଔଷଧ ଲେଖିଦେଇ ଗଲେ । ଔଷଧ ଆସିଲା ଓ ପିଲାକୁ ଖୁଆଇଦିଆଗଲା । ସେଥିରେ ନିଦ ପାଇଁ ଔଷଧ ଥିବାରୁ ପିଲା ଶୋଇପଡ଼ିଲା ଓ ଝାଡ଼ା ବନ୍ଦ ହେଲା । ନିଦ ଭାଙ୍ଗିଲେ ଝାଡ଼ା ହେଉଥାଏ । ଦ୍ୱିତୀୟ ପାଳି ଔଷଧ ଖୁଆଇବାର ଦୁଇଘଣ୍ଟା ପରେ ସବୁ ଶେଷ ।

ଗୋପବାବୁ ସେହିଦିନ ସକାଳେ ବ୍ରହ୍ମପୁରରୁ ଫେରିଥାନ୍ତି । ନବବାବୁ କଟକରେ ନ ଥିଲେ । ଏ ଦୁଃସହ ଘଟଣା ମୋ ମନରେ ଗଭୀର ରେଖାପାତ କଲା । ମୋ ଆଈଙ୍କର ବୟସ ସେତେବେଳେ ପଞ୍ଚସ୍ତରୀ ବର୍ଷ । ସେ ଅସୁସ୍ଥ ଅବସ୍ଥାରେ ଥାନ୍ତି ବୋଲି ମୋ ମା' ସଦାସର୍ବଦା ତାଙ୍କ ପାଖେ ପାଖେ ରହି ତାଙ୍କର ସେବା ଯତ୍ନ କରୁଥାଏ । ଏ ଘଟଣା ମୋ ଆଈକୁ ଅତ୍ୟନ୍ତ ବାଧିଲା । ସେ କେବଳ କହିବାକୁ ଲାଗିଲା--"ମୁଁ ଆଉ କେତେଦିନ ବଞ୍ଚିବି ? ବଞ୍ଚିରହିଲେ ତ ଏଗୁଡ଼ାକ ଦେଖିବାକୁ ହେବ । ଭଗବାନ ମୋତେ ନେଇଯାଅ ।" ସେ ବୋଧହୁଏ ଆକୁଳ ପ୍ରାଣରେ ଭଗବାନଙ୍କୁ ଡାକିଲା-- ପାଞ୍ଚ ଦିନରେ ସେ ସଂସାର ତ୍ୟାଗକରି ସ୍ୱର୍ଗବାସୀ ହେଲା । ଆମେ ଆଈକୁ ମା' ଡାକୁ । ମା' ତ ଥିଲା ଆମର କେନ୍ଦ୍ର । ସେ ନରହି ଆମେ ରହିବୁ, ଏହା ଆମେ ଭାବିପାରୁ ନ ଥିଲୁ । ବୁଝିଲି ଯେତେବେଳେ ଯେଉଁ ଦୁଃଖ ପଡ଼ିବ, ମଣିଷ ତାକୁ ସହିପାରିବ । ଭଗବାନ ଗୋଟାଏ ଶକ୍ତି ମଣିଷ ଭିତରେ ଦେଇଛନ୍ତି—ସେ ଶକ୍ତି ବଳରେ ମଣିଷ ଦାରୁଣ ଦୁଃଖକୁ ସହେ, ତାକୁ ଭୁଲେ, ଖାଏ ପିଏ, ଆମୋଦ ଆହ୍ଲାଦ ମଧ୍ୟ କରେ । ମୁଁ ବି ସେଥିରୁ ବାହାର ହୋଇ ପାରିଲି ନାହିଁ—ବାହାରେ ଦେଖିବାକୁ । କିନ୍ତୁ ଭିତରର ଜ୍ୱାଳାକୁ ଲିଭିବାକୁ ଦେଲିନାହିଁ, ଅଧିକନ୍ତୁ ସଦାସର୍ବଦା ଜଳେଇରଖିଲି ।

ବାହା ହୋଇ ଶାଶୁଘରକୁ ଆସିବା ପରେ ମନେ ମନେ ସ୍ଥିର କରିଥିଲି ଏ ଘରକୁ ଓ ପରିବାରକୁ ମୋର କରିବା କର୍ତ୍ତବ୍ୟ । ଏ ଘରେ ଶାନ୍ତି ରଖିବା ପାଇଁ ଓ ପରିବାରଙ୍କ ମନରେ ଦୁଃଖ ନ ଦେବା ପାଇଁ ମୁଁ ସବୁ ଦୁଃଖ କଷ୍ଟ ନୀରବରେ ସହିବି ଏବଂ ବାହାଘରର ଆଠଦିନ ଭିତରେ ମୁଁ ମୋ ମନେ ମନେ ଏ ସଂକଳ୍ପ ନେଇଥିଲି । କାହାରିକୁ ନପଚାରି ନ ବିଚାରି ଏହା କରିଥିଲି । ତାର ଭଲ ଫଳ ଗୋପବାବୁ ଚାକିରୀ ଛାଡ଼ିବା ପରେ ମୁଁ ଦେଖିବାକୁ ପାଇଲି । ଗୋପବାବୁ ଚାକିରୀ ଛାଡିବା ଓ ନବବାବୁ ପଢ଼ା ଛାଡ଼ିବା ଯୋଗୁ ମୋତେ ଯେତେ କଟୂକ୍ତି, ବାକ୍ୟବାଣ ସହ୍ୟ କରିବାକୁ ପଡ଼ିଛି, ମୁଁ ଯଦି ତାହା ସେମାନଙ୍କ ଆଗରେ ପ୍ରକାଶ

କରିଥାନ୍ତି, ତେବେ ଅବସ୍ଥା ହୁଏତ ଭିନ୍ନପ୍ରକାର ହୋଇଥାନ୍ତା । ସେ ଦୁଇ ଭାଇଙ୍କୁ କେହି କିଛି ପଦେ କହନ୍ତି ନାହିଁ – ସବୁ ଛୋଡ଼ ମୋ ଉପରେ । ମୋ ସଂକଳ୍ପ ମୋତେ ରକ୍ଷା କଲା । ମୁଁ ତାହା ପ୍ରକାଶ କରିଥିଲେ ଘରେ ଅଶାନ୍ତି ସୃଷ୍ଟି ହୋଇଥାନ୍ତା । ମୁଁ ଯେ ସ୍ୱାମୀ ଓ ଶ୍ୱଶୁରଙ୍କ ସ୍ୱକର୍ମ ଓ ପଢ଼ା ଶୁଣିବା କଥାରେ ବାଧା ନ ଦେଲି, ସେଥିପାଇଁ ମୁଁ ନିର୍ବୁଦ୍ଧିଆ ଓ ଦୁର୍ଣ୍ଣୀ ବୋଲି କେତେକଙ୍କର ଧାରଣା ହେଲା ସତ, ମାତ୍ର କାମ ତ ନିର୍ଦ୍ଦ୍ୱନ୍ଦ୍ୱରେ ଚାଲିଲା । ମୋ ଭାଗ୍ୟରେ ଏ ଯେଉଁ ଦାରୁଣ ଦୁଃଖ ଘଟିଲା ତାହା ମୋ ଭିତରେ ବିଚାରକୁ ନୂଆ ରୂପ ଦେଲା ।

## ୧୭ । ନାମଦୀକ୍ଷା

ପିଲାଦିନରୁ ମୋ ମନରେ ଦେଶକାମର ଗୋଟିଏ ଅସ୍ପଷ୍ଟ ଛାୟା ରହିଥିଲା । ସେ ଛାୟା ପକାଇଥିଲା ବଡ଼ବାପା, ବାପା, ମା, ଶ୍ରୀ ଅରବିନ୍ଦ, ମହାରାଣୀ ଭିକ୍ଟୋରିଆ, ଆନିବେସାନ୍ତ, ବିବେକାନନ୍ଦଙ୍କ ଗୁଣ, କାର୍ଯ୍ୟ ଓ ଉପଦେଶ ଆଦି । ଦେଶକାମ ବିଷୟରେ ନିର୍ଦ୍ଦିଷ୍ଟ ଜ୍ଞାନ ନଥିଲେ ମଧ୍ୟ ଘର ସଂସାରରୁ ଅଲଗା ହେବାକୁ ହେବ ଓ ପିଲାଛୁଆ ଜଞ୍ଜାଳ ବାଧକ ହେବ ଏତିକି ଜ୍ଞାନ ଥିଲା । ମାତ୍ର ଏ ଦାରୁଣ ଦୁଃଖ ମୋ ମନକୁ ସ୍ଥିର ନିଶ୍ଚୟ କରିଦେଲା ଯେ ଏ କୋଳରେ ଆଉ ନୂଆ ସନ୍ତାନର ସ୍ଥାନ ନାହିଁ । ଦୁଃସହ ବେଦନାଭରା ପ୍ରାଣରେ ମନ ଏ କାମ କରିଗଲା । ଅସହଯୋଗ ଆନ୍ଦୋଳନ ସେତେବେଳକୁ ଦେଶକାମ ବିଷୟରେ ସ୍ପଷ୍ଟ ଧାରଣା ଆଣିଦେଲାଣି । ପିଲା ଦୁହେଁ ବଡ ହେଲା ବେଳକୁ ମୋ ମନ କପରି ବାହାରେ କାମ କରିବାକୁ ପ୍ରସ୍ତୁତ ହେବ ମୁଁ ସେହି ଚେଷ୍ଟାରେ ଥାଏ ।

ଚିକିତ୍ସକ ନାରାୟଣ ପଣ୍ଡିତ ମୋ ଉପରେ ବେଶି ଦୃଷ୍ଟି ଦେବାକୁ ଲାଗିଲେ । ମୁଁ ତାଙ୍କର ସବୁ କାମ ମନଧ୍ୟାନ ଦେଇ କରୁଥାଏ । ମା'ଙ୍କର କଡା ବ୍ୟବହାରରେ ଦୁଃଖିତ ହୋଇ ସେ କେତେ ବୁଝାନ୍ତି । ଚିକିତ୍ସା ଶାସ୍ତ୍ରର ସଂସ୍କୃତ ବହି ତାଙ୍କ ପାଖରେ ଥାଏ । ତାକୁ ପଢ଼ି ମୋତେ ବୁଝାନ୍ତି ଦେହର ବିଭିନ୍ନ ଅଂଶର ଚିହ୍ନ ଆଦି ବିଷୟରେ । ମୁଁ ସେତେବେଳକୁ ଜାଣି ପାରିଲିଣି ଯେ ତାଙ୍କ ଚିକିତ୍ସା ମତେ ଶିଖାଇବା ପାଇଁ ତାଙ୍କର ଇଚ୍ଛା ହେଲାଣି । ତାପରେ ମତେ ସଂସ୍କୃତ ପଢ଼ାଇବା ପାଇଁ ସେ ଚାହିଁଲେ । ସଂସ୍କୃତ ପାଠ ପ୍ରତି ମୋର ଶ୍ରଦ୍ଧା ଥାଏ । ସଂସ୍କୃତ ପଢ଼ାରେ ମୋର ଶୀଘ୍ର ଶୀଘ୍ର ଉନ୍ନତି ଦେଖି ପଣ୍ଡିତ ମହାଶୟ ଭାରି ଖୁସି ହେଲେ ଓ ଆହୁରି ବେଶୀ ବେଶୀ ପଢ଼ାଇଲେ । ମାତ୍ର ମୋ ମନ ମାନୁ ନ ଥାଏ । ଘରର ସମସ୍ତ କାମ ଓ ପଣ୍ଡିତ ମହାଶୟଙ୍କ କାମ ଠିକ୍ ଭାବରେ କରୁଥାଏ । ବାହାରେ କୌଣସି ପ୍ରକାର ବ୍ୟସ୍ତତା ପ୍ରକାଶ କରିବାକୁ ଦିଏନାହିଁ । ଗୋପବାବୁଙ୍କୁ ମଧ୍ୟ ତାଙ୍କ କାମ ପୂରା କରିବାପାଇଁ ସୁବିଧା ଦିଏ । ଘରର ଅଭାବ ଅସୁବିଧା ଆଦି କିଛି ତାଙ୍କୁ ଜାଣିବାକୁ ଦିଏନାହିଁ । ମୋ ମାନସିକ ସ୍ଥିତି କେବଳ ମା ଓ ଛିମ ଅପା ବୁଝିପାରି ସେମାନେ ମଧ୍ୟ ଭାରି ଚିନ୍ତିତ ଥାନ୍ତି ।

ସେତେବେଳେ ବଡ଼ ମାମୁ ରାମଦାସ ବାବାଜୀଙ୍କର ଭକ୍ତ ହୋଇଥାନ୍ତି । କଂଗ୍ରେସ କର୍ମୀ ରାମଦାସ ବାବାଜୀଙ୍କଠାରୁ ବୈଷ୍ଣବ ଭକ୍ତ ରାମଦାସ ଭିନ୍ନ ବ୍ୟକ୍ତି । ପ୍ରତିବର୍ଷ ଶ୍ରାବଣ ମାସ ଏକାଦଶୀ ଦିନ ମାମୁଘରେ ଅଷ୍ଟପ୍ରହରୀ ହୁଏ । ମା, ମାଉଁମାନେ ରାମଦାସ ବାବାଜୀଙ୍କର ବଡ଼ ଭକ୍ତ ହେଲେ ଓ ତାଙ୍କଠାରୁ ନାମ ନେଲେ । ରାମଦାସ ବାବାଜୀଙ୍କ ଦଳରେ ନନ୍ଦ ବାବାଜୀ ବୋଲି ଜଣେ ଥିଲେ । ସେ ମୋ ଶାଶୁଙ୍କର ସମ୍ପର୍କରେ ଭାଇ ଓ ମୋ ମା'ର ମଧ୍ୟ ସମ୍ପର୍କରେ ଭାଇ ଥିଲେ । ତାଙ୍କ ଭିତରେ ଗୋଟାଏ ବିଶେଷ ଗୁଣ ଥିଲା ଯେ ସେ ଭାରି ସୁନ୍ଦର ବୁଝାଇ କହିପାରନ୍ତି । ତାଙ୍କୁ ଆମେମାନେ ଖୁବ୍ ଶ୍ରଦ୍ଧା ଭକ୍ତି କରୁଥିଲୁ । ସେ ମୋ ମନର ଦୁଃଖ ନିବାରଣ ପାଇଁ ବହୁତ ପ୍ରକାର କଥା କହି ଭୁଲାଇବାକୁ ଚେଷ୍ଟାକଲେ । ସେ ମୋ ମନରେ ଧାରଣା ଦେଲେ ଓ ଟିମ ଅପା ତାକୁ ଆହୁରି ବଢ଼ାଇ ମୋତେ ପ୍ରବର୍ତ୍ତାଇଲା ଯେ ରାମଦାସ ବାବାଜୀଙ୍କଠାରୁ ନାମ ନେଲେ ମନରେ ଶାନ୍ତି ଆସିବ ।

ଏଣେ ମାମୁଘରେ ବଡ଼ମାନେ ରାମଦାସ ବାବାଜୀଙ୍କର ଭକ୍ତ, ତେଣେ ସାନ ଅର୍ଥାତ୍ ଭାଇମାନେ ରାମଦାସ ବାବାଜୀଙ୍କୁ ନିନ୍ଦା କରିବାରେ ଲାଗିଲେ । ଚୈତନ୍ୟ ମହାପ୍ରଭୁ ଯେ ଓଡ଼ିଶା ଲୋକଙ୍କୁ ମାଇଚିଆ କରିଦେଲେ, ତାଙ୍କ ଯୋଗୁଁ ଓଡ଼ିଶାବାସୀ ଏପରି ନିରୀହ, ଅଳସୁଆ ସ୍ୱଭାବର ହେଲେ, ତାଙ୍କ ଭିତରେ ତେଜସ୍ୱିତା ରହିଲା ନାହିଁ, ଓଡ଼ିଶା ଲୋକଙ୍କର ଯେତେ ଦୋଷ ତାହା ଚୈତନ୍ୟ ମହାପ୍ରଭୁଙ୍କ ଯୋଗୁ ହୋଇଛି, ଏହି ମତ ସେମାନଙ୍କର ଥିଲା । ତେଣୁ ରାମଦାସ ବାବାଜୀ ଦଳଙ୍କ ଉପରେ ଭାରି ରାଗ ଓ ତାଙ୍କର ନିନ୍ଦା ଚାଲିଥାଏ । ନନ୍ଦ ବାବାଜୀ ଓ ଟିମଅପା ମୋତେ ନାମ ନେବାପାଇଁ ପ୍ରବର୍ତ୍ତାଉ ଥାଆନ୍ତି । ଟିମଅପା ନାମ ନେଇସାରିଥାଏ । ସେଥିପାଇଁ ଭାଇମାନେ ତାକୁ ଭାରି ଥଟ୍ଟାକରୁଥାନ୍ତି ଓ ଚିଡ଼ାଉଥାନ୍ତି । ମୋର ମାଉସୀପୁଅ ଭାଇ ହରିଭାଇ ପିଲାଦିନୁ ମାତୃହୀନ ହୋଇ ମାମୁଘରେ ବଢ଼ିଥିଲେ । ଅପସ୍ମାର ରୋଗ ଯୋଗୁ ପଢ଼ାଶୁଣା ବେଶୀ କରିପାରିଲେ ନାହିଁ । ଅଷ୍ଟପ୍ରହରୀ ଇତ୍ୟାଦି କାମରେ ମାମୁ ପୁଅ ପୁତୁରାଙ୍କ ସହଯୋଗ ପାଇଲେ ନାହିଁ । ହରିଭାଇ ତାଙ୍କର ଦକ୍ଷିଣହସ୍ତ ଭାବରେ କାମକଲେ ।

ଗୋପବାବୁ ଚୈତନ୍ୟ ଧର୍ମ ତଥା ରାମଦାସ ବାବାଜୀଙ୍କ ଉପରେ ଭାରି ଚିଡ଼ା । କଥାକଥାକେ ତାଙ୍କର ସମାଲୋଚନା ବା ନିନ୍ଦାକରନ୍ତି । ଏସବୁ ସତ୍ତ୍ୱେ ନନ୍ଦବାବାଜୀଙ୍କର ବୁଝାଇବାର ଢଙ୍ଗ ମୋତେ ନାମ ନେବା ଆଡ଼କୁ ଆକୃଷ୍ଟକଲା । ମୁଁ ନାମନେଲେ କେଜାଣି ଏ ମନର ଜ୍ୱାଳା କମିବକି ? ଏ ଦ୍ୱିଧା ଭିତରେ ଥାଇ ମୁଁ ଶେଷରେ ଠାଣି ହୋଇଗଲି ନାମ ନେବାଆଡ଼କୁ । ବାବାଜୀ ମୋତେ ନାମଦେଲେ । ଶାଶୁ ଏ ବିଷୟରେ କିଛି ବାଧା କଲେନାହିଁ । କହିଲେ —"ତା ମନରେ ଯେଉଁଥିରେ ଶାନ୍ତି ହେବ, ସେ ତାହା କରୁ ।"

ମୁଁ ନାମ ନେବା ପରେ ଗୋପବାବୁ ଓ ଘରମାନଙ୍କର ଚୈତନ୍ୟଧର୍ମ ଓ ରାମଦାସ ବାବାଜୀଙ୍କର ନିନ୍ଦା ଓ ସମାଲୋଚନା ବନ୍ଦହୋଇଗଲା । କାରଣ କିଛି ଜାଣିପାରିଲିନାହିଁ, ଜାଣିବାପାଇଁ ଚେଷ୍ଟା ମଧ୍ୟ କଲିନାହିଁ । ନାମ ନେଲାପରେ ପୁରୋହିତର କାର୍ଯ୍ୟ ହରିଭାଇ କରନ୍ତି । ସେ ମୋତେ ମାଳ ଧରିବା, ତୁଳସୀ ପୂଜା ଓ ମନ୍ତ୍ର ଆଦି ଶିଖାଇଲେ, ତିଳକ ଦେଲେ, ମାତ୍ର ମୁଁ ସେସବୁ କିଛି ଗ୍ରହଣ କଲିନାହିଁ । ମୋ ଚିନ୍ତାଧାରା ଅନ୍ୟପ୍ରକାର ଥିଲା । ମୁଁ ଧର୍ମଗ୍ରନ୍ଥ ପଢ଼ି ନ ଥିଲେ ମଧ୍ୟ ଧର୍ମ ବିଷୟରେ ମୋର ବିଚାର କିଛି କିଛି ଥାଏ ଏବଂ ମୁଁ ତାକୁ ମାନି ଚଲେ ।

ମୋ ଶ୍ୱଶୁର ଭଲ ଭଲ ଜିନିଷ ଖାଇବାକୁ ଗୃହ୍ନୁଁ ଥିଲେ ଓ ପଇସାର ଅଭାବ ନଥିବାରୁ ଖୁବ୍ ଭଲଭଲ ଜିନିଷ ଖାଉଥିଲେ । ତା ମଧ୍ୟରେ ମାଛ ଥିଲା ପ୍ରଧାନ । ବେଙ୍ଗ ବହାଘର ପରେ ଗୋପବାବୁ ମାଛ ଖାଇବା ଛାଡ଼ିଦେଲେ । ନବବାବୁ ମଧ୍ୟ ମାଛ ଖାଇଲେନାହିଁ । ପିଲାଦିନୁହେଁ ଶ୍ରେଷ୍ଠ । ତେଣୁ ଘରେ ମାଛ ରନ୍ଧା ବନ୍ଦହେଲା । ମୁଁ କିନ୍ତୁ ସେତେବେଳେ ମାଛ ଛାଡ଼ି ନ ଥିଲି । ଗୋଟିଏ ଶୁଣା କଥାରେ ମୋ ମନରେ ଭାରି ଭୟଥିଲା ଯେ କେହି କେହି ବହୁତ ଦିନରୁ ମାଛ ଛାଡ଼ିଦେଲେ ମଧ୍ୟ ମୃତ୍ୟୁ ପୂର୍ବରୁ ମାଛ ଖାଇବାକୁ ଇଚ୍ଛା କରନ୍ତି ଓ ଖାଆନ୍ତି । ସେ ଭୟ ମୋ ମନରେ କାମ କଲା । ଘରେ ମାଛ ରନ୍ଧା ହେଉ ନ ଥାଏ । ମୁଁ କିନ୍ତୁ ମାଛ ଛାଡ଼ି ନ ଥାଏ । ତିନି ବର୍ଷ ପରେ ଯେତେବେଳେ ପୁତ୍ରଶୋକର ଦାରୁଣ ଦୁଃଖ ପାଇଲି ସେତେବେଳେ ମୋ ମନକୁ ଏକଥା ଆସିଲା ଯେ ମାଛ ଗୋଟିଏ ସାମାନ୍ୟ ଜୀବ ହେଲେ ମଧ୍ୟ ନିଜର ରସନା ତୃପ୍ତି ପାଇଁ କାହିଁକି ତାକୁ ମାରିବାରେ ମୁଁ ଭାଗୀଦାର ହେବି ? ଗୋପବାବୁ ଓ ନବବାବୁ ଯେତେବେଳେ ମାଛ ଛାଡ଼ିଲେ, ତାଙ୍କୁ ଅନେକ ଲୋକ ନାନାଭାବରେ ବୁଝାଇଲେ ଯେ ମାଛ ନଖାଇଲେ ସ୍ୱାସ୍ଥ୍ୟପାଇଁ କଣକଣ କ୍ଷତିହେବ । ଏମାନେ ସେମାନଙ୍କ ଯୁକ୍ତିରେ ମାଛ ନଖାଇବା ସପକ୍ଷରେ ବୁଝାଇଲେ । ସେସବୁ ଶୁଣି ମାଛ ନଖାଇବା ଆଡ଼କୁ ମୋ ମନ ଯାଇଥିଲେ ମଧ୍ୟ ମରିବା ବେଳେ ଭୟରେ ମୁଁ ମାଛ ଛାଡ଼ୁନଥାଏ ।

ରାମଦାସ ବାବାଜୀଙ୍କଠାରୁ ନାମ ନେବା ପରେ ମାଛ ଛାଡ଼ିବାପାଇଁ ମୋ ମନ ପ୍ରସ୍ତୁତ ହେଲା, ମରିବା ବେଳର ଭୟ ଚାଲିଗଲା । ମୃତ୍ୟୁ, ଇହକାଳ, ପରକାଳ କଥା ଭାବିଲି । ରାମକୃଷ୍ଣ ପରମହଂସଙ୍କ ବହି, ଅମିୟ ନିମାଇଁ ଚରିତ ଆଦି ବହି ପଢ଼ିଲି । ମା' ଓ ଅପା (ମାହେଶ୍ୱରୀ) ସାଙ୍ଗରେ ଚର୍ଚ୍ଚା କରେ । ପଣ୍ଡିତ ମହାଶୟ ସଂସ୍କୃତ ପଢ଼ାଉଥାନ୍ତି । ମୋ ମାନସିକ ସ୍ଥିତି ସେତେବେଳେ ଅତି ଶୋଚନୀୟ । ମନ ବଡ଼ ଅସ୍ଥିର । ଏକାନ୍ତରେ ବସି କାନ୍ଦିବା ହିଁ ମୋର ସେତେବେଳେ ପ୍ରିୟ କାର୍ଯ୍ୟ ଏବଂ ମୁଁ ସୁଯୋଗ ବାହାରକରି ଲୁଚେଇକରି ତାହା କରୁଥିଲି । ତାହା କରିବା ପାଇଁ ଯେପରି ମୋତେ ସମୟ ନ ମିଳିବ ସେଥିପାଇଁ କାମରେ ଓ ବହି ପଢ଼ାରେ ମୋତେ ଛାଡ଼ିଦେଇଥିଲେ । ମନର ଦୁଃଖ କାହାରିକୁ ଜାଣିବାକୁ ନ ଦେବା ଥିଲା ମୋର ସ୍ୱଭାବ । ତେଣୁ ମୁଁ ଏପରି ଭାବ ଦେଖାଉଥିଲି ଯେ ମୋ ମନ ସ୍ୱାଭାବିକ

ଅବସ୍ଥାରେ ଅଛୁ । ମୁଁ ଯେତେ ଚେଷ୍ଟା କରୁଥିଲେ ବି ମା' ହେଲକା ଜାଣିପାରି ମୋ ମନର ଶାନ୍ତି ପାଇଁ ନାନା ଚେଷ୍ଟା କରୁଥିଲେ । ମା' ଦୁଇଁ ଦେବତାଙ୍କଠାରେ ବହୁତ ମାନସିକ କରନ୍ତି । ଗୋପବାବୁଙ୍କ ଜନ୍ମ ବୁଧବାରରେ ବୋଲି ପ୍ରତି ବୁଧବାରରେ ଭାଗବତ ଗାଦି ପାଖରେ କିଛି ମିଠେଇ ଭୋଗକରି ବାଳମାଳା କରାଯାଏ । କେବଳ ଅଳକାଶ୍ରମ ଛଡ଼ା ଘର ଗୁଡ଼ି ଗୋପବାବୁ ବାହାରେ କୁଆଡ଼େ ଗଲେ ସେ ଫେରିବା ଦିନ କାଳୀଙ୍କ ପାଖରେ ଭୋଗ ହୋଇ ପିଲାଙ୍କୁ ବଣ୍ଟାହେବ । ମୋ ପିଲାଙ୍କର ବା ତାଙ୍କ ପୁଅମାନଙ୍କର ସାମାନ୍ୟ ଦେହ ଖରାପ ହେଲେ ଦୁଇଁ ଦେବତାଙ୍କ ପାଖରେ ମାନସିକ ହେବ— କଳାଶାଢ଼ୀ, ପାଦ ବା ଛତା ଆଦି କିଛି । ମା' ଓଷାବ୍ରତ ଆଡ଼କୁ ମୋ ମନ ନେବାପାଇଁ ଚେଷ୍ଟାକଲେ । ପଣ୍ଡିତ ମହାଶୟ ସଂସ୍କୃତ ପଢ଼ାଇବାବେଳେ ଶରୀରତତ୍ତ୍ୱ ବିଷୟରେ ସଂସ୍କୃତ ବହି ଅନୁସାରେ ଦେହରେ କେଉଁ ଅଂଶରେ କେଉଁ ଚକ୍ର ଅଛି, ସେ ସବୁ ବୁଝାନ୍ତି । ତାହାଛଡ଼ା ଯେଉଁ ରୂପ ମୋର ପ୍ରିୟ ସେହି ରୂପକୁ ଧ୍ୟାନ କରିବା ପାଇଁ ଏବଂ ଧ୍ୟାନର ସମୟ ବଢ଼ାଇବା ପାଇଁ କହନ୍ତି । କାହାରି କଥା ଅମାନ୍ୟ କରିବା ତ ମୋର ସ୍ୱଭାବ ନୁହେଁ । ଅପା (ମୋ ମାଉସୀ) ରାମଦାସ ବାବାଜୀଙ୍କ ଗୁରୁ ରାଧାରମଣ ଦାସଙ୍କଠାରୁ ମନ୍ତ୍ର ଗ୍ରହଣ କରିଥିଲି । ଗୃହସଂସାର ଭିତରେ ଥାଇ ସେ ଯେ ଜଣେ ଭକ୍ତ ପାଲଟି ଯାଇଥିଲି ତ ହା ତାକୁ ଦେଖିଲେ ଜଣାପଡ଼େ । ସେ ବହୁତ ସମୟ ମୋ ପାଇଁ ଦିଏ । ମା'ତ ମୋତେ ଅପା ଘରକୁ ବା ମାମୁଁ ଘରକୁ ଯିବାକୁ ଦିଅନ୍ତି ନାହିଁ । ଅପା ସନ୍ଧ୍ୟାବେଳେ ଆସି କଥାରେ କଥାରେ ମୋତେ ବହୁତ ଭକ୍ତି ତଥ୍ୟ ଶୁଣାଏ । ଏକ ପ୍ରକାର ତାହାହିଁ ମୋତେ ରାମଦାସ ବାବାଜୀଙ୍କଠାରୁ ମନ୍ତ୍ର ନେବା କାମ କରାଇଲି । ମାଛ ମାଂସ ଖାଇବା ପ୍ରତି ବିତୃଷ୍ଣା ଆସିଲା, ମୁଁ ତାହା ଛାଡ଼ିଦେଲି । ଏ ସବୁ ଭିତରେ ମୁଁ ସମୟ ପାଇବା ମାତ୍ରେ ସୂତା କାଟୁଥିଲି ।

ଇତିମଧ୍ୟରେ ମୋର ମଝିଆଁ ନଣନ୍ଦେଇ ଶ୍ରୀ ରାଧାନାଥ ଦାସଙ୍କ ପାଟିରେ କ୍ୟାନ୍‌ସର୍ ହୋଇଥିବାର ଜଣାପଡ଼ିଲି । ବାଲିକୁଦାର ପରିସ୍ଥିତି ସେତେବେଳେ ଆଜିକାଲିକା ଭଳି ନ ନ ଥିଲି । ଏଣୁ ତେଣୁ ଚିକିତ୍ସା କିଛିଦିନ କରିବା ପରେ ରାଧାବାବୁ, ଗୁଲୁଅପା ଓ ତାଙ୍କ ଶାଶୁ କଟକ ଆସିଲେ । ଆମ ପାଖରେ ରହିଲେ ଡାକ୍ତର ଦେଖାଇବାକୁ ସୁବିଧା ହେବ ବୋଲି ରାଧାବାବୁ ଓ ତାଙ୍କ ମା' ଆମଘର 'ଦଧିବାବୁ କୋଠା'ରେ ରହିଲେ । ଗୁଲୁଅପା ତାଙ୍କ କୋଳ ଝିଅ ଅପିକୁ ନେଇ ଆମ ସାଙ୍ଗରେ ରହିଲେ । ରାଧାବାବୁ ପାଟିରେ ଘା' ଯୋଗୁ ଖାଇପାରୁ ନ ଥିଲେ ମଧ୍ୟ ନାନା ପ୍ରକାର ଜିନିଷ ଖାଇବାକୁ ମନକରୁଥିଲେ । ମା' ପୁଅ ଦୁହେଁ ବିଭିନ୍ନ ପ୍ରକାର ତରକାରି ଓ ପିଠା ଆଦି କଲିଖିଆ ବରାଦ କରୁଥିଲେ । ଏ ସବୁରେ ମା' ଭାରି ବିରକ୍ତ ହେଉଥିଲେ । କ୍ୟାନ୍‌ସର ରୋଗ ଯେ ଭଲ ହେବାର ନୁହେଁ ସେ କଥା ମୁଁ ଜାଣିପାରିଥିଲି । ତେଣୁ ରାଧାବାବୁ ଯାହା ଖାଇବା ପାଇଁ ଇଚ୍ଛା କରୁଥିଲେ ତାଙ୍କ ପାଟିରେ ଯେପରି ଖାଇହେବ, ତାଙ୍କ ବରାଦ ଜିନିଷ ସେହିପରି ତିଆରି କରି ଦେଉଥିଲି । ମା ଜାଣିଲେ ବିରକ୍ତ ହେବେ ବୋଲି ମୁଁ ଯେତେ ପାରେ ଲୁଚେଇ କରି

ଡଆର କଣ ଦେଉଥିଲି । ଏଣେ ଗୁଲ ଅପାଙ୍କର ଅଳସୁଆ ସ୍ୱଭାବ ଓ ପିଲଙ୍କୁ ଯତ୍ନ ନ କରିବା ସ୍ୱଭାବକୁ ମା ହାଡ଼େ ହାଡ଼େ ଚିହ୍ନନ୍ତି । ଗୋପବନ୍ଧୁଙ୍କର ଚିକିତ୍ସା ପାଇଁ କଲିକତା ଯିବା ସ୍ଥିର ହେଲା । ଗୋପବାବୁ, ତାଙ୍କ ମା' ଓ ଗୁଲଅପା କଲିକତା ଗଲେ । ଗୁଲଅପାଙ୍କର ମଝିଆଣୀ ଝିଅ ଦୁହେଁ ଉମା ଓ ଚିନ୍ମୟୀ ଘରୁ ଆସି କଟକରେ ଆମ ପାଖରେ ରହିଲେ । ଅନ୍ୟ ସବୁ ପିଲା ଘରେ ରହିଲେ, ସେହି ବର୍ଷ ଡିସେମ୍ବର ମାସରେ ଗୟାରେ କଂଗ୍ରେସର ବାର୍ଷିକ ଅଧିବେଶନ ହେଲା । ଆମେ ଅର୍ଥାତ୍ ପିଲା ଦୁହେଁ ଓ ମା'ଙ୍କ ସହ ମୁଁ କଂଗ୍ରେସ ଦେଖିବା ପାଇଁ ଗୟା ଯିବା ସ୍ଥିରହେଲା ।

## ଗୟା କଂଗ୍ରେସ

କଥା ହେଲା, ଯିବାବେଳେ କଂଗ୍ରେସ ଯାତ୍ରୀଙ୍କ ସହିତ ଏକାଠି ଯିବା—ଫେରିବାବେଳେ ଗୋପବାବୁଙ୍କୁ କଲିକତାରେ ଦେଖି କଟକ ଫେରିବା । ତଦନୁସାରେ ସମସ୍ତେ କଟକରୁ ଗୟା ଗଲୁ । ରାମଦାସ ବାବାଜୀଙ୍କ ଯୋଗୁ ଯାତ୍ରାଟା ଭାରି ସରସ ବୋଧହେଉଥାଏ । ସମସ୍ତଙ୍କୁ ମଜେଇ କରି ରଖିଥାନ୍ତି । ବାଟରୁ ତ ଜଣାପଡୁଥିଲା, ଗୟାରେ ପହଞ୍ଚି ଦେଖିଲୁ ଭାରି କାଠିଆ ଶୀତ । ତଳେଇ ଘର । ରହିବାକୁ ତ ହେବ, ରହିଲୁ । ଠିକ୍ କଂଗ୍ରେସ ଅଧିବେଶନ ଆରମ୍ଭ ହେବ, ଆମେ ସମ୍ମିଳନୀ ମଣ୍ଡପକୁ ଯିବାକୁ ବାହାରିବା ବେଳକୁ ତାର ଆସି ପହଞ୍ଚିଲା ଯେ ଗୋପବାବୁଙ୍କର ପରଲୋକ ହୋଇଯାଇଛି । ମା'ଙ୍କ ଅବସ୍ଥା ଯାହା ହେବାକଥା ତାହାହିଁ ହେଲା । ମୁଁ କହିଲି, ସମସ୍ତେ ଅଧିବେଶନକୁ ଯାଅ, ମୁଁ ମା'ଙ୍କ ପାଖରେ ରହିବି । ରାମଦାସ ବାବାଜୀ ପ୍ରଭୃତି ଆମ ଦଳର ଲୋକମାନେ ତଟସ୍ଥ ହୋଇଗଲେ । ଏ ଅବସ୍ଥାରେ ତାଙ୍କୁ କଣ କରିବାକୁ ହେବ, ତାହା ସେମାନେ ବୁଝି ପାରୁ ନ ଥାନ୍ତି । ଅଧିବେଶନକୁ ଯିବାକୁ ସମସ୍ତଙ୍କ ମନ ଉତ୍ସୁକ । ମାତ୍ର ନିସ୍ପନ୍ଦ ଭାବରେ ସମସ୍ତେ ଠିଆ ହୋଇଥାନ୍ତି । କାହାରି ମୁହଁରେ କଥା ନାହିଁ । ହଠାତ୍ ଗୋପବାବୁ ରାଗିଯାଇ କହିଲେ—"ତମେମାନେ ଠିଆହୋଇ ରହିଛ କାହିଁକି ? ଅଧିବେଶନ ତ ଆରମ୍ଭ ହୋଇଯିବଣି । ତମେମାନେ ସମସ୍ତେ ଶୀଘ୍ର ଚାଲିଯାଅ । ମୁଁ ଯିବି ନାହିଁ" । ଏହା କହି ବସିପଡ଼ିଲେ । ଏତକ କଥା ଶୁଣି ମା' ମୁହୂର୍ତ୍ତକ ଭିତରେ କାନ୍ଦିବା ବନ୍ଦକରି ମତେ କହିଲେ, "ଚାଲ ସଭାକୁ ଯିବା ।" ଶୀତ ଯୋଗୁଁ ପିଲା ତ କୁର୍ତ୍ତା ପିନ୍ଧିଥାନ୍ତି, ମା' ଆଗ ବାହାରିଯିବାକୁ ଲାଗିଲେ । ମୁଁ ତାଙ୍କ ପଛେ ପଛେ ଗଲି । ଗୋପବାବୁ ଗଲେ । ଅଧିବେଶନକୁ ଗଲି । ସେଠାରେ ବସିଲି, ହିନ୍ଦୀ ଭାଷାସବୁ ଶୁଣି ବୁଝିଲି । ହିନ୍ଦୀ ଓ ବଙ୍ଗଳା ଭାଷା ଜଣାଥିବାରୁ କାହାରି କାହାରି ସଙ୍ଗରେ, ବିଶେଷ କରି ଦେଶବନ୍ଧୁ ଚିତ୍ତରଞ୍ଜନ ଦାସଙ୍କ ସ୍ତ୍ରୀ ବାସନ୍ତୀ ଦେବୀଙ୍କ ସଙ୍ଗେ, ସୌଭାଗ୍ୟକ୍ରମେ ଭାବ ହେଲା । କଥାବାର୍ତ୍ତା ହେଲା । ତାଙ୍କ ଦ୍ୱାରାରୁ ମଣ୍ଡପ ଉପରେ ବସିଥିବା ଓ ଭାଷଣ ଦେଉଥିବା ବ୍ୟକ୍ତିମାନଙ୍କୁ ଚିହ୍ନିଲି । ତା' ପୂର୍ବରୁ ଯେଉଁମାନଙ୍କୁ ଦେଖି ନ ଥିଲି ସେଠି ଦେଖିଲି; ମାତ୍ର ମୋ ମନ ଦୁଃଖରେ ବୁଡ଼ିଯାଇଥାଏ । ମୁଁ କେବଳ ଭାବୁଥାଏ ମା' ଏଠାକୁ ନ ଆସି ସେ

କ୍ୟାମ୍ପରେ ରହି ମନଇଚ୍ଛା କାନ୍ଦୁଥିଲେ ତାଙ୍କ ପାଇଁ ଭଲ ହୋଇଥାନ୍ତା । ଅଧିବେଶନରେ ହେଉଥିବା ଭାଷଣ ସେ ବୁଝିପାରୁ ନ ଥାନ୍ତି ଏବଂ ଜାଣିବା ବୁଝିବା ପାଇଁ ତାଙ୍କର ମନ ମଧ୍ୟ ନ ଥାଏ । ଜବରଦସ୍ତି କାନ୍ଦଣାକୁ ଚୁପି ବନ୍ଦକରିଦେଲେ ମଣିଷର ମାନସିକ ଅବସ୍ଥା କ'ଣ ହୁଏ ତାହା ମୁଁ ସେହିଦିନ ଭଲ ଭାବରେ ଶାଶୁଙ୍କର ଅବସ୍ଥା ଦେଖି ଜାଣିଲି । କାନ୍ଦିବା ବନ୍ଦ କରିବାପାଇଁ କହିବାକୁ ମୋର ସେହି ଦିନରୁ ଇଚ୍ଛା ହୁଏ ନାହିଁ । ଗୟା କଂଗ୍ରେସକୁ କସ୍ତୁରବା ଯାଇଥିଲେ । ସେହି ପ୍ରବଳ ଶୀତ ଭିତରେ ବୁଲି ବୁଲି କ୍ୟାମ୍ପ ଦେଖୁଥାନ୍ତି —ଯେଉଁ ଧାଡ଼ିକୁ ଯାଆନ୍ତି ସେ ଧାଡ଼ିର ସ୍ତ୍ରୀଲୋକମାନେ ଆସି ତାଙ୍କୁ ଘେରିଯାଆନ୍ତି । କଂଗ୍ରେସ କାମକରିବା, ଖଦୀ ପିନ୍ଧିବା ବିଷୟରେ ଦି' ଚାରିପଦ କହି ସେ ଅନ୍ୟଆଡ଼େ ଯାଆନ୍ତି ।

ବାପା କେତେବର୍ଷ ଗୟାରେ ଡେପୁଟି ମ୍ୟାଜିଷ୍ଟ୍ରେଟ୍ ଥିଲେ । ସେଥି ପାଇଁ ଗୟାପ୍ରତି ମୋ ମନରେ ମାୟା ଥାଏ । ଇଚ୍ଛା ହେଉଥାଏ ଗୟା ସହର ବୁଲି ଆମେ ଯେଉଁ ଘରେ ଥିଲୁ ଓ ଯେଉଁମାନଙ୍କ ଘରକୁ ବୁଲିଯାଉଥିଲୁ ସେମାନଙ୍କ ଘରକୁ ଯାଆନ୍ତି, ଫଲ୍‌ଗୁ ନଦୀ ବାଲିରେ ଗାତ ଖୋଳନ୍ତି ଇତ୍ୟାଦି । ପ୍ରବଳ ଶୀତ ଯୋଗୁ ପିଲାଙ୍କ ଦେହ ସୁସ୍ଥ ରହିଲା ନାହିଁ । କଂଗ୍ରେସ ଅଧିବେଶନ ସରିବା ସଙ୍ଗେ ସଙ୍ଗେ କଟକ ଫେରିବୁ ସେହି ଚିନ୍ତାରେ ରହିଲି । ଗୟାରେ ଶ୍ୱଶୁରଙ୍କର ଶ୍ରାଦ୍ଧ ଦିଆଗଲା । ଯିବାବେଳକୁ ଯେପରି ଦଳବାନ୍ଧି ଯାଇଥିଲୁ, ଫେରିବା ବେଳେ ସେପରି ହେଲାନାହିଁ । ବାବାଜୀ ପ୍ରଭୃତିଙ୍କ ଯୋଗୁଁ ଥାର୍ଡକ୍ଲାସ ଯାତ୍ରାଟା ସେତେ ବାଧି ନ ଥିଲା, ଫେରିବା ବେଳେ ବିଶେଷଭାବରେ ଅନୁଭବ କରିଲି । ରେଲରେ ଥାର୍ଡ଼କ୍ଲାସ ଯାତ୍ରା । ପିଲାଦିନେ ତ ବରାବର ଫାଷ୍ଟ କ୍ଲାସରେ ଯିବା ଆସିବା କରୁଥିଲୁ । ବାହାହେବା ପରେ ଗୋପବାବୁ ଗୃହକର୍ତ୍ତା ଥିବା ପର୍ଯ୍ୟନ୍ତ ମଧ୍ୟ ଅଲ୍‌ଭିବାଟ, ଦୂରବାଟ, ଫାଷ୍ଟ କ୍ଲାସ୍‌ରେ ଯା' ଆସ କରୁଥିଲୁ । କଟକରୁ ଗୟା ଲମ୍ବା ବାଟ । ଥାର୍ଡକ୍ଲାସରେ ଯେତେବେଳେ କଟକ ଷ୍ଟେସନରେ ଚଢ଼ିଲି ମୁଁ ତ ହତଭମ୍ବ ହୋଇଗଲି । ତା' ପୂର୍ବରୁ କେବେ ଥାର୍ଡ କ୍ଲାସରେ ଚଢ଼ି ନ ଥିଲି । ମୋ ପିଲାଦିନେ ଯୁଆଡ଼େ ଯାଉଥିଲୁ ଆମେ ବାପ, ମା, ଭାଇ ଭଉଣୀ ଫାଷ୍ଟକ୍ଲାସରେ ଯାଉଥିଲୁ । ଆମ ଚାକରାଣୀଟି ସାଙ୍ଗରେ ଯାଉଥିଲା । ଚାକର ପୂଜାରୀ ଥାର୍ଡ଼କ୍ଲାସରେ ଯାଉଥିଲେ । ସେତେବେଳେ ଥାର୍ଡକ୍ଲାସରେ ପାଇଖାନା ନ ଥିଲା କି ମୁହଁ ଧୋଇବା ପାଣି ନ ଥିଲା । ରେଲ୍‌ୱେ ବାଲାଙ୍କର ଥାର୍ଡ଼କ୍ଲାସ ବାଲାଙ୍କ ପ୍ରତି ଘୋର ଅବିଚାର । ଥାର୍ଡ଼କ୍ଲାସରୁ ରେଲ୍‌ୱେ ବାଲା ଅଧିକ ଟଙ୍କା ପାଆନ୍ତି, ଅଥଚ ତାଙ୍କ ପ୍ରତି ଅବହେଳା କରୁଛନ୍ତି—ଏହିପରି କେତେ ଯୁକ୍ତି ଦେଖାଇ ମା' ଓ ବାପା କଥାବାର୍ତ୍ତା ହୁଅନ୍ତି — ଆମେ ଶୁଣୁ । ମାତ୍ର ସେଥିପାଇଁ କୌଣସି କାର୍ଯ୍ୟ ସେମାନେ କରି ନ ଥିଲେ । ଥାର୍ଡ଼କ୍ଲାସରେ ପାଇଖାନା ଓ ପାଣି ଦେବାପାଇଁ ବଡ଼ବାପା ମଧୁବାବୁ ଉଦ୍ୟମ କରିଥିଲେ । କେବଳ ଲେଖାଲେଖିରେ ନୁହେଁ, ସେ ଥାର୍ଡ଼କ୍ଲାସରେ ଯିବା ଆସିବା କରିଲେ, ବିଶେଷକରି ତାଙ୍କୁ ଝାଡ଼ାହେଉଥିବାବେଳେ ସେ ଜାଣିଶୁଣି ଅସୁବିଧା ଭୋଗି ତାହାର ଉପରେ ରେଲ୍‌ୱେ କର୍ତ୍ତୃପକ୍ଷଙ୍କୁ ଲେଖାଲେଖିକଲେ । କାର୍ଯ୍ୟ ସିଦ୍ଧି ସହଜରେ

ହେବ ବୋଲି ଥାର୍ଡ଼ କ୍ଲାସରେ ଯାତ୍ରାକଲେ । ତାଙ୍କ ଉଦ୍ୟମ ଥାର୍ଡ଼ କ୍ଲାସରେ ପାଇଖାନା ହେବାରେ ସାହାଯ୍ୟ କଲା । ସେତେବେଳେ ସ୍ଲିପର୍ ବ୍ୟବସ୍ଥା ନ ଥିଲା । ଆମେ ଅବଶ୍ୟ କଂଗ୍ରେସ ଯାତ୍ରୀମାନେ ଗୋଟିଏ ଡ଼ବାରେ ଥିଲୁ, ତଥାପି ଥାର୍ଡ କ୍ଲାସ ଡ଼ବାରେ ଯିବାକୁ ଅସ୍ୱସ୍ତି ବୋଧ କରୁଥାଏ । ସେତେବେଳେ ଥାର୍ଡ଼କ୍ଲାସରେ ପାଇଖାନା ହୋଇଥିଲେ ମଧ୍ୟ ମୁହଁ ଧୋଇବା ପାଇଁ ପାଣି ବ୍ୟବସ୍ଥା ନ ଥିଲା । ମା'ଙ୍କୁ ଓ ପିଲାଙ୍କୁ ନେଇ ଭାରି ଅସୁବିଧା ଲାଗୁଥାଏ । ଲମ୍ବାବାଟ, ଖାଇବେ, ବାସନ ଧୁଆ ହେବ ଇତ୍ୟାଦି କାମ ମତେ ଭାରି ଅଡ଼ୁଆ ଲାଗୁଥାଏ ।

ଡିସେମ୍ବର ମାସର ଶୀତ । ଓଡ଼ିଶାଠାରୁ ବିହାରରେ ଶୀତ ବେଶି । ପିଲା ଦୁହେଁ ପ୍ରଚଣ୍ଡ ଶୀତ ସହି ପାରିଲେ ନାହିଁ, ଅସୁସ୍ଥ ହେଲେ । ଗୟା କଂଗ୍ରେସରେ ପ୍ରତିନିଧିମାନଙ୍କ ରହିବା ପାଇଁ ଚାଳେଇ ଘର ହୋଇଥାଏ । ଉପର ଛାତ ମଧ୍ୟ ଚାଳେଇରେ । ତଳେ ଇଟା ପଡ଼ା ହୋଇଥାଏ । ତା' ଉପରେ ଖଟିଆ ଖଣ୍ଡେ ଖଣ୍ଡେ । ଗାଧୋଇବା ସ୍ଥାନରେ ମଧ୍ୟ ତଳେ ଇଟା ପଡ଼ାହୋଇଥାଏ । ପାଣିକଳ ଲଗିଥାଏ, ଗାତ ଖୋଳା ପାଇଖାନା ଗୃହପାଖରେ ଚାଳେଇ ଘେରାହୋଇଥାଏ । ଅଳିଆ ପକାଇବା ପାଇଁ ଘର ସାମନାରେ ଗୋଟିଏ ଗୋଟିଏ ଚାରିକୋଣିଆ ଛୋଟ ଛୋଟ ଗାତ । ସ୍ୱେଚ୍ଛାସେବକମାନେ ସେ ଗାତରୁ ଅଳିଆ ଉଠେଇ ନେଉଥାନ୍ତି । ଭାରତୀୟ ଅଭ୍ୟାସ ସେଠାରେ ପ୍ରକଟ ହେଉଥାଏ । ପାଇଖାନା ଠିକ୍ ଭାବରେ ବ୍ୟବହାର ନ କରିବା, ପିଲାମାନେ ବାଟ ଅପରିଷ୍କାର କରିବା ଆଦି ଚାଲିଥାଏ ।

ଅକାଳୀ ଦଳ କଂଗ୍ରେସ କ୍ୟାମ୍ପକୁ ଜମେଇ ରଖିଥାନ୍ତି । ଦଳ ଦଳ ହୋଇ ବଡ଼ି ସକାଳେ ଓ ସନ୍ଧ୍ୟାବେଳେ ଗୀତ ବୋଲି ବୁଲନ୍ତି । ଆମ କ୍ୟାମ୍ପର ଅଳ୍ପ ଦୂରରେ ଫଲ୍‌ଗୁ ନଦୀ ଥିଲେ ମଧ୍ୟ ମୋର ପ୍ରିୟ ଫଲ୍‌ଗୁନଦୀପାଖକୁ ଥରେହେଲେ ଯାଇ ପାରିଲି ନାହିଁ । ସେଥିପାଇଁ ମୋ ମନରେ ଦୁଃଖ ନ ଥିଲା । ମୋର ଏକମାତ୍ର ଧ୍ୟେୟ ଥିଲା ପିଲା କେମିତି ବେଶି ଅସୁସ୍ଥ ନ ହୋଇ କଟକରେ ପହଞ୍ଚିବେ । ଆମେ ଅଳ୍ପ ଲୋକ ଯାଇଥିଲୁ । ରାଜକୃଷ୍ଣ ବୋଷ ପ୍ରଭୃତି କେତେଜଣ କଂଗ୍ରେସର ବିଷୟବସ୍ତୁ ଉପରେ ଆଲୋଚନା କରୁଥିଲେ । ଅଭିରାମ ନନ୍ଦ ପ୍ରଭୃତି ଗୟା ସହର ବୁଲି ଦେଖିଲେ । ତେବେ ଅଭିରାମବାବୁ ପ୍ରାର୍ଥନା ଓ ଭଜନ ବୋଲି କ୍ୟାମ୍ପକୁ ଜମେଇ ରଖିଥିଲେ । ବାପା ଗୟାରେ ଥିଲାବେଳେ ଆମେ ମଧ୍ୟ ଗୟାରେ ଥିଲୁ । କେତେଜଣ ବଙ୍ଗାଳୀ ପରିବାର ସଙ୍ଗେ ଆମର ଖୁବ୍ ଘନିଷ୍ଠତା ଥିଲା । ତାଙ୍କ ଭିତରୁ ଜଣଙ୍କର ପିଲା ନ ଥିଲା ବୋଲି ସେ ଆମ ଦୁଇ ଭଉଣୀଙ୍କୁ ଝିଅପରି ସ୍ନେହକରୁଥିଲେ । ତାଙ୍କ ବଗିଚାରେ ବହୁତ କାଗଜୀ ବରକୋଳି ଗଛ ଥିଲା । ଘରର ବାବୁ ସକାଳେ କୋଳି ଗୋଟେଇ ଆଣି ଆମକୁ ଦେଉଥିବେ । ହିମଥପାକୁ ସେମାନେ ମା' ଓ ମୋତେ ମାସୀ ବୋଲି ଡାକୁଥିଲେ ।

ବାପାଙ୍କର କେତେ ବିହାରୀ ସାଙ୍ଗ ଆମକୁ ଭାରି ସ୍ନେହ ଆଦର କରୁଥିଲେ । ତାଙ୍କ ଭିତରେ ଜଣେ ଧନୀ ଥିଲେ । ତାଙ୍କ ବୈଠକଖାନାରେ ଯେଉଁ ପୂର୍ବକାଳିଆ କାଚରେ ତିଆରି ଆଲୁଅ ଝାଡ଼ମାନ ଟଙ୍ଗା ହୋଇଥାଏ, ତାହା ଏତେ ସୁନ୍ଦର ଯେ ଅନେକ ବର୍ଷ ଯାଏ ସେ

ଝାଡ଼ ଦେଖିବାକୁ ମୋର ମନ ଥାଏ । ସେପରି ସୁନ୍ଦର ଓ ମୂଲ୍ୟବାନ୍ ଝାଡ଼ ମୁଁ ଆଉ ଦେଖିନାହିଁ । ଗୟା ଯିବା ପୂର୍ବରୁ ମନେମନେ ଭାବିଥିଲି ସେମାନଙ୍କ ଘରକୁ ଯାଇ ଥରେ ଦେଖିଆସିବି । କିନ୍ତୁ ପୂର୍ବରୁ କେବେ କଂଗ୍ରେସ ଅଧିବେଶନ ଦେଖିନଥିବାରୁ ସେ ବିଷୟରେ ମୋର ଧାରଣା ନଥିଲା । ଏଣେ ପିଲି ଅସୁସ୍ଥ । ମା' ବାହାରେ ତାଙ୍କ ମନ ଦୁଃଖ ପ୍ରକାଶ ନ କରି ଗୁପ୍ତି ରଖୁଥିଲେ ମଧ୍ୟ ତାଙ୍କ ମାନସିକ ଅବସ୍ଥା ଯାହା ତାହା ଦେଖି ମୋର କୁଆଡ଼କୁ ଯିବାକୁ ଇଚ୍ଛା ହେଲାନାହିଁ ।

## ୧୮ । ପୁଣି ଯାଜପୁର

ଫେରିବା ବେଳେ ଏକାଏକା ଫେରିଲୁ । ଗୟାରେ ଶ୍ୱଶୁରଙ୍କର ଶ୍ରାଦ୍ଧ ଦିଆଯାଇଥାଏ ବୋଲି ଯାଜପୁରରେ ପିଣ୍ଡଦେବା କଥା ଥାଏ । ତେଣୁ ଫେରିବା ବେଳେ ହାଓଡ଼ା ଷ୍ଟେସନରେ ଅଳ୍ପ ସମୟ ରହି ଗାଡ଼ିଧରି ଯାଜପୁରରୋଡ଼ ଷ୍ଟେସନରେ ଓହ୍ଲାଇ ବଳଦ ଗାଡ଼ିରେ ଯାଜପୁର ସହରକୁ ଗଲୁ । ସେତେବେଳେ ଯାଜପୁର ରୋଡ଼ ଷ୍ଟେସନ୍‌ରେ ବସ୍ ଚଳାଚଳ ହୋଇନଥିଲା । ଯାଜପୁର ସହରକୁ ଆସି ସିଧା ଶ୍ରୀ ସୂର୍ଯ୍ୟମଣି ଦାସ, ସବ୍‌ଜଜ୍‌ଙ୍କ ଘରେ ପହଞ୍ଚିଲୁ । ସୂର୍ଯ୍ୟମଣି ଦାସଙ୍କ ବାପା ଶ୍ରୀ ବ୍ରହ୍ମାନନ୍ଦ ଦାସ, ମୋ ବାପା ଶ୍ରୀ ଗୋପାଳବଲ୍ଲଭ ଦାସ ଓ ଶଶୁର ଶ୍ରୀ ଗୋକୁଳାନନ୍ଦ ଚୌଧୁରୀ ଏ ତିନହେଁ ସହପାଠୀ ଥିଲେ ଓ ପାଠପଢ଼ାରେ ମଧ୍ୟ ସେମାନେ ଅନ୍ତରଙ୍ଗ ବନ୍ଧୁ ଥିଲେ । ଶ୍ରୀ ବ୍ରହ୍ମାନନ୍ଦ ଦାସ ଓ ଶ୍ରୀ ଗୋକୁଳାନନ୍ଦ ଚୌଧୁରୀ ଓକିଲ ହେଲେ । ଗୋପାଳ ବଲ୍ଲଭ ଦାସ ଡେପୁଟି ମ୍ୟାଜିଷ୍ଟ୍ରେଟ୍ କାମ କଲେ । ମା ଓ ସୂର୍ଯ୍ୟମଣିବାବୁଙ୍କ ମା ତ ଦେଖାଦେଖି ହୋଇ ଆନନ୍ଦରେ ଭାସିଗଲେ । ସୂର୍ଯ୍ୟମଣି ବାବୁଙ୍କ ମା'ଙ୍କୁ ଦେଖି ମୋ ଆଈ କଥା ମନେପଡ଼ିଲା । ସେ ଜଣେ ବହୁ ଗୁଣସମ୍ପନ୍ନା ମହିଳା । ଯେପରି ସ୍ନେହୀ ସେହିପରି ଘରକରଣାରେ ନିପୁଣା । ଘର ତିଆରି ହେଉଥାଏ, ବାଡ଼ିବଗିଚାରେ କାମ ହେଉଥାଏ । ମୂଲିଆ ମିସ୍ତ୍ରୀ କାମ ସେ ଦେଖୁଥାନ୍ତି । ତାଙ୍କର ଅଳ୍ପ କିଛି ମହାଜନୀ କାରବାର ଥାଏ । ଖାତକମାନେ ଋଣ ପରିଶୋଧ କରିବା ପାଇଁ ଆସିଲେ ସଙ୍ଗେସଙ୍ଗେ ସୁଧ ହିସାବ କରି ଟଙ୍କା ରଖନ୍ତି । ଶାନ୍ତ ଧୀର ଭାବ । ଆମେ ପିଲାଟିଆ ସହିତ ଯାଇଥାଉ । ଆମ ଚର୍ଚ୍ଚା କିପରି ଭଲ ହେବ, ଭଲ ରୋଷେଇ କରି ଆମକୁ ଖୁଆଇବେ, ସେ ସବୁକ ମଧ୍ୟ ଥାଏ । ତେଣେ ଘର ତିଆରି କରୁଥିବା ମୂଲିଆ ମିସ୍ତ୍ରୀ କାଳେ ଫାଙ୍କିଦେବେ ବୋଲି ତାଙ୍କ ଉପରେ ଦୃଷ୍ଟି । ବଗିଚା, ଗୃହକାମ କରୁଥିବା ଲୋକଙ୍କୁ କାମ ବରାଦ ଆଦି ସବୁ କାମ ସେ ବିଚକ୍ଷଣତାର ସହିତ କରୁଥାନ୍ତି । ଦିନ ଖାଇବା ପରେ ବୁଢ଼ୀ ବିଶ୍ରାମ ନ କରି ଚଣମା ପିନ୍ଧି ହିସାବ ଓ ଚିଠିପତ୍ର ଲେଖାଲେଖି କରନ୍ତି ।

ଯେଉଁ ଦୁଇଦିନ ତାଙ୍କ ଘରେ ରହିଲି ମୋ ସାଧ୍ୟଅନୁସାରେ ତାଙ୍କର ସେବାଯତ୍ନ କଲି । ବୁଢ଼ୀ ମୋ ଉପରେ ଭାରି ଖୁସି । ସେ ମୋତେ ଅତ୍ୟନ୍ତ ସ୍ନେହ କରୁଥିଲେ । ପ୍ରଥର ଅଯତ୍ନ

ହେବ ବୋଲି ବୋହୂଙ୍କୁ ସେ ଆଦୌ ତାଙ୍କ ପାଖରେ ରହିବାକୁ ଦେଉନଥିଲେ । ବଡ ନାତୁଣୀକୁ ପାଖରେ ରଖୁଥିଲେ । ବୋହୂ ପୁଅ ପାଖରେ ନ ରହୁଥିବାରୁ ମନରେ ଯେଉଁ ଦୁଃଖ ହେଉଥିଲା ସେ ରାଗ ପଡୁଥିଲା ଯାଇ ପୁଅର ଚାକରୀ ଉପରେ ।

## ପୁରୀ ଓ ଅତୀତ ସ୍ମୃତି

ଯାଜପୁର ସହରରୁ ବଳଦଗାଡ଼ିରେ ଅଠର ମାଇଲ ଯାଜପୁର ରୋଡ଼ ଷ୍ଟେସନକୁ ଆସି ସେଠୁ ପୁରୀ ଆସିଲୁ । ପୁରୀ ମୋର ଅତି ପୁରୁଣା ଚହ୍ନା ଜାଗା । ବାପା ଶେଷ ଜୀବନରେ ଚାକରୀର ଦୁଇବର୍ଷ ପୁରୀରେ ଥିଲେ । ସେହିଠାରେ ସେ କିଛିଦିନ ଜିଲ୍ଲା କଲେକ୍ଟର ମଧ୍ୟ ଥିଲେ । ବଡ଼ ମାମୁ ଦଶବର୍ଷ ପୁରୀ ମନ୍ଦିରର ମ୍ୟାନେଜର ଥିଲେ । ବାପା ପୁରୀରେ ଅବସ୍ଥାପିତ ହେବାରୁ ସ୍ୱାସ୍ଥ୍ୟୀ ଭାବରେ ଦୁଇ ବର୍ଷ ପୁରୀରେ ରହିଲୁ । ତା' ପୂର୍ବରୁ, ମୋ ହେଉ ପାଇବା ଦିନୁଁ, କେତେଥର ଯେ ପୁରୀ ଯାଇଛୁ, ତାର ହିସାବ ନାହିଁ । ପୁରୀ ଯିବା ଓ ପୁରୀରେ ରହିବା ସ୍ମୃତି ବଡ ମଧୁର । ମାମୁ ଓ ମାଉସୀଙ୍କ ପିଲାଙ୍କ ସହିତ ଏକାଠି ରହୁ । ପ୍ରତିଦିନ ଚାରିଟା ବେଳେ ଅମେ ସବୁ ପିଲାଯାକ ମନ୍ଦିରକୁ ଯିବୁ ବା ସମୁଦ୍ର କୂଳକୁ ଯିବୁ । ସାଙ୍ଗରେ ଦୁଇତିନି ଜଣ ଜଗୁଆଳି ଯାଆନ୍ତି । ମନ୍ଦିରରେ ଭାରି ସମ୍ମାନ ମ୍ୟାନେଜର ବାବୁଙ୍କ ଘର ପିଲା ବୋଲି । ଆମ ସାଙ୍ଗରେ ଯାଉଥିବା ଜଗୁଆଳିଙ୍କ ମଧ୍ୟରେ ବନା ଥାଏ । ବନା ଉପରେ ସମସ୍ତେ ଚଢ଼ା, ବନା ଭାରି ଶାସନପ୍ରିୟ । ଗାଧୋଇବା ବେଳେ ସାବୁନ ଲଗାଇ ଖୁବ୍ ରଗଡ଼ି କରି ଘଷି ଦେଉଛୁ ମଳି ଛଡ଼େଇବ, ଆଖି ପୋଡ଼ିଲା ପୋଡ଼ିଲା ବୋଲି ଆମେ ପାଟିକରୁଥିବୁ, ସେ କିଏ ଶୁଣେ ? ଗୋଟାଏ ବଡ ଟବ୍‌ରେ ପାଣି ଭର୍ତ୍ତି ହୋଇଥିବ । ଆମେ ଚାରିପାଞ୍ଚ ଜଣ ତା ଭିତରେ ପଶି ଗାଧୋଇବୁ । ବନାର ହୁକୁମ ଅନୁସାରେ ଆମେ ଚଳିବୁ । ସେ ଯେତେବେଳେ ପାଣିରୁ ଉଠିବାକୁ କହିବ, ଆମେ ଉଠିବୁ । ସେ ରଗଡ଼ିକରି ପୋଛିଦେଇ କୁର୍ତ୍ତା ପିନ୍ଧାଇ ଛାଡ଼ିବ । ଆମ ଭିତରୁ କେହି କେହି ଭଗବାନଙ୍କୁ ଡାକ କହନ୍ତି—ବନା କପରି ଶୀଘ୍ର ମରୁ । ଦେଉଳକୁ ନେଇ ସବୁ ବୁଲେଇ ଦେଖାଇବା ସଙ୍ଗେ ସଙ୍ଗେ ବନା ଆମକୁ, 'କଳାକୃଷ୍ଣ କମଳ ଅଖି, ଡାକଲେ ନ ଶୁଣ କାହିଁପାଇଁକି' ଜଣାଣ ଶୁଣାଏ । ଆମ ଭାଇ ଭଉଣୀଙ୍କ ଭିତରୁ କେତେଜଣ ଦୁଷ୍ଟ ଅମାନିଆ ଥା'ନ୍ତି । ଦୁଷ୍ଟାମିଟା ବାଲ ସ୍ୱଭାବ ଦୁଷ୍ଟାମି । ବଡ଼ ମାମୁଙ୍କ ପୁଅ ତା ଭିତରେ ଜଣେ । ବଡ ମାମୁ ଚିନ୍ତିତ ମନରେ ଶିକ୍ଷକ ଖୋଜୁଥାନ୍ତି—ସେ ପୁଅକୁ କପରି ମାଡ଼ ନ ଦେଇ ଆୟତ୍ତ କରିବ । ପଣ୍ଡିତ କୃପାସିନ୍ଧୁ ହୋତାଙ୍କ ସନ୍ଧାନ ସେ ପାଇଲେ ଓ ତାଙ୍କୁ ଡକାଇଆଣି କହିଲେ—ଆପଣ ତ ଯୁବକ ଲୋକ, ନୂଆ ପଦ୍ଧତିରେ ପାଠ ପଢ଼ାଉଥିବେ, ମୋର ଏ ପୁଅକୁ ଆପଣ ପଢ଼ାନ୍ତୁ । ପଣ୍ଡିତ ହୋତା ଶିକ୍ଷକତା କଲେ । ଆମେ ଅଳ୍ପଦିନ ପାଇଁ ମାମୁଘରକୁ ଗଲେ ମଧ୍ୟ ଭାଇମାନଙ୍କ ସଙ୍ଗେ ପଢ଼ୁ । ତେଣୁ ସେ ଆମର ମଧ୍ୟ ଶିକ୍ଷକ ହେଲେ । ଶିକ୍ଷକଙ୍କ ଗୁଣ ଅନୁସାରେ ନାମକରଣ ହୁଏ । ପଣ୍ଡିତ ହୋତାଙ୍କ ନାମକରଣ ହେଲା "ଟୁଟିଆ ମାଷ୍ଟର ।"

ଗସ୍ତାରୁ ଫେରି ପୁରୀ ଗଲୁ ଯେ ମତେ ଖୁବ କଷ୍ଟ ହେଲା । ମାମୁ ଆଉ ମ୍ୟାନେଜର ନାହାନ୍ତି । ବାପା ସଂସାରରେ ନାହାନ୍ତି । ପୁରୁଣା ସ୍ମୃତି ମନକୁ ଘାରିଲା । କେତେବର୍ଷ ହେଲା ପୁରୀ ଯାଇ ନଥିଲି । ପୁରୀ ଷ୍ଟେସନରେ ପହଞ୍ଚି ଦେଖିଲି ଘୋଡ଼ାଗାଡ଼ି ସଂଖ୍ୟା ଅତି କମ୍—ବଳଦଗାଡ଼ି ଗୁଡ଼ାଏ ଷ୍ଟେସନରେ ଅଛି । ପ୍ରତ୍ୟେକ ବଳଦଗାଡ଼ିକୁ ଦୁଇଜଣ ଲୋକ ଟାଣିକରି ନେଉଛନ୍ତି । ଯାତ୍ରୀମାନେ ସେଥିରେ ଯାଉଛନ୍ତି । ପଚାରି ବୁଝିଲି ଯେ ପୁରୀ ଜିଲ୍ଲାରେ ଯେ ଦୁର୍ଭିକ୍ଷ ପଡ଼ିଥିଲା, ତାହାର ଫଳ ସ୍ୱରୂପ ଏହା ହୋଇଛି । ଲୋକେ କାମ ନପାଇ ସ୍ୱେଚ୍ଛାରେ ଏ କାମ କରୁଛନ୍ତି । ସେ ଦୃଶ୍ୟ ମୋତେ ବଡ଼ କଷ୍ଟ ହେଲା । ସେତେବେଳକୁ ହାତଟଣା ରିକ୍ସା ବା ସାଇକେଲ୍ ରିକ୍ସା ବାହାରି ନ ଥିଲା । ବଳଦଗାଡ଼ିରେ ଯେଉଁଠି ବଳଦ ଯୋଚି ହୁଅନ୍ତି ସେଠି ମଣିଷ ଟାଣି ଟାଣି ନେବ । ଏ କଥା ମୋତେ ଖୁବ ବାଧିଲା । ଲୋକଙ୍କୁ କାମ ଯୋଗାଇବା କଥା ମନକୁ ଆସିଲା । ସୂତାକଟା ଖଦୀ କାମର ଗୁରୁତ୍ୱ ସେହିଠାରେ ମୁଁ ଅନୁଭବ କଲି । ଖଦୀକାମ ବିଷୟରେ ପରିକଳ୍ପନା ମଧ୍ୟ ମନେମନେ କଲି । ସେତେବେଳର ଅପରିପକ୍ୱ ବୁଦ୍ଧିରେ ଲୋକଙ୍କୁ କାମ ଯୋଗାଇବା ଓ କ୍ଷୁଧିତଙ୍କ ପାଇଁ ଅନ୍ନ ସଂସ୍ଥାନ କରିବା ପାଇଁ ଯେଉଁ ଖଦୀ କାମର ପରିକଳ୍ପନା ମୁଁ କରିଥିଲି ତାହା ଆଜିଯାଏ କରି ପାରିଲି ନାହିଁ, ଅନ୍ୟ କେହି କରିପାରିଲେ ନାହିଁ ।

ବାପା ପୁରୀରେ ଥିବାବେଳେ ବାପାଙ୍କର କେତେ ସାଙ୍ଗସାଥୀ ଓ ବନ୍ଧୁ ଥିଲେ । ପ୍ରତି ଶନିବାର ଦିନ ବନ୍ଧୁମିଳନ ହୁଏ । ଆମ ଘରେ ସନ୍ଧ୍ୟାବେଳେ ଅନେକଥରେ ଶ୍ରୀ ବୈଦ୍ୟନାଥ ମିଶ୍ର ଡେପୁଟି ମ୍ୟାଜିଷ୍ଟ୍ରେଟ୍ ସଙ୍ଗୀତ ଚର୍ଚ୍ଚା କରନ୍ତି । ଦିନେଦିନେ ରାଜନୀତି ଚର୍ଚ୍ଚା, ଦିନେ ଦିନେ ସମାଜରୁ କୁସଂସ୍କାର ଦୂର କରିବା ଆଦି ବିଷୟରେ ଚର୍ଚ୍ଚା ହୁଏ । ସେତେବେଳେ ସେ ସବୁ ମୁଁ ବୁଝିପାରୁ ନଥିଲେ ମଧ୍ୟ ଚର୍ଚ୍ଚାର ଛାପ ମୋ ମନ ଉପରେ ପଡ଼ିଛି । ମା' ଗୁଁଜିଲଗିଆ ପଠାଇଦେବାପରେ ଝରକା ପାଖରେ ବସି ଆମୂଳଚୂଳ ସବୁ ଶୁଣେ ।

ପୂର୍ବେ ରଥଯାତ୍ରା ପରେ ପୁରୀରେ ପ୍ରବଳଭାବରେ ହଇଜା ଲାଗୁଥିଲା । ବାପାଙ୍କ ପେସ୍କାରଙ୍କୁ ହଇଜା ଧରିଲା । ବାପା ବରାବର ରୋଗୀର ତତ୍ତ୍ୱ ନେଉଥାନ୍ତି । ସେତେବେଳେ ବୋଧହୁଏ ଆଜିକାଲିକା ପରି ଏତେ ସାଲାଇନର ବ୍ୟବହାର ନ ଥିଲା । କାରଣ ସେ ରୋଗୀକୁ ଯେତେବେଳେ ସାଲାଇନ ଦିଆଗଲା, ବାପା ସେଠି ଉପସ୍ଥିତ ଥିଲେ । ଘରକୁ ଆସି ବାପା ଖୁବ ବ୍ୟସ୍ତ ହେଲେ । ସାଲାଇନ୍ ଦେବା ଅର୍ଥ ରୋଗୀର ବଞ୍ଚିବା ସଂଶୟ । ସତକୁ ସତ ରୋଗୀ ମରିଗଲା । ସେଦିନର କଥାଟା ମୋର ମନେରହିଯାଇଛି । ମା ବାପାଙ୍କ ଭିତରେ କଥାବାର୍ତ୍ତା ହେଲା । ପେସ୍କାରଙ୍କ ଘରର ଅବସ୍ଥା ଭଲ ନୁହେଁ । ସେ ଘୁଷକୁ ଉପରେ ଚଳନ୍ତି । ସେ ଯେ ହଠାତ୍ ମରିଗଲେ ତାଙ୍କ ପରିବାର ଅବସ୍ଥା କ'ଣ ହେବ ? ବେମାରି ବେଳେ ବାପା ଟଙ୍କା ଖର୍ଚ୍ଚ ଦେଉଥିଲେ । ବାପାଙ୍କର ସେହି ଦିନର କଥାବାର୍ତ୍ତାରୁ ମୋ ମନରେ ଛାପ ପଡ଼ିଲା ଯେ ଗରିବ ଶ୍ରେଣୀ ଯେଉଁମାନେ ସମାଜରେ ଅଛନ୍ତି, ତାଙ୍କ ବିପଦବେଳେ ଧନୀ ଶ୍ରେଣୀଙ୍କଠାରୁ ତାଙ୍କୁ କିଛି ସାହାଯ୍ୟ ମିଳେ ନାହିଁ । ବିପଦଆପଦରେ ପଡ଼ିଲେ ତା ପରିବାର କିପରି ଚଳିବେ,

ତା ପିଲା କପରି ମଣିଷ ହେବେ ? ସାତଦିନଅ। ବନ୍ଧୁ ମିଳନରେ ମଧ୍ୟ ସେ କଥା ବାପା ପକେଇଲେ । ମାତ୍ର ଫଳ କଣ ହେଲା ଜାଣେ ନାହିଁ । ବର୍ତ୍ତମାନ ସ୍ମୃତି ଶୂନ୍ୟ ହୋଇଥିବ ।

ରାଜନୀତି ତଥା ଦେଶବିଷୟରେ ଯେଉଁ ଆଲୋଚନା ହୁଏ, ତାହା ସେତେବେଳେ ବୁଝିବା ମୋ ପକ୍ଷରେ ଦୁଃସାଧ୍ୟ କିନ୍ତୁ କେତେକ ଘଟଣାର ଆଲୋଚନା ମୋ ମନରେ ଅସ୍ପଷ୍ଟ ଛାପ ପକାଇଛି । ଏବେ ସେ ସବୁ ମନେପଡୁଛି ।

ମା'ର ସାଙ୍ଗମାନଙ୍କ ମଧ୍ୟରେ ତିନି ଚାରି ଜଣଙ୍କ ସଙ୍ଗରେ ବିଶେଷ ବନ୍ଧୁତା ଥିଲା । ତାଙ୍କ ଭିତରେ ଜଣେ ଉତ୍କଳ ଶ୍ରୀ ଧନପତି ବାନାର୍ଜିଙ୍କ ସ୍ତ୍ରୀ । ସୁଗୃହିଣୀର ସବୁ ଗୁଣ ଓ ବିଦ୍ୟା ତାଙ୍କଠାରେ ଥିଲା । ଶ୍ରୀ ପୀତବାସ ପଟ୍ଟନାୟକଙ୍କର ସ୍ତ୍ରୀ ଶ୍ରୀମତୀ ରାଧାମଣି ଦେବୀଙ୍କର ସନ୍ତାନ ନ ଥିବାରୁ ସେ ଆମ ଦୁଇ ଭଉଣୀଙ୍କୁ ନିଜର ଝିଅପରି ସ୍ନେହ କରୁଥିଲେ । ଶ୍ରୀ ଜଗବନ୍ଧୁ ସିଂହଙ୍କର ସ୍ତ୍ରୀ ଶ୍ରୀମତୀ ଚଞ୍ଚଳା ଦେବୀଙ୍କର ମାତ୍ର ଗୋଟିଏ ପୁଅ ଥିଲା । ଝିଅ ନ ଥିବାରୁ ସେ ଆମ ଦୁହିଁଙ୍କୁ ଜାଣି ଝିଅକରିଥିଲେ । ତାଙ୍କ ସଙ୍ଗେ ମା ଶ୍ରୀମୁଖ ଓ ରାଧାମଣି ଦେବୀଙ୍କ ସହିତ ଚନ୍ଦ୍ରଭାଗା ବସିଥିବାରୁ ସେମାନେ ସେହି ନାମରେ ଡକାଡକି ହେଉଥିଲେ । ନିଜ ମାଉସୀର ସ୍ନେହାଦର ଆମେ ତାଙ୍କଠାରୁ ପାଉଥିଲୁ । ଶ୍ରୀ ଜଗବନ୍ଧୁ ସିଂହ ୧୯୨୧ ର ଅସହଯୋଗ ଆନ୍ଦୋଳନରେ ବର୍ଷକ ପାଇଁ ଉତ୍କଳଦୀପ ଚଳଉଥିଲେ । ସର୍ବସାଧାରଣ କାମରେ ବି ସେ ବରାବର ସଂପୃକ୍ତ ରହନ୍ତି । ମାତ୍ର ତାଙ୍କ ଘର ସାଙ୍ଗରେ ଆମର ଯେତେବେଳେ ସମ୍ପର୍କ ହେଲା, ଚଞ୍ଚଳା ଦେବୀ ସେତେବେଳେ ରାଜାରାଜୁଡାଙ୍କ ଢଙ୍ଗରେ ଚଳୁଥିଲେ । ଘରର ଚାକର ପୂଜାରୀଙ୍କୁ ମଧ୍ୟ ଦେଖା ଦେଉ ନଥିଲେ । ଜଗବନ୍ଧୁ ବାବୁଙ୍କ ଖାଇବା ପାଖରେ ମଧ୍ୟ ସେ ରହନ୍ତି ନାହିଁ ଶୁଣି ମା ବ୍ୟସ୍ତହେଲା ଏବଂ ତାଙ୍କୁ ବୁଝାଇ, ତାଙ୍କ ଉପରେ ପ୍ରଭାବ ପକାଇ, ଏତିକି କରାଇଲା ଯେ ତାଙ୍କର ଏକମାତ୍ର ପୁଅ କୃଷ୍ଣର ଖୁଆଇବାପିଆଇବା କଥା ସେ ବୁଝାସୁଝା କଲେ । ପରେ କିନ୍ତୁ ଚଞ୍ଚଳା ଦେବୀ ନୀଳାଚଳ ବିଧବାଶ୍ରମ ଆଦି ଚଳାଇବା କାମ କରିଥିଲେ । ସମସ୍ତଙ୍କୁ ନେଇ ମିଳିମିଶି ସାଥିମାନଙ୍କର ପ୍ରିୟପାତ୍ରୀ ହୋଇ ସେ ଦକ୍ଷତାର ସହିତ କାମ କଲେ ।

ଶ୍ରୀ ପୀତବାସ ପଟ୍ଟନାୟକ, ଶମ୍ଭୁରଙ୍କର ଜନ୍ମ ଥର ଉତ୍କଳ ଥିଲେ—ପରେ ପୁରୀକୁ ଗଲେ । ଶଶୁର ତାଙ୍କୁ ଓ ଶାଶୁ ତାଙ୍କ ସ୍ତ୍ରୀଙ୍କୁ ଅତ୍ୟନ୍ତ ସ୍ନେହ କରୁଥିଲେ । ପୀତବାସବାବୁ ଦେଶମିଶ୍ରଣ ଆଦି କାମରେ ଅଳ୍ପ ବହୁତ ଭାଗ ନେଉଥିଲେ । ରାଧାମଣି ଦେବୀଙ୍କର ସନ୍ତାନ ନ ଥିବାରୁ ସେ ସେହି ଚିନ୍ତାରେ ବ୍ୟସ୍ତ ରହୁଥିଲେ ।

ଗୟା କଂଗ୍ରେସରୁ ଫେରିବା ପରେ ଗୟା ପିଣ୍ଡଦାନ କାମର ସମାପ୍ତି ପାଇଁ ପୁରୀ ଗଲୁ । ପୀତବାସ ବାବୁଙ୍କ ଘରେ ଖାଇବା ପିଇବା ହେଲା ।

୧୯୨୮ରେ ଗୋପବାବୁଙ୍କ ଜ୍ୱର ହେଲା । ସେ ପଣ୍ଡିତଙ୍କ ଚିକିତ୍ସାରେ ରହିଲେ । ରାତିରେ ପାଣି ଦୁଇ ବାଲ୍ଟି ଛାତ ଉପରେ କାକରରେ ରଖାଯିବ । ସୂର୍ଯ୍ୟୋଦୟ ପୂର୍ବରୁ ରୋଗୀ ସେ ପାଣିରେ ଗାଧୋଇବ । ପଥ୍ୟ ବି ତାଙ୍କର ଅଦ୍ଭୁତ । ଯାହା ପଥ୍ୟ ଦେବାକୁ

କହନ୍ତି, ତାହା ଦିଆଯାଏ । ଜ୍ୱର କମୁ ଛାଡ଼ୁ ନଥାଏ । ଏମିତି ବାରଦିନ ଗଲା । ବଡ଼ମାମୁ ଆସି କହିଲେ ଯେ ରୋଗୀ କ୍ରମେ ଦୁର୍ବଳହେଉଛି, ଅନ୍ୟ ଚିକିତ୍ସା କରାଅ । ମାଉଅପା କହିଲେ ତମ କଂଗ୍ରେସବାଲା ଡାକ୍ତର ଆଣି ହେଲେ ଚିକିତ୍ସା କରାଅ । ଗୋପବାବୁଙ୍କର ତ ପଣ୍ଡିତ ମହାଶୟଙ୍କ ଉପରେ ଅଟଳ ବିଶ୍ୱାସ—ସେ କାହାର କଥା ଶୁଣିଲେ ନାହିଁ । ଜ୍ୱର କୋପରେ ଖୁବ ବ୍ୟସ୍ତ ହୁଅନ୍ତି । ଦିନରେ ଦଶଥର ବିଛଣା ବଦଳା ହୁଏ । ବାରଦିନଯାକ ମୁଁ ଦିନରେ ବା ରାତିରେ ଶୋଇ ନାହିଁ । ଏବେ ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ସେଦିନ ରାତିରେ ଔଷଧ ପିଆଇବା ପାଇଁ ବା ସେହିପରି କଣ କାମରେ ମୁଁ ଯିବାକୁ ବାହାରି ଝିଅଙ୍କୁ କହିଲି ସେ ରୋଗୀ ପାଖରେ ବସିଲେ । ମୁଁ ଉପର ବାରଣ୍ଡାକୁ ଆସି ଶୁଣିଲି ଝିଅଙ୍କ 'ଭାଇ ଭାଇ' ଡାକୁଛନ୍ତି । ଭାଇ ଯେ ହଁ ବୋଲି କହୁଛନ୍ତି ତାହା ଗଭୀରରୁ କହିଲାପରି ସ୍ୱର । ମୁଁ ଶୁଣିବା ମାତ୍ରେ ତଳକୁ ଯାଇ ଭାଗୁବାବୁ ଓ ପଡ଼ିହାରୀ ମହାଶୟଙ୍କୁ କହିଲି । ସେ ଦୁହେଁ ଆମଘରେ ଶୋଇଥିଲେ । ମୁଁ କହିଲି ଆଉ ବିଳମ୍ବ ନ କରି ଡାକ୍ତର ବା କବିରାଜ ଯାହାକୁ ପାଉଛ ଡକାଇଆଣ । ସେମାନେ ମୋ ମୁହଁକୁ ଚାହିଁଲେ—ପଣ୍ଡିତ କଣ କହିବେ ? ରୋଗୀ ଅନ୍ୟ ଚିକିତ୍ସା କରିବାକୁ ରାଜିହେବେ ତ ? ମୁଁ କହିଲି ଆଉ ବେଳ ନାହିଁ । ସେ ଯାଇ ଆନନ୍ଦ ବାବୁ ଡାକ୍ତରଙ୍କୁ ଡାକିଆଣିଲେ । ଆନନ୍ଦବାବୁ ଆସି ଦେଖିଲେ ଯେ ନାଡ଼ି ମିଳୁନାହିଁ । ଝାଳ ଅନର୍ଗଳ ବହୁଛି । ସେ କ'ଣ ଔଷଧ ଦେଇଗଲେ ମାତ୍ର ନିରାଶାଜନକ ସୂଚନା ଦେଲେ । ଭାଗୁବାବୁ ଯାଇ କବିରାଜ ବାଲୁଙ୍କେଶ୍ୱର ଆଚାର୍ଯ୍ୟଙ୍କୁ ଡାକି ଆଣିଲେ । ସେତେବେଳକୁ ସକାଳ ହେଲାଣି । ସେ ବି ଦେଖିଲେ ନାଡ଼ି ମିଳୁ ନାହିଁ । ସାରା ଦେହରୁ ଝାଳ ବୋହୁଛି । ସେ କ'ଣ ଔଷଧ ପାନେ ଦେଲେ ଓ କହିଲେ ଚାରିଜଣ ଲୋକ ବସି ଅନବରତ ଝାଳକୁ ପୋଛନ୍ତୁ—ପ୍ରତିଥର ଝାଳପୋଛୁ ସେ କନା ଫୋପଡ଼ାହେବ । କଟକ ସହରରେ ଖବର ବ୍ୟାପିଗଲା । ବଡ଼ମାମୁ ଓ ତାଙ୍କ ପୁଅମାନେ ଆସି ସାହାଯ୍ୟ କରିବାରେ ଲାଗିଗଲେ । ଆମର ଏ ମୂର୍ଖପଣିଆର ସମସ୍ତେ ନିନ୍ଦା କଲେ । ତାଙ୍କ ଦେହ ଏତେଦୂର ହେବାଯାଏଁ ମୁଁ ଯେ ତାଙ୍କୁ ଜୋର ଅନ୍ୟ ବ୍ୟବସ୍ଥା ନକରାଇଲି, ଏଥିପାଇଁ ମୋତେ ଅନେକ ଦୋଷ ଦେଲେ । ବଡ଼ବାପା ମିଷ୍ଟର ଦାସ ଆସି କହିଲେ—ତାର ଦେହର ଗଢ଼ଣ ଯେପରି ସେଥିରେ ଏ ପ୍ରକାର ବେମାରି ହେବା କଥା । ଡାକ୍ତରୀ ଔଷଧ ତ ଖାଇବାକୁ ମନାକରିଥିଲେ କବିରାଜୀ ଔଷଧ ମଧ୍ୟ ଖାଇବାକୁ ଆପତ୍ତି କଲେ । କବିରାଜ ମହାଶୟ ତାଙ୍କ ସ୍ନେହ ଗୁଣରେ ବଶକରି କେତେ ପାନ ଔଷଧ ଖିଆଇଥିଲେ । ତାପରେ ଜଣେ ନୂଆ ହୋମିଓପାଥିକ୍ ଡାକ୍ତର ଆସିଲେ । ସମସ୍ତେ ଭାବିଲେ-ଡାକ୍ତରୀ, କବିରାଜୀ ଔଷଧ ସିନା ଖାଇବେ ନାହିଁ, ହୋମିଓପାଥି ଖାଇବେ । ସେ ଔଷଧ ମଧ୍ୟ ଖାଇଲେ ନାହିଁ । ବହୁତ ସାବଧାନତାରେ ଲୁଚାଇ କରି ଯେ ଔଷଧ ଦିଆଗଲା । ଭଗବାନଙ୍କ ଇଚ୍ଛାଥିଲା, ସେ ବଞ୍ଚିଗଲେ । ଡାକ୍ତର, କବିରାଜ ଓ ହୋମିଓପାଥି ଡାକ୍ତର ମଧ୍ୟ ସେହି କଥା କହିଲେ । ମୋ ଜୀବନରେ ଏହା ଗୋଟିଏ ବଡ଼ ପରୀକ୍ଷା ଗଲା । ଏ ଅବସ୍ଥାରେ ସମସ୍ତଙ୍କ ରାଗ ପଣ୍ଡିତଙ୍କ ଉପରେ । କିଏ ତାଙ୍କୁ କଣ କହିବ, କ'ଣ କରିବ

ଏହି ଚନ୍ତା ମୋର ଆଏ ଏବଂ ମୋର ସତର୍କ ଦୃଷ୍ଟି ଥାଏ ପଣ୍ଡିତ ମହାଶୟ କାହାର ସଂପର୍କରେ ଯେପରି ନଆସନ୍ତି ।

ବଡ଼ମାମୁ ଓ ଭାଇମାନଙ୍କ ସାହାଯ୍ୟର ତୁଳନା ନାହିଁ । କୌଣସି ଜନ୍ମିତ ଭାଇ ମଧ୍ୟ ଏପରି ସାହାଯ୍ୟ କରିବ ନାହିଁ । ମୁଁ ଜାଣିଲି ଭଗବାନ ମୋତେ ମା ପେଟ ଭିତରୁ ସିନା ବଞ୍ଚିତ କରିଛନ୍ତି, ଭାଇ ସ୍ନେହ ଦୃଷ୍ଟିରୁ ମୁଁ ବଞ୍ଚିତ ନୁହେଁ । ନିଜ ଭାଇ ବି କାହାର ଏପରି କରିବ ନାହିଁ ! ବଡ଼ମାମୁ ତ ବାପର କାମ ସବୁ କଲେ ।

## ୧୯ । ଟୁକି ବାଘର

ଦିନରେ ଭାତ ଖାଇ ସବୁଦିନ ପରି ଉପରକୁ ଶୋଇବାକୁ ଗଲି । ମା, ବୋଉ ଓ ତାଙ୍କ ପିଲା ଓ ଚନ୍ଦ୍ରା, ଗୁଲୁ ତଳେ ଥାଆନ୍ତି । ଉପରକୁ ଯାଇ ଶୋଇବା ଘରେ ଗୋଡ଼ ଦେବା ମାତ୍ରେ ଗୋପବାବୁ ମୋ ହାତକୁ ଖଣ୍ଡେ ଚିଠି ବଢ଼ାଇଦେଇ କହିଲେ ପଢ଼ିଦେଖ । କଥାଟା ଗମ୍ଭୀର ସ୍ୱରରେ କହିଲେ । ଖୁବ୍ ଚନ୍ତିତ ଥିଲା ପରି ମୁହଁ ଦେଖାଯାଉଥାଏ । ମୁଁ ଚିଠି ଖଣ୍ଡ ଭାଙ୍ଗ ଫିଟାଇ ଦେଖିଲି ଟୁକିଙ୍କ ଅକ୍ଷର । ଏକା ନିଃଶ୍ୱାସକେ ପଢ଼ିଗଲି । ଚିଠିର ସାରମର୍ମ ହେଲା ସେ ଶାନ୍ତିନିକେତନର ଜଣେ ଛାତ୍ରୀଙ୍କୁ ବାହା ହେବାପାଇଁ ଠିକ୍ କରିଛନ୍ତି । ସବୁକଥା ବିସ୍ତାରିତ ଭାବରେ ଲେଖିଛନ୍ତି । ଟୁକି ବାହାଘର ହେଉ ନଥିବାରୁ ମା ନିଜେ ବ୍ୟସ୍ତ । ଅନ୍ୟମାନେ ବାହାଘର ଉଦ୍ୟମ ହେଉନାହିଁ, ଝିଅ ଖୋଜା ହେଉନାହିଁ ଆଦି କହି ଦୁଃଖ ପ୍ରକାଶ କରି ମା'ଙ୍କ ବ୍ୟସ୍ତତା ଆହୁରି ବହୁ ଗୁଣ ବଢ଼ାଇ ଦେଉଥାନ୍ତି । ମୁଁ ଭାବିଲି ଟୁକି କନ୍ୟା ଠିକ୍ କରିଛନ୍ତି, ଏକଥା ଶୁଣି ମା ଆଶ୍ୱସ୍ତ ହେବେ । କାରଣ ସେ କେତେଥର ଦୁଃଖ କରି କହିଛନ୍ତି—ପାଣ, ପଠାଣ ଝିଅ ଆସୁ ପଛେ ଟୁଆଁ ହାତକୁ ଦି' ହାତ ହେଉ । ଚିଠି ଖଣ୍ଡ ନେଇ ତଳକୁ ଗଲି । ମା ଓ ବୋଉ ଚେଇଁକରି ଶୋଇ କଥାବାର୍ତ୍ତା ହେଉଛନ୍ତି । ମୁଁ ଚିଠିଖଣ୍ଡ ଧରି ଠିଆ ହେଲାରୁ ମା ଟିକିଏ ଆଶ୍ଚର୍ଯ୍ୟ ହେଲା ପରି କହିଲେ—କିଏ ଚିଠି ଦେଇଛୁ ? ମୁଁ ଚିଠିଟା ବୋଉ ହାତରେ ଦେଇ କହିଲି—ପଢ଼ । ମା' ତ ବ୍ୟଗ୍ରଭାବ ସହିତ ଗୁହିଁଥାନ୍ତି ଚିଠିକୁ । ବୋଉ ପଢ଼ିଦେଇ କହିଲେ ବୋଉ ! ଟୁଆଁ ଭାଇ କନ୍ୟା ଠିକ କରିଛୁ ବାହାହେବା ପାଇଁ—ସେ କନ୍ୟା ଶାନ୍ତିନିକେତନରେ ପଢ଼େ—ବଙ୍ଗାଳୀ ଘରର ଝିଅ । ବୋଉଠାରୁ କଥାଟା ଶୁଣି ଦଶ ପନ୍ଦର ସେକେଣ୍ଡ ଚୁପ୍ ରହି ମା ହଠାତ୍ କାନ୍ଦିଉଠି କହିଲେ—ଟୁଆଁ କ'ଣ କଲା ? ମୋ ମରିବା ଯାଏ ରହିଲା ନାହିଁ ! ମୁଁ ମରିଯାଇଥିଲେ ଯାହା ଇଚ୍ଛା କରିଥାନ୍ତା । ମୁଁ ଏବେ କରିବି କ'ଣ ? ମା ଏପରି କନ୍ଦାକଟା କରିବେ ଏହା ମୋ କଳ୍ପନାରେ ନ ଥିଲା । ବୋଉଙ୍କର ସନ୍ତାନ ସମ୍ଭାବନା, ତା ଛଡା ତାଙ୍କୁ ମ୍ୟାଲେରିଆ ଜ୍ୱର ହେଉଥିବାରୁ ସେ ଚିକିତ୍ସା ପାଇଁ ତାଙ୍କ ଦୁଇପୁଅ ରବି ଓ ଟୁନାକୁ ନେଇ ଆସିଥାନ୍ତି । ମାଙ୍କ

କନ୍ଦାକଟା ଦେଖି ସେ ବିଚରା କ'ଣ କରିବେ ? ବାମୀଦାଦା ପ୍ରଭୃତି ଏ କଥା ଶୁଣିଲେ । ବାମୀଦାଦା ଶୁଣିଲେ ଅର୍ଥ ଘରଆଡେ ସମସ୍ତେ ଜାଣିଲେ । ମାଗଅପା ଓ ଦେବେନ୍ଦ୍ରବାବୁ ଆସିଲେ । ପ୍ରଶ୍ନ ଉଠିଲା କ'ଣ କରାଯିବ ? ମାଙ୍କୁ ବୋଧ ଦେବା ପାଇଁ ଯାହା ମୁଣ୍ଡକୁ ଯାହା ଆସୁଥାଏ ସେ ତାହା କହୁଥାଏ । ମାଗଅପାଙ୍କ ଘର ଆତ୍ମୀୟମାନେ ଗୋଟିଏ ପ୍ରସ୍ତାବ ବାହାର କଲେ ଯେ ଟୁକଙ୍କୁ ତଡେଇଦେବାକୁ ହେବ ଯେ ସେ ଅନ୍ୟ ଜାତି ଝିଅ ବାହାହେଲେ ଏ ସମ୍ପତ୍ତିରୁ ଭାଗ ପାଇବେ ନାହିଁ । ଏ ମସୁଧାକୁ ଗୋପବାବୁଙ୍କ ଆଗରେ କହିବ କିଏ ? ଅନେକ ବିଚାରବିଚର ହୋଇ ଗୋପବାବୁଙ୍କ କାନରେ କଥାଟା ପକାଗଲା । ଶୁଣିବା ମାତ୍ରେ ଗୋପ-ବାବୁ ତତ୍‌କ୍ଷଣାତ୍ କହିଦେଲେ—ସମ୍ପତ୍ତି ଭାଗ ହେବ କ'ଣ ? ବରଂ ସେ ନେଉ-ଏ କଥା ମୁଁ ସିନା କହିପାରିବି, ସମ୍ପତ୍ତିରୁ ଟୁକ ଭାଗ ପାଇବ ନାହିଁ ଏ କଥା ମୁଁ କେମିତି କହିବି ? ଏ କଥା ଶୁଣି ସମସ୍ତେ ଚୁପ ହୋଇଗଲେ । ବାହାଘର ଭାଙ୍ଗି ଦେବାର କିଛି ଉପାୟ ନ ପାଇ ମା'ଙ୍କର ରାଗଗୁଡ଼ାକ ସବୁ ମୋ ଉପରେ ପଡ଼ିଲା । ସେ ପ୍ରକାରାନ୍ତରେ ସବୁବେଳେ କହିଲେ ଯେ ମା'ଙ୍କ ଦୋହାଇ ନଦେଇ ମୁଁ ଅନ୍ୟ କୌଣସି ପନ୍ଥା ବାହାରକରି ବାହାଘର ଭାଙ୍ଗି ଦିଏ । ଅଥଚ ସେ ବାହାଘର ଭାଙ୍ଗିବାରେ ସମ୍ପୃକ୍ତ ଏକଥା ଟୁକ ଜାଣନ୍ତୁ ଏହା ତାଙ୍କର ଇଚ୍ଛା ନୁହେଁ ।

ଉପରବେଳେ ସାହିର ସ୍ତ୍ରୀଲୋକମାନଙ୍କ ସାଙ୍ଗରେ ମା କଥାବାର୍ତ୍ତା କରନ୍ତି । ସେମାନେ ଟିହାଇଦେଇ କହନ୍ତି ଯେ ବଡ଼ପୁଅ ବୋହୂ, ମନକଲେ କ'ଣ ବାହାଘର ଭାଙ୍ଗିଦେଇ ପାରନ୍ତେ ନାହିଁ ? ପୁଅମାନଙ୍କୁ ତ ମା କେବେ କିଛି ମନର ଦୁଃଖ କହନ୍ତି ନାହିଁ—ସବୁ ରାଗ ପଡ଼େ ମୋ ଉପରେ । ମୋ ଉପରେ ସେ ଅନବରତ ଚିଡ଼ିଲେ । ଦିନେ ଦିନେ ହଠାତ୍ ପାଟିକରି କାନ୍ଦିଉଠିବେ । ସାହିର ସ୍ତ୍ରୀଲୋକମାନେ ଦୌଡ଼ିଆସି ମୋତେ ଖୁବ୍ କଥା ଶୁଣାନ୍ତି—ଯେପରି ସବୁ ଦୋଷ ମୋର । ଏବେ ମାଙ୍କ ମତ ଅନୁସାରେ ମୁଁ ଘର ଚଲାଇବି । ବେଙ୍ଗଙ୍କ ପିଲାଦୁହେଁ ମ୍ୟାଲେରିଆରେ ଭୋଗୁଥାନ୍ତି । ସେ ପିଲାଦୁହିଙ୍କୁ ଜଳ-ଚିକିତ୍ସାରେ ରଖାଯାଇଥାଏ । ଜ୍ୱରରୋଗୀ ଜଳଚିକିତ୍ସାରେ ରହିବା ବଡ଼ ନଟଖଟିଆ କଥା । ବେଙ୍ଗଙ୍କ ଝିଅ ଶଙ୍ଖୀ ଜନ୍ମ ହେଲା । ସେ ତାଙ୍କ ଘରକୁ ଗଲେ । ସେ ଥିବାବେଳେ କଥାବାର୍ତ୍ତା କରିବାକୁ ଏ ଦୁଃସହ ପରିସ୍ଥିତି ବେଳେ ଜଣେ ସାଥୀ ଥିବାରୁ ଯାହା ଟିକିଏ ଭଲଲାଗୁଥାଏ—ସେ ଗଲାରୁ ତାହା ବି ଗଲା । ବାହାଘର ଭାଙ୍ଗିବାର କୌଣସି ଲକ୍ଷଣ ନ ଦେଖି ମା ଘରୁ ପଳେଇଯିବି ବୋଲି କହିଲେ । ମୁଁ ଭୟରେ ଅସ୍ଥିର ହେଲି । ଏକମାତ୍ର ମାଗଅପାଙ୍କୁ ସବୁ କହେ । ସେ ବା କରିବେ କ'ଣ ? ମା'ଙ୍କର ତାଙ୍କ ଉପରେ ଅବିଶ୍ୱାସ ଯେ ମୁଁ ଓ ମାଗଅପା ଏକ ମେଣ୍ଟ ହେଲୁଣି—ଟୁକ ବାହାଘର ଅଜାଡିରେ ହେବ ଆମେ ମଜା ଦେଖିବୁ । ମୋ ମା ବା ମୋ ମାଈଁ ବା ମାଉସୀଙ୍କୁ ମା ଏକଥା କହନ୍ତି ନାହିଁ । ଏହିପରି ଦେଢ଼ ବର୍ଷ କଟିଲା । ଦିନେ ସାମାନ୍ୟ କାରଣରୁ ସେ ଜିଦ୍ ଧରିଲେ ପୁରୀ ଯିବେ । ମାଗଅପା ମୋତେ କହିଲେ—ସେ ପୁରୀ ଯାଉ । ଏଠାରୁ ଡ଼ି ବାହାରେ ରହୁ । ତା ମନ ବଦଳି

ଯାଇପାରେ । ମା ପୁରୀ ଗଲେ । ମୁଁ ପୁରୀରେ ରହୁଥିବା ସମୟରେ ମୋର ବଡ ମଉଳାଶୁର ଶ୍ରୀ ହରେକୃଷ୍ଣ ମହାନ୍ତ୍ର କଟକ ଆସି ଆମଘରେ ରହିଲେ । ତାଙ୍କର ଖାଇବା ରୋଗୀର ପଥ୍ୟ । ଅତି ସୁକୁମାରିଆ ଖାଇବା । ଠିକ୍ ସମୟରେ ସବୁ ହେବା ଦରକାର । ସେ ଭାବୁଥିଲେ ତାଙ୍କ ଭଉଣୀ ନଥିବାରୁ ତାଙ୍କୁ ଅସୁବିଧା ଭୋଗ କରିବାକୁ ପଡ଼ିବ । ମାତ୍ର ମୁଁ ତାଙ୍କ କାମ ଭଲଭାବରେ କରିଦେବାରୁ ସେ ଖୁବ୍ ସନ୍ତୁଷ୍ଟ ହେଲେ । ମୁଁ ତାଙ୍କ ସାମନାକୁ ଯାଉ ନ ଥାଏ । ସେ ତ ସବୁକଥା ଶୁଣିଥିଲେ ଓ ମାଙ୍କ ମନୋବୃତ୍ତି ଜାଣିଥିଲେ । ମୋତେ ସେ ଶୁଣେଇ କରି କହିଲେ ଯେ ଏଥର ପୁରୀ ଯାଇ ଅପାକୁ (ମୋ ଶାଶୁ) ଯେ କୌଣସି ମତେ ବୁଝାଇଦେବେ ଯେ ଟୁକଙ୍କର ବାହାଘର ହେଉ ଏହା ତାଙ୍କର ଇଚ୍ଛା ଏବଂ ଯେ କୌଣସି ମତେ ସେ ଭଉଣୀକୁ ରାଜି କରାଇବେ । ଆସିବା ପାଇଁ ଅନେକ ଖବର ଦେଇ ଦେଇ ମା କିଛିଦିନ ପରେ କଟକ ଆସିଲେ । ମନର ବିଗ୍ରହ ଅନ୍ୟ ପ୍ରକାରର ବୋଲି ଆମେ ଜାଣୁଥିଲେ ମଧ୍ୟ ସେ ଜଣାଇ ଦେଉ ନ ଥାନ୍ତି । ମାଗଅପା କହିଲେ, ଭାଇ କ'ଣ ମନ୍ତ୍ର ଫୁଙ୍କିଛି, ସେ କାନ୍ଦୁ କରିଛି, ଲୁଗୁଉଛି ସିନା କିନ୍ତୁ ତା ମନ ବଦଳିଛି ।"

ଏହିପରି କିଛିଦିନ କଟିବା ପରେ ମଉଳାଶୁର କଟକ ଆସିଲେ । ମତେ ଡ଼ାକିଲେ । ମୁଁ କବାଟ ଉଢ଼ାଳରେ ବସିଲି । ସେ ଭାଇ ଭଉଣୀ ଏକାଠି ବସିଲେ । ମାମୁଁ ମତେ ଉଦ୍ଦେଶ୍ୟ କରି କଥା ଆରମ୍ଭ କଲେ । ପ୍ରଥମେ ମା'ଙ୍କୁ କହିଲେ—ଅପା ! ତୁ ବସି ଶୁଣ । ମୋର ବୋହୂକୁ ଯାହା କହିବାର ତାହା ଆଜ କହିଦିଏ । ମା'ଙ୍କର କାନ୍ଦଣା ଆରମ୍ଭ ହୋଇ-ଯାଇଥାଏ । ମତେ ମାମୁ କହିଲେ—ଅପା ନ ବୁଝି ଅଧୈର୍ଯ୍ୟ ହେଉଛି । ଏପରି ହେବାର କାରଣ କିଛି ନାହିଁ । ପୁଅ ଯାହାକୁ ବାହା ହେବା ପାଇଁ ଚାହୁଁଛି ସେଥିରେ ଆମର ବାଧା ଦେବା ଅସୁନ୍ଦର କଥା । ପୁଅ ଯାହାକୁ ବାହାହେବ ତାକୁ ଯେନ ଘରକରିବ । ପୁଅ ଯାହାକୁ ଘରକୁ ଆଣିବ ଆମେ ତାକୁ ଆମର କରିନେବା କଥା । ଅପାର ଆଶଙ୍କା – ସେ ଝିଅ କାଳେ ବିଧବା କନ୍ୟା ହୋଇଥିବ । ମୁଁ ତ ଜାଣେ ନାହିଁ । ଯଦି ତାହା ହୋଇଥିବ ତେବେ ସେ ତ ଗୋଟିଏ ସଂସ୍କାରକର କାମ । ଆମେ ଜାଣିବା ଟୁଆଁ ଜଣେ ସଂସ୍କାରକ । ମାମୁଁ ଏହିପରି ବୁଝାଇ କହିବା ପରେ ମା କହିଲେ ଯେ ମୁଁ ତାଙ୍କ ମୁଣ୍ଡ ଛୁଇଁ କହିବ ଯେ ସେ ବୋହୂ ଛୁଆଁ ମୁଁ ଖାଇବି ନାହିଁ । ଏ କଥା ଶୁଣି ମୁଁ ସ୍ତମ୍ଭିତ ହେଲି । ଏତେ ବଡ ସଂକଳ୍ପ ମୁଁ କରିବ କେମିତି ? ବୋହୂ ଘରକୁ ଆସିବ, ତା' ରନ୍ଧା ଜିନିଷ ମୁଁ ଖାଇବ ନାହିଁ, ଏ ଗୋଟାଏ କେଡ଼େ ବଡ ଅସୁନ୍ଦର କଥା ହେବ ! ସେ ବୋହୂ ପକ୍ଷରେ କେଡ଼େ ଅପମାନ-ଜନକ କଥା ହେବ ! ତା ବାପଘର ଲୋକେ ଏ କଥା ଶୁଣିଲେ ଆମକୁ କେତେ ଶ୍ରେଷ୍ଠ ଲୋକ ନ ଭାବବେ ! ମୁଁ ତୁନିରହିବା ଦେଖି ମା ଭାବିଲେ—ଟୁକ ବାହାହେବ, ଆମେ ସବୁ ଏକ ହୋଇ ଏକାକାର କରିଦେବୁ । ସେ ଏକୁଟିଆ ରହିବେ । ମା ଖୁବ୍ ପାଟି କରି କାନ୍ଦି ଉଠିଲେ । ମଉଳାଶୁର ଥିବାରୁ ସେ କଥା ସମ୍ଭାଳାପଡ଼ିଲା । ସେ ଖୁବ୍ ପାଟି କରି କହିଲେ —"ଅପା ! ତୁ ଏପରି ଅଧୈର୍ଯ୍ୟ କାହିଁକି ହେଉଛ ? ତୁ ସବୁବେଳେ ଏପରି ଅବୁଝାମଣା

କଥା କହିଲେ କେମିତି ହେବ ? ବୋହୂକୁ ଟିକିଏ କହିବାକୁ ଦେ । ତୁ ସବୁବେଳେ ଏପରି କନ୍ଦାକଟା କଲେ ସେ ବିଚାରି କ'ଣ କରିବ ?'' ଏମିତି କେତେ କଥା କହିଲାରୁ ମା ତୁନି ହେଲେ । ମାମୁ ମତେ ଲକ୍ଷ୍ୟ କରି କହିଲେ, "ମା, ତମେ ଆଉ ଝିଅଟି ନୁହଁ । ତମେ ଯେତେବେଳେ ବଡ଼ବୋହୂ, ତମକୁ ଅନେକ ଦାୟିତ୍ୱ ମୁଣ୍ଡାଇବାକୁ ପଡ଼ିବ । ତମେ ଏ କଥାକୁ ସମ୍ଭାଳିନିଅ । ବାହାଘରଟା ହୋଇଯାଉ । ତମେ ଆଉ ଆଗପରି ନ ହୋଇ ଗୋପାଳଙ୍କ ନାଁ ନେଇ ଅପାକୁ ଜବାବ୍ ଦିଅ ଯେ ତମେ ସେ ବୋହୂ, ହାତରେ ଖାଇବ ନାହିଁ ।" ମୁଁ ଆଉ କଣ କରିବି ? ମା ସଙ୍ଗେ ସଙ୍ଗେ ଉଠି ଆସି ମୋ ହାତ ନେଇ ତାଙ୍କ ମୁଣ୍ଡରେ ରଖିଲେ ଏବଂ ମାମୁ କହିଲେ—"ବୋହୂ କହୁଛି ସେ ତା ହାତରେ ଖାଇବ ନାହିଁ । ତୁ ଯେପରି ବାରଣ କରି, ସେ ସେହିପରି ବାରଣ କରିବ ।" ନିରବରେ ସବୁ ମାନିନେଲି । ଏତେ ଦିନ ଯାଏଁ ମୋ ମନରେ ଯେଉଁ ଧାରଣା ନଥିଲା ତାହା ମାମୁ କହିଲେ । ମା ନିଜେ ଭାବୁଥାନ୍ତି ବା ତାଙ୍କ ମନରେ କେହି ଧାରଣା ଦେଇଥାଉ ଯେ ତାଙ୍କର ଧାରଣା ହୋଇଥାଏ, ଝିଙ୍କ ଯାହାକୁ ବାହା ହେବାକୁ ସ୍ଥିର କରିଛନ୍ତି ସେ ଝିଅଟି ବିଧବା । ମାମୁ କହିଲେ ଯେ, ଜାତି ଧର୍ମ ଯାହା ହେଉ, ବିଧବା ବାଲି ତା ମନରେ ଧାରଣା ହେବାରୁ ସେ ବ୍ୟସ୍ତ ।

ବାହାଘର କଥା ଗୁଲିଲା । ମା ପୁରୀରେ ଥିବା ସମୟରେ ମିନୁ ବଡ଼ଭାଉଜ କଟକ ଆସି ମୋହିନୀମୋହନ ସେନାପତିଙ୍କ ଘରେ ରହି ଆମ ଘରକୁ ଆସି ମୋ ସାଙ୍ଗରେ କଥାବାର୍ତ୍ତା କରି ଯାଇଥାନ୍ତି । ମା ଏ କଥା ଶୁଣି ରାଗିଲେ । ମୋର ବା ଏଥିରେ ଦୋଷ କ'ଣ ? ଏଇ କଥା ଉପରେ କେତେ ଟୀକାଟିପ୍ପଣୀ ହେଲା । ଅନ୍ନପୂର୍ଣ୍ଣାଦିଦି ଓ ନାଲିଆମା ମୋ ପକ୍ଷହୋଇ କହିବାକୁ ଯାଇ ଦେଖିଲେ ଆଉ ରକ୍ଷା ନାହିଁ । ଶେଷରେ ମାଗଅପା ଓ ଦେବେନ୍ଦ୍ରବାବୁ ଆସି ସମାଧାନ କରନ୍ତି ଯେ ମିନୁ ଭାଉଜ ଆସିବାରେ ମୋର ହାତ ନାହିଁ କି ଦୋଷ ନାହିଁ । ଏଥର ଝିଙ୍କ ଉଠିଲା ବାହାଘର ବିଧିବିଧାନରେ ହେବ । ମାଗଅପା, ଅନ୍ନପୂର୍ଣ୍ଣାଦିଦି ଏମାନେ ଅନେକ କଷ୍ଟରେ ମା'ଙ୍କୁ ବୁଝାଇପାରିଲେ ଯେ ମହାପ୍ରସାଦ ନିର୍ବନ୍ଧ, ସ୍ୱୀକାର ଆଦି ଓଡ଼ିଶାରେ ଚଳେ ସିନା । ଅନ୍ୟଠି ଚଳେ ନାହିଁ । ମୋ ମା ଓ ମାଈଁ ଏ କଥାରେ ପାଟି ଫିଟାଉନଥାନ୍ତି ।

ବେଙ୍ଗଙ୍କ ବାହାଘର ବେଳେ ବିଧିବିଧାନ ଦେଖେଇ ବତେଇଦେଲେ—ମୃଣାବୋଉ ଅପା ସବୁ କଲେ । ମୃଣାବୋଉ ଅପା ଉପରେ ବିଧିବିଧାନ ପାଳନ ବିଷୟରେ ମା'ଙ୍କର ଷୋଳଅଣା ବିଶ୍ୱାସ । ତେଣୁ କଥା ହେଲା ମୃଣାବୋଉ ଅପା ନିଶ୍ଚୟ ଆସିବେ । ବିଧିବିଧାନ ବିଷୟରେ ମୋ ମା ଓ ମାଈଁ ଉପରେ ମା'ଙ୍କର ବିଶ୍ୱାସ ନଥାଏ । କାରଣ ଉପ ବାହାଘରକୁ ସତ୍ୟଭାମାପୁର ଯାଇ ମା ଦେଖିଲେ ବାଉରଣୀ ପରିବା ବନାଉଛନ୍ତି । କଥାକଥାକେ ମୋତେ ଖୁଣ୍ଟା ଶୁଣିବାକୁ ପଡ଼େ ଯେ ମୋ ମା ଓ ମାଈଁ ଅଘୋଷି, ତାଙ୍କର ବାରଣ ଗ୍ରାହଣ କିଛି ନାହିଁ—ବାଉରଣୀ ହାତରେ ଖାଉଛନ୍ତି । ଅନେକ କଷ୍ଟରେ ମାଗଅପା ବୁଝାଇଲେ ଯେ ଜାଇ ଅନୁକୂଳ ପ୍ରଭୃତି ଅଲଗା ଅଲଗା ନକରି ଏକା ଦିନକେ ସବୁ କରିଯାଏ । କାର୍ତ୍ତିକ

ନନ୍ଦଙ୍କ ବୋଉ ପ୍ରଭୃତିଙ୍କ ପରାମର୍ଶ ନେଇ ମା ବୁଝିଲେ ଯେ ମଙ୍ଗଳପାକ ପ୍ରଭୃତି ଏକାଦିନେ କଲେ ଦୋଷ ନାହିଁ ।

ଟୁକି ବାହାଘର ପୂର୍ବରୁ ବଡ଼ ଖୁଡ଼ୀଶାଶୁଙ୍କ ପୁଅ ଗୋବିନ୍ଦଙ୍କ ବାହାଘର ହେଲା । ଟୁକି ବାହାଘର ମୁଣ୍ଡ ଉପରେ । ସେମାନଙ୍କ ମନ ନେବାକୁ 'ହେବ ବୋଲି ବାହାଘରକୁ ମୁଁ ଗଲି । ବଡ଼ ଖୁଡ଼ୀ ଭାରି ଖୁସି ହେଲେ । ମୋତେ ଖୁବ୍ ସମ୍ମାନ ଦେଲେ, ଅର୍ଥାତ୍ ମୋ ହାତରେ ସବୁ କରାଇଲେ । ସେ ପଦପଦକେ କହୁଥାନ୍ତି କଂଗ୍ରେସରେ ତ ଜାତି ବାରଣ ନାହିଁ—ମୁଁ ତ ଖିରସ୍ତାନ ଘର ଝିଅ ଇତ୍ୟାଦି । ସେଠୁ କେତେ ଜଣଙ୍କୁ ଆଣିବା ପାଇଁ ତିନି ଚାରି ଦିନ ରହିଲି । ମୃକ୍ତାବୋଉ ଅପା ପୂର୍ବରୁ ମା'ଙ୍କଠାରୁ ନାନା ପ୍ରକାର ସାହାଯ୍ୟ ପାଇଥିବାରୁ ସେ, କ୍ଷେତ୍ରମଣି ଅପା ଓ ଆଉ ଦୁଇ ତିନି ଜଣ ଆସିଲେ । ଗୋଟିଏ ଭ୍ୟାନ୍‌ଟେନ୍ ମୋଟର ବସ୍ ରିଜର୍ଭ କରାଗଲା । ସେମାନେ ରାତିରେ ପହଞ୍ଚିଲେ । ଗାଁରୁ ପୁରୋହିତ, ବାରିକ ଆସିଥାନ୍ତି । ତାଙ୍କ କଥାରେ କାମ ହେଉଥାଏ । ମାଗଅପା ମଙ୍ଗଳ ହାଣ୍ଡି ବସାଇବାକୁ ଆସିଲେ—ବର ବିଦା ପରେ ସେ ଗଲେ । ବେଙ୍ଗ କଟକରେ ଥାଇ ମଧ୍ୟ ଆସିଲେ ନାହିଁ । ବରଯାତ୍ରୀରେ ଗଲେ ମୃତ୍ୟୁ ଭାଇ, ଉପ, ଟୁଙ୍ଗୁ, ଭଗୀରଥି ମହାପାତ୍ରଙ୍କ ବାପା ଦୁର୍ଗାଚରଣ ମହାପାତ୍ର । (ସେ ଆମ ଦେଢ଼ଶୁରଙ୍କର ବଡ଼ ଜ୍ୱାଇଁ ଓ ମୋ ଶାଶୂ ଶ୍ୱଶୁର ତାଙ୍କୁ ଭାରି ଆଦର ସମ୍ମାନ କରୁଥିଲେ) । ଦେଢ଼ଶାଶୁରଙ୍କ ପୁଅ ମଧୁସୂଦନ ଚୌଧୁରୀ, କାଳିଚରଣ ମଙ୍ଗରାଜ (ମୃକ୍ତାବୋଉ ଅପାଙ୍କ ସ୍ୱାମୀ) ପୁରୋହିତ ଓ ବାରିକ, ବର,ସନ୍ଧ୍ୟା ପରେ ପୁରୀ ଏକ୍ସପ୍ରେସ୍‌ରେ କଲିକତା ଯିବା ପାଇଁ ବାହାରିଗଲେ । ତାହା ପରେ ଖୋରସବାଲା ମତ ଦେଲେ ଯେ ବୋହୂ ତ ଘରକୁ ଆସିବ, ସେମାନଙ୍କର ଆଉ ରହିବାର ପ୍ରୟୋଜନ କଣ ? ସେମାନେ ତ ସର୍ଭିସ ବସ୍‌ରେ ଯିବେ ନାହିଁ ଖଣ୍ଡେ ଟ୍ରେଟ ଗାଡ଼ି ରିଜର୍ଭ କରି ତାଙ୍କୁ ପଠାଗଲା । ମା ଭୀଷଣ ବିରକ୍ତ ହେଲେ—କିନ୍ତୁ କହିବେ କାହାକୁ କ'ଣ ? ସେମାନେ ଚାଲିଯିବାରୁ ଘର ଶୂନଶାନ୍ ।

ବାହାଘର ପରଦିନ ମାଡ୍ରାଜ ମେଲ୍‌ରେ ବରକନ୍ୟା ଆସିବେ । ସେତେବେଳେ ରାତି ଏଗାରଟାରୁ ବାରଟା ଭିତରେ କଲିକତାଆଡ଼ୁ ମାଡ୍ରାଜ ମେଲ୍ ଆସୁଥାଏ । ପୁଅ ବୋହୂ ଆସିବାବେଳେ ଗରିବ ଘର, ବଡଲୋକ ଘର, ସହର ମଫସଲ, ସବୁଠି ଲୋକ ଭରତି ହୋଇଯାନ୍ତି । ବାହାଘରକୁ ଆସିଥିବା ବନ୍ଧୁ କୁଟୁମ୍ବ ତା ଛଡ଼ା ବାହାର ଲୋକ ସମସ୍ତେ ଥାନ୍ତି । ମାତ୍ର ଏ ବୋହୂ ଆସିବା ବେଳକୁ କେହି କୁଆଡ଼େ ନାହାନ୍ତି । ମୋତେ ତ ଭାରି ଖରାପ ଲାଗୁଥାଏ । ମାଗଅପା ବି ବୋହୂ ଆସିବା ବେଳକୁ ଆସିଲେ ନାହିଁ । ମୋ ଭାଉଜ-ମାନଙ୍କୁ ଆଣିବାକୁ ମା' ଇଚ୍ଛା କଲେ ନାହିଁ । ବଡ଼ମାଇଁ ସେତେବେଳେ ପୁରୀରେ ଥାନ୍ତି । ଅପା କଟକରେ ନ ଥିଲା । ମା ଜାଣନ୍ତି ଟୁକିଙ୍କର ଏ ଅସବର୍ଣ୍ଣ ବିଭାଘର କଥାରେ ମୋ ମାମୁ ଓ ମା ବିରୋଧ କରିବେ ନାହିଁ । ମାମୁ ଓ ମା ମତ ପ୍ରକାଶ କରିଥିଲେ ଯେ ପୁଅ ଯେତେବେଳେ ଜୀବନସାଥୀ ଚୟନ କରିଛି, ସେଥିରେ ବାଧା ଦେବାରେ କ'ଣ ଅଛି ? ମା ଯେତେବେଳେ

ଜାଣିଲେ ଏ ବଣ୍ଡଘରରେ ମାମୁଙ୍କର ଆପତ୍ତି ନାହିଁ, ସେ ଖୁସି ବରଞ୍ଚ ହେଲେ । ମାତ୍ର ବରଯାତ୍ରୀ ହୋଇ ଯିବା ପାଇଁ ମା'ଙ୍କ ଜୁଆଁଇମାନେ ଯେତେବେଳେ କେହି ବାହାରିଲେ ନାହିଁ, ମୋ ଭାଇମାନେ ହିଁ ଆଗ ବାହାରିଲେ । ସେତେବେଳେ ମା'ଙ୍କ ମନ ଟିକିଏ ନରମ ହେଲା । ତଥାପି ବୋହୂ ଆସିବାବେଳକୁ ମୋ ମାମୁଘର କାହାରିକୁ ଡାକିଲେ ନାହିଁ ।

ଏ ସବୁ ଭିତରେ ମା ଇଚ୍ଛା ବ୍ୟକ୍ତ କରୁଥାନ୍ତି ଯେ ବୋହୂ ଆସିବାବେଳେ ଶିଉଳଲେଖା, ଦେଇପିଣ୍ଡି ଓଳଗି ଆଦି ସବୁ ବିଧିବିଧାନ ହେବ, ଦହି ହାଣ୍ଡିରେ ମୁଦ ପଡ଼ିବ ଇତ୍ୟାଦି । ବୋହୂ ଯେ ଆସିବ ସେ ତ ଓଡ଼ିଆଘର ଝିଅ ନୁହେଁ—ସେ ତ ଏଗୁଡ଼ାକ କେବେ ଦେଖି ନଥିବ ! ସେ ଯାଇ ଦେଇପିଣ୍ଡି ପାଖରେ ଶିଉଳ ଲେଖିବ, ଦହି ହାଣ୍ଡିରୁ ମୁଦ କାଢ଼ିବ ! କଥା ହୋଇଥାଏ ଯେ ଭୁବନାନନ୍ଦ ଦାସଙ୍କ ସ୍ତ୍ରୀ ରୁକ୍ମିଣୀ ବୋହୂ ଆସିବା ବେଳକୁ ଆସିବେ । ଖେଳସବାଲ ତ ସ୍ଥିରଯାଇଛନ୍ତି—ମୋତେ ଏକୁଟିଆ ଅସହାୟ ବୋଧହେଲା । ମୁଁ ଯଦି ସେତେବେଳେ ବର୍ତ୍ତମାନ ପରି ବାହାରେ ବୁଲାବୁଲି କରୁଥାନ୍ତି ତେବେ ତ କେତେ ଲୋକ ଆଣି ଜୁଟାଇ ଦେଇ ଥାଆନ୍ତି । ମାତ୍ର ସେତେବେଳେ ତ କୁଆଡ଼େ ବାହାରକୁ ଯାଉନଥିଲି ! ଯାହା ବା ଚେଷ୍ଟା କରଥାନ୍ତି ଆଉ ପାଞ୍ଚଦଶଙ୍କୁ ଡାକିବାପାଇଁ ମା ଚାହୁଁ ନଥାନ୍ତି । ଆମର ପରିଚିତ ବନ୍ଧୁବାନ୍ଧବ କେତେ ଲୋକ କଟକରେ ରହୁଥିଲେ । ଆମର ଯିବାଆସିବା ମଧ୍ୟ ଥିଲା । ବାହାଘରର କିଏ ସ୍ୱପକ୍ଷ ଓ କିଏ ବିପକ୍ଷ ତାହା ଜାଣିବା ମୁସ୍କିଲ୍ । ମୁଁ ଅସହାୟ ଅବସ୍ଥାରେ ପଡ଼ି ରୁକ୍ମିଣୀଙ୍କ କଥା ଭାବିଲି । ତାଙ୍କୁ ସାଙ୍ଗରେ ନେଇ ଜଣେ ଭୁବନାନନ୍ଦବାବୁ ଆସି ପହଞ୍ଚିଲେ । ରୁକ୍ମିଣୀ ନିରଞ୍ଜନବାବୁଙ୍କ (ଗଞ୍ଜାମର ସେତେବେଳର ବିଶିଷ୍ଟ କଂଗ୍ରେସ କର୍ମୀ ନିରଞ୍ଜନ ପଟ୍ଟନାୟକ) ଭଉଣୀ ହୋଇଥିବାରୁ ମା'ଙ୍କର ଝିଅ ଭଳିଆ ହେଉଥିଲେ । ରୁକ୍ମିଣୀ ଆସି କହିଲେ—ମୁଁ ନଣନ୍ଦପୁଟୁଲୀ ଶାଢ଼ୀ ନେବାକୁ ଆସିଛି । ତାଙ୍କୁ ଦେଖି ମୋ ମନରେ ସାହସ ହେଲା । ସେ କଥାବାର୍ତ୍ତା ଛଳରେ ମା'ଙ୍କୁ ବୁଝାଇ ଦେଲେ ଯେ ସ୍ତ୍ରୀ-ଆଚାର କେତେଗୁଡ଼ାଏ ବାଦ୍ ଦେବାକୁ ହେବ । ବରକନ୍ୟା ଆସିବା ପରେ ରୁକ୍ମିଣୀ ଘରକୁ ଗଲେ । ଘରେ ଆମେ ଯେତିକ ସେତିକ । ବୋହୂ ଆସିଲା, ଲୋକ ଗହଳି ନାହିଁ । ଅଭ୍ୟାସ ଦୋଷ ମନକୁ ଖରାପ କରୁଥାଏ ।

ବାହାଘର ପର୍ଯ୍ୟାୟ ତ ସରିଲା—ତା'ପର କଥା ଆହୁରି ମୁସ୍କିଲ୍ । ମା ଚାହିଁଲେ—ବୋହୂ ଆମ ଢଙ୍ଗରେ ଚଳିବ । ଆମ ଖାଇବା ସେ ପସନ୍ଦ କରିବ । ମାଛ ମାଂସ ଖିଆ ତ ପ୍ରାୟ ଦଶ ବର୍ଷ ପୂର୍ବରୁ ବନ୍ଦ ହୋଇ ସାରିଥାଏ । ନିରାମିଷ ଖାଇବାରେ ମଧ୍ୟ ତାଙ୍କ ଖାଇବା ଆମ ଖାଇବାରେ ଅନେକ ପ୍ରଭେଦ ଅଛି । ସେସବୁ ଯାହା ଚାଲିଥାଏ । ମାତ୍ର ମିନୁର ଛୁଆଁ ରନ୍ଧା ଜିନିଷ ମୁଁ ଓ ମା ଖାଇଲୁ ନାହିଁ । ଏହା ମୋ ପାଇଁ ବଡ଼ ସମସ୍ୟା ହେଲା । ମିନୁ ସେତେବେଳେ ସେ କଥାକୁ ସମ୍ଭାଳି ନେଲେ ମଧ୍ୟ ତା ମନରେ ଗୋଟିଏ ଗଣ୍ଠି ହୋଇ ରହିଲା । ମା'ଙ୍କର ମୋ ଉପରେ ତୀକ୍ଷ୍ଣ ଦୃଷ୍ଟି ବରାବର ରହିଥାଏ—କାଳେ ମୁଁ ମିନୁ ଛୁଆଁ ଖାଇଦେବି ।

# ୨୦ । ସାଧାରଣ ଜୀବନରେ ପ୍ରବେଶ

୧୯୨୧ ରୁ ମଝିରେ ମଝିରେ ଆମେ ଅଲକାଶ୍ରମ ଯାଉଥିଲୁ । ୧୯୩୦ ଆନ୍ଦୋଳନର ତିନି ବର୍ଷ ପୂର୍ବରୁ ଆମେ ଦୁହେଁ ମନେ ମନେ ନିଜକୁ ପ୍ରସ୍ତୁତ କରିଲୁ । ମୋ ମନରେ ସ୍ୱତଃ ଏ ଭାବନା ହେଲା ଯେ, ଜୀବନର ପରିବର୍ତ୍ତନ ଦରକାର । ଆମେ ଯେଉଁ ବାଟ ଧରି ଜୀବନ ଚଳାଇବା ସ୍ଥିର କଲୁ ସେଥିରେ ସନ୍ତାନ ଆଦୌ ନ ଥିଲେ ବି କ୍ଷତି ନାହିଁ । ଯଦି ଅଛନ୍ତି ତାଙ୍କ ସଂଖ୍ୟା ଦୁଇରୁ ଅଧିକ ହେବା ଯେ ଆମ ଜୀବନ ପାଇଁ ପ୍ରତିବନ୍ଧକ ହେବ, ତାହା କ୍ରମେ ଗୋପବାବୁ ବୁଝିଲେ । ଆମେ ଅଲକାଶ୍ରମରେ କିଛିଦିନ ରହି କଟକ ଫେରିଯାଉ । ପିଲାଙ୍କ ପଢ଼ିବା ପାଇଁ ଶିକ୍ଷକ କାହାକୁ ପାଇବୁ ? ସେତେବେଳେ ମଫସଲରେ ପାଠ ପଢ଼ାଇବା ଭଳି ଲୋକଙ୍କର ହାଉଯାଉ ନଥିଲା । ତେଣୁ ଯେତେଦିନ ଅଲକାଶ୍ରମରେ ରହୁଥିଲୁ ପିଲା ନିଜେ ନିଜେ ଯାହା ପଢ଼ୁଥିଲେ ।

ଜଗତ୍‌ସିଂହପୁରଠାରୁ ପାଞ୍ଚ ମାଇଲ ଦୂରରେ ଅଣିଖିଆରେ ଟୃକ ଚାଷ କାମ ଆରମ୍ଭ କରିଥିଲେ—ଉଦ୍ଦେଶ୍ୟ ଚାଷ କରି ଲୋକସମ୍ପର୍କ ସ୍ଥାପନ କରିବେ । ଚାଷ କାମ ସଙ୍ଗେ ସଙ୍ଗେ ଗ୍ରାମ ସଙ୍ଗଠନ କରିବା ଉଦ୍ଦେଶ୍ୟରେ ପାଖ ଗାଁମାନଙ୍କରେ ସମ୍ପର୍କ ବଢ଼ାଇଲେ । ରାତିରେ ଗାଁର ଯୁବକମାନଙ୍କୁ ପଢ଼ାଇଲେ । ଅଣିଖିଆଠାରୁ କିଛି ଦୂରରେ ବାଗଲପୁର ଗାଁ । ବାଗଲପୁର ଯୁବକମାନଙ୍କ ଭିତରେ ଉତ୍ସାହ ଥିବାର ଅନୁଭବ କରି ସେମାନଙ୍କ ସହିତ ସମ୍ପର୍କ ବଢ଼େଇଲେ । ଟୃକଙ୍କର ବାହାଘର ୧୯୨୭ରେ ହେଲା । ବାହାଘର ହେବାର କିଛିଦିନ ପରେ ଟୃକ ଓ ମିନୁ ଅଣିଖିଆକୁ ଗଲେ । ସେଠାରେ ଆଖୁ, ଆଳୁ, ଚିନାବାଦାମ ପ୍ରଭୃତି ଚାଷ କଲେ । ଅଣିଖିଆରେ ଚାଷ କାମ ଚାଲିଥିବା ବେଳେ ତାଙ୍କର ପ୍ରଥମ ଝିଅ ବୁବୁର ଜନ୍ମ ୧୯୨୮ରେ କଲିକତାଠାରେ ହେଲା । ବୁବୁକୁ ନେଇ ଟୃକ ଓ ମିନୁ କଟକ ଆସିଲେ । ନୂଆ ଧରଣରେ ପିଲା ପାଳିବା ଦେଖି ସମସ୍ତଙ୍କୁ ଅଡ଼ୁଆ ଲାଗିଲା । ସବୁଠାରୁ ନୂଆ କଥା ହେଲା ପିଲା ଓ ମା ଅଲଗା ଅଲଗା ଶୋଇବେ—ମା କୋଳରେ ପିଲା ଶୋଇବ ନାହିଁ । ଏକଥା ଆମକୁ ନୂଆ ନୂଆ ଲାଗୁଥାଏ । ମୁଁ ସେଥିପାଇଁ ଅସନ୍ତୋଷ ପ୍ରକାଶ କରେ ନାହିଁ । ଶାଶୂ କିନ୍ତୁ କିଛିଦିନ ଅସନ୍ତୋଷ ପ୍ରକାଶ କରିଲେ, ପରେ ଦେହସୁହା ହୋଇଗଲା ।

୧୯୨୮ ଜୁନ ମାସରେ ଦାସେ ଆପଣଙ୍କର ପରଲୋକ ପ୍ରାପ୍ତି ହେଲା । ଏହା କର୍ମୀମାନଙ୍କ ପାଇଁ ଗୋଟିଏ ଧକ୍‌କା ହେଲା । ଏ ଧକ୍‌କା ଓଡ଼ିଶାର କର୍ମୀମାନଙ୍କୁ ବାଧିଲା । ପଣ୍ଡିତ ଗୋପବନ୍ଧୁ ଦାସଙ୍କ ସ୍ୱର୍ଗପ୍ରାପ୍ତିର କେତେ ମାସପରେ ପଞ୍ଜାବକେଶରୀ ଲାଲା ଲଜପତ୍ ରାୟଙ୍କ ମୃତ୍ୟୁ ସାରା ଭାରତରେ ବିଷାଦର ଛାୟା ପକେଇଦେଲା । କାଳର ଗତି ଦୁଃଖ ସୁଖ କିଛି ରଖିଦିଏ ନାହିଁ । ଦାସେ ଆପଣଙ୍କ ସାଙ୍ଗରେତ ମୋର କିଛି ହେଲେ ସମ୍ପର୍କ ଥିଲା । ସେ ସ୍ୱରାଜ୍ୟ ଆଶ୍ରମରେ ସଭା କରୁଥିଲେ ଇତ୍ୟାଦି । ତାଙ୍କ ଭାଷଣ ମଧ୍ୟ ଶୁଣିଥିଲି । ତେଣୁ ତାଙ୍କର

ମୃତ୍ୟୁରେ ମନରେ ଯେଉଁ ଦୁଃଖ ହେଲା ତାହା ସ୍ୱାଭାବିକ । କିନ୍ତୁ ଲାଲାଜୀଙ୍କ ମୃତ୍ୟୁ ଖବର ପାଇ ମୋ ମନରେ ଯେ କାହିଁକି ଦୁଃଖ ହେଲା ତାହାର କାରଣ ମୁଁ ଏହା ବୁଝିଲି ଯେ ଲାଲାଜୀଙ୍କ ଭଳି ନେତାମାନଙ୍କ ମନରେ ସାଧାରଣ ଲୋକଙ୍କ ପ୍ରତି ଯେଉଁ ସହାନୁଭୂତି ଥାଏ ତାହାର ଫଳ ସ୍ୱରୂପ ସାଧାରଣ ଲୋକଙ୍କ ମନରେ ତାଙ୍କ ପ୍ରତି ଭକ୍ତି ଶ୍ରଦ୍ଧା ଜନ୍ମିଥାଏ ।

ଏହି ସମୟରେ ମହିଳାମାନଙ୍କ ସଂଗଠନ କାମ ଶ୍ରୀ ଶୈଳବାଳା ଦାସ ଆରମ୍ଭ କରିଲେ । ନିଖିଳ ଭାରତ ଓମେନସ୍ କନ୍‌ଫରେନ୍‌ସର ଶାଖା ପ୍ରତିଷ୍ଠା କରିବା ପାଇଁ ସେ ଉଦ୍ୟମ ଆରମ୍ଭ କରିଲେ । ରେଭେନ୍‌ସା ବାଳିକା ବିଦ୍ୟାଳୟରେ ସଭା ଅନୁଷ୍ଠିତ ହେଲା । ମିସ୍ ନିର୍ମଳା ନାୟକ ସେତେବେଳେ ବାଳିକା ବିଦ୍ୟାଳୟର ପ୍ରଧାନ ଶିକ୍ଷୟିତ୍ରୀ ଥାଆନ୍ତି । ସର୍ବଶ୍ରୀ ପ୍ରତିଭା କର ଓ ସୁପ୍ରଭା କର ଦୁଇ ଭଉଣୀ, ସୁଖଲତା ରାଓ (ଡାକ୍ତର ଜୟନ୍ତ ରାଓଙ୍କ ପତ୍ନୀ) ସୁଧାଂଶୁବାଳା ହାଜରା, ସରୋଜିନୀ ଚୌଧୁରୀ, ସୁନ୍ଦରମଣି ପଣ୍ଡା, ନିର୍ମଳା ଦେବୀ, ହେମବତୀ ଦେବୀ ଯୋଗ ଦେଇଥିଲେ । ଶୈଳବାଳା ଦାସଙ୍କ ଉଦ୍ୟମରେ ହେଉଥିବା ମହିଳା ସଙ୍ଗଠନରେ ମିସେସ୍ ମ୍ୟାକ୍‌ଫରସନ୍‌ଙ୍କୁ ସଭାନେତ୍ରୀ କରାଯିବାର ପ୍ରସ୍ତାବ ଶୈଳବାଳା ଦାସ କରିବାରୁ ରୁକ୍ମଣୀ ଦେବୀ (ଭୁବନାନନ୍ଦ ଦାସଙ୍କ ପତ୍ନୀ) ଆପତ୍ତି କରିଲେ ଯେ ଜଣେ ଇଂରେଜ ମହିଳା କାହିଁକି ସଭାପତି ହେବ ? ଏହି ବାଦାନୁବାଦ ଉପରେ ଇଂରେଜ ମହିଳାଙ୍କର ସଭାପତି ହେବା ବନ୍ଦହେଲା । ତାଙ୍କ ବଦଳରେ ଶ୍ରୀ ଅବନ୍ତୀ ଦେବୀ (ଭକ୍ତକବି ମଧୁସୂଦନ ରାଓଙ୍କ ଝିଅ) ସଭାପତିତ୍ୱ କଲେ । ଏହି ସମୟରେ କଟକରେ ଆନନ୍ଦବଜାର ହେବାର ପ୍ରସ୍ତାବ ହେଲା । ଆନନ୍ଦବଜାର ହେବାର ପ୍ରସ୍ତାବ ହେଲାବେଳେ ସ୍ଥିର ହେଲା ଯେ ଆନନ୍ଦବଜାରରେ କେବଳ ମହିଳାମାନେ ଜିନିଷ ବିକ୍ରି କରିବେ ଏବଂ କେବଳ ମହିଳାମାନେ କିଣିବେ । ସେହି ଆନନ୍ଦବଜାରରୁ ଲବ୍ଧ ଧନ କୌଣସି ଲୋକ-ହିତକର କାମରେ ଖରଚ ହେବ । ଆମେ ସମସ୍ତେ ନିଜ ନିଜ ସୁବିଧା ଓ ଶକ୍ତି ଅନୁସାରେ ଘରେ ଜିନିଷ ତିଆରି କରି ଆନନ୍ଦବଜାରରେ ବିକ୍ରୟ କରୁଥିଲୁ । ସେ ଆନନ୍ଦବଜାରରେ ବିକ୍ରୀ କରିବା ପାଇଁ ମୁଁ ପାଣିକଖାରୁ ମୋରବା, ଡାଲ୍‌ରୁଟି, ଆଖୁବଣ୍ଡ ଓ ପୋଦନା ଚଟଣୀ କରି ବିକ୍ରି କରିବାକୁ ନେଇଥିଲି । ଦେଖାଗଲା, ପୋଦନା ଚଟଣୀର ଆଦର ସବୁଠାରୁ ବେଶି ହେଲା । ସେ ଚଟଣୀ ପୋଦନା ପତ୍ର, ଧନିଆ ପତ୍ର, ଆମ୍ବିଳିତି ପତ୍ର ମିଶା ହୋଇ, ତେନ୍ତୁଳି ଅମ୍ବୁଲ ଦେଇ ବାଟି ତାକୁ ଭୁରସଙ୍ଗ ପତ୍ର ଛୁଙ୍କ ଦେଇ ସେଥିରେ ଟଭା ରସ ଓ କନ୍ଦ ମିଶାହୋଇଥିଲା ।

୧୯୨୮ ଡିସେମ୍ବର ମାସରେ କଂଗ୍ରେସର ବାର୍ଷିକ ଅଧିବେଶନରେ ଯୋଗଦେବାକୁ କଲିକତା ଗଲି । ପୂର୍ବରୁ ଗୟା କଂଗ୍ରେସରେ ଯୋଗ ଦେଇଥିଲି । ମାତ୍ର ଏଥରକ ପରି ବ୍ୟବସ୍ଥା ଓ ଆଡ଼ମ୍ବର ଗୟା କଂଗ୍ରେସରେ ନଥିଲା । ସୁଭାଷ ବୋଷ ପୋଷାକ ପିନ୍ଧି, ଘୋଡ଼ାରେ ଚଢ଼ି କଂଗ୍ରେସ ଛାଉଣୀରେ ବୁଲି ତତ୍ତ୍ୱାବଧାନ କରୁଥାନ୍ତି । ପାଇଖାନା ପ୍ରଭୃତିର ବ୍ୟବସ୍ଥା ଭଲହୋଇଥିଲା । ଗୟା କଂଗ୍ରେସରେ ଚିତ୍ତରଞ୍ଜନ ଦାସଙ୍କୁ ଦେଖିଥିଲି

ଏବଂ ତାଙ୍କ ପତ୍ନୀ ବାସନ୍ତୀ ଦେବୀଙ୍କ ସହିତ ଆଳାପ ପରିଚୟ ହୋଇଥିଲା । କଲିକତା କଂଗ୍ରେସରେ ଚିତ୍ତରଞ୍ଜନ ଦାସ ନ ଥିବା କଥା ଅନେକଙ୍କୁ ବିମର୍ଷ କରିଥିଲା । ଓଡ଼ିଶାରୁ କେତେ ଜଣ ମହିଳା ପ୍ରତିନିଧି ଆସିଥିଲେ । ତା ଭିତରେ ସର୍ବଶ୍ରୀ ଜାହ୍ନବୀ ଦେବୀ, କୋକିଳ ଦେବୀ, ସରଳା ଦେବୀ, ସରୋଜିନୀ ଚୌଧୁରୀ, ରମାମଣି ପ୍ରଭୃତି ପ୍ରଧାନ ଥିଲେ । ସେଠାରେ ମହିଳାମାନଙ୍କର ସଭା ହେଲା । କେଲି ସେନଗୁପ୍ତାଙ୍କୁ ଦେଖିବାର ସୁଯୋଗ ପାଇଲି । କଂଗ୍ରେସରେ ଯୋଗ ଦେଇଥିବା କେତେକ ଭଦ୍ର ମହିଳାଙ୍କ ସାଙ୍ଗରେ ଆଳାପ ପରିଚୟ ହେଲା । ତାଙ୍କ ଭିତରୁ କେତେଜଣ ସଙ୍ଗଠନ କାମ କିଛି କିଛି କରୁଥିବାର ଶୁଣିଲି । ମାତ୍ର କଂଗ୍ରେସର କାମ କରୁଥିବା କଥା ମାତ୍ର ଦୁଇ ତିନି ଜଣଙ୍କ ଭିତରୁ ଶୁଣିଲି ଏବଂ ସେହି ଦୁଇ ତିନି ଜଣ ମହିଳା ଖଦୀ ପିନ୍ଧିଥିଲେ ।

କଲିକତା କଂଗ୍ରେସରୁ ଫେରି ସାକ୍ଷୀଗୋପାଳ କାଦୁଆ ଆଶ୍ରମକୁ ଗଲି । କାଦୁଆ ଆଶ୍ରମରେ ସେତେବେଳେ ସର୍ବଶ୍ରୀ ସୁନାମଣି ଦେବୀ, ଶ୍ରୀମତୀ ନାନୀ ଓ ଅନ୍ନପୂର୍ଣ୍ଣା ସାହୁ ରହୁଥିଲେ । ସେମାନଙ୍କ ସହିତ ଆଳାପ ହେଲା । କିଛିଦିନ ପରେ ସୁନାମଣି ଦେବୀ ଓ ଅନ୍ନପୂର୍ଣ୍ଣା ସାହୁ ସାବରମତୀ ଆଶ୍ରମକୁ ଗଲେ ।

କଟକ ଗ୍ରୁଡ଼ି ଆମର ଅଳକାଶ୍ରମରେ ରହିବା କଥା ହେଲା । ଆମ ସାଙ୍ଗରେ ଶାଶୁ ମଧ୍ୟ ଯିବେ । ସେଠାରେ ମାଟିଘର । ସେ କପରି ସେ ଘରେ ରହିବେ, ଚଳିବେ ତାହା ହେଲା ପ୍ରଶ୍ନ । ଶାଶୁ ଏସବୁ ଅସୁବିଧା କଥା ଶୁଣି କହିଲେ, "ମୁଁ ତ କଟକ ଆସିବା ପୂର୍ବରୁ ମାଟିଘରେ ଚଳୁଥିଲି ଏବେ ଚଳିବାନାହିଁ କାହିଁକି ? ମୁଁ ତମମାନଙ୍କ ସାଙ୍ଗରେ ଯାଇ ଅଳକାଶ୍ରମରେ ରହିବ ।" ଅଳକାଶ୍ରମରେ ଖଦୀ ସଂଘ ପକ୍ଷରୁ ଖଦୀକାମ ହେଉଥିଲା । ସର୍ବଶ୍ରୀ ଭିକାରୀ ଚରଣ ପଟ୍ଟନାୟକ, କୃଷ୍ଣ ବଲ୍ଲଭ ଘୋଷ ପ୍ରଭୃତି ସେହି ସଂଘର ସଭ୍ୟ ଥିଲେ । ବିଶ୍ୱନାଥ ପରିଡ଼ା ଓ ଅକ୍ରୂର ଦାସ ଏମାନେ କର୍ମୀ ଭାବରେ କାମ କରୁଥିଲେ । ପାଖ ଆଖ ଗାଁର ଲୋକମାନେ ହାଟପାଳି ଦିନ ସୂତା ଆଣନ୍ତି । ସୂତା ଦେଇ କଟା ମଜୁରି ଓ ତୁଳା ନିଅନ୍ତି । ସେ ସୂତାକୁ ତନ୍ତୀମାନେ ବୁଣି ଲୁଗା ଦେଇଯାଆନ୍ତି ।

ସେତିକିବେଳେ କଂଗ୍ରେସ ମେମ୍ବର ସଂଗ୍ରହ କରିବା କଥା ଉଠିଲା । ମୁଁ କଂଗ୍ରେସ ସଭ୍ୟ ସଂଗ୍ରହ କାମରେ ମନ ଦେଲି । ସେତେବେଳେ କଂଗ୍ରେସ ମେମ୍ବର ସଂଗ୍ରହ କରିବା କାମ କଠିନ ଥିଲା । ଲୋକେ କଂଗ୍ରେସ ମେମ୍ବର ହେବାକୁ ହେଲେ ଚାରିଅଣା ପଇସା ଦେବାକୁ ହେବ । ଲୋକେ ସେତେବେଳେ ଚାରିଅଣା ପଇସା ଦେବାକୁ ମଧ୍ୟ କୁଣ୍ଠିତ ହେଉଥିଲେ । ମୁଁ ଗାଁର ସ୍ତ୍ରୀଲୋକମାନଙ୍କୁ ମେମ୍ବର କରୁଥିଲି ଏବଂ ବହୁତ ପରିଶ୍ରମରେ ଅଳ୍ପ ସଂଖ୍ୟକ ମେମ୍ବର ହେଉଥିଲେ ।

ଆମେ ଅଳକାଶ୍ରମରେ ଥିଲାବେଳେ ସେଠାରେ ସେଟଲ୍‌ମେଣ୍ଟ କ୍ୟାମ୍ପ ପଡ଼ିଥିଲା । ଅଳକାଶ୍ରମ ଯେଉଁ ତୋଟା ଭିତରେ ଥିଲା ସେ ତୋଟା ବଡ଼ ଥିବାରୁ ସେଠାରେ ସେଟଲ୍‌ମେଣ୍ଟ କ୍ୟାମ୍ପ ପଡ଼ିଥିଲା । ସେହି କ୍ୟାମ୍ପରେ ଜଣେ ବିହାରୀ ଭଦ୍ରଲୋକ ଅଫିସର

ଥିଲେ । ତାଙ୍କ ସ୍ତ୍ରୀ ମଧ୍ୟ ସେହି କ୍ୟାମ୍ପରେ ରହୁଥିଲେ । ସେହି ଅଫିସରଙ୍କ ନାମ ମହେନ୍ଦ୍ର ସିଂହ । ବିହାରରେ ପର୍ଦ୍ଦାପ୍ରଥା ଥିବାରୁ ମହେନ୍ଦ୍ର ସିଂହଙ୍କ ସ୍ତ୍ରୀ ବାହାରକୁ ଯାଉନଥିଲେ । ସନ୍ଧ୍ୟାରେ ଲୋକ ଯିବାଆସିବା ବନ୍ଦହେଲେ ସେ ଅଲକାଶ୍ରମକୁ ଆସି ଆମ ସହିତ କଥାବାର୍ତ୍ତା କରୁଥିଲେ । ମହେନ୍ଦ୍ର ସିଂହଙ୍କ ପାଖରେ "ଇଣ୍ଡିଆ ଇନ୍ ବଣ୍ଡେଜ୍" ନାମରେ ଖଣ୍ଡେ ବହି ଥିଲା । ସେ ବହିକୁ ସରକାର ବାଜ୍ୟାପ୍ତ କରିଥିଲେ । ପୁଲିସ ଖବର ପାଇ ତଲାସ କରିବାକୁ ଆସିଲେ । ତା ପୂର୍ବରୁ ସେ ବହି ଆମ ପାଖକୁ ଆସିଯାଇଥିଲା । ପୋଲିସ ତାଙ୍କୁ ବହି କଥା ପଚାରିବାରୁ ସେ କହିଲେ—ସରକାର ସେ ବହିକୁ ବାଜ୍ୟାପ୍ତ କରିଥିବା କଥା ଯେଉଁଦିନ ଜାଣିଲେ ସେଦିନ ସେ ବହିକୁ ନଷ୍ଟକରିଦେଲେ ।

୧୯୩୦ରେ ଯେତେବେଳେ ଲବଣ ସତ୍ୟାଗ୍ରହ ହେବା ବିଷୟରେ ଆଲୋଚନା ଚାଲିଲା ସେତେବେଳେ ସତ୍ୟାଗ୍ରହୀମାନଙ୍କ ପତ୍ନୀମାନେ ଅଲକାଶ୍ରମରେ ରହି ଖଦୀ କାମ କରିବା କଥା ପ୍ରସ୍ତାବ ହେଲା । ବାଲେଶ୍ୱରର ବିଶ୍ୱନାଥ ହୋତାଙ୍କ ସ୍ତ୍ରୀ ପ୍ରଫୁଲ୍ଲ, ପୁରୀର ସତ୍ୟବାଦୀ ନନ୍ଦଙ୍କ ସ୍ତ୍ରୀ ଲକ୍ଷ୍ମୀ, ଗଞ୍ଜାମର ଅନ୍ତର୍ଯ୍ୟାମୀ ପଣ୍ଡାଙ୍କର ସ୍ତ୍ରୀ ଶୋଭା, ପୁରୀର ଲାଲବାହାରଙ୍କ ସ୍ତ୍ରୀ ଗୁଣମଞ୍ଜରୀ ପ୍ରଭୃତି ଆସି ଅଲକାଶ୍ରମରେ ରହିଥିଲେ । ମୁଁ ସତ୍ୟାଗ୍ରହରେ ଯୋଗ ଦେଇ ଲୁଣ ମାରିବାକୁ ଯିବା କଥା ସ୍ଥିର ହେବାରୁ ସେମାନେ ସ୍ୱ ସ୍ୱ ସ୍ଥାନରୁ ବାହାରିଗଲେ ।

## ୨୧ । ଲବଣ ସତ୍ୟାଗ୍ରହ

୧୯୩୦ ମସିହା ଜାନୁଆରୀ ମାସ । ଲାହୋର କଂଗ୍ରେସ ଅଧିବେଶନରେ ଗୃହୀତ ହୋଇଥିବା ପ୍ରସ୍ତାବକୁ ପୂର୍ଣ୍ଣ ସ୍ୱରାଜ୍ୟର ଘୋଷଣାପତ୍ର ରୂପେ ବ୍ୟବହାର କରାଯିବା ଚେଷ୍ଟା ଚାଲିଥାଏ । କେତେ ବହୁସଂଖ୍ୟକ ସ୍ଥାନରେ ସଭା ହେବ ଏବଂ ସେ ଘୋଷଣାପତ୍ର ସେ ସଭାରେ ପାଠକରାଯିବ, ଜଣେ ପଢ଼ିବେ ଓ ସଭାରେ ଉପସ୍ଥିତ ଥିବା ଲୋକମାନେ ତାକୁ ଦୋହରାଇ କରି କହିବେ—ଏଥିପାଇଁ ବିରାଟ ଆୟୋଜନ ଚାଲିଥାଏ । ଘୋଷଣାପତ୍ର ପଢ଼ାହେବାପାଇଁ ଧାର୍ଯ୍ୟ ହୋଇଥିବା ନିର୍ଦ୍ଦିଷ୍ଟ ଦିନ ଜାନୁଆରୀ ୨୬ ତାରିଖ ଉପସ୍ଥିତ ହେଲା । କଟକ ସହର କାର୍ଯ୍ୟକ୍ରମରେ ସକାଳେ ପତାକା ଉତ୍ତୋଳନ, ସନ୍ଧ୍ୟା ୫ଟା ବେଳେ ଘୋଷଣାପତ୍ର ପାଠ କରିବାର କାର୍ଯ୍ୟକ୍ରମ ରଖାଯାଇଥିଲା । ସକାଳେ ପତାକା ଉତ୍ତୋଳନ କାର୍ଯ୍ୟ ହେଲା । ସନ୍ଧ୍ୟାବେଳେ ଟାଉନହଲ୍‌ରେ ସଭା ହେବ ବୋଲି ସହରରେ ପ୍ରଚାରପତ୍ର ବଣ୍ଟା ହୋଇଥାଏ । ମାତ୍ର ସନ୍ଧ୍ୟା ୫ଟା ବେଳେ ଟାଉନ୍‌ହଲ୍‌ରେ ସଭା କରିବାକୁ ସରକାରଙ୍କ ପକ୍ଷରୁ ଅନୁମତି ଦିଆନଯିବାରୁ ତାହା ଆମ ନଈକୂଳ ଘର ହତାଭିତରେ କରାଗଲା । ସରକାରଙ୍କ ପକ୍ଷରୁ ଟାଉନ୍‌ହଲ୍‌ରେ ସଭା କରିବାକୁ ଦିଆଗଲା ନାହିଁ—କଥା ସାଙ୍ଗେ ସାଙ୍ଗେ ପ୍ରଚାରିତ ହୋଇଗଲା । ଲୋକଙ୍କ ଉତ୍ସାହ ବଢ଼ିଗଲା । ଡକାଡ଼କି ହୋଇ ବହୁତ

ଲୋକ ସଭାରେ ପଢ଼ାଯାଇଥିଲେ । ହତା ଭିତରେ ସ୍ଥାନ ନହେବାରୁ ଘର ଛାତଉପରେ, ପାଚେରୀ, ନଇବନ୍ଧ ଉପରେ ବସି ଘୋଷଣାପତ୍ରକୁ ଦୋହରାଇଲେ । ମାଇକ୍ ନ ଥାଇ ମଧ୍ୟ ଘୋଷଣା ପଢ଼ା କାମ ସୁନ୍ଦରଭାବରେ ହେଲା । ସେ ଘୋଷଣାପତ୍ର ପାଠ ସଙ୍କଳ୍ପ ରୂପ ନେଇ ଗୋଟିଏ ନୂଆ ସ୍ପନ୍ଦନ ଆଣିଦେଲା । ଆମେ ଅଲକାଶ୍ରମକୁ ଯାଇ ସେଠି ରହିଲୁ – ଉଦ୍ଦେଶ୍ୟ, ଆନ୍ଦୋଳନ ଚାଲିବାବେଳେ କଟକରେ ନ ରହି ଅଲକାଶ୍ରମରେ ରହିବା ।

ସେତେବେଳେ 'ସମାଜ' ସାପ୍ତାହିକ ସମ୍ବାଦପତ୍ର । ତେଣୁ ପ୍ରତିଦିନର ଟାଟକା ଖବର ଶୁଣିବାକୁ ସୁଯୋଗ ନ ଥାଏ । ଆମର କାମ ଥାଏ ନିକଟବର୍ତ୍ତୀ ଗାଁମାନଙ୍କୁ ଯାଇ ଚାରିଅଣିଆ କଂଗ୍ରେସ ସଭ୍ୟ ସଂଗ୍ରହ କରିବା । ସେ କାର୍ଯ୍ୟରେ ୬ ପ୍ରାଣକୃଷ୍ଣ ପଡ଼ିହାରୀ ଥିଲେ ପ୍ରଧାନ ସହାୟକ । ନିଖିଳ ଭାରତ କଂଗ୍ରେସ କମିଟିରୁ ପରପତ୍ରରେ ନୂଆ ନୂଆ ଖବର ଓ କାର୍ଯ୍ୟକ୍ରମ ଆସୁଥିବାରୁ ଦିନକୁଦିନ ବାତାବରଣ ବଦଳିଯାଉଥାଏ । ଓଡ଼ିଶାରେ ଲବଣ ସତ୍ୟାଗ୍ରହ ହେବା ପାଇଁ ସ୍ଥାନ ବଚ୍ଛାହେଲା ବାଲେଶ୍ୱର ଜିଲାର ଇଞ୍ଚୁଡ଼ି ଚଟାଣ । ସତ୍ୟାଗ୍ରହୀମାନେ କଟକ ସହରରୁ ପଦଯାତ୍ରା କରି ଇଞ୍ଚୁଡ଼ି ଯିବେ । ପ୍ରତିଦିନର ରହଣି ସ୍ଥାନ ଓ କାର୍ଯ୍ୟକ୍ରମ ସ୍ଥିର ହୋଇଥାଏ । କଟକ ସହରରେ ସଭା ଓ ଶୋଭାଯାତ୍ରା ଅନବରତ ଚାଲିଥାଏ ।

୧୯୩୦ ଅପ୍ରେଲ ୬ ତାରିଖ ପାଖେଇ ଆସିଲା । ମନରେ ଆପେ ଆପେ ଉନ୍ମାଦନା ଆସୁଥାଏ । ଅପ୍ରେଲ ୪ ତାରିଖ ଦିନ କଟକ ଆସିଲୁ । ୬ ତାରିଖ ଦିନ ସକାଳେ ସତ୍ୟାଗ୍ରହୀମାନେ ନିଜର ଆବଶ୍ୟକ ଲୁଗା ଓ ବିଛଣାକୁ କାନ୍ଧରେ ପକାଇ ଇଞ୍ଚୁଡ଼ି ଅଭିମୁଖେ ଯାତ୍ରାକଲେ ।

ପ୍ରଥମ ଦଳରେ କୋଡ଼ିଏ ଜଣ ସତ୍ୟାଗ୍ରହୀ ଗୋପବନ୍ଧୁ ଚୌଧୁରୀଙ୍କ ସେନାପତିତ୍ୱରେ ଯାତ୍ରା ଆରମ୍ଭ କରିଥିଲେ । ଏ ଦଳର ଉପସେନାପତି ଥିଲେ ଆଚାର୍ଯ୍ୟ ହରିହର । ସତ୍ୟାଗ୍ରହୀମାନଙ୍କ ଭିତରେ ଥିଲେ ଗୌରୀଙ୍କ ଚରଣ ଦାସ, ରଘୁନାଥ ଦାସ, ସୁଦର୍ଶନ ପ୍ରହରାଜ, ବିନୋଦ ଚୌଧୁରୀ (କଟକ), ବିଶ୍ୱନାଥ ହୋତା, ଗୋଲୋକ ଦେ (ବାଲେଶ୍ୱର), ରଘୁନାଥ ମିଶ୍ର (ପୁରୀ), ଦୟାନନ୍ଦ ଶତପଥୀ (ସମ୍ବଲପୁର) ପ୍ରଭୃତି । କଟକରେ ୧୪୪ ଧାରା ଭଙ୍ଗ କରି ସଭାରେ ବକ୍ତୃତା ଦେଇଥିବା ଯୋଗୁଁ ଗୋପବାବୁ ବାଟରେ ଗିରଫ ହେଲେ । ସତ୍ୟାଗ୍ରହୀଦଳ ତାହା ପରେ ଟ୍ରେନ୍ ଯୋଗେ ବାଲେଶ୍ୱର ଯାଇ ଏପ୍ରିଲ ୧୩ ତାରିଖରେ ଲବଣ ଆଇନ୍ ଭଙ୍ଗକଲେ ।

ସତ୍ୟାଗ୍ରହୀମାନେ ତ ଯାତ୍ରା କରିଗଲେ, ମୋ ମନରେ ପ୍ରଶ୍ନ ଉଠିଲା – ମୁଁ କ'ଣ କରିବି ? ମୋ ଦ୍ୱାରା କ'ଣ ହୋଇପାରିବ ? ୧୯୨୧ ମାର୍ଚ୍ଚ ମାସରେ ବିନୋଦବିହାରୀଙ୍କ ନାଗା ସଭାରେ ଯେଉଁ ଭାଷଣଟି ଗାନ୍ଧୀଜୀଙ୍କ ମୁହଁରୁ ଶୁଣିଥିଲି ତାକୁ ହିଁ ପାଥେୟ କରିଲି । କାର୍ଯ୍ୟକ୍ରମ ତାହାର ଭିତରୁ ବାହାରିବ, ଏହି ବିଶ୍ୱାସ ମନରେ ରଖି ବାହାରକୁ ବାହାରି କାମ କରିବା ପାଇଁ ମନକୁ ପ୍ରସ୍ତୁତ କଲି । ଇଞ୍ଚୁଡ଼ି ଚଟାଣରେ ଲବଣ ସତ୍ୟାଗ୍ରହ ଆରମ୍ଭ ହେଲା ଆଚାର୍ଯ୍ୟ ମହାଶୟଙ୍କ ନେତୃତ୍ୱରେ । ସେଠାରେ ଗିରଫଦାରୀ, ଲାଠିମାଡ଼, ଲୁଣ ମାରିବା ପାଇଁ

ବ୍ୟବହୃତ ହେଉଥିବା ହାଣ୍ଡି ଭଙ୍ଗା ଆଦି ଦମନନୀତି ପୂର୍ବମତ ଚାଲିଲା । ଶ୍ରୀମତୀ କରଣବାଲା ସେନ୍, ଶ୍ରୀମତୀ ମାଳତୀ ଦେବୀ ଓ ମୁଁ, ଆମେ ଗୋଟିଏ ଦଳ ଇଞ୍ଚୁଡ଼ି ଲୁଣମରା ଦେଖିବାକୁ କଟକରୁ ଗଲୁ । ସନ୍ଧ୍ୟାବେଳେ ବାଲେଶ୍ୱରରେ ପହଞ୍ଚି, ସତ୍ୟାଗ୍ରହୀଙ୍କ ଶିବିର ପର୍‌ମିଟ୍ କୋଠିରେ ରାତିରେ ରହି ତା ପରଦିନ ସକାଳେ ଗୋଟିଏ ମୋଟରକାରରେ ଇଞ୍ଚୁଡ଼ି ଗଲୁ । ମୋଟର୍‌କାର୍ ଇଞ୍ଚୁଡ଼ି ଚଟାଣ ପର୍ଯ୍ୟନ୍ତ ଯାଇ ପାରିଲା ନାହିଁ । କିଛି ବାଟ ଚାଲିକରି ଯିବାକୁ ହେଲା । ଖରାଦିନ, ଦିନ ପ୍ରାୟ ଏଗାରଟା ହେବ। ଯାତ୍ରୀଙ୍କ ମଧ୍ୟରୁ କେତେକଙ୍କୁ ଶୋଷ ହେବାରୁ ପାଣି ପିଇବାକୁ ଚାହିଁଲେ । ସେତେବେଳେ ବାଲେଶ୍ୱର ଜିଲ୍ଲାର ଅଧିକାଂଶ ଅଞ୍ଚଳରେ କୂଅ ନ ଥାଏ । ନଳକୂପର ପ୍ରଚଳନ ମଧ୍ୟ ସେତେବେଳେ ହୋଇ ନ ଥାଏ । ତେଣୁ ଲୋକେ ପିଇବା ପାଣି ମଧ୍ୟ ପୋଖରୀରୁ ନେଇ ବ୍ୟବହାର କରୁଥାନ୍ତି । ତେଣୁ ପାଣି ପିଇବା ପାଇଁ ପୋଖରୀ ଭିତରେ ପଶିଲୁ । କୂଳଠାରୁ ଦୂରକୁ ଗଲେ ଅଧିକ ଗଭୀର ସ୍ଥାନରୁ ଭଲ ପାଣି ପାଇବା ଆଶାରେ ଯେତେ ଭିତରକୁ ଗଲୁ ଆମ ଗୋଡ଼ରେ ଲାଗି ସେତେ ଅଧିକ ମଇଳା ଉପରକୁ ଉଠିବାକୁ ଲାଗିଲା । ତେଣୁ ସେହି ପାଣି ପିଇଲୁ । ସେହିଦିନ ପ୍ରଥମ କରି ଅନୁଭବ କଲି ଯେ ଆମ ଦେଶରେ ଏପରି ପାଣିକଷ୍ଟ ଭୋଗୁଥିବା ଲୋକ ଅଛନ୍ତି ।

ଖରାବେଳଟା ଇଞ୍ଚୁଡ଼ି ଶିବିରରେ କଟେଇ ଖରା ନଇଁଲାରୁ ପାଖ ଗାଁ ଶ୍ରୀଜଙ୍ଗକୁ ଗଲୁ । ଶ୍ରୀଜଙ୍ଗରେ ପହଞ୍ଚି ଘରେ ଘରେ ଯାଇ ସ୍ତ୍ରୀଲୋକମାନଙ୍କ ସଙ୍ଗେ କଥାବାର୍ତ୍ତା କଲୁ ଯେ ଆମେ ଦଳେ ସ୍ତ୍ରୀଲୋକ ଆଜି ଲୁଣ ମାରିବା । ପ୍ରତ୍ୟକ୍ଷ ଲୁଣମରା କାମ ତ ଆଜିଯାଏ ସ୍ତ୍ରୀଲୋକମାନେ କେହି କରିନାହାନ୍ତି—ଚାଲ, ଆଜି ଆମେ କରିବା । ଶ୍ରୀଜଙ୍ଗର ସ୍ତ୍ରୀଲୋକମାନେ ସମ୍ମତ ହେଲେ । ପ୍ରାୟ ଦେଢ଼ହଜାର ସ୍ତ୍ରୀଲୋକ ଏକାଠି ହେଲେ ଓ ଆମେ ଲୁଣମାଟି ଆଣିବାକୁ ଗଲୁ । ସମସ୍ତେ କିଛି କିଛି ଲୁଣମାଟି ଆଣିଲୁ । ମାତ୍ର ପୋଲିସଙ୍କ ଦେଖା ନାହିଁ । ଶୁଣିଲୁ ପୋଲିସଙ୍କୁ କୁଆଡ଼େ ନିର୍ଦ୍ଦେଶ ଦିଆଯାଇଛି ଯେ ସ୍ତ୍ରୀଲୋକମାନେ ଯାହା କରିବେ ତାଙ୍କୁ ଛାଡ଼ିଦେବ । ପୋଲିସଙ୍କର ଏ ଅନାସ୍ଥାଭାବ ଆମକୁ ଭଲ ଲାଗିଲା ନାହିଁ । ଶ୍ରୀଜଙ୍ଗର ସ୍ତ୍ରୀଲୋକମାନଙ୍କୁ ଆନ୍ଦୋଳନ ବିଷୟରେ କିଛି କହି ଆମେ ବାଲେଶ୍ୱର ଫେରିଲୁ । କଟକ ଆସି ପୁଣି ଅଲକାଶ୍ରମକୁ ଯାଇ ରହିଲି । ଭାଗୁବାବୁ (ସ୍ୱ ଭାଗୀରଥି ମହାପାତ୍ର) ସେତେବେଳେ ଜଗତସିଂହପୁର ପାଖ ଗୃହଗ୍ରାମରେ ତାଙ୍କ ଘରେ ରହୁଥାନ୍ତି । ମୋ ମନ ତ ଲୁଣମରାରେ ଥାଏ । ଖବର ପାଇଲି କଟକ ଜିଲ୍ଲାରେ କେଉଁଠି ଲୁଣମରା ହେବ ସେ ବିଷୟରେ ଆଲୋଚନା ହେଉଛି । କୁଜଙ୍ଗରେ ଲୁଣମରା କାମ ହେବ ବୋଲି ସ୍ଥିରହେଲା । ଭାଗୀରଥି ବାବୁ ଓ ନାରାୟଣ ବୀରବର ସାମନ୍ତଙ୍କ ପରାମର୍ଶ ନେଇ ଲୁଣମରା କାମ କରିବାକୁ କୁଜଙ୍ଗ ଗଲୁ । ସାଙ୍ଗରେ ବିଶ୍ୱନାଥ ହୋତାଙ୍କ ସ୍ତ୍ରୀ ପ୍ରଫୁଲ୍ଲକୁମାରୀ ହୋତାଙ୍କୁ ନେଲି । ଶ୍ରୀମତୀ ମାଳତୀ ଚୌଧୁରୀ ଓ ଡାକ୍ତର ବ୍ରଜନାଥ ମିଶ୍ର ଆଗରୁ ଯାଇ ସେଠାରେ ଥିଲେ । କେତେକ ବାନରସେନା ମଧ୍ୟ ସେଠାରେ ଥାନ୍ତି । ଦିନରେ ଲୁଣମରା କାମ ହୁଏ—ରାତିରେ ଆରଦିନ ପାଇଁ କାର୍ଯ୍ୟକ୍ରମ ପ୍ରସ୍ତୁତ ହୁଏ । ଦିନେ ସ୍ଥିର କରାଗଲା ଯେ କେବଳ ବାନରସେନା ଲୁଣ ନ ମାରି, ଆମେ-

ମାନେ ମଧ୍ଯ ସ୍ଥାନ ଓ ସମୟ ଘୋଷଣା କରି ଭିନ୍ନ ଭିନ୍ନ ସ୍ଥାନରେ ଲୁଣ ମାରିବା । ମାଳତୀ ଚୌଧୁରୀ, ବ୍ରଜବାବୁ ଓ ନାରାୟଣ ବୀରବର ସାମନ୍ତ ଗୋଟିଏ ଗୋଟିଏ ସ୍ଥାନ ବାଛିଲେ । ମୁଁ କାଳିଆପାଟରେ ଲୁଣମାରିବା ଠିକ୍ ହେଲା । ସାଆନ୍ତଙ୍କଠାରୁ ଆଶ୍ୱାସ ପାଇଲି ଯେ ପାରାଦ୍ୱୀପ ରାଣୀଙ୍କର ଏ କାମ ପ୍ରତି ସମର୍ଥନ ଅଛି । ଆମେ କୁଜଙ୍ଗ ପାଖ ଚଟୁଆଁ ଗାଁର ବେଡ଼ି ମଠ ନାମକ ଗୋଟିଏ ମଠରେ ରହୁଥାଉ । ଜଣେ ସତ୍ୟାଗ୍ରହୀ ଓ ଜଣେ ବାନରସେନାକୁ ସଙ୍ଗରେ ନେଇ ପାରାଦ୍ୱୀପ ଗଲି । ରାଣୀଙ୍କ ସହିତ ଦେଖାକଲି । ରାଣୀ ଖୁବ୍ ଆଦର ଯତ୍ନ କଲେ । ସେ ରାଣୀ ହେଉଛନ୍ତି ଶ୍ରୀମତୀ ରତ୍ନମାଳି ଜେମାଙ୍କର ମାମା । ରାଣୀ କାଳିଆପାଟରେ ଲୁଣ ମାରିବାକୁ ସମ୍ମତହେଲେ । ସେ ବରଂ ପରାମର୍ଶ ଦେଲେ ଯେ, ସନ୍ଧ୍ୟାବେଳେ ଗାଁ ସ୍ତ୍ରୀଲୋକମାନଙ୍କର ସଭା କରାଯାଉ—ସେମାନଙ୍କ ଭିତରୁ ଯେଉଁମାନେ ବାହାରିବେ ସେମାନେ ଆମ ସାଙ୍ଗରେ କାଳିଆପାଟ ଯିବେ । ଏଣେ ମୁଁ ପାରାଦ୍ୱୀପ ଆସିବା ଶୁଣି କୁଜଙ୍ଗ ଅଞ୍ଚଳରେ ଲୁଣମରା କାମ ବନ୍ଦ କରିବାପାଇଁ ନିଯୁକ୍ତ ହୋଇଥିବା ମାଜିଷ୍ଟ୍ରେଟ୍ ମାଧବ ମିଶ୍ର ପାରାଦ୍ୱୀପରେ ପହଞ୍ଚିଲେ ଏବଂ ଘାଟବାଲା ନାଉରିମାନଙ୍କୁ ଆଦେଶ ଦେଲେ ଯେ ସେମାନେ ଆମକୁ ଯେପରି ଡ଼ଙ୍ଗାରେ ପାରି ନ କରିବେ । ଏ ଖବର କ୍ଷଣକ ଭିତରେ ବ୍ୟାପିଗଲା । ଆମର କଥା ହୋଇଥାଏ ଯେ ରାତିରେ ଡ଼ଙ୍ଗାରେ ଯାଇ ଭୋରରୁ କାଳିଆପାଟରେ ପହଞ୍ଚିବୁ । କାଳିଆପାଟ ପର୍ଯ୍ୟନ୍ତ ଚାଲିକରି ଯିବା ରାଣୀଙ୍କ ପକ୍ଷରେ ଅସମ୍ଭବ । ଘାଟବାଲା ନାଉରିଙ୍କ ଛଡ଼ା ରାଣୀଙ୍କ ପାଖରେ ଡ଼ଙ୍ଗା ବାହି ନେବା ପାଇଁ ଅନ୍ୟ ଲୋକ ଥା'ନ୍ତି—କେବଳ ଡ଼ଙ୍ଗା ଖଣ୍ଡେ ଯୋଗାଡ଼ କରିବାକୁ ହେବ । ସନ୍ଧ୍ୟାପରେ ରାଣୀଙ୍କ ଲୋକେ ଯାଇ ଖଣ୍ଡେ ଷ୍ଟିମ ଡ଼ଙ୍ଗା ଆଣିଲେ । ରାତି ପ୍ରାୟ ଏଗାରଟା ବେଳକୁ ଲୋକ ଯାଇ ଦେଖିଆସିଲେ ଯେ ଡ଼େପୁଟି ମାଜିଷ୍ଟ୍ରେଟ୍ ଓ ତାଙ୍କ ସାଙ୍ଗୋପାଙ୍ଗ ସମସ୍ତେ ଗାଢ଼ ନିଦ୍ରାରେ ଶୋଇଛନ୍ତି । ଆମେ ଆମ ଡ଼ଙ୍ଗାରେ ବସି ଯାତ୍ରା ଆରମ୍ଭ କରିଲୁ । ଆଲୁଅ ଦେଖାଯିବା ଭୟରେ ଗୋଟିଏ ମାତ୍ର ଲଣ୍ଠନ ନାମକୁ ମାତ୍ର ଜାଳି ସାଙ୍ଗରେ ନେଲୁ । ବୋଧହୁଏ ସେଦିନ ଶୁକ୍ଳପକ୍ଷର ଅଷ୍ଟମୀ ତିଥି ଥିଲା । ଆମେ ବାହାରିବା ବେଳକୁ ଜହ୍ନ ଦେଖାଦେଲା । ସେହି ଜହ୍ନ ଆଲୁଅରେ ଡ଼ଙ୍ଗା ନିଃଶବ୍ଦରେ ଚାଲିଲା ।

ସକାଳେ କାଳିଆପାଟର ଲୋକେ ତାଙ୍କ ଗାଁରେ ଖୋଦ୍ ରାଣୀଙ୍କୁ ଉପସ୍ଥିତ ହେବାର ଦେଖି ଅବାକ୍ ହୋଇଗଲେ । ରାଣୀ ଲୋକଙ୍କୁ କହିଲେ ଯେ ଘରର ସ୍ତ୍ରୀଲୋକମାନେ ପ୍ରତ୍ୟେକେ ଗୋଟିଏ ଲେଖାଏଁ ଟୋକେଇ ବା ପାଛିଆ ଧରି ଆସନ୍ତୁ - ଆମେ ସମସ୍ତେ ମିଳି ଲୁଣମାଟି ଆଣିବାକୁ ଯିବା । ରାଣୀ ଅବଶ୍ୟ ସଂକ୍ଷେପରେ ଲୁଣମାଟି ଆଣିବାକୁ ଯିବାର ଉଦ୍ଦେଶ୍ୟ ସମ୍ପର୍କରେ ଏକତ୍ରିତ ହୋଇଥିବା ଗାଁର ପୁରୁଷ ଓ ସ୍ତ୍ରୀଲୋକମାନଙ୍କୁ ବୁଝାଇ କହିଦେଲେ । ସେ ଅଞ୍ଚଳରେ ଲୁଣମରା କାମ ଓ ପୋଲିସ୍‌ଙ୍କ ଦମନଲୀଳା ଦେଖି ଦେଖି ଲୋକେ ବ୍ୟାପାରଟା ଜାଣିଯାଇଥିଲେ । ସ୍ଥାନୀୟ ଲୋକ କେତେଜଣ ଲୁଣମରା କାମକରି ମାଡ଼ ଖାଇଥାନ୍ତି ଓ ଜେଲ୍ ଯାଇଥାନ୍ତି । ଲୁଣମାଟି ମୁଠାଏ ଧରିଲେ ଯେ ପୋଲିସଠାରୁ ମାଡ଼ ଖାଇବାକୁ ପଡ଼ିବ ଏକଥା ଲୋକେ ବରାବର ଦେଖୁଥାନ୍ତି । ରାଣୀଙ୍କ କଥାରେ ଘରୁ ସ୍ତ୍ରୀଲୋକମାନେ ପାଛିଆ ଟୋକେଇ ଧରି ବାହାରିଆସିଲେ । ପୁରୁଷ କେହି ନ ଥାନ୍ତି । କାଳିଆପାଟ

ଗୋଟିଏ ବଡ଼ ଗାଁ । ପ୍ରତ୍ୟେକ ଘରୁ ଜଣେ ଦୁଇଜଣ ଲେଖାଏଁ ଆସିବାରୁ ଲୋକ ସଂଖ୍ୟା ବହୁତ ହେଲା । ପିଲାମାନେ ମଧ୍ୟ ଆସିଲେ । କିଛି ଦୂରରେ ପୋଲିସବାଲା ଗୋଟିଏ ଦଳ ଠିଆ ହୋଇଥାନ୍ତି । ରାଣୀଙ୍କ ନେତୃତ୍ୱରେ ଆମେମାନେ ଗଣ୍ଡକାପୁର ଗଲୁ । ପିଲା ଓ ବଡ଼ ସମସ୍ତେ ପାଛିଆରେ ମାଟି କିଛି କିଛି ନେଇ ଆସିଲୁ । ପୋଲିସମାନେ ଦର୍ଶକଭଳି ଠିଆହୋଇଥାନ୍ତି । ପୋଲିସଙ୍କର ଏ ନିଷ୍କ୍ରିୟତା ଲୋକଙ୍କୁ ଭଲଲାଗୁନଥାଏ । ସେମାନେ ଚାହୁଁଥାନ୍ତି ପୋଲିସ ଏଥିରେ ହସ୍ତକ୍ଷେପ କରୁ । ବର୍ଷା ଆରମ୍ଭ ହେବାରୁ ଲୁଣମରା କାମ ବନ୍ଦକରାଗଲା ।

ଏଥିମଧ୍ୟରେ ଶ୍ରୀଜଙ୍ଗ ଗ୍ରାମରେ କିଛି ଗୋଳମାଳ ହେବାରୁ ସେ ଗାଁରେ ପିଉନିଟିଭ୍ ଟିକସ ବସିଲା । ଦିନେ ରାତିରେ ଜଣେ ମାଜିଷ୍ଟ୍ରେଟଙ୍କ ସହିତ ପୋଲିସ ବୋଝେଇ ଗୋଟିଏ ପୋଲିସ ଭ୍ୟାନ୍ ସେ ଗାଁରେ ପହଞ୍ଚିଲା । ତାହା ଦେଖି ଗାଁଲୋକେ ଗ୍ରାମଛଡ଼ା ହୋଇ ପିଲା ଓ ସ୍ତ୍ରୀଲୋକମାନଙ୍କୁ ସ୍ଥାନାନ୍ତରିତ କରିଦେଲେ । ଗାଁରୁ ଟ୍ୟାକ୍ସ ଆଦାୟ ଓ ଅତ୍ୟାଚାର ଚାଲିଲା । ଏ ଖବର କଟକ ଆସିବାରୁ ଚେଷ୍ଟା କରାଗଲା ଯେ ବିଶିଷ୍ଟ ବ୍ୟକ୍ତିମାନେ ଶ୍ରୀଜଙ୍ଗ ଯାଇ ଅବସ୍ଥା ଦେଖନ୍ତୁ ଓ ତାହା ଖବରକାଗଜରେ ବାହାରୁ । ସ୍ୱର୍ଗତ ଲକ୍ଷ୍ମୀନାରାୟଣ ସାହୁ ଏହା ଶୁଣିବା ସଙ୍ଗେ ସଙ୍ଗେ ଶ୍ରୀଜଙ୍ଗ ଗଲେ ଓ ଅବସ୍ଥା ଦେଖିଆସି ସବୁ ବର୍ଣ୍ଣନା କଲେ । ଆଉ କେହି ଗଲେ ନାହିଁ । ମାଳତୀ ଚୌଧୁରୀ, ସୁରେନ୍ଦ୍ରନାଥ ପଟ୍ଟନାୟକ ଓ ମୁଁ ବାଲେଶ୍ୱର ଯାଇ ମୁକୁନ୍ଦପ୍ରସାଦ ଦାସଙ୍କଠାରୁ ପରାମର୍ଶ ନେଇ ସକାଳ ହାଓଡ଼ା ପାସେଞ୍ଜରରେ ଖନ୍ତାପଡ଼ା ଷ୍ଟେସନକୁ ଆସିଲୁ । ସେଠାରୁ ଓହ୍ଲାଇ ଶ୍ରୀଜଙ୍ଗ ଆଡ଼କୁ ଚାଲିଲୁ । ଶ୍ରୀଜଙ୍ଗ ଖନ୍ତାପଡ଼ା ଷ୍ଟେସନ ଠାରୁ ଆଠମାଇଲ ଦୂରରେ । ବର୍ଷାଦିନ, ବିଲରେ ପାଣି ଭର୍ତ୍ତି, ରାସ୍ତା ନ ଥିବାରୁ ହିଡ଼ରେ ଯିବାକୁ ହେବ । ପାଣିରେ ବୁଡ଼ି ଯାଇଥିବା ହିଡ଼ରେ ସାବଧାନତାର ସହିତ ଆସ୍ତେ ଆସ୍ତେ ଚାଲୁଥିଲେ ମଧ୍ୟ ହିଡ଼ରୁ ଗୋଡ଼ ଖସି ଯାଉଥାଏ ଏବଂ ଆମେ ପାଣିରେ ପଡ଼ିଯାଉଥାଉ । ସୁରେନ୍ଦ୍ର ହାତରେ ଗୋଟିଏ ପଟ ପୋଟଳାରେ କିଛି ଜଳଖିଆ ଥାଏ । ସୁରେନ୍ଦ୍ର ହିଡ଼ ଉପରୁ ଖସିପଡ଼ିବାରୁ ପଟପୋଟଳା ତାଙ୍କ ହାତରୁ ଖସିପଡ଼ିଲା ଓ ଜଳଖିଆତକ ବିଲପାଣିରେ ପଡ଼ି ଗୋଟି ଗୋଟି ହୋଇ ଭାସିଲା । ସେଦିନ ଆଉ କେଉଁଠି ଖାଇବାକୁ ମିଳିବାର ଆଶା ନଥିବାରୁ ଆମେ ପେଟେ ପାଣିରେ ପଶି ସେ ଜଳଖିଆଗୁଡ଼ିକ ପାଣିରୁ ଗୋଟାଇଆଣିଲୁ । ଯାଉ ଯାଉ ବାଟରେ ଗୋଟିଏ ପୋଖରୀ ପଡ଼ିଲା । ଓଦା ଲୁଗାରେ ସେହି ପୋଖରୀ ହୁଡ଼ାରେ ବସି ଜଳଖିଆ ଖାଇବା ଆରମ୍ଭ କଲୁ । ଜଳଖିଆର ପରିମାଣ ଅଳ୍ପ । ଖାଉ ଖାଉ ମାଳତୀ ଦେବୀ କହିଲେ— ଜଳଖିଆ ଅଣ୍ଟିବ ନାହିଁ, ଗଣ୍ଡାଏ ମୁଢ଼ି ହୁଅନ୍ତା କି ଖାଇବାଟା ପୂରା ହୁଅନ୍ତା । ଚାରିଆଡ଼କୁ ଚାହିଁ ଦେଖିଲୁ ପୋଖରୀ ହୁଡ଼ାଠାରୁ ଦୂରରେ ଜଣେ ଭଦ୍ରଲୋକ ଆସୁଛନ୍ତି । ଆମେ ଟିକିଏ ଆଶାନ୍ୱିତ ହେଲୁ । ସେ ଆସି ଆମ ସାମ୍ନାରେ ଠିଆହୋଇ କହିଲେ— ଆପଣମାନେ ଏମିତି ଓଦା ଲୁଗାରେ ଏଠି ବସିଛନ୍ତି ? କୁଆଡୁ ଆସିଲେ ? ଯିବେ କୁଆଡ଼େ ? ଆମେ ତାଙ୍କୁ ଚିହ୍ନିପାରୁନଥିବା କଥା ସେ ବୁଝିପାରି କହିଲେ—ମୁଁ ପରା ଶ୍ରୀଧର ପାଣିଗ୍ରାହୀ,

କରୁଣାକରରର ଭାଇ । ଗଣ୍ଡିଏ ମୁଢ଼ି ପାଇଲେ ଖାଆନ୍ତୁ ବୋଲି ମାଳତୀ ଦେବୀ ଇଚ୍ଛା ପ୍ରକାଶ କରିବାରୁ ସେ କୃତକୃତ୍ୟ ହେଲପରି ହୋଇ ଆମକୁ ତାଙ୍କ ଘରକୁ ଡାକନେଲେ । ତାଙ୍କ ଘରେ ବସେଇ ଆମକୁ ମୁଢ଼ି ଦେଲେ । ଖାଉ ଖାଉ ମାଳତୀ ଦେବୀ କହିଲେ, "ଯଦି ଆମକୁ ମୁଢ଼ି ଖୁଆଇଲେ, ତେବେ ଟିକିଏ ତେନ୍ତୁଳି ଓ ଲୁଣ ତା' ସାଙ୍ଗକୁ ଦିଅନ୍ତୁ ।" ସେହି ମୁଢ଼ି ତେନ୍ତୁଳିକୁ ସେ ଯତ୍ନ ଓ ଆଦରରେ ଖୁଆଇଲେ । ଶ୍ରୀଜଙ୍ଗ ଯିବାପାଇଁ ବାଟ ବତେଇଦେଲେ ଏବଂ କିଛିଦୂର ଯିବାପାଇଁ ସାଙ୍ଗରେ ଗୋଟିଏ ଲୋକ ମଧ୍ୟ ଦେଲେ ।

ଶ୍ରୀଜଙ୍ଗରେ ପହଞ୍ଚି ଆମେ ଅବାକ୍ ହୋଇଗଲୁ । ଏପରି ପୁରୁଷଶୂନ୍ୟ ଗାଁ କେବେ ଦେଖି ନ ଥିଲି । ଓଦା ଲୁଗା ପିନ୍ଧିଥିବାରୁ ରାତିରେ ରହିବା ପ୍ରଶ୍ନ ନାହିଁ । ତେଣୁ ଆମେ ତିନିଜଣ ବାଣ୍ଟିହୋଇ ଯାଇ ଘରେ ଘରେ ବୁଲି ଘର ଭିତରର ଅବସ୍ଥା ଦେଖିଲୁ । ମାଳତୀ ଦେବୀ ଦେଖୁଥିବା ଘରମାନଙ୍କ ମଧ୍ୟରୁ ଗୋଟିଏ ଘରେ ପାଞ୍ଚ ଛଅ ଜଣ ସ୍ତ୍ରୀଲୋକ ଥିବାର ଦେଖି, ଆଶ୍ଚର୍ଯ୍ୟଜନକ ଘଟଣାଭଳି ସେ ମୋ ପାଖକୁ ଦୌଡ଼ିଆସି ମୋତେ ସେ ଘରକୁ ଡାକି ନେଇଗଲେ । ସେ ଗାଁ, ଘରଦ୍ୱାର ଓ ସେ ସ୍ତ୍ରୀଲୋକମାନଙ୍କର ନିର୍ବାକ୍ ଅବସ୍ଥା ଦେଖି ମୋ ମାନସିକ ଅବସ୍ଥା ଯାହା ଥିଲା, ସେପରି ଅବସ୍ଥା ମୋର କେବେ ହୋଇ ନଥିଲା କି ବର୍ତ୍ତମାନ ମୁଁ ତାହା ବର୍ଣ୍ଣନା ମଧ୍ୟ କରିପାରୁନାହିଁ ।

ରିପୋର୍ଟ ଲେଖିବା ପାଇଁ ଯାହା ଜାଣିବା ଓ କରିବାର କଥା ତାହା କରି ଆମେ ତିନିହେଁ ବାହାନଗା ବଜାର ଷ୍ଟେସନକୁ ଆସିଲୁ । ବାହାନଗା ବଜାର ଷ୍ଟେସନରେ ପହଞ୍ଚିବାକୁ ରାତି ହୋଇଗଲା । ପାସେଞ୍ଜର ଗାଡ଼ି ଆସିବାକୁ ଡେରିଥାଏ । ସକାଳ ସାତଟାବେଳେ ଖନ୍ତାପଡ଼ା ଷ୍ଟେସନରେ ଓହ୍ଲାଇ ରାତି ଆଠଟା ବେଳେ ବାହାନଗା ବଜାର ଷ୍ଟେସନରେ ପହଞ୍ଚିବା ପର୍ଯ୍ୟନ୍ତ ଆମେ କ୍ରମାଗତ କେବଳ ବୁଲିଛୁ । ମୁଢ଼ି ଖାଇବା ବେଳେ ଯାହା ଶ୍ରୀଧର ପାଣିଗ୍ରାହୀଙ୍କ ଘରେ ଟିକିଏ ବସିଥିଲୁ । ଖାଇବା ମଧ୍ୟ ସେହି ଥରକ । ବୁଲିବୁଲି ଦେହ ଭାରି କ୍ଳାନ୍ତ ଲାଗୁଥାଏ । ଖାଇବା କଥା ଭାବୁଭାବୁ ଜଣେ କର୍ମୀ ଆମର ଭେଟି ପହଞ୍ଚିଲେ । ଷ୍ଟେସନ୍ ମାଷ୍ଟରଙ୍କ ସହିତ ତାଙ୍କର ଭଲ ପରିଚୟ ଥିଲା । ସେ ମୋତେ ଷ୍ଟେସନ୍ ମାଷ୍ଟରଙ୍କ ଘରକୁ ନେଇଗଲେ, ମୋର ପରିଚୟ ଦେଇ ସବୁକଥା କହିଲେ । ଷ୍ଟେସନ୍ ମାଷ୍ଟର କହିଲେ ଆମକୁ ସେ ତାଙ୍କଘରେ ଖୁଆଇଲେ ଆନନ୍ଦିତହୁଅନ୍ତେ, ମାତ୍ର ପୋଲିସ୍ ଭୟରେ ସେ ତାହା କରିପାରିବେ ନାହିଁ । ଏହା ସିନା ମୁହଁରେ କହିଲେ ତାଙ୍କ ମନ କିନ୍ତୁ ଥୟ ହେଲ ନାହିଁ । ସେ ଅରୁଆ ଚାଉଳ ଓ ଉଆଉ ମୋ ପାଖରେ ରଖିଦେଇ କହିଲେ, "ମୁଁ ଯାଉଛି ବାହାରେ ରହିବି । ଗାଡ଼ି ଆସିବା ପୂର୍ବରୁ ଆପଣମାନେ ରାନ୍ଧିକରି ଖାଇନିଅନ୍ତୁ ।" ଏହା କହି ସେ ବାହାରକୁ ଚାଲିଗଲେ । ଭାତ ଓ ଉଆଉ ଝୋଳ କଲି । ଆମେ ତିନିଜଣ ଖାଇଲୁ । ରାତି ପାସେଞ୍ଜରରେ କଟକ ଆସିଲୁ । ବର୍ଷା ଯୋଗୁଁ ଲୁଣମରା କାମ ବନ୍ଦ ହେବାରୁ 'କୁମ୍ଭାର ବୋହି, ଝାଟିକି ନ ଗଲେ ମାଟିକି ଯାଉ' ଏହି ରୀତିରେ ଆମକୁ ବିଭିନ୍ନ ସ୍ଥାନକୁ ପଠାଗଲା । ସଭାସମିତି କରିବା, ଚାନ୍ଦା ଓ ସ୍ୱେଚ୍ଛାସେବକ ସେଚ୍ଛାସେବିକା ସଂଗ୍ରହ କରିବା ପାଇଁ ମୁଁ ଯାଜପୁର

ସହରକୁ ଯାଇ ସେଠୁ ମଫସଲମାନଙ୍କୁ ଯିବ । ସାଙ୍ଗରେ ଜଣେ କର୍ମୀକୁ ନେଇ ମୁଁ ଯାଜପୁର ରୋଡ଼ ଷ୍ଟେସନ୍‌ରେ ପହଞ୍ଚିଲି । ମୁଁ ଓ କର୍ମୀ ଜଣକ ବସ୍‌ରେ ବସିଲୁ । ବସ୍ ଚାଲିବାର ଅଳ୍ପ ସମୟ ପରେ ତାହା ହଠାତ୍ ବନ୍ଦହେଲା । ବସ୍‌ସ୍ଥିତ ଲୋକଙ୍କ ମଧ୍ୟରେ ଚାଞ୍ଚଲ୍ୟ ଦେଖାଦେଲା । ସଙ୍ଗେ ସଙ୍ଗେ ଜଣେ ପୋଲିସ୍ ସବ୍‌ଇନ୍‌ସ୍‌ପେକ୍‌ଟର ଜଣେ କନେଷ୍ଟବଲଙ୍କ ସହ ଆସି ମୋତେ ନମସ୍କାର ସହିତ କହିଲେ, "ଯାଜପୁର ଏସ୍. ଡି. ଓ.ଙ୍କର ଅର୍ଡ଼ର ମୋ ପାଖକୁ ଆସିଛି, ଆପଣ ଏ ବସ୍‌ରେ ଯାଇପାରିବେନାହିଁ ।" ମୁଁ ଦେଖିଲି ଏ କଥାରେ ମୋ ପ୍ରତି ଭଦ୍ରଲୋକମାନଙ୍କର ସହାନୁଭୂତିର ଉଦ୍ରେକ ହୋଇଛି । ବଡ଼ପାଟିଆ ଭଦ୍ରଲୋକ ଦୁଇ ଚାରିଜଣ ଯୁକ୍ତିତର୍କ ଆରମ୍ଭ କରିଦେଲେ । ମାତ୍ର ମୁଁ ଶୁଣିଲିନାହିଁ ବସ୍‌ରୁ ଓହ୍ଲାଇଗଲି । କର୍ମୀଙ୍କୁ ସାଙ୍ଗରେ ନେଇ ବଳଦଗାଡ଼ିରେ ଯିବାପାଇଁ କେହି କେହି ପ୍ରସ୍ତାବ ଦେଲେ । ମାତ୍ର ମୁଁ ବଳଦଗାଡ଼ିରେ ନ ଯାଇ ଚାଲି ଚାଲି ଗଲି । ଯାଜପୁରରେ ପହଞ୍ଚିବାକୁ ରାତିହୋଇଗଲା । ମୋତେ କଟକରେ କୁହାଯାଇ ଥାଏ ଯେ ମୁଁ ଯାଜପୁରରେ ପହଞ୍ଚି ଶ୍ରୀ ବିରୂପାକ୍ଷ କର ଓକିଲଙ୍କ ପାଖକୁ ଗଲେ ସେ ମୋ ରହିବା ବ୍ୟବସ୍ଥା କରିଦେବେ । ମୁଁ ତଦନୁସାରେ କାର୍ଯ୍ୟକଲି ଏବଂ ଶ୍ରୀ ଜଗମୋହନ ତେଓ୍ୱାରୀଙ୍କ ଘରେ ରହିଲି । ସ୍ଥାନୀୟ କର୍ମୀଙ୍କ ପରାମର୍ଶରେ ମଫସଲ ଗସ୍ତକ୍ରମ ଠିଆରିହେଲା ଏବଂ ମୁଁ କେତେଗୁଡ଼ିଏ ସ୍ଥାନକୁ ଗଲି । ଯାଜପୁର ସହର ପାଖ ପାଖ ଗାଁମାନଙ୍କୁ ଯାଇ ଚାନ୍ଦା ସଂଗ୍ରହକଲି ଓ ମହିଳା ଓ ପୁରୁଷମାନଙ୍କର ଛୋଟ ଛୋଟ ସଭାକଲି । ସେତେବେଳେ କଂଗ୍ରେସର ପ୍ରଭାବରେ ଲୋକେ ବିଚଳିତ । ସ୍ତ୍ରୀଲୋକ ଜଣେ ଏପରି ବୁଲିବା, ଚାନ୍ଦା ସଂଗ୍ରହ କରିବା ଓ ସଭାକରିବା ଆହୁରି କୌତୂହଳପ୍ରଦ । ଅତି ଅଳ୍ପ ଚେଷ୍ଟାରେ ପ୍ରତି ଗାଁରେ ମହିଳା ସଭା ହେଉଥାଏ । ସ୍ତ୍ରୀଲୋକମାନେ ପ୍ରଶ୍ନରେ ଅଥୟ କରନ୍ତି—କଂଗ୍ରେସ କାମ କ'ଣ ? ତାକୁ କଲେ ଲାଭ କ'ଣ ? ମୁଁ କେମିତି ଘରୁ ବାହାରିଲି ? ଏମିତି ବୁଲିବୁଲି କରି କେମିତି ଚଳୁଛି ? କଂଗ୍ରେସ କାମର ଶେଷ ଫଳ କଣ ? ଅପାଠୁଆ ଗରିବ ଲୋକମାନେ ସେଥିରୁ କଣ ଲାଭ ପାଇବେ ? ଦେଶ ସ୍ୱାଧୀନ ହେଲେ ସ୍ତ୍ରୀଲୋକମାନଙ୍କର କଣ ସୁବିଧା ହେବ ? ଏ ସରକାର ଚାଲିଗଲେ ଏ ଦେଶକୁ କିଏ ଚଳାଇବ ? ପୋଲିସ, କଚେରୀ, ଆଦି କଣ ଉଠିଯିବ ? ଦୁଷ୍ଟଲୋକମାନେ କିପରି ଶାସନରେ ରହିବେ ଇତ୍ୟାଦି ବହୁତ ପ୍ରଶ୍ନ ହେଉଥାଏ । ସଭା ସିନା ଛୋଟ କିନ୍ତୁ ପ୍ରଶ୍ନ ସବୁର ଜବାବ ଦେବାକୁ ସୁଯୋଗ ମିଳୁଥିବାରୁ ପ୍ରତ୍ୟେକ ପ୍ରଶ୍ନର ଉତ୍ତର ତନ୍ନ ତନ୍ନ କରି ବୁଝାଇ କହିବାକୁ ବହୁତ ସମୟ ଯାଏ । ଯେଉଁ ସଭାରେ ସେହି ଗାଁର ପୁରୁଷକର୍ମୀ ଥାଆନ୍ତି ସେମାନେ ଲୋକଙ୍କୁ ଦାବି ଦିଅନ୍ତି, କହନ୍ତି ତମେଗୁଡ଼ା କଣବୁଝିବ ଯେ ତାଙ୍କୁ ଏତେ ପଚାରୁଛ ? ଯାହା ତାଙ୍କଠାରୁ ଶୁଣୁଛ ତାକୁ ମନେରଖି ସେହି ଅନୁସାରେ କାମ କରିବାନା ! ତାଙ୍କର କେତେ କାମ ! ତାଙ୍କ ସମୟ ତମେ କାହିଁକି ନଷ୍ଟ କରୁଛ ?' ମୁଁ ସ୍ତ୍ରୀଲୋକମାନଙ୍କ ପକ୍ଷ ନେଇ କହେ, "ଯଦି ସେମାନେ ପଚାରି ନ ବୁଝିବେ, ତାଙ୍କର ଯାହା ଜାଣିବାକୁ ଇଚ୍ଛା ତାହା ନ ଜାଣିବେ, ତେବେ ସଭା କରାଗଲା କାହିଁକି ? ଯେତେ ସମୟ ଲାଗୁ ପଛେ ସେମାନଙ୍କର ସବୁ ପ୍ରଶ୍ନର ଉତ୍ତର ମୁଁ ଦେବି ।"

ସ୍ତ୍ରୀଲୋକମାନଙ୍କର ଆଦର ଅଭ୍ୟର୍ଥନାରେ ଜାଗାଏ ଜାଗାଏ ମୁଁ ଅତିଷ୍ଠ ହୋଇଯାଏ । ଗୋଟିଏ ଜାଗାରେ ପିଇବାକୁ ପାଣି ମାଗିଲି, ପାଣି ନ ଦେଇ ଦୁଧ ଆଣି ଦେଲେ । ପାଣି ଦରକାର ବେଳେ ଦୁଧ ପିଇଲେ ତାର ଫଳ କଣ ହୁଏ ସେ ବିଷୟରେ ବୁଝାଇବାକୁ ପଡ଼େ । ମୋତେ ଯେତେ ସ୍ନେହ, ଶ୍ରଦ୍ଧା, ଆଦର ଯତ୍ନ କରିବାର କଥା ତାଠାରୁ ସହସ୍ରଗୁଣରେ ଅଧିକ କରିଲେ । ମାତ୍ର ୧୯୩୦ରେ କାମ କରିବା ପାଇଁ ସ୍ତ୍ରୀଲୋକ ବାହାରିଲେ ନାହିଁ । ଅବଶ୍ୟ ୧୯୩୨ର ଆନ୍ଦୋଳନରେ ଅନେକ ସ୍ତ୍ରୀଲୋକ ଜେଲ୍ ବରଣ କରିଥିଲେ ।

ବରୀ ଯିବାପାଇଁ ପ୍ରୋଗ୍ରାମ୍ ହୋଇଥିଲା । ଯାଜପୁରରୁ ବଲଦଗାଡ଼ିରେ ୧୩ ମାଇଲ ବାଟ ଗୁହାଳି ଗଲି । ସେଠାରେ ରେବା ରାୟ ରହୁଥିଲେ । ତାଙ୍କ ପାଖରେ କିଛି ସମୟ ରହି ବରୀ ବାହାରିଲି । ବାଟଚାଲିରେ ସିନା ଅଭ୍ୟସ୍ତ ହୋଇଯାଇଥିଲି, ଡଙ୍ଗା ଚଢିବାରେ ସମ୍ପୂର୍ଣ୍ଣ ଅନଭ୍ୟସ୍ତ ଥିଲି । ଡଙ୍ଗାରେ ବସିଲି । ପାଟ ବଢ଼ିପାଣି ପୂର୍ଣ୍ଣ । ସ୍ରୋତ ଡଙ୍ଗା, ପବନ ଜୋର୍‌ରେ ହେଉଥିବାରୁ ଡଙ୍ଗା ଉପର ଯାଏ ଲହଡ଼ି ଉଠୁଥାଏ । ମୋତେ ଯେ ଡର ମାଡ଼ୁଛି ଏ କଥା ମୁଁ ପ୍ରକାଶ ନ କଲେ ମଧ୍ୟ ସାଙ୍ଗରେ ଯାଉଥିବା କର୍ମୀମାନେ ମତେ ଆଶ୍ୱାସନା ଦେଉଥାନ୍ତି ଯେ ନାଉରୀ ଖୁବ ଭଲ, ଭୟ କରିବାର କିଛି ନାହିଁ । ମାତ୍ର ମୁଁ ଆଖି ବୁଜି ଦୁଇ ହାତରେ ଡଙ୍ଗାକୁ ଧରି ବସିଥାଏ । ବରୀରେ ପହଞ୍ଚିଲି । ସନ୍ଧ୍ୟାବେଳେ ସଭାକୁ ଯାଇ ଦେଖିଲି, ସଭାକୁ ବହୁତ ଲୋକ ଆସିଛନ୍ତି, ଯାହାମତ ବଡ଼ସଭା । ସେଠି ସ୍ତ୍ରୀଲୋକମାନଙ୍କ ପାଇଁ ସ୍ୱତନ୍ତ୍ର ସଭାର ଦରକାର ହେଲା ନାହିଁ । ପରବର୍ତ୍ତୀ ବର୍ଷ ୧୯୩୧ରେ ପୁରୀରେ କଂଗ୍ରେସ ଅଧିବେଶନ ପାଇଁ ସ୍ୱେଚ୍ଛାସେବକ ଓ ସେବିକା ତାଲିମ ଶିବିରରେ ସେ ଅଞ୍ଚଳର ଅନେକ ସ୍ତ୍ରୀଲୋକ ଓ କୁମାରୀ ଝିଅ ଯୋଗ ଦେଇଥିଲେ ଏବଂ ଅନେକେ ୧୯୩୨ରେ ଜେଲ୍ ଯାଇଥିଲେ । ସେଠା କର୍ମୀମାନେ ମଦ ବନ୍ଦ କରିବା କାର୍ଯ୍ୟକ୍ରମ ନେଇ ବହୁ ସଂଖ୍ୟାରେ ଖଜୁରି ଗଛ ସେ ଅଞ୍ଚଳରୁ କାଟିପକାଇଥିଲେ । ତାପରେ କଲ୍ୟାଣପୁର, ପୁରୁଷୋତ୍ତମପୁର ଓ ଅହିଆସ ପ୍ରଭୃତି କେତେ ଗ୍ରାମକୁ ଗଲି । ସେ ସ୍ଥାନମାନଙ୍କର ସ୍ତ୍ରୀଲୋକ ଓ କୁମାରୀ ଝିଅମାନେ ମଧ୍ୟ ସ୍ୱେଚ୍ଛାସେବିକା ତାଲିମ ଶିବିରକୁ ଆସିଥିଲେ ଓ ତାପରେ ଜେଲ୍ ଯାଇଥିଲେ । ମୁଁ ଅନେକଗୁଡ଼ିଏ ଗାଁରେ ସଭା କଲି ଏବଂ ଚାନ୍ଦା ସଂଗ୍ରହ କରିବା ପରେ ଯାଜପୁରରୁ ବଲଦଗାଡ଼ିରେ ଯାଜପୁର ରୋଡ଼ ଷ୍ଟେସନକୁ ଆସିଲି । ଫେରିବା ବେଳେ ମଧ୍ୟ ବସ୍‌ରେ ଯାଜପୁରରୁ ଆସିବାକୁ ଅନୁମତି ମିଳି ନଥିଲା ।

ତାପରେ କେତେ ବର୍ଷ ପରେ ଭୂଦାନ ଆନ୍ଦୋଳନ ଚାଲିଲା । ମୁଁ ସେହି ଯାଜପୁରର ଭୂତପୂର୍ବ ଏସ୍.ଡ଼ି.ଓ.ଙ୍କ ପାଖକୁ ଗଲି ଜମି ମାଗିବା ପାଇଁ । ସେ ତାଙ୍କର ଅତୀତର କାମ କଥା ସ୍ମରଣ କରି ଲଜ୍ଜିତ ହେଉଛନ୍ତି ବୋଲି ମନେହେବାରୁ ମୁଁ ତାଙ୍କୁ କହିଲି—ସେତେବେଳେ ଆପଣଙ୍କ କର୍ତ୍ତବ୍ୟ ଆପଣ କରିଥିଲେ । ବର୍ତ୍ତମାନର କର୍ତ୍ତବ୍ୟ ଭୂମିହୀନଙ୍କୁ ଜମିଦେବା, ତାହା କରନ୍ତୁ । କଥାଟା ସେ ଭଲଭାବରେ ଗ୍ରହଣ କଲେ ଓ ଜମି ଦେଲେ ।

## ୨୨ । ଗିରଫ ଓ ଜେଲ ଅନୁଭୂତି

ଯାଜପୁର ପରେ କେନ୍ଦ୍ରାପଡ଼ା ଯିବା ସ୍ଥିର ହେଲା । ଶ୍ରୀମତୀ ମାଳତୀ ଚୌଧୁରୀ, ସହଦେବ ଦାସ ଓ ମୁଁ ଜଗତ୍‌ସିଂହପୁରଠାରୁ କେନ୍ଦ୍ରାପଡ଼ା ଗଲୁ । ସଞ୍ଜରେ କେନ୍ଦ୍ରାପଡ଼ାରେ ଯଦୁମଣି ମଙ୍ଗରାଜଙ୍କ ଘରେ ରହି, ପରଦିନ ପଟ୍ଟାମୁଣ୍ଡାଇ ଯିବାପାଇଁ କେନ୍ଦ୍ରାପଡ଼ା ବସ୍‌ଷ୍ଟାଣ୍ଡକୁ ଯାଇ ଶୁଣିଲୁ ଏସ୍ ଡି. ଓ.ଙ୍କର ନିର୍ଦ୍ଦେଶ ଅଛି ଯେ ଆମେ ତିନି ଜଣ ବସ୍‌ରେ ଯାଇପାରିବୁ ନାହିଁ । ବସ୍ ନ ମିଳିବାରୁ ଆମକୁ ପଟ୍ଟାମୁଣ୍ଡାଇ ପର୍ଯ୍ୟନ୍ତ ଏଗାର ମାଇଲ ବାଟ ଚାଲିକରି ଯିବାକୁ ପଡ଼ିଲା । ବାଟଯାକ ଅସରାକୁ ଅସରା ବର୍ଷା ହେଉଥାଏ । ଲୁଗାପଟା ସମ୍ପୂର୍ଣ୍ଣ ଓଦାହୋଇଯାଇଥାଏ । କଟକରୁ ଜାଣିଥିଲୁ, ସେଠାର ଜଣେ ଭଦ୍ରଲୋକ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ସାଙ୍ଗରେ ପ୍ୟାରୀମୋହନ ଏକାଡ଼େମୀରେ ଏକାଶ୍ରେଣୀରେ ପଢ଼ୁଥିଲେ । ପଟ୍ଟାମୁଣ୍ଡାଇରେ ପହଞ୍ଚି ତାଙ୍କ ସହିତ ଦେଖାହେଲା । ସେ ତାଙ୍କ ଘରକୁ ଡାକନେଇଗଲେ । ତାଙ୍କ ଘରକୁ ଯାଇ ଆମର ପ୍ରଥମ କାର୍ଯ୍ୟ ହେଲା ଓଦା ଲୁଗାକୁ ବଦଳାଇ ତାକୁ ଶୁଖାଇବା । ଲୁଗା ଶୁଖାଉଛୁ, ସେ ଭଦ୍ରଲୋକ ନମ୍ର ଓ ବିନୀତ ଭାବରେ ମୋ ପାଖକୁ ଆସି କହିଲେ, "ପୋଲିସ ମନାକରୁଛି, ଆପଣ ମୋ ଘରେ ନ ରହିଲେ ଭଲହୁଅନ୍ତା । ଜାଣନ୍ତି ତ ଆମେ ଗୃହସ୍ଥ ଲୋକ । ପିଲାଛୁଆ ନେଇ ଘର କରୁଛୁ ।" ତତ୍‌କ୍ଷଣାତ୍ ଆମେ ଲୁଗା ଫିଟାଇଆଣି ତାଙ୍କ ଘରୁ ବାହାରିଆସିଲୁ । ମାଟିଆ ଗାଁରେ ଜଣକ ଘରେ ରହିଲୁ । ସଭାରେ ସଭା ହେଲା । ତା'ପରଦିନ କେନ୍ଦ୍ରାପଡ଼ାରୁ ଫେରି ଲଞ୍ଚରେ କଟକ ଆସିଲୁ ।

ତାହାପରେ ଗସ୍ତ ପଡ଼ିଲା ମାହାଙ୍ଗା ଓ ବଡ଼ଚଣା ଆଡ଼େ । ସଙ୍ଗରେ ପ୍ରାଣକୃଷ୍ଣ ପଢ଼ିହାରୀ ଗଲେ । କୁସୁପୁର ତାଙ୍କର ପ୍ରିୟ ଅଞ୍ଚଳ । ଗତାନୁଗତିକ ଭାବରେ ସଭା ଆଦି ସବୁ କାର୍ଯ୍ୟ ହେଲା । ପଢ଼ିହାରୀ ମହାଶୟ ଫିସ୍ ଧାର୍ଯ୍ୟ କରି କହିଲେ ଦିନକୁ ଶହେ ଟଙ୍କା ଲେଖାଁ । ସ୍ଥାନୀୟ କର୍ମୀମାନେ ଆମ ସାହାଯ୍ୟରେ ପଢ଼ିହାରୀ ମହାଶୟଙ୍କ ସର୍ତ୍ତ ପୂରଣ କରିଦେଲେ । କୁସୁପୁର ଅଞ୍ଚଳର କାମ ସାରି ଆମେ ଦୁହେଁ ଧର୍ମଶାଳା ଯିବାପାଇଁ କୁସୁପୁରରୁ ବାହାରିଲୁ । ବାଇଶମଉଜା ନଦୀଘାଟରେ ପହଞ୍ଚିଲା ବେଳକୁ ସନ୍ଧ୍ୟା ହୋଇଗଲାଣି । ଘାଟିଆ ଡଙ୍ଗା ବାନ୍ଧି ସାରିଲାଣି । ସେ ସେପାରିରେ, ଆମେ ନଈ ଏପାରିରେ । ସେଠି ପାଖରେ କୌଣସି ଆଶ୍ରୟ-ସ୍ଥଳ ନଥିବାରୁ ନଈ ପାରିହେବା ଛଡ଼ା ଉପାୟ ନାହିଁ । ପଢ଼ିହାରୀ ମହାଶୟ ବଡ ପାଟିରେ ଘାଟିଆକୁ ବାରମ୍ବାର ଡାକୁଥାନ୍ତି । ଆମ ସାଙ୍ଗକୁ ହାଟରୁ ଫେରୁଥିବା ଆଉ କେତେକ ଲୋକ ଜୁଟିଗଲେ । ତାଙ୍କ ଭିତରୁ ଜଣେ ବଡ଼ପାଟିରେ କହିଲେ ଘାଟିଆକୁ, "ଆରେ ଶୁଣୁନୁ କାହିଁକି ? ରମାଦେବୀ ଓ ପଢ଼ିହାରୀ ମହାଶୟ ପରି ପାରି ହେବାକୁ ବସିଛନ୍ତି ! ସଞ୍ଜ ବୁଡ଼ିଗଲା ତ କଣ ହେଲା ? ତୁ ଡଙ୍ଗା ଆଣି ପାରିକରିଦେ ।" ଘାଟିଆ ସେପାରିରୁ ଜବାବ ଦେଲା "ହୁକୁମ ନାହିଁ ।" ଆମ କଥୋପକଥନ ଘାଟିଆ ସଙ୍ଗରେ ଉଚ୍ଚ ସ୍ୱରରେ ହେଉ-ଥିବାରୁ, ସେପାରି ଦୋକାନର ଗୁଡ଼ିଏ ଲୋକ କହିବୋଲି ଘାଟିଆକୁ ପଠାଇଲେ । ଆମେ

ପାଖହୋଇ ଆସିଲୁ । ସେଦିନ ହାଟପାଳି । ହାଟ୍ ଆମାନେ ହାଟରୁ ଫେରି ତାଙ୍କ ଭିତରେ ଟଙ୍କା ପଇସା ହିସାବପତ୍ର ତୁଟାଫୁଟି କରୁଥାନ୍ତି । ତା' ଭିତରେ ଗପ ଚାଲିଥାଏ, କଂଗ୍ରେସ କଥା ମଧ୍ୟ ପଡ଼ୁଥାଏ । ମୁଁ ତାଙ୍କ କାରବାର ଦେଖୁଥାଏ । ପଟ୍ଟନାୟକ ମହାଶୟଙ୍କୁ କଣ କହିବ ବୋଲି ତାଙ୍କ ଆଡ଼କୁ ଅନାଇବାରୁ ଦେଖିଲି, ସେ ଟଙ୍କା ବୁଜୁଳାକୁ ଫିଟେଇ ଟଙ୍କା ପଇସା ଗଣିବା ଆରମ୍ଭ କରିଦେଇଛନ୍ତି । ଟଙ୍କା ବୁଜୁଳାକୁ ଲୋକେ ଦେଖି ଯାଉଥିଲେ । ଟଙ୍କା ଗଣା ତ ବନ୍ଦ ହେଲା,ମାତ୍ର ଏତେ ଗୁଡ଼ାଏ ଟଙ୍କା ନେଇ ସେଠି ରାତିରେ ରହିବା ନିରାପଦ ମନେ ହେଲା ନାହିଁ । ଗାଁ ନଈକୂଳଠାରୁ ଦୂରରେ । ଜହ୍ନ ଉଠିଗଲା । ପଚାରି ପଚାରି ଗାଁ ଭିତରକୁ ଗଲୁ । ଆମକୁ ଦେଖିବା ପାଇଁ ସ୍ତ୍ରୀ ପୁରୁଷ, ପିଲାଛୁଆ ଜମା ହୋଇଗଲେ । ରାତି କଟେଇବା ପାଇଁ ବଖରାଏ ଘର ବା ପିଣ୍ଡା ଦେବା କଥା ଯେମିତି କହିଲି, ତତ୍‌କ୍ଷଣାତ୍ ସମସ୍ତେ ପଳାୟନକଲେ । ଅବଶିଷ୍ଟ ଯେଉଁ ଦୁଇ ତିନି ଜଣ ରହିଲେ, ସେମାନେ ଗୋଟିଏ ଘର ଆମକୁ ଦେଖାଇଦେଲେ । ଆମେ ସେଠି ୧୫।୨୦ ମିନଟ ବସିବା ପରେ ସେ ଭଦ୍ରଲୋକ ଆସି କହିଲେ, "ଚୌକିଆ ମନାକରୁଛି, ଆପଣ ସେ ଘରେ ରହି ପାରିବେ ନାହିଁ ।" ଆମେ ଘରୁ ବାହାରି ପଦାରେ ଠିଆହେଲୁ । କିଛି ସମୟ ପରେ ଜଣେ ବୁଢ଼ୀ ଆସି କହିଲେ—ଚୌକିଆଟା କିଏ ମ ? ମୋର ତ ବଖୁରିଏ ଘର, ସେଥିରେ ତୁମେ ରହିପାରିବ ନାହିଁ । ମୋ ପିଣ୍ଡା ଓସାରିଆ—ତମେ ସେଇଠି ରହିବ । ଚୌକିଆ କ'ଣ କରିବ କରୁ । ଶୋଇବାକୁ ଜାଗା ନ ଥିବାରୁ ଆମେ ପିଣ୍ଡାରେ କାନ୍ଥକୁ ଆଉଜି ବସି ଢୋଳେଇଲୁ । ଟଙ୍କା କଥା ମନେପଡ଼ିଲାଗ । ବୁଢ଼ୀଙ୍କୁ ଡାକି କହିଲୁ, "ମାଉସୀ, ଗୋଟିଏ କାହାଣୀ କହନ୍ତ କି ଆମେ ଶୁଣନ୍ତୁ ।" ବୁଢ଼ୀ ଖୁସି ହୋଇ କାହାଣୀ କହିବାକୁ ଲାଗିଲେ । ଦିନରେ ବାଟଚାଲି, ରାତିରେ ଖାଇବା ନାହିଁ । ଥକ୍‌କା ମରି ହୋଇ ନିଦ ଘାରୁଥାଏ । ପଟ୍ଟନାୟକ ମହାଶୟ କାନ୍ଥକୁ ଆଉଜି ବସି ବସି ଢୋଳେଇ ପଡ଼ିଲେ । ମୁଁ ତାଙ୍କୁ ଶୋଇବାକୁ ଛାଡ଼ିଦେଇ ବୁଢ଼ୀଠାରୁ କାହାଣୀ ଶୁଣିଲି । ବୁଢ଼ୀ କହିଲେ—"ହଇଅ ତୁ ହୁଁ ମାରିବୁ, ତୁ ହୁଁ ନ ମାରିଲେ ମୁଁ କାହାଣୀ ନ କହି ଚାଲିଯିବି ।" ଥରେ ଯଦି ହୁଁ ମାରିବା ବ୍ୟତିକ୍ରମ ହୁଏ, ତେବେ ବୁଢ଼ୀ କହନ୍ତି, "ହଇଅ, ତୋର ତ ଶୁଣିବାକୁ ମନ ନାହିଁ, ମୁଁ ଯାଉଛି ଶୋଇବି ।" ଏତିକି ଅପରାଧ ଯୋଗୁଁ କାକୁତି ମିନତି କରି ବୁଢ଼ୀଙ୍କୁ ବସେଇ ଗପ ଶୁଣିଲି । ଏମିତି ରାତି ପାହିଲା । ଆମେ ଧର୍ମଶାଳା ବାହାରିଲୁ । କିଛିଦୂର ଯିବା ପରେ ଧର୍ମଶାଳାର କର୍ମୀ ଖଣ୍ଡେ ବଳଦଗାଡ଼ି ଆଣିଲେ । ସେଥିରେ ଧର୍ମଶାଳା ଗଲୁ । ପଟ୍ଟନାୟକ ମହାଶୟଙ୍କର ଝିଅ ସୁବର୍ଣ୍ଣ ଧର୍ମଶାଳା ଡାକ୍ତରଖାନାରେ ଚାକିରି କରୁଥିଲେ । ପଟ୍ଟନାୟକ ମହାଶୟ ଆମ ସଙ୍ଗରେ ଥିବା କର୍ମୀକି ଡାକ୍ତରଙ୍କ ପାଖକୁ ପଠାଇ ଖବରଦେଲେ ଯେ, "ଡାକ୍ତର ବାବୁଙ୍କୁ କହିବ, ଆମେ ଧର୍ମଶାଳାରେ ପହଞ୍ଚୁ ପହଞ୍ଚୁ ଏଗାରଟା କି ବାରଟା ହେବ । ଆମେ ଧର୍ମଶାଳାରେ ପହଞ୍ଚିବା ସଙ୍ଗେ ସଙ୍ଗେ ଯେପରି ତାଙ୍କ ଘରେ ଖାଇବାକୁ ପାଇବୁ । କାଲି ରାତିରୁ କିଛି ଖାଇନାହୁଁ ।" ଆମେ ଧର୍ମଶାଳାରେ ପହଞ୍ଚି

ବ୍ରାହ୍ମଣୀ ନଦୀରେ ଗାଧୋଇ ଆସିଲୁ । ରାସ୍ତା କଡ଼ରେ ଅଳ୍ପ କେତୋଟି ଦୋକାନ ଘର । ସେ ଦୋକାନଘରରୁ ଗୋଟିଏ ଘରେ ଆମ ରହିବା କଥା ହୋଇଥାଏ । ମୁଁ ଦୋକାନଘର ଚାଳରେ ଲୁଗା ଶୁଖାଉଛି, ଦୋକାନୀ ଆସି କହିଲେ, "ମା ! ମୋ ଦୋଷ ଧରିବେ ନାହିଁ । ଏ ତ ଥାନା ପାଖ ଜାଗା । ପୋଲିସ ଆସି କହୁଛି ଆପଣ ଏଠି ରହିପାରିବେ ନାହିଁ ।" ମୁଁ ଲୁଗା ଖୋଲିଆଣି ସଡ଼କ କଡ଼ରେ ଥିବା ଗଛ ମୂଳରେ ବସିଲି । କର୍ମୀଟି ଡାକ୍ତରବାବୁଙ୍କ ପାଖରୁ ବୁଲିଆସି ଖବର ଦେଲା ଯେ ଡାକ୍ତରବାବୁ ଖାଇବାକୁ ଦେଇପାରିବେ ନାହିଁ । ପୋଲିସର ତାଙ୍କ ଉପରେ ଖର କଡ଼ା ନଜର । ଦୋକାନରୁ ଚୁଡ଼ା କିଣି ଗଛମୂଳେ ବସି ଖାଇଲୁ । ସଂଧ୍ୟାବେଳେ ଲୋକ ଜମିଲେ । ଭଲ ସଭା ହେଲା ।

୧୯୩୦ ଆନ୍ଦୋଳନରେ ମୋର ପ୍ରଥମ ଗସ୍ତ ପଡ଼ିଲା କଟକ ଜିଲ୍ଲା ବାଲିକୁଦାରେ । ବାଲିକୁଦା ଅଞ୍ଚଳରେ ଆମର ବହୁତ ବନ୍ଧୁବାନ୍ଧବ । ମୁଁ ସେଠି କପର କ'ଣ କରିବ ଏହି ଚନ୍ତାରେ ପଡ଼ିଲି । ବାଲିକୁଦା ଯାଇ ପ୍ରଥମେ ନିତ୍ୟାନନ୍ଦ କାନୁନ୍‌ଗୋଙ୍କ ଘରେ ରହିଲି । ତା ପରଦିନ କର୍ମୀମାନେ ଆସି ବାଲିସାହିକୁ ନେଇଗଲେ । କର୍ମୀମାନଙ୍କ ସଙ୍ଗରେ ବୁଲିକରି ଗଲି । କ୍ରମେ ତାହା ଗୋଟିଏ ବଡ଼ ଶୋଭାଯାତ୍ରା ପରି ହୋଇଗଲା । ଜଗୁ ବୀରକିଶୋର ଦାସଙ୍କ ତତ୍ତ୍ୱାବଧାନରେ ଗଗନପବନ କର୍ମୀ ଯାଉଥାଏ । ଚାନ୍ଦା ମାଗିବା ମୁଖ୍ୟ କାମ । ମୋର ଆତ୍ମୀୟମାନେ ମୋତେ ଆଶାଠାରୁ ସାହାଯ୍ୟ କରିଲେ । ମୋର ନିକଟତମ ଆତ୍ମୀୟମାନେ ମୋତେ ସାତ ଆଠ ତୋଳା ଓଜନର ସୁନା ଗହଣା ଦେହରୁ କାଢ଼ି ଦେଉଥିଲେ । ତାଙ୍କୁ ଦେଖି ଅନ୍ୟମାନେ ନିଜ ନିଜ ଶକ୍ତିର ଅଧିକରୁ ଦାନ କରିଥିଲେ । ସେ ଅଞ୍ଚଳରେ ପ୍ରାୟ ଦଶ ବାର ଦିନ ରହି ଗାଁଏ ଗାଁଏ ବୁଲିଲି । ସେଠାରୁ ଚାନ୍ଦାର ଚହଳ ହୋଇଗଲା । ସ୍ତ୍ରୀଲୋକମାନେ ଗହଣା ଦେଲେ । ସୁନା ଗହଣା ଅଳ୍ପ— ରୁପା ଗହଣା ବେଶୀ । ଥିଲାବାଲା ନଥିଲାବାଲା ସମସ୍ତେ ଗହଣା ଦେବାରୁ ଗହଣା ଟୋକେଇରେ ନିଆଯାଉଥାଏ ।

ସତ୍ୟାଗ୍ରହୀ ଦଳ ସେଠାରୁ ସଙ୍ଗେ ସଙ୍ଗେ ବାହାରି କଟକ ଆସିଲେ । ପରେ ମଧ୍ୟ ୧୯୩୦ ଓ ୩୨ ଆନ୍ଦୋଳନରେ ବହୁତ ସତ୍ୟାଗ୍ରହୀ ଓ ବାନରସେନା ସେ ଅଞ୍ଚଳରୁ ଆସିଲେ । ବାଲିକୁଦାର ଉତ୍ସାହ, ସ୍ୱେଚ୍ଛାସେବକ ସଂଖ୍ୟା ଓ ଗହଣା ଚାନ୍ଦା ଆଦି ଅନ୍ୟ ସବୁ ସ୍ଥାନକୁ ଟପିଯାଇଥିଲା ଓ ସମସ୍ତଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରିଥିଲା ।

୧୯୩୦ ନଭେମ୍ବର ୨୧ ତାରିଖ ରାତି ପ୍ରାୟ ୧୦ଟା ବେଳେ ସ୍ୱରାଜ୍ୟ ଆଶ୍ରମଠାରେ ମତେ ଓ ପ୍ରାଣକୃଷ୍ଣ ପଢ଼ିହାରୀଙ୍କୁ ପୋଲିସ୍ ଗିରଫ କରିଲେ । ନିତ୍ୟାନନ୍ଦ କାନୁନ୍‌ଗୋଙ୍କୁ ମଧ୍ୟ ସେହିକବେଳେ ଗିରଫ୍ କରିଲେ । ମାତ୍ର ସେ ଜାମିନରେ ରହିଲେ । ଆମକୁ ଡେପୁଟି ମାଜିଷ୍ଟ୍ରେଟ୍ ଆହମଦ ସାହେବଙ୍କ ମିଶିଲକୁ ନିଆଗଲା । ଦେଖିଲି ଗୋଟିଏ ଲଣ୍ଠନ ଜଳୁଛି । ଆହମଦ ସାହେବ ଏକା ମିଶିଲରେ ବସିଛନ୍ତି । କର୍ମଗୃହ କେହି ନାହାନ୍ତି । ପୋଲିସ ଇନ୍‌ସପେକ୍‌ଟର ତାଙ୍କ ପାଖରେ ଲେଖାପଢ଼ି କରାଇ ଆମକୁ ଜେଲ୍ ଭିତରକୁ ନେଲେ ।

ସେତେବେଳେ କଟକ ଜେଲ୍‌ରେ ରାଜନୈତିକ ମହିଳା ବନ୍ଦୀ କେହି ନଥାନ୍ତି । ସରଳା ଦେବୀ ଭେଲୋର ଜେଲ୍‌ରେ ଓ ମାଳତୀ ଦେବୀ ଭାଗଲପୁର ଜେଲ୍‌ରେ ଥାନ୍ତି । ୧୨ ନମ୍ବର ଓ୍ୱାର୍ଡ଼ ବନ୍ଦଥାଏ । ତେଣୁ ମୋତେ ନେଇ ସେ ରାତରେ ଏଗାର ନମ୍ବର ଓ୍ୱାର୍ଡ଼ରେ ସ୍ତ୍ରୀଲୋକ କଏଦୀଙ୍କ ସାଙ୍ଗରେ ରଖିଲେ । ସେ ଗୋଟିଏ ନୂଆ ଅଭିଜ୍ଞତା । ତା ପରଦିନ ପ୍ରାୟ ଦିନ ଏଗାରଟା ବେଳକୁ ମତେ ବାରନମ୍ବର ଓ୍ୱାର୍ଡ଼କୁ ଆଣିଲେ । ମୋ ପାଇଁ ଜଣେ ଜମାଦାରଣୀ ନିଯୁକ୍ତ ହେଲେ । ସ୍ତ୍ରୀଲୋକମାନଙ୍କ ଓ୍ୱାର୍ଡ଼ରେ ବଡ଼ ଅଶାନ୍ତି । ଦିନରେ ତାଙ୍କୁ ଯେଉଁ ଡାଲି ରଗଡ଼ିବା, ଚାଉଳ ପାଛୁଡ଼ିବା କାମ ଦିଆଯାଏ ସେଥିରୁ ସେମାନେ କିଛି କିଛି ଲୁଚେଇ କରି ରଖି ଜମାଦାରଣୀ ହାତରେ ବାହାରକୁ ଦିଆନିଆ କରି ତାଙ୍କ ଦରକାରୀ ଜିନିଷ ଆଣନ୍ତି । ଦରକାରୀ ଜିନିଷ ଭିତରେ ପ୍ରଥମ ହେଲା ଧୂଆଁପତର । କଳିକଜିଆ ତ ସବୁବେଳେ, କେତେବେଳେ ମାଡ଼ ମରାମରି ବି ଚାଲେ । ଜଣେ ମିଶନାରୀ ଭଦ୍ରମହିଳା ସାତ ଦିନରେ ଥରେ ଆସି ସେମାନଙ୍କୁ ଧର୍ମକଥା ଶୁଣାନ୍ତି । ମୁଁ ସେମାନଙ୍କ ସଙ୍ଗେ କଥାବାର୍ତ୍ତା କରି ଜାଣିଲି ଯେ ସେମାନେ ଖଲାସ ହୋଇଗଲେ ବାହାରେ ନ ରହି ପୁଣି ଜେଲକୁ ଇଚ୍ଛାକରି ଆସନ୍ତି—କାରଣ ତାଙ୍କର ଆଉ ସମାଜରେ ସ୍ଥାନ ନାହିଁ । ଆତ୍ମୀୟସ୍ୱଜନ ତାଙ୍କୁ ଗ୍ରହଣ କରିବେ ନାହିଁ । ତେଣୁ ତାଙ୍କ ଭିତରେ ହତାଶା ଓ ନିରାଶାର ଭାବ ରହିବାରୁ ସେମାନଙ୍କ ସ୍ୱଭାବ ଉଗ୍ର ହୋଇଯାଏ ।

ମୋ ଓ୍ୱାର୍ଡ଼ରେ ମୁଁ ଆଉ ଜମାଦାରଣୀ ରହୁଥିଲୁଁ । ଆନ୍ଦୋଳନ କିପରି ଚାଲିଛି ଏହି ଚିନ୍ତାରେ ମୋ ମନ ଉତ୍କଣ୍ଠିତ । କାନ ଡେରିଥାଏ ଜେଲ୍ ଫାଟକ ଆଡ଼କୁ । କେହି ଧରାହେଲେ ତାଙ୍କୁ ଜେଲ୍‌ଫାଟକ ପାଖରେ ଛାଡ଼ିବା ପାଇଁ କିମ୍ବା କେହି ଖଲାସ ହେଲେ ଜେଲ୍-ଫାଟକ ପାଖରୁ ତାଙ୍କୁ ନେବାପାଇଁ କର୍ମୀମାନେ ଗୀତ ଗାଇ ଗାଇ ଆସି ନେଇ ଯାଉଥିଲେ ବା ଛାଡ଼ିଯାଉଥିଲେ । ସେତେବେଳେ ଚାନ୍ଦା ମାଗିବାର ଚଳନ ଥିଲା । ଜଣେ ହାରମୋନିୟମ୍ ବଜାଉଥିଲେ, କେତେ ଜଣ ଗୀତ ଗାଉଥିଲେ । ଚାରିଜଣ ଲୋକ ଗୋଟିଏ ଚାଦରର ଚାରିକୋଣକୁ ଧରି ତାଙ୍କ ସଙ୍ଗେ ଚାଲୁଥିଲେ । ସେହି ଚାଦର ଉପରେ ଯେ ଯାହା ଦେବାର ଇଚ୍ଛା ଦେଉଥିଲେ । ସେ ଗୀତ ଶୁଣିବାକୁ ବି ମୁଁ କାନ ଡେରିଥାଏ । ଚାରି ପାଞ୍ଚଦିନ ପରେ ମୋର ବିଚାରର ତାରିଖ ପଡ଼ିଲା । ଜେଲ୍‌ଖାନା ଭ୍ୟାନ୍‌ରେ ମୋତେ କଲେକ୍ଟରୀ ଅଫିସକୁ ନିଆଗଲା । ମୁଁ, ଜମାଦାରଣୀ ଓ ଗାର୍ଡ଼ ଏବଂ ପୋଲିସ୍ ଦଳେ ସେ ଗାଡ଼ି ଭିତରେ ଗଲୁଁ । କଲେକ୍ଟରୀ ଅଫିସ ସାମନାରେ ଗାଡ଼ି ରହିଲା । ପୋଲିସ୍‌ମାନେ ଗାଡ଼ିରୁ ବାହାରି ମୋତେ ଘେରିକରି ଠିଆହୋଇଗଲେ । ମୁଁ ଅଫିସ ଭିତରକୁ ଗଲି । ମୋତେ ଦେଖାଯାଉଥାଏ—ବାହାରେ ଲୋକାରଣ୍ୟ । ମୁଁ ଯେତେ ସମୟ କଚେରୀରେ ରହିଲି ନାନା ରକମର ଧ୍ୱନି ଓ ଜାତୀୟ ସଙ୍ଗୀତରେ ସେ ଖଣ୍ଡ କଂପୁଥାଏ । ମୋ ବିଚାର ସରିଲା । ଆଠ ମାସ ଜେଲ୍-ଦଣ୍ଡ ମିଳିଲା । ମୁଁ ଜେଲ୍‌କୁ ଆସିଲି । ଏହା ପରେ ମୋର ବିଚାର ସବୁଥର ଜେଲ୍ ଭିତରେ ହୋଇଛି । ସଜା-ହୁକୁମ ହେବା ପରେ ମୋତେ ଭାଗଲପୁର ଜେଲକୁ ନିଆଗଲା । ଆମେ ସେଠାରେ ସାତ ଜଣ ଏକାଠି ଗୋଟିଏ କୋଠରୀରେ ରହିଲୁ । ମୁଁ ଓ

ମାଲତୀ ଦେବୀଙ୍କ ଉପରନ୍ତୁ ମୀରା ଦେବୀ ଥିଲେ । ସେ ଜଣେ ପ୍ରଫେସର୍‌ଙ୍କର ଏକମାତ୍ର କନ୍ୟା । ସେ ହଜାରୀବାଗରେ ରହନ୍ତି । ମୀରା ଦେବୀ ଦ୍ୱିତୀୟ ଶ୍ରେଣୀର କଏଦୀ ଥିବାରୁ ତାଙ୍କୁ ଦେଖିବା ପାଇଁ ତାଙ୍କ ବାପା ପନ୍ଦର ଦିନରେ ଥରେ ଆସନ୍ତି । ଆଉ ଜଣେ ଥାନ୍ତି, ଜଣେ ସ୍ୱର୍ଣ୍ଣମାଳା-ବ୍ୟବସାୟୀଙ୍କ ସ୍ତ୍ରୀ ବିନ୍ଧ୍ୟବାସିନୀ ଦେବୀ । ସେ ବୁଢ଼ୀ ହେଲେ ମଧ୍ୟ ଖୁବ୍ ଜମେଇ ରଖିଥାଆନ୍ତି । ଆଉ ଦୁଇଜଣ—ସେମାନଙ୍କ ନାମ ସେବା ଓ ବିଦ୍ୟା । ସେବାର ଗୋଟିଏ ସାନ ପିଲା ଥିଲା । ତାଙ୍କ ଭିତରୁ ବିଦ୍ୟା ଏବେ ବିହାରର ମୁଙ୍ଗେର ଜିଲ୍ଲା ଲକ୍ଷ୍ମୀସରାଇଠାରେ ଗୋଟିଏ ବାଳିକା କନ୍ୟା ବିଦ୍ୟାପୀଠ ଚଳାଉଛନ୍ତି । ଆମର କାମଦାମ ପାଇଁ ସାଧାରଣ ସ୍ତ୍ରୀ-କଏଦୀ ନିଯୁକ୍ତ ହୋଇଥାନ୍ତି । ଭାଗଲପୁର ଜେଲ୍‌ରେ ଯେତେ ସ୍ତ୍ରୀ-କଏଦୀ ଥିଲେ ସମସ୍ତେ ଖୁନି ଆସାମୀ । ତାଙ୍କୁ କୋଡ଼ିଏ ବର୍ଷ ଲେଖାଏଁ ସଜା ହୋଇଥିଲା । ତେଣୁ ସେମାନଙ୍କୁ ବିଶ୍-ବର୍ଷିଆ କହନ୍ତି । ତାଙ୍କ ଭିତରେ କେତେ ଜଣ ଓଡ଼ିଆ ସ୍ତ୍ରୀଲୋକ କଏଦୀ ମଧ୍ୟ ଥିଲେ । ସେମାନେ କାହିଁକି ଓ କେମିତି ଖୁନ୍ କରିଥିଲେ ତାହା କହନ୍ତି । ଜଣେ ଦି ଜଣ ନିର୍ଦ୍ଦୋଷ ମଧ୍ୟ ଥିଲେ । ଆଉ ଦୁଇ ତିନି ଜଣ ଥିଲେ, ଯେଉଁମାନଙ୍କର କି, ଯାହାକୁ ସେମାନେ ଖୁନ୍ କରିଥିଲେ, ସେମାନଙ୍କ ପ୍ରତି ଆଗରୁ ରାଗ (କ୍ରୋଧ) ବା ବିରକ୍ତି ନ ଥିଲା, କିମ୍ବା ଖୁନ୍ କରିବାର କଥା କଳ୍ପନାରେ ବି ନ ଥିଲା । ହଠାତ୍ ମୁଣ୍ଡରେ ଖିଆଲ ଆସିଗଲା, ତଣ୍ଟି ଚିପି ମାରିଦେଲେ ବା ଛୁରିରେ କାଟିଦେଲେ ।

ପ୍ରତି ପନ୍ଦର ଦିନରେ ମୀରା ଦେବୀଙ୍କ ବାପା ମୁଲାକାତକୁ ଆସି ଥରକୁ ବାହାରର ଖବର ଶୁଣାଉଥିଲେ । ତା'ଛଡ଼ା ଆମକୁ ଖଣ୍ଡେ ଇଂରାଜୀ ଓ ଖଣ୍ଡେ ହିନ୍ଦୀ ଖବରକାଗଜ ମିଳୁଥାଏ । ସେଥିରୁ ବାହାର ପରିସ୍ଥିତି ଅନୁମାନ କରିନେଉଥିଲୁ । ଧୀରେ ଧୀରେ ଗାନ୍ଧୀ ଆର୍‌ଉଇନ୍‌ଙ୍କ ସନ୍ଧି ପ୍ରସ୍ତାବ ପ୍ରକାଶ ପାଇଲା । ତା'ପରେ ଜେଲ୍‌ରୁ ବନ୍ଦୀମାନେ ମୁକୁଳିବାର ପ୍ରସ୍ତାବ ବାହାରିଲା । ଜେଲର୍ ଓ୍ୱାର୍ଡ଼କୁ ଆସି ଆମର ସୁବିଧା ଅସୁବିଧା କଥା ବୁଝିବା ବେଳେ, ଆମ ମିଆଦୀ ସରିବା ପୂର୍ବରୁ ଆମେ ଜେଲ୍‌ରୁ ଛାଡ଼ିଯିବୁ ବୋଲି ସୂଚାଇ ଦେଇ ଗଲେ । ଦିନେ ଭୋରରୁ ଜେଲର୍ ଜଣାଇଦେଲେ ଯେ ଆଜି ବନ୍ଦୀମାନେ ଖଲାସ ହେବେ । ଆମେ ପୂର୍ବରୁ ନିଜ ନିଜର ଜିନିଷପତ୍ର ସଜାଡ଼ି ରଖିଥିବାରୁ ଅଳ୍ପ ସମୟରେ ବାହାରିବାକୁ ପ୍ରସ୍ତୁତ ହେଲୁ । ସାଧାରଣ କଏଦୀମାନେ କାନ୍ଦାକଟା କରି ଆମକୁ ବିଦାୟ ଦେଲେ । ଆମେ ଜେଲ୍ ଅଫିସକୁ ଆସିଲୁ । ଆଜି ଜେଲର୍‌ଙ୍କ ବ୍ୟବହାର ଅନ୍ୟ ପ୍ରକାରର । ବାହାରୁ ତାଙ୍କ ପାଖକୁ ଖବର ଆସିଲା, ଜେଲ୍ ଫାଟକ ପାଖକୁ ଶୋଭାଯାତ୍ରା ଆସିଲେ ଆମେ ଗ୍ରୁଡ଼ ପାଇବୁ । ଜେଲର୍‌ଙ୍କ ପରିବାର ଅଫିସଘରର ଉପର ମହଲାରେ ରହୁଥିଲେ । ଜେଲର୍ ଆମକୁ ତାଙ୍କ ଘରକୁ ନେଇ ଜଳଖିଆ ଖୁଆଇଲେ । ଆମେ ସାଧାରଣ ଲୋକଙ୍କ ଭଳି ବ୍ୟବହାର ପାଇଲୁ । କିଛି ସମୟ ପରେ ଶୋଭାଯାତ୍ରା ଆସିଲା । ଆମେ ଶୋଭାଯାତ୍ରାରେ ପ୍ରାୟ ଦିନ ଦୁଇଟା ଯାଏ ବୁଲିଲୁ । ଭାଗଲପୁରରୁ ମୁଁ ଓ ମାଲତୀ ଦେବୀ ବାଲେଶ୍ୱର ଆସିଲୁ । ଜେଲରୁ ଖଲାସ ହୋଇ ଆସିଥିବା କର୍ମୀଙ୍କ ସମ୍ମିଳନୀ ବାଲେଶ୍ୱରରେ ହେଲା ।

ନବକୃଷ୍ଣ ଚୌଧୁରୀ ଓ ମଦନମୋହନ ପଟ୍ଟନାୟକ ସେତେବେଳେ ଜେଲ୍ ବାହାରେ ଥିଲେ । ସେମାନେ ବାଲେଶ୍ୱରରେ କର୍ମୀ ସମ୍ମିଳନୀ ବସାଇଥିଲେ ଏବଂ କର୍ମୀମାନେ କଟକ ଆସିବା ବେଳକୁ ଅଭ୍ୟର୍ଥନାର ଆୟୋଜନ କରାଇଥିଲେ । ମହତାବବାବୁ, ପରିହାରୀ ମହାଶୟ ପ୍ରଭୃତି କେତେଜଣ ଜେଲରୁ ଖଲାସ ହୋଇନଥାନ୍ତି । ବିପୁଳ ଉତ୍ସାହ ଭିତରେ ଦୁଇ ଦିନରେ ସମ୍ମିଳନୀର କାମ ଶେଷକରି ଆମେ କଟକ ଆସିଲୁ ।

ମଞ୍ଜୁରୀରୋଡ଼ ଷ୍ଟେସନ୍‌ଠାରୁ କଟକ ଜିଲା ଆରମ୍ଭ ହେଲା । ମଞ୍ଜୁରୀ ରୋଡରେ ରେଲଗାଡ଼ି ରହିବା ବେଳକୁ ଦେଖାଗଲା ଲୋକମାନେ ଶୋଭାଯାତ୍ରା କରି ଜାତୀୟ ସଙ୍ଗୀତ ବୋଲି ବୋଲି ସମ୍ବର୍ଦ୍ଧନା କରିବାକୁ ଆସିଛନ୍ତି । ଗୋଟାଏ ଟୋକେଇ ଭର୍ତ୍ତି ଭଲ ଭଲ ଜଳଖିଆ, ସରବତ୍, ଟୋକେଇ ଟୋକେଇ ଫୁଲମାଳ ସାଙ୍ଗରେ ଆସିଛି । ଆନୁଷଙ୍ଗିକ କନକ ଚନ୍ଦନ ସିନ୍ଦୂର ପ୍ରଭୃତି ଅସିଛି । ଗୋଲାପପାଣି ମଧ୍ୟ ଆସିଛି । ମଞ୍ଜୁରୀରୋଡ଼ଠାରୁ କଟକ ଷ୍ଟେସନ୍ ପର୍ଯ୍ୟନ୍ତ ଏହିପରି ସମ୍ବର୍ଦ୍ଧନା ଚାଲିଲା । ପାସେଞ୍ଜର ଗାଡ଼ିର ବାହାର ପାଖଟି ଫୁଲମାଳରେ ସଜ୍ଜିତ ହୋଇଯାଇଥାଏ । କଟକ ଷ୍ଟେସନକୁ ବହୁତ ଲୋକ ଆସିଥାନ୍ତି । ସେମାନଙ୍କ ଭିତରେ କଂଗ୍ରେସର ବିରୋଧ କରୁଥିବା ବିଶିଷ୍ଟ ବ୍ୟକ୍ତିମାନେ ମଧ୍ୟ ଆସିଥିଲେ । କଟକ ଷ୍ଟେସନରେ ଓ ସହର ଭିତରେ ଯିବାବେଳେ ଯେପରି ସମ୍ମାନଜନକ ଅଭ୍ୟର୍ଥନା ହେଲା ତାହାର ତୁଳନା ନାହିଁ । ସହର ଭିତରେ ଶୋଭାଯାତ୍ରା ଯିବାବେଳେ ଲୋକେ ଦୋମହଲା ଘର ଉପରୁ ଫୁଲ ପକାଉଥାନ୍ତି । କେଉଁଠି କେଉଁଠି ଗୋଲାପପାଣି ପିଚକାରୀରେ ପକାଉଥାନ୍ତି । ଶୋଭାଯାତ୍ରା ଚୌଧୁରୀ-ବଜାରର ଜୈନମନ୍ଦିରରେ ପହଞ୍ଚି ଭାଙ୍ଗିଗଲା ।

ଆମେ ଜେଲରୁ ବାହାରିବାର ଅଳ୍ପଦିନ ପରେ କରାଚୀରେ କଂଗ୍ରେସ ଅଧିବେଶନ ହେଲା । କରାଚୀ କଂଗ୍ରେସକୁ ଯିବା ବାଟରେ ଭଗତ ସିଂହ ପ୍ରଭୃତିଙ୍କର ଫାଶୀ ହେବାର ଖବର ଶୁଣିଲୁ । ସେ ଖବର ମନରେ ଆଲୋଡ଼ନ ସୃଷ୍ଟିକଲା । ସୀମାନ୍ତ ଗାନ୍ଧୀଙ୍କ ଲାଲକୁର୍ତ୍ତି ଦଳ ଆମେ ଯାଉଥିବା ରେଲଗାଡ଼ିରେ ଉଠିଲେ । ଗାଡ଼ି କେବଳ ବଡ଼ ବଡ଼ ଷ୍ଟେସନରେ ରହୁଥିଲା । ଗାଡ଼ି ରହିବାମାତ୍ରେ ସେମାନେ ଗାଡ଼ିରୁ ଓହ୍ଲାଇ ଷ୍ଟେସନର ଏମୁଣ୍ଡରୁ ସେମୁଣ୍ଡ ଯାଏ ବୁଲିଆସନ୍ତି । ତେଣୁ ଗାଡ଼ିରେ ଥିବା ସବୁ ଲୋକ ତାଙ୍କୁ ଦେଖିବା ପାଇଁ ସୁଯୋଗ ପାଆନ୍ତି । ସେ ଗାଡ଼ିରେ ଅଧିକାଂଶ ଥିଲେ କଂଗ୍ରେସ ଅଧିବେଶନକୁ ଯିବା ଲୋକ । ତେଣୁ ଲାଲକୁର୍ତ୍ତି ଦଳଙ୍କ ଦର୍ଶନ ଯେଉଁ ଅଭୂତପୂର୍ବ ଉନ୍ମାଦନା ସୃଷ୍ଟିକଲା, ତାହା ବର୍ଣ୍ଣନାତୀତ । କରାଚୀରେ କଂଗ୍ରେସ ନେତାମାନଙ୍କର ଦର୍ଶନ ଓ ଭାଷଣ ଶୁଣିବାର ସୁଯୋଗ ମିଳିଲା ।

ଆମ ଓଡ଼ିଆମାନଙ୍କର ସ୍ୱତନ୍ତ୍ର ଆଲୋଚନା ହୋଇ ସ୍ଥିର ହେଲା ଯେ,ଏହା ପର କଂଗ୍ରେସ ଅଧିବେଶନ ଓଡ଼ିଶାରେ ହେବାପାଇଁ ନିମନ୍ତ୍ରଣ କରାଯାଉ । ଅନ୍ୟ ପ୍ରଦେଶମାନେ ଡ଼ାକିବାକୁ ଆଗ୍ରହ କରୁଥିବାରୁ ଓଡ଼ିଶାକୁ ସୁଯୋଗ ମିଳିବା ବିଷୟରେ ସନ୍ଦେହ ଥାଏ । ଆମକୁ ଗୋଟିଏ ଗୋଟିଏ ପ୍ରଦେଶ ବାଣ୍ଟି ଦିଆଗଲା ଯେ, ଆମେ ସେ ପ୍ରଦେଶର କ୍ୟାମ୍ପକୁ ଯାଇ ବୁଝାଇ କହିବୁ ଯେ ସେମାନେ ଓଡ଼ିଶାକୁ ସୁଯୋଗ ଦିଅନ୍ତୁ । ମୋ ଭାଗରେ ବିହାର ପ୍ରଦେଶ

ପଡ଼ିଲା । ବିହାରପ୍ରଦେଶର ପ୍ରତିନିଧିମାନଙ୍କର କଂଗ୍ରେସ ଅଧିବେଶନ ଡ଼ାକିବାକୁ ଆଗ୍ରହ ଥିଲା । ମୁଁ ବିହାର କର୍ମୀଙ୍କ ସହିତ ଭଲି ପରିଚିତ ନ ଥିଲି । ମୁଁ ସିଧା ରାଜେନ୍ଦ୍ର ପ୍ରସାଦଙ୍କୁ ଓଡ଼ିଶା କଥା କହିଲି । ସେ ମୁରବି ଲୋକ ଭଳି ଟିକିଏ ହସିକରି କହିଲେ, "ଦେଖୀଜୀ, ଆପଣ ନିଶ୍ଚିନ୍ତ ରହନ୍ତୁ, ମୁଁ ଆପଣଙ୍କୁ ନିର୍ଭର ଜବାବ ଦେଉଛି, ବିହାରର ନାମ କଂଗ୍ରେସ ଅଧିବେଶନର ତାଲିକାରେ ନାହିଁ ।" ମୁଁ ସେତେବେଳେ ନିଖିଳ ଭାରତ କଂଗ୍ରେସ କମିଟିର ସଦସ୍ୟ ଥିଲି । ନି. ଭା. କଂ. କମିଟିର ବୈଠକରେ ଦେଖିଲି ବିହାର ପ୍ରଦେଶର ନି ଭା.କଂ. କମିଟିର ସଭ୍ୟମାନେ ଓଡ଼ିଶାକୁ କଂଗ୍ରେସ ଡ଼ାକିବା ପ୍ରସ୍ତାବ ବେଳେ ଚୁପ୍ ବସିରହିଲେ ।

ସେତେବେଳେ ଗାନ୍ଧୀ-ଆର୍‌ଉଇନ୍ ସନ୍ଧି ଫଳରେ କଂଗ୍ରେସ କାର୍ଯ୍ୟ ପ୍ରତି ଲୋକଙ୍କର ଶ୍ରଦ୍ଧା ବଢ଼ିଯାଇଥାଏ । ପୁଣି କଂଗ୍ରେସ ଅଧିବେଶନ ଓଡ଼ିଶାରେ କେବେ ହୋଇ ନ ଥିଲା । ତେଣୁ ଓଡ଼ିଶାବାଲାଙ୍କର ବହୁତ ଆଗ୍ରହ ଦେଖାଦେଲା । କଂଗ୍ରେସ ଅଧିବେଶନ ଆୟୋଜନରେ ସର୍ବପ୍ରଥମ ଚିନ୍ତାର ବିଷୟ ହେଲା ସ୍ୱେଚ୍ଛାସେବକ ଓ ସେବିକାଙ୍କ କଥା । ଏ ଧରଣର କାମ ପୂର୍ବରୁ ହୋଇ ନ ଥିବାରୁ ତାଲିମପ୍ରାପ୍ତ ସ୍ୱେଚ୍ଛାସେବକ ଓ ସେବିକା ଆଦୌ ନ ଥିଲେ । ବମ୍ବେରୁ ହିନ୍ଦୁସ୍ଥାନୀ ସେବାଦଳ ପକ୍ଷରୁ ଜଣେ ବ୍ୟକ୍ତି ଓ ତାଙ୍କର ପତ୍ନୀ ଆସିଥିଲେ ସ୍ୱେଚ୍ଛାସେବକ ଓ ସେବିକାଙ୍କୁ ତାଲିମ ଦେବାପାଇଁ । ସ୍ୱେଚ୍ଛାସେବିକା ପାଇଁ ଯେତେ ମହିଳା ଓ କନ୍ୟାମାନେ ଆସିଲେ ତାହା ଆଶାତୀତ । ତନ୍ମଧ୍ୟରୁ ଯାଜପୁରରୁ ଆସିଥିବା ସଂଖ୍ୟା ସର୍ବାଧିକ ।

ଗାନ୍ଧିଜୀ ଗୋଲଟେବୁଲ୍ ବୈଠକରୁ ଫେରିବା ପରେ ପୁଣି ଆନ୍ଦୋଳନ ଆରମ୍ଭ ହୋଇଗଲା । କଂଗ୍ରେସ ଅଧିବେଶନ ପାଇଁ ହୋଇଥିବା ସମସ୍ତ ଆୟୋଜନକୁ ବନ୍ଦ କରି-ଦିଆଗଲା । ତାଲିମ ପାଉଥିବା ଅନେକ ସ୍ୱେଚ୍ଛାସେବକ ଓ ସେବିକା ଜେଲ୍‌କୁ ଗଲେ । ଏଥର ମଫସଲରୁ ବହୁ ସଂଖ୍ୟାରେ ମହିଳା କର୍ମୀ ବାହାରିଲେ । ସେମାନେ ବୁଲେଟିନ୍ ବାଣ୍ଟିଲେ, ପିକେଟିଂ କରି ଗିରଫ୍ ହୋଇ ଜେଲ୍ ଗଲେ । ସେମାନେ ଯାହାଙ୍କ ଘରେ ରହିବେ, ତାଙ୍କ ଘର ଖାନତଲାସ ହେବ, ସେମାନେ ଜେଲ୍‌କୁ ଯିବେ, ଏହି ଭୟରେ କଟକ ସହରରେ ମାତ୍ର ଦୁଇ ତିନିଟା ଘରେ ତାଙ୍କୁ ସ୍ଥାନ ମିଳୁଥାଏ । ତେଲେଙ୍ଗାବଜାରବାସୀ ଶ୍ରୀ ରାଧାମୋହନ ମହାପାତ୍ର ଓ କୃଷ୍ଣଚନ୍ଦ୍ର ପ୍ରଧାନ ଏଥିରେ ଅଗ୍ରଣୀ ଥିଲେ । ମହିଳାକର୍ମୀମାନେ ସମସ୍ତ ଦିନ ଘର ଭିତରେ ରହି ଉପରଓଳି ବୁଲେଟିନ୍ ବାଣ୍ଟିବାପାଇଁ ପଦାକୁ ବାହାରନ୍ତି । ତାହା ପୁଣି ପୋଲିସ୍ ନଜରରେ ପଡ଼ିବେ ବୋଲି ବାଡ଼ିଦୁଆର ବାଟେ ବାହାରନ୍ତି । ଅନ୍ୟମାନଙ୍କ ପରି ମୋ ପାଇଁ ମଧ୍ୟ ଦୁଇ ଜଣ ପୋଲିସ୍ କର୍ମଚାରୀ ନିଯୁକ୍ତ ହୋଇଥାନ୍ତି । ସେ ଦୁହେଁ ଘର ସାମନାରେ ବସିଥାନ୍ତି । ମୁଁ ଯୁଆଡ଼େ ଯାଏ ମୋ ପଛେ ପଛେ ଯାଆନ୍ତି । ସେଥିପାଇଁ ନାରୀକର୍ମୀଙ୍କୁ ଆମ ସଙ୍ଗରେ ବା ଘରେ ରଖିପାରୁନାହିଁ । ଦିନେ ଦିନେ ସକାଳେ ଉଠି ଦେଖେ ବାରଣ୍ଡାରେ ଜଣେ ବା ଦୁଇଜଣ ଭଦ୍ରମହିଳା ବସିଛନ୍ତି । ସେମାନେ ପ୍ରଥମ କରି ନିଜ ଘରୁ ବାହାରେ ଆସିଥାନ୍ତି । ଘର ଲୋକଙ୍କ ବିରୋଧ ସତ୍ତ୍ୱେ, ନୂଆ ସ୍ଥାନ ଓ ପରିସର, ନୂଆ ମଣିଷ ଓ ନୂଆ

ପ୍ରକାରର କାମକୁ ସେମାନେ ଯେପରି ସତ୍ପ୍ରତିଭ ଭାବରେ କଲେ, ତାହା ଆନ୍ଦୋଳନର ପ୍ରେରଣା ଯୋଗୁ ବୋଲି ବୁଝାଯିବ । ସେମାନଙ୍କୁ ପଚାରି ବୁଝିଲୁ-ସେମାନେ କପରି ଆସିଲେ ? ଆତ୍ମୀୟସ୍ୱଜନଙ୍କର ଆପତ୍ତି ଓ ବାଧାକୁ କପରି ଏଡ଼ାଇଲେ ? ଘରର ମାୟା ଛାଡ଼ି ଚାଲି ଆସିବା ପାଇଁ ପ୍ରେରଣା କାହାଠୁଁ ପାଇଲେ ?—ଏହାର ଉତ୍ତରରେ ନାନା ପ୍ରକାରର କଥା ଭିନ୍ନ ଭିନ୍ନ ବ୍ୟକ୍ତିଙ୍କ ଠାରୁ ଶୁଣୁଥିଲୁ । ସେଥିରୁ ଜଣେ ଦୁଇଜଣଙ୍କର ବିବୃତି ଉଦାହରଣ ସ୍ୱରୂପ ଲେଖୁଛୁ ।

ସୁଶୀଳା କହିଲେ ଯେ, ସେ ସ୍ୱପ୍ନରେ ଗାନ୍ଧିଜୀଙ୍କ ମୂର୍ତ୍ତି ଦେଖିଲେ । ତାହା ପରେ ତାଙ୍କ ମନ ଆନ୍ଦୋଳନରେ ଯୋଗ ଦେବା ପାଇଁ ଉଚ୍ଛନ୍ନ ହେଲା । ଆନ୍ଦୋଳନରେ ଯୋଗଦେଲେ କଣ କାମ କରିବାକୁ ହେବ, ତାହା ତାଙ୍କୁ ଜଣାନଥିଲା ବା ତାହା ଜାଣିବାକୁ ଆଗ୍ରହ ନ ଥିଲା । ସେ ବିଧବା, ତାଙ୍କର ସନ୍ତାନ ନ ଥିଲେ । ମନେ ମନେ ପ୍ରସ୍ତୁତ ହେଲେ । ଗହଣାକୁ ଓ ଠାକୁରଙ୍କୁ ଗୋଟିଏ ଗୋଟିଏ ପୁଟୁଳା କରି ନିଜର ଲୋକଙ୍କୁ ଜଣାଇଦେଲେ ଯେ "ମୁଁ କଂଗ୍ରେସକୁ ଯାଉଛୁ ।" ଏହା କହି ପୁଟୁଳା ଦୁଇଟିକୁ ଧରି ହଠାତ୍ ଘରୁ ବାହାରି ଚାଲିଗଲେ । ଯାହାଙ୍କୁ ସେ ଯିବାକଥା କହିଥିଲେ, ଅନ୍ୟମାନେ ତାଙ୍କଠାରୁ ଶୁଣି ତାଙ୍କୁ ଲେଉଟାଇ ନେବାକୁ ଆସିବାବେଳକୁ ସୁଶୀଳା ନଈ ପାରହୋଇ କଆବୁଦା ଭିତରେ ଲୁଚିଗଲେଣି । ସେମାନେ ଚାରିଆଡ଼େ ଖୋଜିଲେ । ସୁଶୀଳା ଦେଖିଲେ, ଖୋଜିଲା ଲୋକେ କିଏ ଘରକୁ ଗଲେ ବା ଦୂରକୁ ଗଲେ । ସନ୍ଧ୍ୟା ବୁଡ଼ିଗଲା । ସେ ଚୁପ୍ ଚାପ୍ କଆବୁଦାରୁ ବାହାରି ପୁଟୁଳା ଦୁଇଟିକୁ ଧରି ତିନି ମାଇଲ ଦୂରରେ ବାସ କରୁଥିବା ଜଣେ କଂଗ୍ରେସ କର୍ମୀଙ୍କ ଘରେ ପହଞ୍ଚିଲେ । ଗହଣା ଓ ଠାକୁରଙ୍କୁ ତାଙ୍କ ଜିମା ଦେଲେ । ସେହି କର୍ମୀ ତାଙ୍କୁ କଟକ ପଠାଇଦେଲେ ।

ଆଉ ଜଣେ ମହିଳା କହିଲେ, "ମୁଁ ନ ଆସନ୍ତି କପରି ? ଆପଣମାନେ ଆମ ଗାଁ ଅନୁଷ୍ଠାସରେ ସଭା କରି ସ୍ତ୍ରୀଲୋକମାନଙ୍କୁ କଂଗ୍ରେସରେ ଯୋଗ ଦେବାକୁ ଡାକିଲେ । ସେଥିପାଇଁ ମୋର ସ୍ୱାମୀ ଓ ଅନ୍ୟ ପୁରୁଷଲୋକେ ମୋ ସାମନାରେ ସ୍ତ୍ରୀଲୋକମାନଙ୍କ ସଙ୍ଗେ ଅପମାନଜନକ ବ୍ୟବହାର କଲେ । ତାର ପ୍ରତିବାଦ ସ୍ୱରୂପ ମୁଁ ଘର ଛାଡ଼ି ଚାଲିଆସିଲି ।"

ଏହିପରି କେତେ ପ୍ରକାରର ବିବୃତିମାନ ଶୁଣିବାକୁ ମିଳିଲା । ତାକୁ ସବୁ ଶୁଣିଲେ ଘର-କଣରେ ସଂସାର ଜଞ୍ଜାଳରେ ବ୍ୟସ୍ତ ରହୁଥିବା, ଖବରକାଗଜ ଆଦିର ସଂପର୍କରେ ନ ଥିବା ସାଧାରଣ ସ୍ତ୍ରୀଲୋକମାନଙ୍କ ହୃଦୟକୁ ଆନ୍ଦୋଳନର ପ୍ରେରଣା କପରି ସ୍ପର୍ଶ କରିଥିଲା ତାହା ଜଣାପଡ଼ୁଥିଲା । କେତେ ଝିଅମାନଙ୍କର ଅଭୂତପୂର୍ବ ସାହସ ଦେଖି ଯେପରି ଆଶ୍ଚର୍ଯ୍ୟ ଲାଗୁଥିଲା, ସେହିପରି ମନକୁ ବଳ ମିଳୁଥିଲା ଯେ ଯେଉଁ ଦେଶରେ ଏପରି ମହିଳା ଓ କନ୍ୟାମାନେ ଅଛନ୍ତି, ସେ ଦେଶକୁ କିଏ ପରାଧୀନ କରି ରଖି ପାରିବ ? ପୁଣି ଏ ବିଚାର ମଧ୍ୟ ମନକୁ ଆସୁଥାଏ ଯେ ଏ ପ୍ରେରଣା କପରି ତାଙ୍କ ଭିତରେ ସ୍ଥାୟୀ ହେବ ।

୧୯୩୨ ଜାନୁୟାରୀ ଛବିଶ ତାରିଖ ଦିନ ପୂର୍ଣ୍ଣ ସ୍ୱରାଜ୍ୟ-ସଂକଳ୍ପ-ପତ୍ର ପଢ଼ୁ ପଢ଼ୁ ମୁଁ ଗିରଫ ହେଲି । ମୋ ହାତରୁ ସେ ସଂକଳ୍ପପତ୍ର ମନମୋହନ ନେଇ ତାକୁ ପଢ଼ି ସେ ଗିରଫ ହେଲା । ସେଦିନ କଟକରେ ଆମେ ଛଅଜଣ ମା-ପୁଅ ଧରାହୋଇଥିଲୁ—ଜାହ୍ନବୀ ଦେବୀ ଓ ତାଙ୍କର ପୁଅ ଗୌରଗୋପାଳ, କରଣବାଳା ସେନ୍ ଓ ଉପେନ୍ଦ୍ରନାରାୟଣ, ମୁଁ ଓ ମନମୋହନ । ପ୍ରାୟ ପ୍ରତିଦିନ ଜେଲ୍‌କୁ ଯିବା ଓ ଜେଲରୁ ଖଲାସ ହେବା କାମ ଚାଲିଥାଏ । ଦିନେ ଜନାନା କେଉଁଠାରୁ କଏଦୀ ଖଲାସ ହେବ ବୋଲି କହି ଦୁଇଜଣ ଝିଅଙ୍କୁ ଜେଲ ଅଫିସକୁ ନେଇଗଲେ । ତାଙ୍କ ଭିତରୁ ଜଣେ କୁମାରୀ ଝିଅର ଆତ୍ମୀୟ ପୋଲିସ ଅଫିସର ଥିଲେ । ସେ ଜେଲ୍ ଫାଟକରେ ଜଣେ ଝିଅକୁ ତାଙ୍କ ଘରକୁ ନେବା ପାଇଁ ବୁଝାଇଲେ, ପ୍ରବର୍ତ୍ତାଇଲେ । ଝିଅ ରାଜି ନ ହେବାରୁ ତାକୁ ନେଇଯିବାକୁ ଚେଷ୍ଟାକଲେ । ମାତ୍ର ସବୁ ଚେଷ୍ଟା ବିଫଳ ହେଲା । ସେ ଝିଅ ବାହାରେ କାମ କରି ପୁଣି ଜେଲ୍ ଭିତରକୁ ଆସିଲା । ମୁଁ ଧରା ହୋଇ ଯାଇ ଏହି ଝିଅମାନଙ୍କ ସଙ୍ଗରେ ଜେଲରେ ରହିଲି । ମାତ୍ର ସରକାରୀ ଆଇନ ମୋତେ ବେଶିଦିନ କଟକ ଜେଲରେ ରହିବାକୁ ଦେଲାନାହିଁ । ବିହାରରେ ସଜା ହେବାରୁ ମତେ ହଜାରୀବାଗ ଜେଲ୍‌କୁ ପଠାଗଲା; ଆମ ପରିବାରଟି ହଜାରୀବାଗ ଜେଲରେ ରହିଲୁ । ବିହାର-ଓଡ଼ିଶାର ନେତୃସ୍ଥାନୀୟ ବ୍ୟକ୍ତିମାନେ ହଜାରୀବାଗ ଜେଲରେ ରହୁଥାନ୍ତି । ସ୍ୱାଧୀନତା ପରେ ତାଙ୍କ ଭିତରୁ କିଏ ରାଷ୍ଟ୍ରପତି, କିଏ ରାଜ୍ୟପାଳ ଓ ମୁଖ୍ୟମନ୍ତ୍ରୀ ଆଦି ହେଲେ । ସୀମାନ୍ତ ଗାନ୍ଧୀ ଓ ତାଙ୍କ ବଡଭାଇ ମଧ୍ୟ ସେତେବେଳେ ହଜାରୀବାଗ-ଜେଲ୍‌ରେ ରହୁଥିଲେ । କରାଚୀ କଂଗ୍ରେସରେ ସୀମାନ୍ତ ଗାନ୍ଧୀଙ୍କୁ ଭଲଭାବରେ ଦେଖିଥିଲି ମଧ୍ୟ ତାଙ୍କୁ ଦେଖିବା ପାଇଁ ସ୍ୱତଃ ଇଚ୍ଛାହେଉଥିଲା । ସେ ଦୁଇ ଭାଇ ପ୍ରତିଦିନ ଆମ ଓ୍ୱାର୍ଡ ସାମନା ଦେଇ ଚାଲିଯାଉଥିଲେ । କବାଟ ଫାଙ୍କରେ ମୁଁ ତାଙ୍କୁ ଦେଖେ ।

ବିହାରର ଋଷି ତୁଲ୍ୟ କର୍ମୀ ନିବାରଣବାବୁ ସେତେବେଳେ ହଜାରୀବାଗ ଜେଲ୍‌ରେ ଥିଲେ । ଜେଲ କର୍ତ୍ତୃପକ୍ଷଙ୍କ ଅନୁମତି ନେଇ ସେ ଆମକୁ ଗୀତା ପଢ଼ାଇବାକୁ ଆମ କୋଠରୀକୁ ଆସୁଥିଲେ । ଆମ କାମ ବିଷୟରେ ତାଙ୍କଠାରୁ ଅମୂଲ୍ୟ ଉପଦେଶ ଓ ମାର୍ଗଦର୍ଶନ ଆମକୁ ମିଳୁଥିଲା । ତାଙ୍କ ସମ୍ପର୍କରେ ଆସିବା ହିଁ ଗୋଟିଏ ସୌଭାଗ୍ୟର କଥା । ଧୀରେ ଧୀରେ ମୋ ଛଡ଼ା ଆମ ପରିବାରର ସମସ୍ତେ ଖଲାସ ହୋଇଗଲେ । ମୁଁ ଜେଲ୍‌ରେ ଶୁଣିବାକୁ ପାଇଲି ଯେ ହରିଜନମାନଙ୍କର ନିର୍ବାଚନ ସମସ୍ୟା ଯୋଗୁଁ ଗାନ୍ଧିଜୀ ଉପବାସ କରିଛନ୍ତି । ଉପବାସ ସାତ ଦିନରେ ଭଙ୍ଗ ହେଲା । ମାତ୍ର ସେହି ସାତଦିନ ଭିତରେ ଭାରତ ଯେପରି ଓଲଟପାଲଟ ହୋଇଗଲା । ସେହି ଉପବାସରୁ ହିଁ ହରିଜନ ସେବାର କାମ ସୃଷ୍ଟି ।

## ୨୩ । ହରିଜନ ସେବା

୧୯୩୨ ମସିହା ସେପ୍‌ଟେମ୍ବର ମାସ । ମୁଁ ହଜାରିବାଗ ଜେଲ୍‌ରେ ଥାଏ । ମୋର ଜେଲ୍ ସାଥୀ ଶ୍ରୀ ଲାବଣ୍ୟପ୍ରଭା ଦେବୀ ତାଙ୍କ ଆତ୍ମୀୟଙ୍କ ସଙ୍ଗେ ଦେଖା କରିବାକୁ ଜେଲ୍ ଅଫିସକୁ ଯାଇଥିଲେ । ସେଠୁ ଶୁଣି ଆସିଲେ ହରିଜନମାନଙ୍କର ଅଲଗା ନିର୍ବାଚନ କଥା ଉପରେ ଗାନ୍ଧିଜୀ ଜେଲରେ ଆମରଣ ଅନଶନ ଆରମ୍ଭ କରିଛନ୍ତି—ଗାନ୍ଧିଜୀଙ୍କ ସର୍ତ୍ତ ପୂରଣ ନ ହେଲେ ସେ ଅନଶନ ଭାଙ୍ଗିବେ ନାହିଁ ! ବ୍ରିଟିଶ ସରକାର ତାଙ୍କ ସର୍ତ୍ତ ଉପରେ ଗୁରୁତ୍ୱ ଦେବେ କି ନ ଦେବେ ? ଆମରଣ ଅନଶନ କଥାଟା ଶୁଣିଲାକ୍ଷଣି ତ ଛାତିଟା ଥରି ଉଠିଲା । ତା'ପରେ ଏସବୁ ଚିନ୍ତା ମନକୁ ବେଚୈନ କରିଥିଲା । ଏ ବିଷୟରେ କାହାରି ସହିତ କଥାବାର୍ତ୍ତା କରିବାର ଉପାୟ ବି ନ ଥାଏ । ଆମ ଓ୍ୱାର୍ଡ ପଛପାଖ ଓ୍ୱାର୍ଡରେ ଖାଁ ଅବ୍‌ଦୁଲ ଗଫୁର ଖାଁ ଥାନ୍ତି । ସେ ପ୍ରତିଦିନ ସକାଳେ ଆମ ଓ୍ୱାର୍ଡ ସାମନା ଦେଇ ବୁଲିବାକୁ ଯାନ୍ତି । ମୁଁ ପ୍ରାୟ ଜେଲ କବାଟ ଫାଙ୍କରେ ତାଙ୍କୁ ଦେଖେ । ବିଚଳିତ ମନକୁ ଶାନ୍ତ କରିବା ପାଇଁ କବାଟ ଫାଙ୍କରେ ସୀମାନ୍ତ ଗାନ୍ଧୀଙ୍କୁ ଦେଖିଲି । ସେ ବୁଲି ଚାଲିଗଲେ । କାରଣ କହିପାରିବି ନାହିଁ । ମୋ ମନର ଅସ୍ଥିରତା ଟିକିଏ କମିଗଲା । ମୋର ବଡ଼ବାପା ଶ୍ରୀ ମଧୁସୂଦନ ଦାସ ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିଲେ । ମୋ ବାପା ଛୁଟିନେଲେ ବା ଅସୁସ୍ଥ ଥିଲେ ବଡ଼ବାପା ଘରେ ରହୁଥିଲେ । ସେତେବେଳେ ଆମେ ମଧ୍ୟ ଘରେ ରହୁଥିଲୁ । ତାଙ୍କ ପ୍ରଭାବରେ ମୋ ମନରେ ଛୁଆଁ ଛୁଇଁ ଭାବନା ନ ଥିଲା । ମାତ୍ର ବିବାହ ପରେ ଶାଶୁଙ୍କ ସନ୍ତୋଷ ପାଇଁ, ବିଶେଷ କରି କେତେକ ପାରିବାରିକ ଘଟଣା ଯୋଗୁଁ, ବାଧ୍ୟହୋଇ ମୁଁ ଶାଶୁଙ୍କୁ ଛୁଆଁ ଛୁଇଁ ମାନି ଚଳିବି ବୋଲି ଯେ ପ୍ରତିଶ୍ରୁତି ଦେଇଥିଲି, ଏବେ ଗାନ୍ଧିଜୀଙ୍କର ଏ ଆମରଣ ଅନଶନ କଥା ଶୁଣିଲା ପରେ ଶାଶୁଙ୍କୁ ଦେଇଥିବା ପ୍ରତିଶ୍ରୁତି ମୋତେ ତୁଚ୍ଛ ବୋଧହେଲା । ଗତ କେତେବର୍ଷ ହେଲା ଛୁଆଁ-ଛୁଇଁ ବିଗ୍ଭରକୁ ମାନି ଯେଉଁ ଅନ୍ୟାୟ କରିଛି, ତାହାର ପ୍ରାୟଶ୍ଚିତ୍ତ ସ୍ୱରୂପ ଜେଲରୁ ବାହାରିଲେ ଅସ୍ପୃଶ୍ୟତା ଦୂରୀକରଣ କାମରେ ଲାଗିବାକୁ ମନେ ମନେ ସଙ୍କଳ୍ପ କଲି ।

ବୋଧହୁଏ ଅକ୍ଟୋବର ସାତ ତାରିଖରେ ମୋର ଜେଲ ମିଆଦ ପୂରିଗଲା । ମୁଁ ଖଲାସ ହୋଇ ଦେଖିଲି ମୋତେ ନେବାପାଇଁ ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ ଓ ମୋ ଝିଅ ଅନ୍ନପୂର୍ଣ୍ଣା ଜେଲ୍ ଗେଟ୍‌କୁ ଆସିଛନ୍ତି । ନିତ୍ୟାନନ୍ଦଙ୍କଠାରୁ ସବୁ ଖବର ଶୁଣିଲି । ଏ ଯେ ନୂଆ ଆନ୍ଦୋଳନ ସୃଷ୍ଟି ହେଲା, ଏଥି ପାଇଁ ମୁଁ କଣ କରିବି ଏଇ ଚିନ୍ତା ମୋତେ ଘାରୁଥାଏ । ମୁଁ ବି ଜଣେ ସେହି ଶ୍ରେଣୀରେ ଥିଲି । ହରିଜନଙ୍କୁ ଅଛୁଆଁ କରି ରଖିଥିଲି । ଏହିପରି ବିକ୍ଷିପ୍ତ ଚିନ୍ତା ଭିତରେ ପାଟନା ଗଲି । ସେଠି ଡାରବାଡ଼ଦିଆ କ୍ୟାମ୍ପ ଜେଲରେ ପୁଅକୁ ଦେଖିଲି । ଜେଲ ଅଫିସର ମତେ ତାରବାଡ଼ ପାଖକୁ ନେଇଗଲା ବେଳେ ଦେଖିଲି ଆମ କର୍ମୀମାନେ ସମସ୍ତେ ଠିଆହୋଇଛନ୍ତି । ପଣ୍ଡିତ ପଦ୍ମିହାରୀ ପ୍ରଭୃତି ମୋହରି ପରି ଘୋର ଉତ୍କଣ୍ଠାରେ ଛଟପଟ ହେଉଛନ୍ତି ।

କଟକ ଆସି ଦେଖିଲି ଜେଲ୍‌ରୁ ବାହାରିଥିବା ନାରୀ ଓ ପୁରୁଷକର୍ମୀମାନେ ଅସ୍ପୃଶ୍ୟତା ବିରୁଦ୍ଧରେ ଦସ୍ତଖତ ସଂଗ୍ରହ କରିବା, ବୁଲି ବୁଲି ସଭାକରିବା ଓ ହରିଜନ ବସ୍ତିକୁ ଯାଇ ସେମାନଙ୍କ ସହିତ ସମ୍ପର୍କ ସ୍ଥାପନ କରିବା ଆଦି କାମ କରୁଛନ୍ତି । ଶ୍ରୀ ମାଳତୀ ଦେବୀ, କଟକର ବିଶିଷ୍ଟ ଓକିଲ ସ୍ୱର୍ଗୀୟ ବନବିହାରୀ ପାଲିତଙ୍କ ଝିଅ ଶ୍ରୀ ବୀଣାପାଣି ଦେବୀ ଓ ଶ୍ରୀ ସତ୍ୟନାରାୟଣ ସେନ୍ ଗୁପ୍ତଙ୍କ ଭଉଜ ଶ୍ରୀ କିରଣବାଳା ସେନ ପ୍ରଭୃତି ଏ କାମରେ ଆଗୁଆ ହୋଇଛନ୍ତି । ମୁଁ ନିତ୍ୟାନନ୍ଦଙ୍କଠାରୁ ଶୁଣିଥିଲି ଅସ୍ପୃଶ୍ୟତା ନିବାରଣୀ ସମିତି ନାମରେ ଗୋଟାଏ ସମିତି ଗଢ଼ାସରିଛି । କଟକର ସ୍ୱନାମଧନ୍ୟ କବିରାଜ ଶ୍ରୀ ବାଲୁଙ୍କେଶ୍ୱର ଆଚାର୍ଯ୍ୟ ସେ ସମିତିର ସଭାପତି ହୋଇଛନ୍ତି । ଶ୍ରୀ ସତ୍ୟନାରାୟଣ ସେନଗୁପ୍ତ ଓ ମୁଁ ଯୁଗ୍ମ ସମ୍ପାଦକ ନିଯୁକ୍ତ ହୋଇଛୁ । ସେତେବେଳକୁ ଶ୍ରୀ ବାଲୁଙ୍କେଶ୍ୱର ଆଚାର୍ଯ୍ୟଙ୍କ ପ୍ରଭାବରେ ହିନ୍ଦୋଳର ରାଜାସାହେବ ତାଙ୍କ ଠାକୁର ମନ୍ଦିର ହରିଜନଙ୍କ ପାଇଁ ଖୋଲିଦେଇଥାନ୍ତି ।

ଅସ୍ପୃଶ୍ୟତା ନିବାରଣୀ ସମିତିର ଅଫିସ୍ କଟକରେ ରହିଲା ଏବଂ ଜେଲରୁ ଫେରିଥିବା କେତେଜଣ ନାରୀକର୍ମୀ ସହରର ମେହେନ୍ତର ବସ୍ତିରେ କାମ କଲେ । ସେମାନଙ୍କର କାମର ଆନ୍ତରିକତା ଦେଖି ସହରର ଲୋକେ ବିସ୍ମିତ ହେଲେ । ସେଥିରୁ ପ୍ରମାଣିତ ହେଲା ଯେ ଘରକୋଣରେ ଆବଦ୍ଧ ରହିଥିବା ନାରୀମାନେ ଯୁଦ୍ଧା ଅସ୍ପୃଶ୍ୟତା ନିବାରଣର ମହତ୍ତ୍ୱ ବୁଝିପାରିଛନ୍ତି; ଦେଶକୁ ସ୍ୱାଧୀନ କରିବାପାଇଁ ଯେପରିକି ସେମାନେ ଜୀବନ ପଣ କରିଛନ୍ତି । ସେଥିପାଇଁ ଯାହା କରିବାକୁ ପଡ଼ିବ ତାହା କରିବାକୁ ସେମାନେ ତିଆରି ଥାନ୍ତି । ସେତେବେଳେ ମୁଁ ଅନୁଭବ କଲି ଯେ ମାତୃଶକ୍ତି କି ପ୍ରଚଣ୍ଡ ଶକ୍ତି । ଯେଉଁ ଦେଶରେ ଏ ପ୍ରଚଣ୍ଡ ଶକ୍ତିକୁ ସୁପ୍ତ ରଖାଯାଇଛି, ସେ ଦେଶର ଉତ୍ଥାନ କିପରି ସମ୍ଭବ ହେବ ? ସେତେବେଳେ ଏ ପ୍ରଶ୍ନ ମନକୁ ଆସିଲା ଯେ, ଘରେ ପରିବାର ଭିତରେ ଯେତେବେଳେ ସ୍ୱାଧୀନତାର ପ୍ରଶ୍ନ ରହିଛି, ସମାଜର ଅଧେ ଲୋକ ସ୍ୱାଧୀନତା କଣ ଜାଣନ୍ତି ନାହିଁ, ସେ କ୍ଷେତ୍ରରେ ଏ ଦେଶ ସ୍ୱାଧୀନ ହେବ କିପରି ? ଧୀରେ ଧୀରେ ମୁଁ ସମାଜ ଭିତରେ ଚାଲିଥିବା ଅନ୍ୟାୟ, ଅତ୍ୟାଚାର ଓ ଶୋଷଣ କଥା କିଛି କିଛି ଶୁଣିଲି । ଭଲ ଭଲ ପରିବାରର ସ୍ତ୍ରୀଲୋକମାନେ କିପରି ଲାଞ୍ଛିତ ଓ ଅପମାନିତ ଜୀବନ କଟାଉଛନ୍ତି ସେ କଥା ଜାଣିଲି । ମନେ ମନେ ଭାବିଲି ଏହାକୁ ଦୂର କରିବାର ଉପାୟ କଣ ? ଏହି ସ୍ତ୍ରୀଲୋକମାନଙ୍କ ଦ୍ୱାରା ହିଁ ଏହା ଦୂର ହେବା ସମ୍ଭବ ହେବ - ସେଥିପାଇଁ ତାଲିମ ଓ ସଙ୍ଗଠନ ଦରକାର ।

କଟକ ସହରରେ ଗୋଟିଏ ନୂଆ ବାୟୁମଣ୍ଡଳ ସୃଷ୍ଟି ହୋଇଥାଏ । ନିଜ ଧର୍ମର ଲୋକଙ୍କୁ ଅଛୁଆଁ କରି ରଖିବାଟା କେତେଦୂର ଅବିବେକତା, ତାହା ଲୋକେ ଉପଲବ୍ଧି କରି ପାରୁଥିବା ଭଳି ମନେହେଉଥାଏ । ସେତେବେଳେ ଇଂରାଜୀ 'ହରିଜନ', ହିନ୍ଦୀ 'ହରିଜନ ସେବକ' ପତ୍ରିକାରେ ଅସ୍ପୃଶ୍ୟତା ନିବାରଣ ସମ୍ବନ୍ଧୀୟ ଲେଖାମାନ ବାହାରୁଥାଏ । ଗାନ୍ଧୀଜୀ ନିଜେ ତ ଲେଖୁଥାନ୍ତି, ଭାରତର ବହୁ ମନୀଷୀ ଓ ପଣ୍ଡିତ ମଧ୍ୟ ଅସ୍ପୃଶ୍ୟତା ଯେ ଶାସ୍ତ୍ରାନୁମୋଦିତ ନୁହେଁ ତାହାର ପ୍ରମାଣ ଦେଇ ଲେଖାଲେଖି କରୁଥାନ୍ତି । ଅସ୍ପୃଶ୍ୟତା ନିବାରଣୀ

ସମିତିର କର୍ମୀମାନେ କିପରି ଭାବରେ କାର୍ଯ୍ୟ କରିବେ, ସେ ବିଷୟରେ ଗାନ୍ଧୀଜୀ ଟିକିନିଖି ନିର୍ଦ୍ଦେଶ ଦେଇଥାନ୍ତି । ଏହି ଅସ୍ପୃଶ୍ୟତା ନିବାରଣୀ ସମିତି ପରବର୍ତ୍ତୀ କାଳରେ 'ହରିଜନ ସଂଘ' ନାମରେ ନାମିତ ହେଲା । ହରିଜନ ସେବକମାନେ କିପରି ହରିଜନ ବସ୍ତିକୁ ଯାଇ ବସ୍ତି ସଫାକରିବେ, ମଲାଗୋରୁର ମାଂସ ନ ଖାଇବାକୁ ପ୍ରବର୍ତ୍ତାଇବେ, ମଦଖିଆ ଆଦି ଖରାପ ଅଭ୍ୟାସ ବୁଝାଇ ସୁଝାଇ ଛଡ଼ାଇବେ, ବସ୍ତିର ଗ୍ରେଷ୍ଠ ପିଲାଙ୍କୁ ଗାଧୋଇ ଦେବେ, ତାଙ୍କ ଲୁଗା ସଫାକରିବେ, ତାଙ୍କୁ ଖାଇବା ପିଇବାର ସଗୁଣ ଶିଖାଇବେ, ସନ୍ଧ୍ୟାବେଳେ ବସ୍ତିର ପୁରୁଷମାନେ କିପରି ଭଜନ କୀର୍ତ୍ତନ କରିବେ, ରାମାୟଣ ପାଠ ଶୁଣିବେ, ସ୍ତ୍ରୀଲୋକେ ମଧ୍ୟ ରାମାୟଣ ଶୁଣିବେ ଆଦି ସବୁକଥା ବିଶଦ ଭାବରେ ଗାନ୍ଧିଜୀ ଲେଖିଥାନ୍ତି ।

ସବର୍ଣ୍ଣ ହିନ୍ଦୁ ଗୃହସ୍ଥମାନଙ୍କୁ ତାଙ୍କର ନିର୍ଦ୍ଦେଶ ଥିଲା ଯେ ସେମାନେ ହରିଜନ ବସ୍ତିକୁ ଯାଇ ହରିଜନମାନଙ୍କ ସହିତ ବ୍ୟକ୍ତିଗତ ସମ୍ପର୍କ ବଢ଼େଇବେ । ସେମାନଙ୍କ ସହିତ ବନ୍ଧୁ ଭାବରେ ଦୁଃଖ ସୁଖ ହେବେ । ପ୍ରତ୍ୟେକ ସବର୍ଣ୍ଣ ହିନ୍ଦୁ ଗୋଟିଏ ହରିଜନ ପିଲାକୁ ନିଜ ପିଲା ପରି ପରିବାରରେ ରଖି ପାଳିବେ । ଅନ୍ୟ ଜାତିର ପିଲାଙ୍କୁ ଯେପରି ଘରେ ବସାଇ ବାସନରେ ଖାଇବାକୁ ଦେଉଛନ୍ତି, କୂଅରୁ ପାଣି କାଢ଼ିବା ପାଇଁ ଦେଉଛନ୍ତି, ହରିଜନଙ୍କୁ ମଧ୍ୟ ସେହିପରି କରିବା ପାଇଁ ସୁବିଧା ଦେବେ । ଗାଁର ସର୍ବସାଧାରଣ କୂଅରୁ ହରିଜନ ପାଣି ନେବେ । ଗାଁ ଦେଉଳରେ ହରିଜନର ପ୍ରବେଶ ଅଧିକାର ରହିବ । ମାତ୍ର ଜଣେ ସୁଦ୍ଧା ଏହି ମନ୍ଦିର ପ୍ରବେଶର ବିରୋଧ କଲେ ସେ ଜଣକୁ ନ ବୁଝାଇବା ଯାଏ ମନ୍ଦିରରେ ପ୍ରବେଶ ହେବନାହିଁ । ହରିଜନ ବସ୍ତିରେ କୂଅ ନ ଥିଲେ ଧର୍ମୀଲୋକେ କୂଅ ଖୋଳିଦେବେ ଓ ସ୍କୁଲରେ ପାଠଶାଠ ପଢ଼ିବାରେ ସାହାଯ୍ୟ କରିବେ । ସ୍କୁଲ ବା ଗୃହାଳିରେ ସବୁ ପିଲାଙ୍କ ସଙ୍ଗେ ହରିଜନ ପିଲା ଏକାଧାରରେ ବସିବେ । ଶିକ୍ଷକ ତାଙ୍କୁ ନ ଛୁଇଁବା ହେତୁ ଯେ ବେତ ଫୋପାଡ଼ି ମାରୁଛନ୍ତି ସେପରି ବ୍ୟବହାର ଛାଡ଼ିବେ । ସ୍ତ୍ରୀଲୋକେ ଏ ଛୁଆଁ ଛୁଇଁ ଭେଦଭାବକୁ ପାଳି ପୋଷି ରଖିଛନ୍ତି ବୋଲି ଯେ କୁହାଯାଉଛି, ସେମାନେ ଏ ଅପବାଦରୁ ନିଜକୁ ମୁକ୍ତ କରନ୍ତୁ । ଭଗବାନ ଯେ କାହାରିକୁ ଅଛୁଆଁ କରି ଜନ୍ମ ଦେଇ ନାହାନ୍ତି, ଯୋଉ କାମ କରୁଥିବା ଯୋଗୁଁ ମେହେନ୍ତର ଅଛୁଆଁ ବୋଲି ଉଛି, ପ୍ରତ୍ୟେକ ମା ଯେ ସେ ମଇଳା ସଫା କାମ କରେ, ତେଣୁ ମେହେନ୍ତର ଅଛୁଆଁ ନୁହେଁ, ଏକଥା ମହିଳାମାନେ ସେମାନଙ୍କୁ ଛୁଇଁ, ସେମାନଙ୍କ ବସ୍ତିକୁ ଯାଇ ପ୍ରମାଣ କରିଦିଅନ୍ତୁ ।

ଏସବୁ ନିର୍ଦ୍ଦେଶ ଅନୁସାରେ ହରିଜନ ସେବକ ସଂଘ ଓ ବିଭିନ୍ନ ଅନୁଷ୍ଠାନ ପକ୍ଷରୁ ହରିଜନ ସେବା କାମ ଚାରିଆଡ଼େ ଆରମ୍ଭ ହୋଇଗଲା । ଶ୍ରୀ ଜୀବରାମ କଲ୍ୟାଣଜୀ କୋଠାରୀ ତାଙ୍କ ସହକର୍ମୀଙ୍କ ସହ ପୁରୀ ସହରରେ ହରିଜନ ବସ୍ତିରେ କାମ କଲେ । ମହିଳାକର୍ମୀମାନେ କଟକ ମେହେନ୍ତର ବସ୍ତିକୁ ଯାଇ ସେମାନଙ୍କ ପିଲାଙ୍କୁ ପାଠ ପଢ଼ାଇବା, ଔଷଧ ଆଣିଦେବା, ବସ୍ତି ସଫା କରିଦେବା, ବସ୍ତିର ପିଲାଙ୍କୁ ଗାଧୋଇ ପରିଷ୍କାର ପରିଛନ୍ନ କରାଇବା, ମଦ ଓ ଗୋରୁମାଂସ

ନ ଖାଇବା ପାଇଁ ପ୍ରବର୍ତ୍ତାଇବା, ରାମାୟଣ ଆଦି ସଦଗ୍ରନ୍ଥ ଶୁଣାଇବା, କୀର୍ତ୍ତନମଣ୍ଡଳୀ ଗଢ଼ି ସହରର ଗଣ୍ୟମାନ୍ୟ ବ୍ୟକ୍ତିଙ୍କୁ ସେହି କୀର୍ତ୍ତନରେ ଯୋଗଦେବାକୁ ଡାକନେବା ଆଦି କାମ ଆରମ୍ଭ କଲେ । ହରିଜନ ପିଲାଙ୍କୁ ସାଧାରଣ ସ୍କୁଲରେ ପଢ଼ିବା ପାଇଁ ଅଧିକାର ଦେବାକୁ, ବଢ଼େଇକାମ, ଦର୍ଜୀକାମ ଆଦି ଶିଖାଇବାକୁ ଗୋଟିଏ ଛାତ୍ରାବାସ ଖୋଲିଦେଲି । ସେହି ଛାତ୍ରାବାସ କେବଳାକୁଟୀରର ପରିଚାଳକ ଶ୍ରୀ ଅନେ‌ଖ ପ୍ରସାଦ ଦାସ ସବର୍ଣ୍ଣ ଥିଲେହେଁ ହରିଜନ ପିଲାଙ୍କ ସହିତ ମିଳାମିଶି ରହୁଥିଲେ । କାମ ବା ବୃତ୍ତି ସାଙ୍ଗରେ ଛୁଆଁ ଛୁଇଁର ଯେ କୌଣସି ସମ୍ପର୍କ ନାହିଁ, ସେହି ଦୃଷ୍ଟିରୁ ଅନେକ ହରିଜନ ପିଲା ତନ୍ତୀକାମ, ବଢ଼େଇକାମ, ଦରଜୀକାମ ଆଦି ଶିଖିବା ସଙ୍ଗେ ସଙ୍ଗେ ଅନେକ ସବର୍ଣ୍ଣ ଏପରିକି ବ୍ରାହ୍ମଣ ପିଲା, ମଲା ଗୋରୁର ଚମଡ଼ା ଛଡ଼ାଇବା, ଚମଡ଼ା କଷ କରିବା, ପାଇଖାନା ସଫା କରିବା ଆଦି କାମ କରିବା ଆରମ୍ଭ କରିଦେଲେ । ଶ୍ରୀ ଲୋକନାଥ ମିଶ୍ରଙ୍କ ସମ୍ପାଦକତ୍ୱରେ ହରିଜନ ପତ୍ରିକା ପ୍ରକାଶ ପାଇଲା । ଅନେକ ସବର୍ଣ୍ଣ ପରିବାର ନିଜ ଘରେ 'ହରିଜନ' ପିଲାଙ୍କୁ ରଖିଲେ ଓ ବ୍ୟକ୍ତିଗତ ଠାକୁର ମନ୍ଦିରକୁ ହରିଜନଙ୍କୁ ଯିବାକୁ ଅଧିକାର ଦେଲେ । ବହୁ କର୍ମୀ ଗାଁ-ଗଣ୍ଡାରେ ବୁଲି କୂଅ, ମନ୍ଦିର, ସଡ଼କ ଆଦିରେ ହରିଜନମାନଙ୍କର କାରବାର ହେବା କଥା ବୁଝାଇ ସେ ସବୁ ଖୋଲାଇଲେ । ଶାସ୍ତ୍ର ପୁରାଣରୁ ଉଦାହରଣ ଦିଆଯାଇ ଅସ୍ପୃଶ୍ୟତା ଯେ କେବେହେଁ ଧର୍ମାନୁମୋଦିତ ନୁହେଁ, ତାହା ପ୍ରମାଣ କରି ମର୍ମସ୍ପର୍ଶୀ ଗୀତ ଓ କବିତାମାନ ରଚିତ ହୋଇ ସଭା ଓ ଶୋଭାଯାତ୍ରାରେ ବୋଲାହେଲା । ଯାଦବାବୁଙ୍କର "ସବୁଜ ସାଥୀ" ବହି କାହା ଆଖିରୁ ଲୁହ ନ ଝରାଇଛି ! ଅନେକେ ବାଡ଼ି ବଗିଚା କରିବାକୁ ହରିଜନଙ୍କୁ ଜମି ଛାଡ଼ିଦେଲେ । ମୋଟ ଉପରେ ଗାନ୍ଧିଜୀ 'ହରିଜନ' ପତ୍ରିକାରେ ଯାହା କରିବାକୁ ନିର୍ଦ୍ଦେଶ ଦେଉଥାଆନ୍ତି, କର୍ମୀମାନେ ତାହା କାମରେ କରିବା ପାଇଁ ଆପ୍ରାଣ ଉଦ୍ୟମ କରୁଥାନ୍ତି । ଗାନ୍ଧିଜୀ ଦେଶବାସୀଙ୍କୁ ଚେତାବନୀ ଦେଇସାରିଥାନ୍ତି ଯେ କେବଳ ଆପଣ-ମାନେ ନୁହନ୍ତି ଆପଣଙ୍କ ପୂର୍ବପୁରୁଷମାନେ ଓ ଆପଣଙ୍କ ସମାଜ ଯେ ଏତେ ବଡ଼ ଗୋଷ୍ଠୀକୁ ଅଛୁଆଁ କରି ନୀଚ ହୀନ ଅବସ୍ଥାରେ ରଖିଛନ୍ତି, ସେହି ପାପର ପ୍ରାୟଶ୍ଚିତ୍ତ ସ୍ୱରୂପ ଆପଣଙ୍କୁ ହରିଜନ ସେବା କାମ କରିବାକୁ ହେବ । ଏହି ମର୍ମରେ ସେ ମୋତେ ଓ ମୋ ଭଳି କର୍ମୀଙ୍କୁ ବ୍ୟକ୍ତିଗତ ଭାବରେ ମଧ୍ୟ ଚିଠି ଲେଖି ପ୍ରେରଣା ଦେଉଥାଆନ୍ତି ।

୧୯୩୩ ମସିହାରେ ଗାନ୍ଧୀଜୀ ଏକୋଇଶ ଦିନ ଅନଶନ କଲେ । ଅନଶନ ଶେଷ ହେବାର କିଛିଦିନ ପରେ ସେ ହରିଜନ ସେବକ ସଂଘର ସଦସ୍ୟମାନଙ୍କୁ ପୁନା ସହରର "ପର୍ଣ୍ଣକୁଟୀର"ରେ ଭେଟିଲେ । ସର୍ବଶ୍ରୀ ଠକ୍‌କର ବାପା, ହୃଦୟନାଥ କୁଞ୍ଜରୁ, ଘନଶ୍ୟାମ ଦାସ ବିଡ଼ଲା, ବାପି ମୀଡ଼୍ ଆଦି ଭାରତର ସବୁ ଅଞ୍ଚଳର ବିଶିଷ୍ଟ ବ୍ୟକ୍ତି ଓ ସବୁ ପ୍ରାଦେଶିକ ହରିଜନ ସେବକ ସଂଘର ସମ୍ପାଦକମାନେ ରୁଣ୍ଡ ହୋଇଥାଆନ୍ତି । ଗାନ୍ଧିଜୀ ସେତେବେଳେ ସୁଦ୍ଧା ଶଯ୍ୟାଶାୟୀ । ଶୋଇରହି ପ୍ରାର୍ଥନା କରୁଥାନ୍ତି । କଣ୍ଠସ୍ୱର ଅତି କ୍ଷୀଣ । ତଥାପି ଯାହା ଦୁଇପଦ ଆମକୁ କହିଲେ ସେଥିରେ ସମାଜକୁ ଏ ଅଛୁଆଁ କଳଙ୍କରୁ ମୁକ୍ତ କରିବାକୁ ତାଙ୍କର

ପ୍ରାଣର ବ୍ୟାକୁଳତା ଫୁଟିଉଠିଲା । ତାଙ୍କ ମୁହଁରେ ଯେଉଁ ବେଦନା ଫୁଟିଉଠୁଥାଏ, ତାହା ଯେପରି ଅବ୍ୟକ୍ତ ଭାଷାରେ ଜଣାଇଦେଉଥାଏ ଯେ ତୁମକୁ ଜୀବନ ପଣ କରି ଏ ଛୁଆଙ୍କୁ ଉଠାଇ ଦେବାକୁ ପଡ଼ିବ, ତାହା ନ ହେଲେ ଏହି ପାପରେ ଭାରତର ହିନ୍ଦୁଧର୍ମ ବୁଡ଼ିଯିବ ।

## ୬୪ । ବଡ଼ବାପା ଓ ମାଙ୍କର ବିୟୋଗ

ମୁଁ ହରିଜନ ସେବକ ସଂଘର କାମ କରୁଥାଏ । ଦିନେ ମୋ ମା ଖବର ପଠାଇଲେ— ବଡ଼ବାପାଙ୍କ ଦେହ ଖରାପ ହୋଇଛି । ମା ତ ବରାବର ବଡ଼ବାପାଙ୍କ କୋଠିକୁ ଯାଏ— ତାହାଠାରୁ ମୁଁ ବଡ଼ବାପାଙ୍କ ଖବର ପାଏ । ମାଠାରୁ ଏ ଖବର ପାଇ ମୁଁ ବଡ଼ବାପାଙ୍କୁ ଦେଖିବାକୁ ଗଲି । ସୁଧାଂଶୁବାଲା ହାଜରା ଓ ଶୈଳବାଲା ଦାସ କୋଠିରେ ଥାଆନ୍ତି । ବଡ଼ବାପା ସେତେବେଳକୁ ଶଯ୍ୟାଶାୟୀ ହେଲେଣି । ପ୍ରତିଦିନ ଯେ ବୁଲିକରି ବୁଲିଯାଆନ୍ତି, ତାଙ୍କ ପଛେ ପଛେ ତାଙ୍କ ଘର ଘୋଡ଼ାଗାଡ଼ି ଆସ୍ତେ ଆସ୍ତେ ଚାଲେ—ସେ ବୁଲି ବନ୍ଦ ହେଲାଣି । ମାଆ ପ୍ରତିଦିନ ସକାଳେ ଗାଧୋଇ ପୂଜାସାରି ବାଙ୍କାବଜାରରୁ ବଡ଼ବାପାଙ୍କ କୋଠିକୁ ଯାଇ ତାଙ୍କ ପାଖରେ ରହୁଥାଏ । ବଡ଼ବାପା ଔଷଧ ଓ ପଥ୍ୟ ଖାଇବା ପାଇଁ ଆପତ୍ତି କଲେ ତାଙ୍କୁ ବୁଝାଇ ସେ ସବୁ ଖୁଆଇବା ମାଆର କାମ ହୋଇଥାଏ । ବଡ଼ବାପା ମାଆକୁ କିପରି ସ୍ନେହ କରୁଥିଲେ, "ପାଲି" ବୋଲି ନାମ ଧରି ଡାକୁଥିଲେ । ପାଲିକୁ ଖୁସି କରିବା ପାଇଁ ମା କଥା ମାନି ସେ ଔଷଧ ଓ ପଥ୍ୟ ଖାଆନ୍ତି ।

ବଡ଼ବାପା ରୋଗଶଯ୍ୟାରେ ପଡ଼ିଥିବା ବେଳେ ନିଜ ପିଲାଦିନ କଥା ମଝିରେ ମଝିରେ ଆପେ ଆପେ କହୁଥାନ୍ତି । ତାଙ୍କ ପିଲାଦିନେ ତାଙ୍କ ବାପା ତାଙ୍କୁ କିମିତି ମାରୁଥିଲେ, ସେ ନିଜେ ମଧ୍ୟ କିପରି ଦୁଷ୍ଟାମି କରୁଥିଲେ ସେ କଥା କହୁଥାନ୍ତି । ଥରେ ସେ ତାଙ୍କ ବଡ଼ବାପାଙ୍କୁ ଚଢ଼େଇବା ପାଇଁ ତାଙ୍କ ନୂଆ ଲୁଗାଟିକୁ ଚାକୁରେ କାଟିପକେଇ ମାଡ଼ ଖାଇଥିଲେ । ନିଜ ମା କଥା କହିବା ବେଳେ ବଡ଼ବାପା କାନ୍ଦି କାନ୍ଦି ହୋଇଯାଉଥାଆନ୍ତି । ତାଙ୍କ ମା କିପରି ଯେ ଯାହା ମାନେ ତାଙ୍କୁ ଅଗପଛ ନ ବିଚାରି ତାହା ଦେଇଦିଅନ୍ତି ଓ ସେଥିପାଇଁ ସ୍ୱାମୀ ସ୍ତ୍ରୀଙ୍କର କଳି ଲାଗେ ସେ କଥା କହନ୍ତି ।

ବଡ଼ବାପା ଢ଼ଗଛନ୍ଦା ମଧ୍ୟ କହୁଥାନ୍ତି । ସେ ସାଧାରଣତଃ ବଙ୍ଗଳାରେ କଥାବାର୍ତ୍ତା କରନ୍ତି । ମା ସାଙ୍ଗରେ ଓ ତାଙ୍କ ଚାକର ସାଙ୍ଗରେ ଓଡ଼ିଆ କହନ୍ତି । ମା ଔଷଧ ଖାଇବାକୁ ବଳେଇଲେ କହୁଥାନ୍ତି "ଆଉ ଦିନକାଳ ଆସିବ, ବାଉଁଶ ଗଛରେ ମଳୟ ଲାଗିଲେ ତାହା କି ଚନ୍ଦନ ହୋଇବ ?"

ମୁଁ ବନେ ବସିଥାଏ । କଟକ ମ୍ୟୁନିସିପାଲିଟିର ଚେୟାରମ୍ୟାନ୍ ବଡ଼ବାପାଙ୍କୁ ଦେଖିବାକୁ ଆସିଲେ । ବଡ଼ବାପା କଟକର ହାଲଚାଲ ପଚାରୁଥାନ୍ତି । କଥାପ୍ରସଙ୍ଗରେ କଟକରେ ପିଇବାପାଣିର ଅଭାବ କଥା ପଡ଼ିଲା । ବଡ଼ବାପା ଶୈଳବାଳା ଦାସଙ୍କୁ ଡାକି ପଚାରିଲେ—"ମୋ ଅର୍ଜିତ ଟଙ୍କାରୁ କିଛି ଅଛି କି ?" ଶୈଳବାଳା ଦାସ କହିଲେ—"ଜଣେ ମହାଜନ ତାଙ୍କ ଉପରେ ବାକିଥିବା ଚଉଦଶି ଶହ ଟଙ୍କା ପଠାଇ ଦେଇଛନ୍ତି ।" ବଡ଼ବାପା ତତ୍‌କ୍ଷଣାତ୍ ମ୍ୟୁନିସିପାଲିଟି ଚେୟାରମ୍ୟାନ୍‌ଙ୍କୁ ଗୋଟିଏ ଟିଉବ୍‌ୱେଲ୍ ଖୋଳାଇବା ପାଇଁ ଟଙ୍କା ଦେବେ ବୋଲି ପ୍ରତିଶ୍ରୁତି ଦେଲେ ।

ବଡ଼ବାପା ରୋଗଶଯ୍ୟାରେ ପଡ଼ି ପୁଣି ମଝିରେ ମଝିରେ ସୁଧାଂଶୁବାଳା ହାଜରା ଓ ଶୈଳବାଳା ଦାସଙ୍କୁ ପଚାରୁଥାନ୍ତି—"ମୁଁ କାହା ରୋଜଗାର ଖାଉଛି ?" ସେମାନେ ଜବାବ ଦେଥିନ୍ତି, "ଦାଦା ! ଆପଣ ଆପଣଙ୍କ ରୋଜଗାରରୁ ଖାଉଛନ୍ତି ।"

ଧୀରେ ଧୀରେ ବଡ଼ବାପା ଅଧିକ ଦୁର୍ବଳ ହୋଇପଡ଼ିଲେ । ବେଳେବେଳେ କହୁଥାନ୍ତି—"ଦେଖ, ଧଳା ପୋଷାକ ପିନ୍ଧି ସେମାନେ କିପରି ମୋ ଖଟ ଚାରିପାଖରେ ବୁଲୁଛନ୍ତି ।"

ସେ ଶେଷ ନିଃଶ୍ୱାସ ନେବାଯାଏ ମା ତାଙ୍କ ପାଖେ ପାଖେ ଜଗିରହିଥାଏ । ବଡ଼ବାପା ଚାଲିଗଲେ—ମାର ଗୋଟିଏ ବଡ଼ ବନ୍ଧନ ଭଗବାନ କାଟିଦେଲେ ।

କିଛି ମାସ ପରେ ମେ ମାସରେ ଗାନ୍ଧୀଜୀଙ୍କ ପଦଯାତ୍ରା ଆରମ୍ଭ ହେଲା । ମୁଁ ପଦଯାତ୍ରାରେ ରହିଥାଏ । ଗାନ୍ଧୀଜୀ ବଙ୍ଗଳା ଗସ୍ତ ରଦ୍ଦ କରି ଓଡ଼ିଶାରେ ପଦଯାତ୍ରା କରିବାକୁ ସ୍ଥିର କଲେ । ମଝିରେ ନିଖିଳ ଭାରତ କଂଗ୍ରେସ କମିଟି ବୈଠକରେ ଯୋଗଦେବାକୁ ପାଟନା ଗଲେ । ସେଠାରୁ ଫେରି ପୁଣି ବୈଦ୍ୟରୁ ପଦଯାତ୍ରାକଲେ । ପଦଯାତ୍ରାର ଏହି ଦ୍ୱିତୀୟ ପର୍ଯ୍ୟାୟ ଆରମ୍ଭ ହେବା ବେଳକୁ ମୁଁ ଜ୍ୱରରେ ପଡ଼ିବାରୁ ବୈଦ୍ୟ ଯାଇପାରିଲିନାହିଁ । ସେଥିପାଇଁ ମନ ଦୁଃଖରେ ଥାଏ । କିନ୍ତୁ ଈଶ୍ୱରଙ୍କ ଅଭିପ୍ରାୟ ଭିନ୍ନ ପ୍ରକାର । ମୋ ମାମୁପୁଅ ଭାଇ ନଗିର ଗୋଟିଏ ଝିଅକୁ ବସନ୍ତ ହେଲା । ମା ତାହାର ସେବାଶୁଶ୍ରୂଷା କରୁଥାଏ । ମାକୁ ବସନ୍ତ ହେଲା । ପେନିସିଲିନ୍ ଚିକିତ୍ସା ସେତେବେଳେ ଆବିଷ୍କାର ହୋଇ ନ ଥାଏ । ବସନ୍ତର କୌଣସି ଡାକ୍ତରୀ ଚିକିତ୍ସା ନ ଥାଏ । ଦେଶୀ ଚିକିତ୍ସା ଚାଲିଲା । ମୁଁ ଯାଇ ମା ପାଖରେ ରହିଲି । ଯାହାକୁ ଅଗା ବସନ୍ତ କହନ୍ତି ମାର ସେହି ବସନ୍ତ ହୋଇଥାଏ । ଲକ୍ଷଣ ଦେଖି ସମସ୍ତେ ମାର ଜୀବନ ଆଶା ଛାଡ଼ିଲେ । ବେଙ୍ଗବାଇ ତ ମାକୁ ନିଜ ମାଙ୍କଠାରୁ ଅଧିକ ଭଲ ପାଆନ୍ତି । ମା ପାଇଁ ଜୀବନ ପଣ କରି ଲାଗିଥାନ୍ତି । କିଛି ହେଲା ନାହିଁ । ମେ ମାସ ସତେଇଶ ତାରିଖରେ ମା ଚାଲିଗଲା ।

ଗାନ୍ଧୀଜୀ ଗଗପୁର ରହଣିରେ ଏ ଖବର ପାଇ ସଙ୍ଗେ ସଙ୍ଗେ ମୋତେ ପଦଯାତ୍ରାକୁ ନେଇ ଆସିବାକୁ ଚିଠିଦେଇ ଲୋକ ପଠାଇଲେ । ଆଚାର୍ଯ୍ୟ ମହାଶୟ ସେତିକିବେଳେ ହଜାରିବାଗ ଜେଲ୍‌ରୁ ଖଲାସ ହୋଇ ଆସିଥାନ୍ତି । ସେ ମୋତେ ସାଙ୍ଗରେ ନେଇ ପୁରୁଷୋତ୍ତମପୁର ରହଣୀରେ ପହଞ୍ଚିଲେ । ଗାନ୍ଧୀଜୀଙ୍କର ସେ ଗୋଟାଏ କଳା । ସବୁବେଳେ ପାଖକୁ ଡାକି କିଛି ନା କିଛି କାମ ବରାଦ କରୁଥାନ୍ତି ।

ବଡ଼ବାପା ଗଲେ, ମା ଗଲା, ମୋ ବଡ଼ଭଉଣୀ ଟିମଅପା ତ ୧୯୬୭ରୁ ଯାଇସାରିଥିଲା । ମୋ ସାନମାମୁଙ୍କ ଝିଅ ବାହାଘରକୁ ଟିମ ଅପା ମାମୁ ଘରକୁ ଆସିଲା । ତାର ସେତେବେଳେ ସନ୍ତାନ ସମ୍ଭାବନା ହୋଇଥିବାରୁ ବାହାଘର ପରେ ତେନ୍ତୁଳିପଦା ନ ଯାଇ କଟକରେ ମାମୁଘରେ ରହିଲା । ସେତେବେଳେ କଟକରେ ଆନନ୍ଦଚନ୍ଦ୍ର ବୋଷ ଓ ପ୍ରଭାବତୀ ସିଂହ ବଡ଼ ଡାକ୍ତର । ସେମାନେ ଟିମ ଅପାକୁ ଦେଖି କହିଲେ ତାର ରକ୍ତହୀନତା ବହୁତ ବେଶୀ ହୋଇଯାଇଛି । ସେ ଯୁଗରେ ରକ୍ତଦିଆ କଥା ତ ନ ଥିଲା । ଡାକ୍ତରମାନେ ଔଷଧ ଓ ପଥ୍ୟର ବ୍ୟବସ୍ଥା କଲେ; କିନ୍ତୁ ଟିମଅପା କହିଲା ଯେଉଁଥିରେ ଆମିଷ ଅଛି ତାକୁ ସେ ଖାଇବ ନାହିଁ । ତା ଗୋଡ଼ ଓ ମୁହଁ ଫୁଲିଥାଏ । ସେ ଫୁଲା ନ କମିବା ହେତୁ ଡାକ୍ତର ମୁଦ୍ଧା ଚିନ୍ତିତ ଥାନ୍ତି ।

ଝିଅଟିଏ ଯଥାସମୟରେ ଭଲରେ ଜନ୍ମହେଲା । କିନ୍ତୁ ଡାକ୍ତର ଚିନ୍ତିତ ଥାନ୍ତି । ମୋ ମାର ତ ଧୈର୍ଯ୍ୟ ଅସୀମ । ସେ ପ୍ରାଣପଣେ ଝିଅର ସେବା କରୁଥାଏ । ଶେଷଦିନ ରାତିକୁ ପ୍ରଳାପ ଆରମ୍ଭ ହେଲା । ସେ ପ୍ରଳାପରେ ଗୋଟିଏ କଥା କହୁଥାଏ ଯେ "ପିଲାମାନେ ଖେଳୁଛନ୍ତି, ତାଙ୍କ ପାଖକୁ ଯିବାକୁ ମୋତେ ଡାକୁଛନ୍ତି" । ସେ ରାତିଟା ସମସ୍ତେ ତା ପାଖରେ ରହିଲୁ । ସେ ଆମକୁ କିଛି କହୁନଥାଏ, ଖାଲି ସେହି ପିଲାଙ୍କ କଥା ଅସ୍ପଷ୍ଟ ଭାବରେ କହୁଥାଏ । ରାତି କଟିଲା । ସକାଳ ହେଲାରୁ ଡାକ୍ତର କହିଲେ ଅବସ୍ଥା ଟିକିଏ ଭଲ ଆଡ଼କୁ ଆସୁଛି । ଆମେ ଆଶ୍ୱସ୍ତ ହେଲୁ । ମାତ୍ର ଦିନ ଦୁଇଟା ବେଳକୁ ପୁଣି ପ୍ରଳାପ ଆରମ୍ଭ ହେଲା—ପାଞ୍ଚଟା ବେଳକୁ ସବୁ ଶେଷ । ତା ପିଲା ପାଞ୍ଚୋଟିର ଦାୟିତ୍ୱ ମୋ ମା ଉପରେ ପଡ଼ିଲା । ମୋ ମାର ତ ଏହି କାମ । ସାନ ମାଇଁଙ୍କର ମୃତ୍ୟୁ ହେଲା । ତାଙ୍କର ସାନ ପିଲା ଦୁଇଟିଙ୍କ ଯତ୍ନ ନେବା କାମ ହେଲା ମା'ର । ପ୍ରଥମ ମହାଯୁଦ୍ଧ ପରେ ଥରେ କଟକରେ ଭୀଷଣ ଇନଫ୍ଲୁଏଞ୍ଜା ହେଲା । ମାମୁଁ ଘର ତ ବହୁକୁଟୁମ୍ବୀ । ଊଣେଇଶଜଣଙ୍କୁ ଏକାସାଙ୍ଗରେ ଜ୍ୱର ହେଲା । ମା ସମସ୍ତଙ୍କୁ ଔଷଧ ପଥ୍ୟ ଠିକ୍ ଭାବରେ ଦେଉଥାଏ । ଡାକ୍ତର ତାହା ଦେଖି ଆଶ୍ଚର୍ଯ୍ୟ ହେଉଥାନ୍ତି ।

ଟିମଅପା, ବଡ଼ବାପା ଗଲା ପରେ ଆମେ ମା ଝିଅ ପରସ୍ପର ପ୍ରତି ଅଧିକ ଆସକ୍ତ ହୋଇଥିଲୁ । ମୋ ପାଇଁ ମାଆର ସାନ୍ନିଧ୍ୟ ଥିଲା ସବୁଠାରୁ ବଡ଼ ଆକର୍ଷଣ । ମା ମଧ୍ୟ ଚାଲିଗଲା । ଆଉ କାହାର ଉପରେ ନିର୍ଭର କରିବା କଥା ରହିଲା ନାହିଁ ।

## ୨୪ । ହରିଜନ ପଦଯାତ୍ରା

୧୯୩୪ରେ ଓଡ଼ିଶାରେ ହୋଇଥିବା ଗାନ୍ଧିଜୀଙ୍କର ଯେଉଁ ହରିଜନ ପଦଯାତ୍ରାକୁ ଆଜି ଐତିହାସିକ ପଦଯାତ୍ରା ରୂପେ ପରିଗଣିତ କରାଯାଉଛି ସେହି ପଦଯାତ୍ରାରେ ଏହି ଅକିଞ୍ଚନଙ୍କୁ ରହିବାର ସୁଯୋଗ ମିଳିଥିଲା ।

ଗାନ୍ଧୀଜୀ ହରିଜନ କାମରେ ସାତଦିନ ପାଇଁ ଓଡ଼ିଶାଗସ୍ତରେ ଆସିବେ ବୋଲି ପ୍ରାଦେଶିକ ହରିଜନ ସେବକ ସଂଘ ଅଫିସକୁ ଚିଠି ଆସିଲା । ସାତଦିନର ଗସ୍ତକ୍ରମ ତିଆରି ହେଲା । ଅଳ୍ପ ସମୟ ଭିତରେ ଯେପରି ବେଶି ଜାଗାକୁ ଯାଇପାରିବେ ସେଥିପାଇଁ ମଟରକାର ଯାଇପାରିବା ଭଲ ରାସ୍ତା ଥିବା ସ୍ଥାନକୁ ଗସ୍ତକ୍ରମରେ ରଖାଗଲା । ନିର୍ଦ୍ଦିଷ୍ଟ ଦିନରେ ଗାନ୍ଧୀଜୀ ସମ୍ବଲପୁର ଗସ୍ତ ସାରି ଅନୁଗୁଳ ଆସିଲେ । ଅନୁଗୁଳରୁ ତାଳଚେର ଗାଡ଼ିରେ ପୁରୀ ଆସିଲେ । ଗାନ୍ଧୀଜୀ ପୁରୀରେ ପହଞ୍ଚିଲା ବେଳକୁ ଗୋଟିଏ ଗୁଜବ ଉଠିଲା ଯେ ଗାନ୍ଧୀଜୀ ହରିଜନମାନଙ୍କୁ ଜଗନ୍ନାଥ ମନ୍ଦିରରେ ଜବରଦସ୍ତି ଭରତି କରିବେ । ସେଥିପାଇଁ ଦଳେ ଲୋକ ତାଙ୍କୁ ମାଡ ମାରିବାକୁ ସଜହୋଇଥିଲେ । ପୁରୀରେ ପହଞ୍ଚି ଏ ଆଭାସ ପାଇବା ମାତ୍ରେ ଗାନ୍ଧିଜୀ ପାଦରେ ଚାଲି ଚାଲି ଓଡ଼ିଶାରେ ଗସ୍ତ କରିବାକୁ ନିଷ୍ପତ୍ତି କଲେ । ୧୯୩୪ ମସିହା ମଇମାସ ନଅ ତାରିଖ ଦିନ ପୁରୀରୁ ଏହି ପଦଯାତ୍ରା ଆରମ୍ଭ ହେଲା । ଗାନ୍ଧୀଜୀଙ୍କର ଚାରୋଟି ଐତିହାସିକ ପଦଯାତ୍ରା ମଧ୍ୟରୁ ଏହା ଅନ୍ୟତମ ।

ଗାନ୍ଧୀଜୀ ପୁରୀରେ ରହିବା ପାଇଁ ସମୁଦ୍ର କୂଳରେ ଗୋଟିଏ ବଡ଼ ପକ୍‌କାଘରର ବ୍ୟବସ୍ଥା ହୋଇଥାଏ । ଷ୍ଟେସନରୁ ସେଠାକୁ ଯିବାପାଇଁ ମୋଟରକାରର ବ୍ୟବସ୍ଥା ହୋଇଥାଏ । ରାତି ଆଠଟାରେ ଗାନ୍ଧୀଜୀ ପୁରୀ ଷ୍ଟେସନରେ ରେଲରୁ ଓହ୍ଲାଇ ଦେଖିଲେ ଯେ ତାଙ୍କ ସୁରକ୍ଷା ପାଇଁ ପୁଲିସ ବ୍ୟବସ୍ଥା ହୋଇଛି । ତାହା ଦେଖି ସେ ଷ୍ଟେସନରୁ ବାହାରି ଆସି କହିଲେ ଯେ ରହିବା ଜାଗାକୁ ମୋଟରରେ ନଯାଇ ଚାଲିକରି ଯିବେ । ରହିବା ସ୍ଥାନ ଦେଖେଇବା ପାଇଁ ଜଣେ ଗାନ୍ଧୀଜୀଙ୍କ ଆଗେ ଆଗେ ଚାଲିଲେ—ଅନ୍ୟମାନେ ପଛେ ପଛେ ଚାଲିଲେ । ରହିବା ସ୍ଥାନରେ ପହଞ୍ଚି ସେ ଠକ୍‌କରବାପାଙ୍କୁ ଜଣାଇଲେ ଯେ ସେ ଆଉ ରେଲରେ ବା ମୋଟରରେ ଗସ୍ତ କରିବେ ନାହିଁ - ଓଡ଼ିଶାରେ ତାଙ୍କର ଯେଉଁ ସାତ-ଦିନ ଗସ୍ତ କରିବା କଥା ସେ ସାତଦିନ ସେ ପଦଯାତ୍ରାରେ କଟେଇବେ । ସେଦିନ ଗାନ୍ଧୀଜୀଙ୍କର ମୌନ ରହିବା ଦିନ । ମୌନ ହେବା ସମୟ ହେବାରୁ ସେ ଠକ୍‌କରବାପାଙ୍କୁ ଏତିକ ଜଣେଇଦେଇ ମୌନ ରହିଲେ ।

ଗାନ୍ଧୀଜୀଙ୍କ ପ୍ରସ୍ତାବକୁ ଠକ୍‌କରବାପା ସଙ୍ଗେ ସଙ୍ଗେ ଆମମାନଙ୍କୁ ଜଣାଇଦେଲେ । ଭାଳେଣି ପଡ଼ିଲା ଯେ ସାତଦିନର ପ୍ରସ୍ତାବିତ କାର୍ଯ୍ୟକ୍ରମ ପଦଯାତ୍ରାଦ୍ୱାରା ପୂରଣ ହୋଇ-ପାରିବ ନାହିଁ । କାଲି ଗୁଡ଼ି ପଅରଦିନର ସକାଳଠାରୁ ଗାନ୍ଧୀଜୀଙ୍କ କାର୍ଯ୍ୟକ୍ରମ ଆରମ୍ଭ ହୋଇଥାନ୍ତା । ମୋଟରରେ ଯିବା କଥା । ଗାନ୍ଧୀଜୀ ଯିବେ ବୋଲି ସବୁ ଜାଗାରେ ସମସ୍ତେ ସଭା ଆଦିର ଆୟୋଜନ କରିବେ । ତେଣୁ ତହିଁ ଆରଦିନ କର୍ମୀମାନେ ବିଭିନ୍ନ ସ୍ଥାନକୁ ଯାଇ ନୂଆ ପ୍ରସ୍ତାବିତ ପଦଯାତ୍ରାର ସମସ୍ତ କଥା ସମସ୍ତଙ୍କୁ ଜଣାଇଦେବା ସ୍ଥିରହେଲା । ସେହି ରାତିରେ ସ୍ଥିର କରାଗଲା ଯେ ପୁରୀ ସମୁଦ୍ର କୂଳରୁ କାଠଯୋଡ଼ି ନଈକୂଳ କାଜିପାଟଣା ପର୍ଯ୍ୟନ୍ତ ନୂଆ କାର୍ଯ୍ୟକ୍ରମ ହେବ । ପୁରୁଣା କାର୍ଯ୍ୟକ୍ରମକୁ ବନ୍ଦ କରିବାପାଇଁ କେତେ ଜଣ କର୍ମୀ ବାହାରିଗଲେ । ଦୁଇଓଳି ପଦଯାତ୍ରା କରିବା ସ୍ଥିର ହେଲା । ପ୍ରତ୍ୟେକ ଥର ପାଞ୍ଚ

କମ୍ବା ଛଅ ମାଇଲ ବାଟ ରଖାଗଲା । ଗାନ୍ଧୀଜୀ ସପ୍ତମଦିନ କାଜୀପାଟଣାରେ ପହଞ୍ଚି ଉପରଓଳି କାଠଯୋଡ଼ି ନଈବାଲିରେ ସଭା କରି ପୁରୀ ଏକ୍ସପ୍ରେସ୍‌ରେ ପାଟଣା ଯିବେ କଂଗ୍ରେସ କାର୍ଯ୍ୟକାରୀ କମିଟି ବୈଠକରେ ଯୋଗ ଦେବାପାଇଁ ଏହା ସ୍ଥିରହେଲା । ତହିଁ ଆରଦିନ ସକାଳେ ଗାନ୍ଧୀଜୀ ନିଜ ହାତରେ ଲେଖି ଖଣ୍ଡେ କାଗଜ ମୋ ହାତକୁ ବଢ଼ାଇଦେଲେ । ସେଥିରେ ଲେଖା ଥିଲା "ରାଜେନ୍ଦ୍ର ପ୍ରସାଦଙ୍କ ଭଉଣୀ ଆସିଛନ୍ତି । ତମେ ନିଜେ ତାଙ୍କୁ ସାଙ୍ଗରେ ନେଇ ଠାକୁର ଦର୍ଶନ ଆଦି କରାଇବ ।" ମୁଁ ସେ କାମଟି କଲି ।

ସେ ସମୟରେ ମୁଁ ହରିଜନ ସେବକ ସଂଘର ସେକ୍ରେଟାରୀ ଓ ଆଡ଼ଭୋକେଟ ଶ୍ରୀ ସତ୍ୟନାରାୟଣ ସେନଗୁପ୍ତ ଜଏଣ୍ଟ ସେକ୍ରେଟାରୀ ଥିଲେ । କବିରାଜ ଶ୍ରୀ ବାଲୁକେଶ୍ୱର ଆଚାର୍ଯ୍ୟ ପ୍ରେସିଡେଣ୍ଟ ଥିଲେ । ପୁରୀଜିଲ୍ଲାର ମୁଖ୍ୟକର୍ମୀମାନେ ପୁରୀ ଜିଲ୍ଲାର ଓ କଟକର ମୁଖ୍ୟ କର୍ମୀମାନେ କଟକ ଜିଲ୍ଲାର ପଦଯାତ୍ରାର ବାଟ ଓ ରହଣୀ ସ୍ଥାନମାନ ସ୍ଥିର କଲେ । ସେହିଦିନ ସଙ୍ଗେସଙ୍ଗେ ପ୍ରତ୍ୟେକ ରହଣିକୁ ପଦଯାତ୍ରାର ଆୟୋଜନ କରିବାକୁ କର୍ମୀ ଗଲେ । ଆମ ସମସ୍ତଙ୍କ ମନ ବ୍ୟସ୍ତ ବିବ୍ରତ ଅବସ୍ଥାରେ ଥାଏ । ପଦଯାତ୍ରାର ଆୟୋଜନରେ ଯେପରି ତ୍ରୁଟି ନରହିବ ସେ ଦିଗରେ ତୀକ୍ଷ୍ଣ ଦୃଷ୍ଟି ରଖି କାର୍ଯ୍ୟ କରାଯାଉଥାଏ । ଏହିପରି ବ୍ୟସ୍ତତା ଭିତରେ ସେ ଦିନଟି କଟିଗଲା । ତହିଁଆରଦିନ ସକାଳ ଛଅଟାବେଳେ ପଦଯାତ୍ରା ଆରମ୍ଭ ହେବ । ଗାନ୍ଧୀଜୀଙ୍କ ସାଙ୍ଗରେ ନାରୀକର୍ମୀ ଥାନ୍ତି ସର୍ବଶ୍ରୀ ମୀରାବେନ୍ (ମିସ୍ ସ୍ଲେଡ୍), ସୁଶୀଳା ପାଇ, ଜୟପ୍ରକାଶ ନାରାୟଣଙ୍କ ସହଧର୍ମିଣୀ ପ୍ରଭାବତୀ ଦେବୀ ଓ ଯମୁନାଲାଲ ବଜାଜଙ୍କ କନ୍ୟା ଉମା । ନିର୍ଦ୍ଦିଷ୍ଟ ସମୟରେ ପଦଯାତ୍ରା ଆରମ୍ଭହେଲା । ଆମେ ସମସ୍ତେ ପଦଯାତ୍ରାରେ ଚାଲିଛୁ, କେବଳ ଠକ୍କରବାପା ଗୋଟିଏ ବଳଦଗାଡ଼ିରେ ଯାଉଥାନ୍ତି । ପଦଯାତ୍ରୀମାନେ ଗାନ୍ଧୀଜୀଙ୍କ ପଛେ ପଛେ ଯାଉଥାନ୍ତି । ପ୍ରଭାବତୀ ଦେବୀ ଓ ଉମା ଗାନ୍ଧୀଜୀଙ୍କ ପଛେପଛେ ଚାଲିଥାନ୍ତି । ସମୁଦ୍ରକୂଳ ପାରହୋଇ ଯିବାପରେ ଗାନ୍ଧୀଜୀ ମୋତେ ଡାକିଲେ, ମୋ କାନ୍ଧରେ ହାତ ପକାଇ ଚାଲିଲେ । ମତେ ପଚାରିଲେ—ତମେ ଏଥିରେ କେମିତି ପଶିଲ ? ମୁଁ କହିଲି, "ମୋ ବଡ଼ବାପା ସ୍ୱର୍ଗୀୟ ମଧୁସୂଦନ ଦାସ ଜଣେ ଦେଶସେବକ ଥିଲେ । ସେ ଆମ ଘରେ ରହିବାବେଳେ ଓ ଆମେ ତାଙ୍କ ଘରେ ରହିବାବେଳେ ଦେଶ ତଥା ସମାଜର ସମସ୍ୟା ଏବଂ ତାର ନିରାକରଣ ଓ ପ୍ରଗତି ବିଷୟରେ ଯେଉଁ ଆଲୋଚନା ହୁଏ, ମୋତେ ତାହା ପିଲାଦିନୁ ଶୁଣିବାକୁ ମିଳୁଥିଲା । ମୋ ମନରେ ମୋ ଦେଶର ଉନ୍ନତି କରିବା ପାଇଁ କାମ କରିବାର ଭାବନା ଜାଗ୍ରତହେବାର ସେ ଗୋଟିଏ କାରଣ । ଆଉ ଗୋଟିଏ କାରଣ ହେଉଛି ବଙ୍ଗଭଙ୍ଗ ଆନ୍ଦୋଳନ । ସେତେବେଳେ ମୁଁ ପିଲାଥିଲେ ମଧ୍ୟ ସେତେବେଳର କାର୍ଯ୍ୟକଳାପ ମୋତେ ଶୁଣିବାକୁ ଜାଣିବାକୁ ମିଳୁଥିଲା । ମୁଁ ସେ ସବୁରୁ କିଛି କିଛି ବୁଝିପାରୁଥିଲି । ତାହା ମଧ୍ୟ ମୋ ମନରେ ଚେତନା ସୃଷ୍ଟି କରିଛି । ଘରେ ସଭା ସମ୍ମିଳନୀ ଆଦିର କଥା ଶୁଣିବାକୁ ମିଳୁଥିଲା । ସେତେବେଳୁଁ ମୁଁ ମନେ ମନେ ସ୍ଥିର କରିଥିଲି ଯେ ମୁଁ କେବଳ ଘରକାମରେ ଆବଦ୍ଧ ନରହି ସମାଜର ଭଲ ପାଇଁ ନିଶ୍ଚୟ କାମ

କରିବ । ମାତ୍ର କେଉଁ ବିଗ୍ରର ଓ ପନ୍ଥା ଅନୁସାରେ କାମ କରିବ ତାହା ମୋତେ ଜଣା ନ ଥିଲା । କେବଳ ମଧୁସୂଦନ ଦାସଙ୍କର ପ୍ରେରଣାରେ ୧୯୨୧ ମସିହା ପୂର୍ବରୁ ମୁଁ ଚରଖାରେ ସୂତା କାଟୁଥିଲି । ସେ ଉତ୍କଳ ସମ୍ମିଳନୀରେ ତାଙ୍କ ଭାଷଣରେ କହିଥିଲେ ଯେ, ମଣିଷର ଆବଶ୍ୟକ ବସ୍ତୁମାନଙ୍କ ମଧ୍ୟରେ ଲୁଗା ହେଉଛି ସର୍ବପ୍ରଥମ, କାରଣ ଲୁଗା ମଣିଷର ଲଜ୍ଜା ନିବାରଣ କରୁଛି ଓ ଇଜ୍ଜତ ରକ୍ଷା କରୁଛି । ଆମେମାନେ ଯେ ବିଦେଶୀ ବସ୍ତ୍ର ପିନ୍ଧୁ ତାର ଅର୍ଥ ଆମ ଲଜ୍ଜା ଓ ଆମ ଇଜ୍ଜତ ବିଦେଶୀ ହାତରେ ରହିଛି—ଲଜ୍ଜା ଓ ଇଜ୍ଜତ ନିଜ ହାତରେ ରହିବା ଉଚିତ । ଏହି ଭାଷଣ ମୋତେ ଚରଖାରେ ସୂତା କାଟିବା ପାଇଁ ପ୍ରବୃତ୍ତ କରିଥିଲା । ପତ୍ରପତ୍ରିକା ଆଦିରୁ ଅସହଯୋଗ ଆନ୍ଦୋଳନ କଥା ଜାଣିଥିଲି । ୧୯୨୧ରେ ଆପଣ କଟକ ଆସିଲେ । କଟକ ମହୁଲା ସଭାରେ ଆପଣଙ୍କ ଭାଷଣ ଶୁଣିବା ପରେ ଆପଣଙ୍କ ପ୍ରବର୍ତ୍ତିତ କାର୍ଯ୍ୟପନ୍ଥା ଓ ମାର୍ଗ ଦର୍ଶନରେ କାମ କରିବାକୁ ସ୍ଥିର କଲି ଏବଂ ତଦନୁସାରେ କରୁଛି ତଥା ସାରା ଜୀବନ କରିବାର କଳ୍ପନା ରହିଛି ।"

ପଦଯାତ୍ରା ଦୁଇଓଳି ହୁଏ । ତେଣୁ ପ୍ରତିଦିନ ଦୁଇଟି ରହଣି ପାଇଁ ବ୍ୟବସ୍ଥା କରାଯାଉଥାଏ । ଦୁଇଓଳି ଖାଇବା ପାଇଁ ସେଠେଇ ବ୍ୟବସ୍ଥା ସକାଳ ଓଳି ରହଣିରେ ହୁଏ । ରାତି ରହଣିରେ ସକାଳ ଜଳଖିଆ ବ୍ୟବସ୍ଥା ହୁଏ । ରାତି ରହଣିରେ ଭୋର ଘ ୪ । ୨୦ ମିନଟରେ ସକାଳ ପ୍ରାର୍ଥନା ହୁଏ । ସକାଳ ଛଅଟାବେଳେ ପଦଯାତ୍ରାରେ ବାହାରିବା ପାଇଁ ପଦଯାତ୍ରୀମାନେ ପ୍ରସ୍ତୁତ ହୁଅନ୍ତି । ତାହାର ଭିତରେ ଜଳଖିଆ ଖାଇବା ମଧ୍ୟ ହୁଏ । ବଳଦ ଗାଡ଼ିରେ ବିଛଣାପତ୍ର ଆଦି ଲଦି ଠିକ୍ ଛଅଟା ବେଳେ ସମସ୍ତେ ପଦଯାତ୍ରାରେ ବାହାରି ପଡ଼ନ୍ତି ।

ରହଣିର ଦୂରତ୍ୱ ସ୍ଥଳରୁ ଛଅ ମାଇଲ ମଧ୍ୟରେ ରଖାଯାଇଥାଏ । ସକାଳ ଜଳଖିଆରେ ଚୁଡ଼ା, ଦହି, ଗୁଡ଼, କଦଳୀ, ନଡ଼ିଆ, ଆମ୍ବ ଦିଆଯାଏ । ଗାନ୍ଧୀଜୀ କହିଲେ—ମୁଁ ବାହାର ପ୍ରଦେଶର ଫଳ ପଦଯାତ୍ରାରେ ଖାଇବ ନାହିଁ, ଓଡ଼ିଶାର ଫଳ ଯାହା ମିଳିବ ତାହାହିଁ ଖାଇବ । କି ଫଳ ଖାଇବେ ବୋଲି ଚିନ୍ତା ପଡ଼ିଲା । ସେ ଆମ୍ବ ଖାଇବାକୁ ରାଜିହେଲେ । ବିହାର ପ୍ରଭୃତି ପ୍ରଦେଶରେ ସିପିଆ ପ୍ରଭୃତି ଗୋଟିଏ ଗୋଟିଏ ଜାତିର ଆମ୍ବ ଅଛି ଯାହା ନିଶ୍ଚିତ ଭାବରେ ମିଠା । ଓଡ଼ିଶାରେ ସେପରି ନାହିଁ । ଭଲ ମିଠା ଆମ୍ବ ବାଙ୍କିରେ ମିଳେ ବୋଲି ବାଙ୍କିରୁ ଆମ୍ବ ଆଣି ଯୋଗାଇବାର ଦାୟିତ୍ୱ ମୋ ମା ନେଇଥିଲି । ସବୁ ରହଣିରେ ଆବଶ୍ୟକତା ଅନୁସାରେ ଛେଳିଦୁଧ ମିଳୁ ନଥିଲା । ଯେଉଁଠି ଛେଳିଦୁଧ ବେଶି ପରିମାଣରେ ମିଳେ ତାକୁ ସୁରୁବାଈ * ଆଉଟି ଆଉଟି ଶୁଖେଇକରି ରଖି କାମ ଚଳାନ୍ତି ।

* ୧୯୨୮ରେ ଗୁଜରାଟରୁ ଆସି ବାଲେଶ୍ୱର ଜିଲ୍ଲାର ସୋରୋ ଠାରେ ରହି ସୁରୁବାଈ କାମ କରୁଥିଲେ ।

ପ୍ରତ୍ୟେକ ଦିନ ଦୁଇଟି ସାଧାରଣ ସଭାର ଆୟୋଜନ ହୋଇଥାଏ । ଗାନ୍ଧୀଜୀ ରହଣୀ ସ୍ଥାନରେ ପହଞ୍ଚି ସାଧାରଣସଭାରେ ଭାଷଣ ଦିଅନ୍ତି । ସାଧାରଣ ଲୋକେ ବୁଝିବାର ସୁବିଧା ପାଇଁ ଶ୍ରୀ ରାଜକୃଷ୍ଣ ବୋଷ ହିନ୍ଦୀ ଭାଷାକୁ ଓଡ଼ିଆରେ ଅନୁବାଦ କରନ୍ତି । ଭାଷଣ ଶେଷ ହେବା ମାତ୍ରେ ଆମେମାନେ ସଭାରେ ଥିବା ଲୋକମାନଙ୍କଠାରୁ ଚାନ୍ଦା ସଂଗ୍ରହ କରୁ । ପ୍ରତ୍ୟେକ ସଭାର ଭାଷଣ ଶେଷରେ ଗାନ୍ଧୀଜୀ କହନ୍ତି— ହରିଜନ କାମ ପାଇଁ ଯେ ଯାହା ଦେଇ ପାରିବେ କିଛୁ କିଛୁ ଦିଅନ୍ତୁ । ଲୋକେ ଅମ ପଇଟକାନରେ ଯେ ଯାହା ଦେବାର ଦିଅନ୍ତି । ଗୋଟିଏ ପଇସା ବା ଗୋଟିଏ ଅଧଲା ଜଣଜଣଙ୍କଠାରୁ ମିଳୁଥିଲା । ଗାନ୍ଧୀଜୀ ସଭାରୁ ଆସି ଗାଧୁଆ କାମ ସାରନ୍ତି । ତାହାର ଭିତରେ ସମସ୍ତଙ୍କ ପାଇଁ ହୋଇଥିବା ଗାତଖୋଳା ପାଇଖାନା ଠିକ୍ ଭାବରେ ହୋଇଛି କି ନାହିଁ, ସେଥିରେ ପକାଇବା ପାଇଁ ମାଟି ଯଥେଷ୍ଟ ଅଛି କି ନାହିଁ ଇତ୍ୟାଦି ସବୁ ଠିକଣାକି କରି ତଦାରଖ କରନ୍ତି । ରହିବା ସ୍ଥାନ, ରୋଷେଇ ସ୍ଥାନ ଆଦିର ପରିଷ୍କାର ପରିଚ୍ଛନ୍ନତା ଉପରେ ଖୁବ୍ ଦୃଷ୍ଟି ଦିଅନ୍ତି ଏବଂ ଠିକଏ ତ୍ରୁଟି ଥିଲେ ତାହାକୁ ସଙ୍ଗେ ସଙ୍ଗେ ସୁଧାରିବା ବ୍ୟବସ୍ଥା କରନ୍ତି ।

ଆମର ଧାରଣା ଥିଲା ଗାନ୍ଧୀଜୀ ମହାନ ନେତା । ସେ ଦେଶର ସମସ୍ୟା ବିଷୟରେ ଶୁଣାଇବେ ଓ ତାର ସମାଧାନ ପାଇଁ ଚେଷ୍ଟା କରିବେ । ସଭା ସମ୍ମିଳନୀରେ ଭାଷଣ ଦେବେ । ସମିତି, ସଂଘ ଆଦିରେ କର୍ମୀମାନଙ୍କୁ ମାର୍ଗ ଦର୍ଶନ ଦେବେ ଏବଂ କର୍ମପନ୍ଥା ନିରୂପଣ କରିବେ, ଆନ୍ଦୋଳନ ଆରମ୍ଭ କରିବେ ଏବଂ ସେଥିରେ ନିଜକୁ ସମର୍ପିତ କରିବା ଭଳି ପ୍ରେରଣା ଲୋକଙ୍କୁ ଦେବେ । ମାତ୍ର ପଦଯାତ୍ରାରେ ତାଙ୍କ ସଙ୍ଗରେ ରହି ଜାଣିଲୁ ରହଣି ସ୍ଥାନର ସବୁ ବ୍ୟବସ୍ଥା, ବିଶେଷକରି ପରିଷ୍କାର ପରିଚ୍ଛନ୍ନତା ଉପରେ ସେ ତୀକ୍ଷ୍ଣ ଦୃଷ୍ଟି ରଖୁଛନ୍ତି । ପୁଣି ଖାଦ୍ୟ ପଦାର୍ଥ ଯେପରି ଆଦୌ ନଷ୍ଟ ନ ହେବ, ତାହା ଉପରେ ତାଙ୍କର ଦୃଷ୍ଟି ଥାଏ ।

ଶିଉଳାତକ ରହଣିରେ ଦିନଓଳି ଖିଆ ସରିବା ପରେ ଦେଖାଗଲା ଭାତ ପ୍ରଭୃତି ଖାଦ୍ୟ ବଳିପଡ଼ିଛି ଏବଂ ତାହାର ସଦ୍‌ବ୍ୟବହାର ପାଇଁ ବିଚାର ପଡ଼ିଛି । ମୁଁ କହିଲି-ଭାତକୁ ପଖାଳ ଦିଅ, ଡାଲି ତରକାରିରୁ ପାଣି ମାରିଦିଅ—ଉପରଓଳି ତାକୁ ସମସ୍ତେ ଖାଇବେ । (ସୂର୍ଯ୍ୟାସ୍ତ ପୂର୍ବରୁ ରାତି ଭୋଜନ ଶେଷ ହୁଏ ) । ସେହିପରି କାର୍ଯ୍ୟ ହେଲା । ମୋ ମନରେ ଡରଥାଏ ଦିନ ରନ୍ଧା ଜିନିଷ ଖାଇବାକୁ ଦିଆଗଲା ବୋଲି କାଳେ ଗାନ୍ଧୀଜୀ ବିରକ୍ତ ହେବେ । ଗାନ୍ଧୀଜୀ ବିରକ୍ତ ନ ହୋଇ ଖୁସିହେଲେ ।

ସକାଳଓଳି ରହଣିରେ ତୃପ୍ତି, ମଙ୍ଗଳା, ସୁଶୀଳା, ଗୋଦାବରୀ, ଶୋଭା, ମାଣିକ ଓ ତୁଳସୀ ବାଣ୍ଟହୋଇ କେତେଜଣ ରୋଷେଇ କାମରେ ସାହାଯ୍ୟ କରନ୍ତି ଓ ଆଉ କେତେ ଜଣ ହରିଜନ ବସ୍ତିକୁ ଯାନ୍ତି । ସେ ସମୟରେ ଓଡ଼ିଶାରେ ବର୍ତ୍ତମାନ ପରି ରୁଟିର ଚଳଣ ନ ଥିଲା । ଅନ୍ୟ ପ୍ରଦେଶର ଯେ ଥିଲେ ସେମାନେ ଭାତ ସାଙ୍ଗରେ ଦୁଇଓଳି ରୁଟି ଖାଆନ୍ତି । ତେଣୁ ରୁଟି ଭଲ ହେବା ପାଇଁ ଚେଷ୍ଟା କରିବାକୁ ପଡୁଥିଲା ।

ଯେଉଁମାନେ ହରିଜନବସ୍ତିକୁ ଯାଉଥିଲେ ସେମାନେ ବସ୍ତି ଲୋକଙ୍କଠାରୁ ତଥ୍ୟ ସଂଗ୍ରହ କରୁଥିଲେ । ତାହା ମଧ୍ୟରେ ପ୍ରଧାନ ବିଷୟ ଥିଲ ବସ୍ତି ଲୋକଙ୍କ ପାଇଁ ପିଇବା ପାଣିର ସୁବିଧା ଅଛି କି ନାହିଁ । ସେମାନେ ସାହିରୁ ତଥ୍ୟ ସଂଗ୍ରହ କରି ସାରି ସାହି ପିଲଙ୍କୁ ସାଙ୍ଗରେ ଆଣିବେ । ସେମାନଙ୍କୁ ତେଲ ଲଗାଇ ଗାଧୋଇ ଦେବେ । ସେମାନଙ୍କୁ ବସାଇ 'ରଘୁପତି ରାଘବ ରାଜାରାମ' ଓ ଅନ୍ୟ ଧୂନ୍ ବା ଗୀତଙ୍କ ଭଜନ ଶିଖାଇବେ । ଶେଷେଇ ସରିଲେ ପିଲଙ୍କୁ ଭାତ ଖୁଆଇ ଘରକୁ ପଠାଇ ଦିଆଯାଏ । ପିଲମାନେ ବସି ରଘୁପତି ରାଘବ ରାଜାରାମ ବୋଲିବା ବେଳେ ବା ଭାତ ଖାଇବା ବେଳେ ଗାନ୍ଧୀଜୀ ପ୍ରତିଦିନ ଆସି ଦେଖନ୍ତି ଏବଂ କହନ୍ତି ତାଳରେ ବୋଲିବା ଶିଖାଅ । ଭାତ ଖାଇବା ଠିକ୍ ଢଙ୍ଗରେ ଶିଖାଅ । ଖାଇବା ଜିନିଷପତ୍ର ବାହାରେ ପଡ଼ିବ ନାହିଁ ବା ହାତରେ ଖାଇବା ଜିନିଷ ବାଲି ବାଲି ହୋଇ ଲଗିବ ନାହିଁ ।

ଗାନ୍ଧୀଜୀ ପୁରୀରୁ କାଙ୍ଗାପାଟଣା ଆସିବା ରାସ୍ତାରେ ତେଲଙ୍ଗାପେଣ୍ଠ ରହଣିରେ ମୁଁ ଓ ପଣ୍ଡିତ ଗୋପବନ୍ଧୁ ପଡ଼ିହାରୀ ଗାନ୍ଧୀଜୀଙ୍କ ପାଖରେ ବସି ତାଙ୍କୁ କିଛି ପ୍ରଶ୍ନ ପଚାରିବାକୁ ଚାହୁଁ ବୋଲି ପଡ଼ିହାରୀ ମହାଶୟ କହିବାରୁ ଗାନ୍ଧୀଜୀ ପଚାରିବା ପାଇଁ କହିଲେ । ପଡ଼ିହାରୀ ମହାଶୟ କହିଲେ—କର୍ମୀମାନଙ୍କର ପିଲମାନଙ୍କର ଶିକ୍ଷା ବ୍ୟବସ୍ଥା ଅନ୍ୟ ପ୍ରଦେଶରେ ଥିବା କୌଣସି ସଂସ୍ଥାରେ କରିବା ଏବଂ ଯେଉଁ ପିଲ ଉପଯୁକ୍ତ ବିବେଚିତ ହେବେ ସେମାନଙ୍କୁ ଉଚ୍ଚ ଶିକ୍ଷା ପାଇଁ ବିଦେଶକୁ ପଠାଇବା ବିଷୟରେ ଆପଣଙ୍କ ମତ କଣ ? ଗାନ୍ଧୀଜୀ ଉତ୍ତରରେ କହିଲେ—"ଭଗବାନ ଯେ ମା କୋଳରେ ସନ୍ତାନ ଦେଇଛନ୍ତି, ପିଲଙ୍କୁ ଲଳନପାଳନ କରିବା ପାଇଁ ଏବଂ ବାପ ମା ଉଭୟଙ୍କ ଜୀବନକୁ ସଂଯତ କରିବା ପାଇଁ । ବାପ ମାଙ୍କର ସଂଯତ ଜୀବନ ପିଲଙ୍କୁ ଭଲ ମଣିଷ କରି ଗଢ଼ିବାରେ ବହୁତ ସାହାଯ୍ୟ କରେ । ବାହାରେ ପିଲ ପଢ଼ିଲେ ତାହାର ଶୃଙ୍ଖଳାଜ୍ଞାନ ବଢ଼ିପାରେ, କିନ୍ତୁ ସଂଯତ ଜୀବନର ପ୍ରଭାବ ପଡ଼ିବ ନାହିଁ । ପିଲର ପ୍ରଥମେ ନିଜ ମାତୃଭାଷା ଉପରେ ଦଖଲ ଆସିବା ଦରକାର । ପିଲ ନିଜ ପରିବାରରେ ଥିବା ଭଲ ସଂସ୍କାରରେ ଅଭ୍ୟସ୍ତ ହେବା ଦରକାର । ସେ ନିଜ ଦେଶର ଇତିହାସ, ଭୂଗୋଳ ସାହିତ୍ୟ ଆଦିର ଭଲ ଜ୍ଞାନ ଲଭ କରିବ । ତାପରେ ବାହାରକୁ ଗଲେ ଭଲ । ଜମୁନାଲଲ ବଜାଜ ପ୍ରଭୃତି କେତେଜଣ ତାଙ୍କ ପିଲଙ୍କୁ ପାଠ ପଢ଼ାଇବା ପାଇଁ ବିଦେଶକୁ ପଠାଇବାକୁ ଇଚ୍ଛା କରି ମୋର ପରାମର୍ଶ ମାଗିବାରୁ ମୁଁ ତାଙ୍କୁ ଏହି କଥା କହି ସେଥିରୁ ନିବର୍ତ୍ତାଇଲି ।

ବର୍ଷା ଆରମ୍ଭ ହେବାରୁ ପଦଯାତ୍ରା ଭଦ୍ରଖରେ ଶେଷ କରାଗଲ । ଭଦ୍ରଖରୁ ଖଡ଼ଗପୁର ଯିବା କଥା । ଗାନ୍ଧୀଜୀଙ୍କ ସହିତ ଆମେମାନେ ଭଦ୍ରଖ ରହଣି ସ୍ଥାନ ମହତାବବାବୁଙ୍କ ଘରୁ ଷ୍ଟେସନକୁ ଆସିଲୁ । ଆସୁ ଆସୁ ବାଟରେ ଗାନ୍ଧୀଜୀ ମୋତେ ଡାକି କହିଲେ, "ଦେଖ, ଓଡ଼ିଶାରେ ସ୍ତ୍ରୀଲୋକମାନଙ୍କୁ ତାଲିମ ଦେବାପାଇଁ ବା କାମରେ ଲଗାଇବା ପାଇଁ କୌଣସି ସଂସ୍ଥା ନାହିଁ କି ବ୍ୟବସ୍ଥା ନାହିଁ । ସେ କାମଟିକୁ ତମେ ହାତକୁ ନିଅ । ପାଠପଢ଼ା ହେଉ ବା

ନିରକ୍ଷର ହେଉ ଯେ ତମ ପାଖକୁ ଆସିବାକୁ ଚାହିଁବେ ତମେ ବିନା ଦ୍ୱିଧାରେ ତାଙ୍କୁ ନେଇ ତାଲିମ ଦେବ । ତାଲିମର ଅର୍ଥ ଭଲ ସଂସ୍କାର ଭଲ ସଂସ୍କୃତିରେ ଅଭ୍ୟସ୍ତ କରାଇବା । ବହୁ ସ୍ତ୍ରୀଲୋକଙ୍କୁ ତମେ ଯଦି ତାହା କରାଇ ପାରିବ, ତେବେ ଗୋଟିଏ ବଡ଼ କାମ ହେବ !"

ବସ୍ତି ଯିବା ପରେ ବସ୍ତି ଅଞ୍ଚଳର ହରିଜନ ସାହିରେ ପାଠଶାଳା ଓ ନୈଶବିଦ୍ୟାଳୟ ଚଳାଇବା, ହରିଜନଙ୍କ ମଧ୍ୟରେ ମଦ୍ୟପାନ ବନ୍ଦ କରିବା, ହରିଜନଙ୍କ ମଧ୍ୟରେ ଜାତିଭେଦ ଓ ଛୁଆଁ ଅଛୁଆଁ ଭାବନା ଦୂର କରିବା, ସୂତାକଟା, ଖଜୁରି ଗୁଡ଼ ତିଆରି, ମହୁମାଛି ପାଳିବା ଆଦି ଧନ୍ଦା ଧରିବା ପାଇଁ ସେମାନଙ୍କୁ ପ୍ରବର୍ତ୍ତାଇବା ଆଦି କାମରେ ଆମେ ଲାଗିଲୁ । ଗାନ୍ଧିଜୀ ବସ୍ତିରେ ଶ୍ରୀ ବାମନ ଚରଣ ଦାସଙ୍କ ଘରେ ଗୋଟିଏ ରାତି ରହିଥିଲେ । ବାମନବାବୁ ସେହି ପୁଣ୍ୟ ସ୍ମୃତି ରକ୍ଷା କରିବା ଉଦ୍ଦେଶ୍ୟରେ ତାଙ୍କର ଦେବ ମନ୍ଦିର ହରିଜନମାନଙ୍କ ପାଇଁ ଖୋଲିଦେଲେ । ବସ୍ତିରେ ହରିଜନମାନଙ୍କ ଘର ଗାଈର ଦୁଧ ସବର୍ଣ୍ଣମାନେ ଖାଉ ନଥିଲେ । କ୍ରମେ ସେ ଚଳନ ବନ୍ଦ ହୋଇ ସହଭୋଜନ ମଧ୍ୟ ଚାଲିଲା । ଏହିପରି ସାକ୍ଷୀଗୋପାଳର ଗୋପବନ୍ଧୁ ଦରିଦ୍ର ନାରାୟଣ ସେବା ସଂଘ, ଢେଙ୍କାନାଳର ସେବାକୁଟୀର ଆଦି ରଚନାତ୍ମକ କାମ କରୁଥିବା ଅନୁଷ୍ଠାନମାନଙ୍କ ପକ୍ଷରୁ ଅସ୍ପୃଶ୍ୟତା ନିବାରଣ ଆନ୍ଦୋଳନ ଆରମ୍ଭ ହେଲାବେଳେ ଗାନ୍ଧୀଙ୍କ 'ରୋଟୀବେଟୀ' ବ୍ୟବହାର ଉପରେ ଜୋର୍ ଦେଇ ନ ଥିଲେ ହେଁ ପରବର୍ତ୍ତୀ କାଳରେ ହରିଜନ ସବର୍ଣ୍ଣ ବିବାହ ଚଳାଇବା କଥା କହିବାରୁ ବ୍ରାହ୍ମଣ ହରିଜନ ବିବାହ ମଧ୍ୟ ସଂଘଟିତ ହୋଇଥିଲା । ଏହିପରି ବାଲେଶ୍ୱର ଜିଲ୍ଲାର ତାଳପଦାରେ କାନ୍ତକବି ଶ୍ରୀ ଲକ୍ଷ୍ମୀକାନ୍ତ ମହାପାତ୍ର ତାଙ୍କ ମନ୍ଦିର ହରିଜନମାନଙ୍କ ପାଇଁ ଖୋଲିଦେଲେ । ଶ୍ରୀମତୀ କୋକିଳ ଦେବୀ ସେହି ତାଳପଦା ହରିଜନ ବସ୍ତିରେ, ଶ୍ରୀ ଜୀବରାମ କଲ୍ୟାଣୀ କୋଠାରୀ ପୁରୀ ସହରର ହରିଜନ ବସ୍ତିରେ ଓ ପୁରୁବାଇ ସୋରୋରେ ହରିଜନ ସେବା କାମରେ ଲାଗିଲେ । କଟକ ଜିଲ୍ଲାର ଶ୍ରୀ ଗୌରାଙ୍ଗ ଚରଣ ଦାସ (ବାଗଲପୁର), ପୁରୁଷୋତ୍ତମପୁରର ସର୍ବଶ୍ରୀ ଦେବେନ୍ଦ୍ରଲାଲ ଘୋଷ ଓ ସୁରେନ୍ଦ୍ରଲାଲ ଘୋଷ, ଗଞ୍ଜାମର ଶ୍ରୀ ବାଂଛାନିଧି ପଟ୍ଟନାୟକ ଓ ଶ୍ରୀ ହରିହର ପଟ୍ଟନାୟକ ହରିଜନ ସେବା କାମରେ ଲାଗିଲେ । ଶ୍ରୀ ନୃପେନ୍ଦ୍ର ନାରାୟଣ ସେନଗୁପ୍ତ ଝାରପଡ଼ାରେ ବିନାମୂଲ୍ୟରେ ହରିଜନଙ୍କୁ ଔଷଧ ବିତରଣ କରୁଥିଲେ । ଗଞ୍ଜାମ ଜିଲାରେ ଗୋଟିଏ ମେହେନ୍ତର ବସ୍ତିରେ ହରିଜନମାନେ ଦେବମନ୍ଦିର ନିର୍ମାଣ କରାଇ ଆଚାର୍ଯ୍ୟ ହରିହର ଦାସଙ୍କଦ୍ୱାରା ଉଦ୍‌ଘାଟନ କରାଇଲେ ।

ପାଇଖାନା ସଫାକରିବା, ଚମଡ଼ା ଚାଲିବା, ତନ୍ତ ବୁଣିବା ଆଦି ଯେଉଁ କାମଗୁଡ଼ିକୁ ସମାଜରେ ଘୃଣ୍ୟ ମନେକରାଯାଏ ଓ ସେ କାମ କରୁଥିବା ଲୋକଙ୍କୁ ଅଛୁଆଁ ମନେକରାଯାଏ, ସେ କାମ ଆମେ ନିଜେ କଲୁ ଏବଂ ତଥାକଥିତ ସବର୍ଣ୍ଣ ହିନ୍ଦୁ ମଧ୍ୟ ସେ କାମ କଲେ ।

ଏହି ରୂପେ ଗୋଟିଏ ଦଶକ କଟିଯିବା ପରେ ଭାରତଛାଡ଼ ଆନ୍ଦୋଳନ ଆରମ୍ଭ ହେଲା । ଆମେ ପୁଣି ଜେଲରେ ପଶିଲୁ ।

୧୯୪୭ରେ ସ୍ୱରାଜ୍ୟ ଆସିଲା । ଭାରତର ସମ୍ବିଧାନ ତିଆରି ହେଲା । ପ୍ରତ୍ୟେକ ଭାରତୀୟଙ୍କ ମୌଳିକ ଅଧିକାରମାନ ଦିଆଗଲା । ବର୍ତ୍ତମାନ ଆମ ବିବେକକୁ ପଚାରିବା କଥା ଯେ, ଆମ ଭିତରୁ ଏ ଛୁଆଁ ଅଛୁଆଁ ଭାବନା ମୂଳପୋଛ ହେଲାଣି କି ? ମଣିଷ ମାତ୍ରେ ସମସ୍ତଙ୍କଠାରେ ପରମାତ୍ମା ବିରାଜିଛନ୍ତି । ଏ ବିଶ୍ୱାସ ମନରେ ଦୃଢ଼ କରି ମଣିଷ ମାତ୍ରେ ପ୍ରତ୍ୟେକଙ୍କୁ ଆମେ ତାଙ୍କ ପ୍ରାପ୍ୟ ସମ୍ମାନ ଦେଉଛୁ କି ? ସ୍ୱାଧୀନ ଦେଶର ନାଗରିକ ହେବା ପରେ ମଧ୍ୟ ଯଦି ଏତକ ମଣିଷପଣିଆର ବିକାଶ ଆମ ମଧ୍ୟରେ ନ ହେବ, ତେବେ ତାର ମୂଲ୍ୟ ଆମକୁ ଦେବାକୁ ପଡ଼ିବ ।

ବିଶ୍ୱକବି ରବୀନ୍ଦ୍ର ନାଥ ଠାକୁର କହିଛନ୍ତି—

"ହେ ମୋର ଦୁର୍ଭାଗା ଦେଶ ଯାଦେର କରେଛ ଅପମାନ
ଅପମାନେ ହତେ ହବେ ତାହାଦେର ସବାର ସମାନ ।
ମାନୁଷେର ପରଶେରେ ପ୍ରତିଦିନ ଠେକାଇଆ ଦୂରେ
ଘୃଣା କରିଆଛ ତୁମି ମାନୁଷେର ପ୍ରାଣେର ଠାକୁରେ ।
× × × ×
ବିଧାତାର ରୁଦ୍ରରୋଷେ ଦୁର୍ଭିକ୍ଷେର ଦ୍ୱାରେ ବସେ
ଏକସାଥେ ଖେତେ ହବେ ଅନ୍ନପାନ ।"

ବାପୁ ଆପଣେ ଲେଖିଛନ୍ତି—

"ମହାତ୍ମା ଭାଷଣ ମହାତ୍ମା କଷଣ ଜଗତେ ନ ଯାଏ କେବେ ଅକାରଣ ।" ଆମେ ଆଜିର ପରିସ୍ଥିତିକୁ ଅନୁଧ୍ୟାନ କଲେ କି ଦୃଶ୍ୟ ଦେଖୁଛୁ ? ତେଣୁ ଆମର ପ୍ରାୟଶ୍ଚିତ୍ତ ସରିନାହିଁ ବୋଲି ବିଚାରି ନିଜ ମନରୁ, ପରିବାରରୁ, ସମାଜରୁ ଏ କଳଙ୍କ ଦୂର ନ କଲେ ଗୋଟିଏ ବିଷାକ୍ତ ବ୍ରଣ ସମୁଦାୟ ଶରୀରକୁ ଦୂଷିତ କରିଦେଲା ପରି ଏ କଳଙ୍କ ସମଗ୍ର ସମାଜର ଯେ ସର୍ବନାଶ ଘଟାଇବ ଏଥିରେ ସନ୍ଦେହ ନାହିଁ ।

## ୬୭ । ବରୀରେ କାମ

ଏହି ପଦଯାତ୍ରା ସମୟରେ ଗାନ୍ଧୀଜୀ କର୍ମୀମାନଙ୍କୁ କହିଲେ, ସେମାନେ ସରହ ଗ୍ରାମ ଗାଁକୁ ଯାଆନ୍ତୁ । ଗାଁରେ ଗୋଟିଏ ଗୋଟିଏ କେନ୍ଦ୍ର କରି ଗ୍ରାମବାସୀଙ୍କ ଭିତରେ ଗଠନମୂଳକ କାମ କରନ୍ତୁ । ଆମେମାନେ ଗାଁକୁ ଯିବାପାଇଁ ସ୍ଥିରକଲୁ । ସ୍ଥାନ ବାଛିବା ବେଳେ କେତେକ ଜାଗାରୁ ଆମକୁ ଡାକରା ଆସିଲା । କିନ୍ତୁ ଆମେ କାରଣ ଖୋଜିଲୁ । ବରୀକୁ ଯିବାର କାରଣ ହେଲା, ବରୀ ଅଞ୍ଚଳ ଓଡ଼ିଶାର ସବୁଠାରୁ ବେଶି ବନ୍ୟାପ୍ଲାବିତ ଅଞ୍ଚଳ । ଓଡ଼ିଶାର ତିନୋଟି ପ୍ରଧାନ ନଦୀର ବଢ଼ିଦ୍ୱାରା ବରୀ ଅଞ୍ଚଳ ଆକ୍ରାନ୍ତ ହୁଏ । ତେଣୁ ଏ ତିନୋଟି ନଦୀ ମଧ୍ୟରୁ ଯେ କୌଣସି ନଦୀ ବଢ଼ିଲେ ବରୀରେ ବନ୍ୟା ହେବ ।

ଅନ୍ୟ କାରଣ ହେଲା, ଯେପରି ପୂର୍ବରୁ କୁହାଯାଇଛି, ୧୯୨୦ରେ ବସ୍ତାରେ ବଡ଼ ଧରଣର ବନ୍ୟା ହୋଇଥିଲା । ଗୋପବାବୁ ରିଲିଫ୍ ଅଫିସର୍ ଭାବରେ ସେଠାରେ କାର୍ଯ୍ୟ କରୁଥିଲେ । ସେହି ସ୍ଥାନ ବନ୍ୟା କାମର ରିପୋର୍ଟ ଉପରେ ଗୋପବାବୁ ଚାକିରିରୁ ଇସ୍ତଫା ଦେଇଥିଲେ । ଏହି ଦୁଇ କାରଣରୁ ବସ୍ତା ଯିବା ସ୍ଥିରହେଲା । ସାତଜଣ ନାରୀକର୍ମୀ ଓ ଜଣେ ପୁରୁଷ କର୍ମୀଙ୍କ ସହ ଆମେ ବସ୍ତା ଗଲୁ—ସର୍ବଶ୍ରୀ ସୁରେନ୍ଦ୍ରନାଥ ପଟ୍ଟନାୟକ (ନାଗପୁର), ଗୋଦାବରୀ ଦେବୀ (କଲ୍ୟାଣପୁର), ସୁଶୀଳା ଦେବୀ (ରାମପୁର), ତୁଳସୀ ଦେବୀ (ଭଦ୍ରକ), ମଙ୍ଗଳା ସେନଗୁପ୍ତ, ଅନ୍ନପୂର୍ଣ୍ଣା ଦେବୀ, ମାଣିକ ଦେବୀ ଓ ଶୋଭା ପଣ୍ଡା (ଗଞ୍ଜାମ) । ଜଣେ ସ୍ଥାନୀୟ ଭଦ୍ରବ୍ୟକ୍ତି ବାଗ୍‌ଦା ଗାଁର ଶ୍ରୀ ବାମନଚରଣ ଦାସଙ୍କ ବାହାରଘରେ ରହିଲୁ । ତାଙ୍କଠାରୁ ଖଣ୍ଡେ ଜମି ପାଇ, ସେଥିରେ ମୂଲିଆଙ୍କ ସାଙ୍ଗେ ନିଜେ ନିଜେ କାମ କରି ଖଣ୍ଡେ ଛୋଟ ମାଟିଘର ତିଆରି କରି ରହିଲୁ । ଗାନ୍ଧିଜୀ ଆଶ୍ରମର ନାମ "ସେବାଘର" ଦେଇଥିଲେ ।

ଗାନ୍ଧିଜୀ ଆନ୍ଦୋଳନର ଦୁଇଟି ବିଭାଗ କରିଥିଲେ । ଦଳେ କର୍ମୀ ଆଇନ ଅମାନ୍ୟ କରିବେ, ଜେଲ ଯିବା କାମ କରିବେ । ରଚନାତ୍ମକ କାମ କରିବା କର୍ମୀ ଆଇନ୍ ଅମାନ୍ୟ କରି ଜେଲ୍ ଯିବେ ନାହିଁ । ଗାନ୍ଧିଜୀଙ୍କର ନିର୍ଦ୍ଦେଶ ଥିଲା ଯେ କର୍ମୀ ଗାଁରେ ଗ୍ରାମବାସୀଙ୍କ ଭଳି ସାଧାସିଧା ଭାବରେ ରହିବେ । ଗାଁ ଲୋକଙ୍କ ପରି କାମ କରିବେ । ତାହାହେଲେ ଗାଁ ଲୋକଙ୍କ ସମସ୍ୟା ଅହିଂସ ଉପାୟରେ ସମାଧାନ କରିବାର ବାଟ ଦେଖାଯିବ ।

ଆମେ ଖଦୀକାମ, ହରିଜନ ସେବା, ବିଜ୍ଞାନ ପ୍ରଚାର, ନାରୀ ଜାଗରଣ, ମୌଳିକ ଶିକ୍ଷା, ନିଶା ନିବାରଣ, ପ୍ରୌଢ଼ଶିକ୍ଷା, ଗୋ ସେବା, ମହୁମାଛି ପାଳନ, ଖଜୁରୀ ଗୁଡ଼ ତିଆରି, ଚମଡ଼ା କଷ କରିବା, ରୋଗୀଙ୍କୁ ଔଷଧ ଦେବା ଆଦି ରଚନାତ୍ମକ କାମ କଲୁ । ସ୍ୱାବଲମ୍ବୀ ଖଦୀ କାମ ଆରମ୍ଭ ହେଲା । ସାମାନ୍ୟ କପାଚାଷ କରାଗଲା । ଲୋକଙ୍କୁ ଶିକ୍ଷା ଦେବାପାଇଁ କୋବି, ଟମାଟୋ ପ୍ରଭୃତି ପନିପରିବା ଚାଷ ଓ ଅନ୍ୟାନ୍ୟ ଚାଷର ଉନ୍ନତ ଉପାୟ ସେମାନଙ୍କୁ ଦେଖାଇ ଦିଆଗଲା । ଜମିଦାରଙ୍କ ଅତ୍ୟାଚାର ବିରୁଦ୍ଧରେ ଆମକୁ ପ୍ରଜା ଆନ୍ଦୋଳନ କରିବାକୁ ପଡ଼ିନାହିଁ । ଜମିଦାରଙ୍କ ଶୋଷଣ ଓ ଅତ୍ୟାଚାର ଆପେ ଆପେ ବନ୍ଦ ହୋଇଗଲା । ହରିଜନ ଛୁଆଁ ଛୁଇଁ କେତେକ ପରିମାଣରେ କମିଗଲା । ଗୋଟିଏ ମନ୍ଦିରରେ ହରିଜନ ପ୍ରବେଶ ହେଲା । ହରିଜନ ଯୁବକମାନେ ଭଲ ଚାଷ ପାଇଁ ସ୍ୱର୍ଣ୍ଣସାର (ମନୁଷ୍ୟ ମଳରୁ ତିଆରି ଖତ) ବ୍ୟବହାର କରିଜାଣିଲେ ଓ ପାଠ ପଢ଼ିଲେ । ଜଣେ ବ୍ରାହ୍ମଣ ଯୁବକ ଗୋଟିଏ ହରିଜନ ଝିଅକୁ ଓ ଆଉ ଜଣେ ବ୍ରାହ୍ମଣ ଯୁବକ ଗୋଟିଏ ଅବ୍ରାହ୍ମଣ କନ୍ୟାକୁ ବିଭାହେଲେ । ଏ ବିବାହ କେବଳ ଜାତିପ୍ରଥା ପ୍ରତି କୁଠାରାଘାତ କରିବା ଉଦ୍ଦେଶ୍ୟରେ ବୋଲି ସେ ବ୍ରାହ୍ମଣ ଯୁବକ ଓ କନ୍ୟାପିତା କହିଲେ । ସବର୍ଣ୍ଣ ସ୍ତ୍ରୀଲୋକମାନଙ୍କ ମଧ୍ୟରେ ହରିଜନ ଛୁଆଁ ବାରଣ ଅନେକ କମିଲା । ୧୯୪୦ର ବାଣୀ ସତ୍ୟାଗ୍ରହରେ ଅନେକ ଯୁବକ ସତ୍ୟାଗ୍ରହ କଲେ, ତାଙ୍କ ମଧ୍ୟରେ ଜଣଜଣ ଯୁବକଙ୍କ ସଂଖ୍ୟା ବେଶି ଥିଲା । ଏମାନଙ୍କ ମଧ୍ୟରେ ଅନ୍ତୁ

ଜେନା, ରତ୍ନାକର ଜେନା, ଅର୍ଜୁନ ଜେନା, ଭୀମ ଜେନା ପ୍ରମୁଖ ଥିଲେ । ସାଧାରଣ ଘରର ନାରୀମାନେ ସୂତାକଟାରେ ଦକ୍ଷତା ଲଭ କରି ଓ ବରୁରୁ ବୁଝି ଅନ୍ୟ ସ୍ଥାନକୁ ସୂତାକଟା ଶିଖାଇବା କାମ, ନିଶା ନିବାରଣ କାମ କରିବାକୁ ଗଲେ । ଏମାନଙ୍କ ଭିତରେ ହୀରାମଣି ଦେବୀ, ଶରତକୁମାରୀ ଦେବୀ, ହରପ୍ରିୟା ଦେବୀ ମୁଖ୍ୟ ଥିଲେ । ଯେତେବେଳେ ତାଲଚେର ରାଜାଙ୍କ ଅତ୍ୟାଚାରରେ ପ୍ରଜାମାନେ ଆନ୍ଦୋଳନ କରି ତାଲଚେର ଛାଡ଼ି ଅନୁଗୁଳରେ ଆଶ୍ରୟ ନେଲେ ସେତେବେଳେ ବରୀ ଅଞ୍ଚଳର କେତେକ ମହିଳାକର୍ମୀ ସେ ଲୋକଙ୍କ ଭିତରେ ରହି କାମ କରିଥିଲେ । ସୁଶୀଳା ଦେବୀ ଏମାନଙ୍କ ଭିତରେ ଅଗ୍ରଣୀ ଥିଲେ । ସେ ତାଙ୍କ ଗ୍ରାମରେ ହି ସୂତାକଟା କାମ ଶିଖାଇଲେ । ବେକାର ସମସ୍ୟା ଦୂର କରିବା ପାଇଁ ଜାତି ବର୍ଣ୍ଣର ବାରି ସବର୍ଣ୍ଣଙ୍କ ଦ୍ୱାରା ତୁଳା'ଭଣା ଚନ୍ତ୍ର (ମଲ୍ଲ ଗୋରୁ ଅନ୍ତରେ) ଉଆରି ଚଲାଇଲେ । ଅନ୍ୟ ବର୍ଣ୍ଣର ଲୋକଙ୍କ ଦ୍ୱାରା ବଢ଼େଇ କାମ କରାଇଲେ । ଏହାର ଉଦ୍ଦେଶ୍ୟ ଥିଲା ଯେ ଲୋକେ ଜାତି ଅନୁସାରେ କାମ କରିବେ ନାହିଁ ଯେ ଯେଉଁ କାମକୁ ପାରିବେ ସେ ତାକୁ କରିବେ । ସୁଶୀଳା ଦେବୀ ମାସକୁ ତିରିଶ ଗୁଣ୍ଡି ତାଙ୍କ ହାତକଟା ସୂତା ସେବାଘର ଅନୁଷ୍ଠାନକୁ ଦେଉଥିଲେ । ତା ଛଡ଼ା ତାଙ୍କ ପିନ୍ଧିବା ଲୁଗା ସମସ୍ତ ସେ ନିଜ ସୂତାରେ କରୁଥିଲେ । ବୁଣା ମଜୁରୀ ଓ ତୁଳା ଦାମ୍ ମଧ୍ୟ ସୂତାରୁ ଦେଉଥିଲେ । ତାଙ୍କପରି ବିନା ପଇସାରେ ଭିନ୍ନ ସ୍ଥାନରେ ଗାଁରେ ରହି ଅନେକ ମହିଳା କର୍ମୀ କାମ କରୁଥିଲେ । ସେହିମାନଙ୍କ ମଧ୍ୟରୁ ବର୍ତ୍ତମାନ କେତେକ କସ୍ତୁରବା କର୍ମୀ ଅଛନ୍ତି ଏବଂ ଗାଁରେ ମଧ୍ୟ ତାଙ୍କ କର୍ମସ୍ଥଳରେ ରହିଛନ୍ତି ।

ସେବାଘର କାମ ସମୟରେ ଗୋଦାବରୀ, ଅନ୍ନପୂର୍ଣ୍ଣା, ମଙ୍ଗଳା, ଶୋଭା ପ୍ରଭୃତି ଗୋଟିଏ ଗୋଟିଏ ଗାଁରେ ରହୁଥିଲେ । ଗ୍ରାମବାସୀ ତାଙ୍କ ଖାଇବା ଖର୍ଚ୍ଚ ଚଳାଉଥିଲେ । କର୍ମୀ ସୂତା କାଟି ନିଜର ଲୁଗା ଖର୍ଚ୍ଚ ଚଳାଉଥିଲେ— ଲୁଗାରେ ପଇସା ଖରଚ ହେଉ ନ ଥିଲା । ତାଙ୍କ କଟାସୂତାରେ ସେମାନେ ତୁଳାଦାମ ଓ ତନ୍ତୀ ମଜୁରୀ ଦେଉଥିଲେ । ଏହିପରି ଥିଲା ଆମର ସ୍ୱାବଲମ୍ବୀ ଖଦୀକାମ । କର୍ମୀମାନେ ଯେ ଜଣ ଜଣ କରି ଗ୍ରାମବାସୀଙ୍କ ଭିତରେ ରହୁଥିଲେ, ତାର ଫଳ ବହୁତ ଭଲ ହେଉଥିଲା । ଚହୁଗିରି ଜମିଦାର ପ୍ରଜାଙ୍କର ବହୁ ପୁରାତନ କଳି ସଂଘର୍ଷ ଆମ କର୍ମୀ ରହିବା ଦ୍ୱାରା ସମାଧାନ ହୋଇଥିଲା । କର୍ମୀମାନେ ଗ୍ରାମରେ ନୂଆ ବାତାବରଣ ଆଣିପାରିଥିଲେ । କର୍ମୀ ଓ ଗ୍ରାମଲୋକେ ଖୁବ୍ ସଦ୍‌ଭାବରେ ଚଳୁଥିଲେ । ଅନ୍ୟ ଯୋଜନା କାର୍ଯ୍ୟକାରୀ କରିବା ପାଇଁ ଆମେ କର୍ମୀଙ୍କୁ ଗାଁରୁ ନେଇ ଆସିଲୁ । କର୍ମୀ ଗାଁ ଛାଡ଼ି ଆସିବାକୁ ଚାହୁଁ ନ ଥିଲେ କିମ୍ବା ଗ୍ରାମବାସୀ ତାଙ୍କୁ ଛାଡ଼ିବା ପାଇଁ ଚାହୁଁ ନ ଥିଲେ । କର୍ମୀ ଓ ଗ୍ରାମବାସୀଙ୍କ ମଧ୍ୟରେ ମଧୁର ସମ୍ପର୍କ ସ୍ଥାପିତ ହୋଇଥିଲା । ଏଭଳି ଭାବରେ ବରୀ ଆଖପାଖରେ ଚହୁଗିରି, ରତଲାଙ୍ଗ, ଏରଡ଼ା, ଗୁହାଳୀ, କାଇପଡ଼ା, ଧାରପୁର ଓ ରାମପୁର ଗାଁମାନଙ୍କରେ ନାରୀ କର୍ମୀମାନେ ରହିଥିଲେ । ପୁରୀ ଜିଲ୍ଲାର ବୀର

ନରସିଂହପୁର ଓ ସୁବର୍ଣ୍ଣପୁର, ବାଲେଶ୍ୱରର କୁମ୍ଭାଣଆ ଓ ସମ୍ବଲପୁରର ସମଲେଇପଦର ଗାଁମାନଙ୍କରେ ମଧ୍ୟ ଏଭଳି କେନ୍ଦ୍ର ସ୍ଥାପନ କରାହୋଇଥିଲା ।

ସେବାଘରର ଅନ୍ୟାନ୍ୟ କାମ ମଧ୍ୟରେ ମଧୁମକ୍ଷୀ ପାଳନ ଓ ଗୋଜାତିର ଉନ୍ନତି ମୁଖ୍ୟ କାମ ଥିଲା । ସେତେବେଳେ ଓଡ଼ିଶାରେ ମଧୁପକ୍ଷୀ ପାଳନ କାମ ଆରମ୍ଭ ହୋଇନଥିଲା । ସେବାଘରେ ସେ କାମ ପ୍ରଥମେ ଆରମ୍ଭ ହେଲା । ତାପରେ ଗ୍ରାମଲୋକଙ୍କୁ ଶିଖାଇ ଦେବାରୁ ସେମାନେ ଆଗ୍ରହରେ ମହୁମାଛି ରଖି ମହୁ ବାହାର କରିବା କାମ କରିଲେ । ମହୁମାଛି ପାଳିବା କାମ ଆରମ୍ଭ ହେବାର ପାଞ୍ଚବର୍ଷ ଭିତରେ ଜଣେ ଜଣେ ଗୃହସ୍ଥ ଦୁଇଶହ ତିନିଶହ ପାଉଣ୍ଡ ମହୁ ପାଇଲେ ।

ଗୋଜାତି ଉନ୍ନତି କାମ ମଧ୍ୟ ସଫଳ ହୋଇଥିଲା । ଗାଁମାନଙ୍କରେ କେତୋଟି ହରିଆନା ଷଣ୍ଢ ରଖାଗଲା । କ୍ରମେ ବାଛୁରି ଭଲ ହେଲେ । ଗାଈଙ୍କ ଦୁଧ ପରିମାଣ ବଢ଼ିଲା । ଗୋରୁ ରଖିବା ଗୋଟିଏ ଲାଭଦାୟକ ବ୍ୟବସାୟ ହେଲା । ବିଧବା ଅସହାୟ ଲୋକେ ଗୋରୁ ପାଳି ସେଥିରେ ଚଳିଲେ । ସେମାନଙ୍କ ପାଇଁ ଗୋରୁପାଳିବା ଗୋଟିଏ ନିର୍ଭରଯୋଗ୍ୟ ବ୍ୟବସାୟ ହେଲା ।

୧୯୦୮ରେ ପୁରୀ ଜିଲ୍ଲାର ବେରବୋଇ ଗ୍ରାମରେ ଗାନ୍ଧୀ ସେବାସଂଘ ସମ୍ମିଳନୀ ହେଲା । ଗାନ୍ଧୀଜୀ, କସ୍ତୁରବା ଓ ତାଙ୍କ ଦଳର ସମସ୍ତେ, ମୌଲନା ଆଜାଦ, ରାଜେନ୍ଦ୍ର ପ୍ରସାଦ, ସର୍ଦ୍ଦାର ପଟେଲ ପ୍ରମୁଖ ନେତାମାନେ ସମସ୍ତେ ବେରବୋଇ ସମ୍ମିଳନୀରେ ଯୋଗ ଦେଇଥିଲେ । କେବଳ ପଣ୍ଡିତ ନେହେରୁ ଆସି ନ ଥିଲେ । ସମ୍ମିଳନୀ ସାତଦିନ ଚାଲିଲା । ବେରବୋଇର ପୂର୍ବ ସମ୍ମିଳନୀ ହୁଦୁଲିଠାରେ ଯେତେବେଳେ ଆମେ ଓଡ଼ିଶାରେ ସମ୍ମିଳନୀ କରିବା ପାଇଁ ନିମନ୍ତ୍ରଣ ଦେଲୁ ସେତେବେଳେ ଗାନ୍ଧୀଜୀ କହିଲେ, ସମ୍ମିଳନୀରେ ଖରଚ ହେବାପାଇଁ ଯେତେ ଖାଦ୍ୟ ପଦାର୍ଥ ଦରକାର ହେବ, ସେସବୁ ସମ୍ମିଳନୀ ସ୍ଥାନର ଦଶ ମାଇଲ ମଧ୍ୟରେ ସଂଗୃହୀତ ହେବ ।

ବେରବୋଇଠାରେ ହୋଇଥିବା ଗାନ୍ଧୀ ସେବା ସଙ୍ଘ ସମ୍ମିଳନୀରେ ତତ୍ପୂର୍ବରୁ ଘଟିଥିବା ହିନ୍ଦୁ ମୁସଲମାନ ଅଶାନ୍ତି ଘଟଣାକୁ ଲକ୍ଷ୍ୟକରି ଶାନ୍ତି ସେନାର ଆବଶ୍ୟକତା ବିଷୟରେ ଏବଂ ଶାନ୍ତି ସେନାର ଗୁଣ ଓ କାର୍ଯ୍ୟ ବିଷୟରେ ମଧ୍ୟ ଗାନ୍ଧୀଜୀ ବିଶଦ ଭାବରେ ବୁଝାଇ କହିଲେ । ବେରବୋଇରୁ ହିଁ ଶାନ୍ତିସେନା କାମର ଆରମ୍ଭ ହେଲା ।

୧୯୪୨ ଅଗଷ୍ଟ ନଅ ତାରିଖରେ ମୁଁ ଓ ଗୋପବାବୁ କଟକରେ ଗିରଫ ହେଲୁ ।

ବାରି ସେବାଘରେ ରହିବାର କିଛିଦିନ ପରେ ଚାରିପାଞ୍ଚୋଟି ପାଞ୍ଚୋଟି ଲେଖାଏଁ ବାଳିକା ଆମ ସାଙ୍ଗରେ ରହୁଥିଲେ ଏବଂ ସ୍ତ୍ରୀଲୋକମାନେ ଜଣେ ଦୁଇଜଣ ଲେଖାଁ ରହି ବାରିରେ ତାଲିମ ପାଉଥିଲେ ଏବଂ ଭିନ୍ନ ଭିନ୍ନ ଅଞ୍ଚଳରେ ଗାଁରେ କାମ କରୁଥିଲେ । ଏହିସବୁ ଝି ମାନଙ୍କ ଭିତରେ ଥିଲେ ଶୀତଳା, ଗାୟତ୍ରୀ, ବିଷାଦିନୀ, ଶକୁନ୍ତଳା, ଉମା, ମିନତି, ପାର୍ବ



୧୯୩୪ରେ ହରିଜନ ପଦଯାତ୍ରାରେ—ବାଁପାଖରୁ ସାମନା ଧାଡ଼ି—ରାଜକୃଷ୍ଣ ବୋଷ, ରମାଦେବୀ, ଗାନ୍ଧିଜୀ, ପୁରୁ ବାଈ, ଅଧ୍ୟାପକ ମାଲକାନୀ ( ହରିଜନ ସେବକସଂଘର ସେତେବେଳର ସହକାରୀ ସଂପାଦକ )



ବିନୋବାଜୀଙ୍କ ପଦଯାତ୍ରାବେଳେ (୧୯୫୫) ବାଟରେ ଭାଗବତ ପାଠ ।



୧୯୭୧ରେ ବାତ୍ୟାବିପର୍ଯ୍ୟୟ ପରେ ରବିଶଙ୍କର ମହାରାଜାଙ୍କ ସହ ।
ବାଁରୁ : ରମାଦେବୀ, ମହାରାଜ, ଗୋକୁଳାନନ୍ଦ ମହାନ୍ତି । ତଳେ ବସିଛନ୍ତି
କାଶୀବେନ୍ ( ଗୁଜରାଟ )

ସୀତା, ହେମ ଓ ସର । ମହିଳାମାନଙ୍କ ଭିତରେ ଥିଲେ ପ୍ରଭାବତୀ ଦେବୀ, ବେଲା ଦେବୀ, କ୍ଷେତ୍ରମଣି ଦେବୀ, ସୁଧା ଦେବୀ, ଦୁର୍ଗା ଦେବୀ, ପୁଷ୍ପ ଦେବୀ, ଇଚ୍ଛା ଦେବୀ ବିମଳା ଦେବୀ, ଗଙ୍ଗା ଦେବୀ, ଅମୃତ ଦେବୀ, ଶଶି ଦେବୀ, କନକ ଦେବୀ ଓ ଅଧରମଣି ଦେବୀ । ୧୯୪୨ ଆନ୍ଦୋଳନ ଆରମ୍ଭ ହେବା ପରେ ସେବାଘର ଏକ ବେଆଇନ ସଂସ୍ଥା ଘୋଷିତ ହେଲା । ସେତେବେଳେ ସେଠାରେ ରହୁଥିବା ଝିଅ ଓ କର୍ମୀମାନେ ତାହା ଛାଡ଼ି ଯିବାକୁ ଅସ୍ୱୀକାର କରିବାରୁ ଗିରଫ ହେଲେ । ସେମାନଙ୍କ ମଧ୍ୟରେ ମୁଖ୍ୟ ଥିଲେ ବରିଷ୍ଠ କର୍ମୀ ଶ୍ରୀ ଗୁଣନିଧି ମହାନ୍ତି ଓ ଶ୍ରୀ ମଙ୍ଗଳା ସେନଗୁପ୍ତ । ସେବାଘର ନ ଛାଡ଼ିବା ଅପରାଧରେ ଯେଉଁମାନେ ଗିରଫ ହେଲେ ସେମାନଙ୍କ ମଧ୍ୟରେ ଗାଁର ମହିଳା ମଧ୍ୟ ଥିଲେ । ଗାଁର ସ୍ତ୍ରୀଲୋକ ଓ ପୁରୁଷମାନେ ମଧ୍ୟ ଏହି 'ଭାରତ ଛାଡ଼' ଆନ୍ଦୋଳନରେ ଗିରଫ ହେଲେ । ଏମାନଙ୍କ ଭିତରେ ଥିଲେ ଗୋଦାବରୀ, ମାଳ, କରଣ, ଯଦୁ ଜେନା, ରତ୍ନାକର ଜେନା, ଅକ୍ରୂର ଜେନା, କାଶୀ ଜେନା, ଭଗୀରଥ ଦାସ, ପ୍ରିୟମ୍ବଦା ଦେବୀ, ଆକୁଳାନନ୍ଦ ମେକାପ, ହୀରାମଣି ଦେବୀ, ଉଷା ଦେବୀ, ହରପ୍ରିୟା ଦେବୀ, ସୁଶୀଳା ଦେବୀ, ଗୋବର୍ଦ୍ଧନ ପ୍ରଧାନ, ବୀରବର ରଥ, ଗୋବିନ୍ଦ ସାମଲ, ହରିଚରଣ ଜେନା, ଗଙ୍ଗାଧର ଦାସ, ମଧୁସୂଦନ ଦାସ ପ୍ରଭୃତି । ଏମାନଙ୍କ ଭିତରେ ପୁରୁଷମାନଙ୍କ ସଂଖ୍ୟା ବେଶି ଥିଲା ।

ସେବାଘରଠାରୁ ପାଞ୍ଚମାଇଲ ଦୂରରେ କାଇପଡ଼ାଠାରେ ପୁଲିସ ସହିତ ଜନତାର ସଂଘର୍ଷ ହୋଇ ଚାରିଜଣ ବ୍ୟକ୍ତି ଗୁଳିମାଡ଼ରେ ମୃତ ହେଲେ । ଅନ୍ନପୂର୍ଣ୍ଣା ମହାରଣା, ମୌଳିକ ସ୍କୁଲର ଶିକ୍ଷକ ଋଷି ବେହେରା ଓ ଗ୍ରାମ ସୁପ୍ରଭାତ ଗୁଳିକାଣ୍ଡ ସମୟରେ ସେଠାରେ ଉପସ୍ଥିତ ଥିଲେ । ଶରତ୍ ଚନ୍ଦ୍ର ମହାରଣା ପ୍ରଭୃତି ମଧ୍ୟ ଗିରଫ ହେଲେ ।

## ୨୭ । ମୌଳିକ ଶିକ୍ଷାର ପ୍ରୟୋଗ

୧୯୩୭ରେ ଅନ୍ୟ ପ୍ରଦେଶ ପରି ଓଡ଼ିଶାରେ ମଧ୍ୟ କଂଗ୍ରେସ ସରକାର ଗଢ଼ାହେଲା । ୧୯୩୮ରେ ଜାକିର ହୁସେନ କମିଟି ରିପୋର୍ଟ ପ୍ରକାଶ ପାଇବା ପରେ ଭାରତର ବିଭିନ୍ନ ପ୍ରଦେଶରେ ଯେଉଁଠି କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠିତ ହୋଇଥିଲା ସେଠାରେ ମୌଳିକ ଶିକ୍ଷା ବା 'ନଇତାଲିମ'ର ପରୀକ୍ଷା ଆରମ୍ଭ ହେଲା । ଓଡ଼ିଶାରେ ମଧ୍ୟ ସେତେବେଳର ମୁଖ୍ୟମନ୍ତ୍ରୀ ଶ୍ରୀ ବିଶ୍ୱନାଥ ଦାସଙ୍କ ଆଗ୍ରହରେ ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କ ଅଧ୍ୟକ୍ଷତାରେ ସରକାରଙ୍କ ପକ୍ଷରୁ ବୋର୍ଡ଼ ଅଫ୍ ବେସିକ୍ ଏଜୁକେଶନ୍ ଗଠିତ ହେଲା । ୧୯୩ ରେ ଓଡ଼ିଶା ସରକାରଙ୍କ ତରଫରୁ ସର୍ବଶ୍ରୀ ମହେଶ ଚନ୍ଦ୍ର ପ୍ରଧାନ, ଶରତଚନ୍ଦ୍ର ମହାରଣା ଓ ରଘୁନାଥ ମହାନ୍ତି ଏହି ଶିକ୍ଷା ବିଷୟରେ ଅବହିତ ହେବା ନିମନ୍ତେ ୱାର୍ଦ୍ଧା ଗଲେ । ଏହା ଉତ୍ତାରୁ ଓଡ଼ିଶାରେ ଶିକ୍ଷକ ତାଲିମ କେନ୍ଦ୍ର ଓ ସରକାରୀ ମୌଳିକ ଶିକ୍ଷା ଯୋଜନା କାର୍ଯ୍ୟକାରୀ କରିବା ଉଦ୍ଦେଶ୍ୟରେ ସରକାରଙ୍କ ତରଫରୁ ସର୍ବଶ୍ରୀ ଲିଙ୍ଗରାଜ ମୋହନ ପଟ୍ଟନାୟକ, କିଶୋରଚନ୍ଦ୍ର

ପଣ୍ଡା, ଶ୍ରୀନବୀନ ମିଶ୍ର, ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକ, ଶରତ ଚନ୍ଦ୍ର ମହାରଣା, ଉତ୍କଳର ରାମକୃଷ୍ଣ ପଟ୍ଟନାୟକ, କାହ୍ନୁ ଚରଣ ମହାନ୍ତି ଓ ଗାନ୍ଧୀ ସେବାସଂଘ ତରଫରୁ ଅନ୍ନପୂର୍ଣ୍ଣା ଚୌଧୁରୀଙ୍କୁ ତାଲିମ ପାଇଁ ଉଆର୍ଦ୍ଧା ପଠାଗଲା ।

୧-୬-୧୯୩୯ରେ କଟକ ଜିଲ୍ଲାର ଗଠନମୂଳକ କାର୍ଯ୍ୟର କର୍ମକେନ୍ଦ୍ର ଏବଂ ବନ୍ୟା-ଦୁର୍ଗତ ଅଞ୍ଚଳ ରାମଚନ୍ଦ୍ରପୁରରେ ମୌଳିକ ଶିକ୍ଷାର ପ୍ରଥମ ପରୀକ୍ଷା ଆରମ୍ଭ ହେଲା । ସେଠାରେ ଏକ ଶିକ୍ଷକ ତାଲିମ କେନ୍ଦ୍ର ଓ ଅଭ୍ୟାସ ବିଦ୍ୟାଳୟ ଖୋଲିଲା । ମୋଟ ଚଉଦ ଜଣ ଗୁରୁ ଗୃହ ତାଲିମ ପାଇଲେ । ଶ୍ରୀ ଇ ଡବ୍ଲ୍ୟୁ ଆର୍ଯ୍ୟନାୟକମ୍ ଓ ଶ୍ରୀମତୀ ଆଶା ଦେବୀଙ୍କ ମାର୍ଗଦର୍ଶନରେ ଏଠା ପରୀକ୍ଷା ଚାଲିଲା । ଶିକ୍ଷକଙ୍କ ତାଲିମ ସରିବା ପରେ ପରେ ରାମଚନ୍ଦ୍ରପୁର ଓ ଆଖପାଖ ଗାଁରେ ଏକ ସଘନ କ୍ଷେତ୍ରରେ ମୌଳିକ ବିଦ୍ୟାଳୟ ସ୍ଥାପିତ ହେଲା । ଏହି ବିଦ୍ୟାଳୟ ଗୁଡ଼ିକର କାର୍ଯ୍ୟପ୍ରଣାଳୀ ଦେଖି ପ୍ରଦେଶର ସରକାରୀ କର୍ତ୍ତୃପକ୍ଷ ଓ ତାଲିମ ସଂଘର ସମ୍ପାଦକ ଶ୍ରୀ ଆର୍ଯ୍ୟନାୟକମ୍ ଓ ଶ୍ରୀମତୀ ଆଶାଦେବୀ ସନ୍ତୋଷ ଲାଭ କରିଥିଲେ ।

ତା ୨-୯-୧୯୩୯ରେ ବିଶ୍ୱଯୁଦ୍ଧ ଆରମ୍ଭ ହେବା ପରେ କଂଗ୍ରେସୀ ମନ୍ତ୍ରୀମଣ୍ଡଳ ଇସ୍ତଫା ଦେଲେ । ଫଳରେ ୧-୩-୧୯୪୦ରେ ଏହି ସରକାରୀ ପରୀକ୍ଷା ବନ୍ଦ କରି ଦିଆଗଲା । ପ୍ରାଦେଶିକ ସରକାରଙ୍କ ର ଏପ୍ରକାର ନିଷ୍ପତ୍ତିକୁ ସେଣ୍ଟ୍ରାଲ ଆଡ଼ଭାଇଜରୀ ବୋର୍ଡ଼ (ଏଜୁକେଶନ), ହିନ୍ଦୁସ୍ଥାନୀ ତାଲିମ ସଂଘ ଓ ପ୍ରଦେଶର ଜନସାଧାରଣ ନିନ୍ଦା କରିଥିଲେ । ସରକାରଙ୍କର ଏହି ନିଷ୍ପତ୍ତିକୁ ପ୍ରତିବାଦ ସ୍ୱରୂପ ମୌଳିକ ଶିକ୍ଷାର ସଂଗଠକ ଶ୍ରୀ ଶରତ୍ ଚନ୍ଦ୍ର ମହାରଣା ଓ ମୌଳିକ ବିଦ୍ୟାଳୟଗୁଡ଼ିକର ଶିକ୍ଷକ ସର୍ବଶ୍ରୀ ବ୍ରହ୍ମାନନ୍ଦ ସାହୁ, ମଧୁସୂଦନ ମିଶ୍ର, ରାମଚନ୍ଦ୍ର ମିଶ୍ର, ସଦାଶିବ ମିଶ୍ର, କାହ୍ନୁଚରଣ ଜେନା, କୃଷ୍ଣଚନ୍ଦ୍ର ସାହୁ, ଗୋପୀନାଥ ଦାସ, ଶ୍ୟାମସୁନ୍ଦର ପାଣିଗ୍ରାହୀ, ଋଷି ବେହେରା, ଗୋଲକ ଚନ୍ଦ୍ର ନାୟକ, ମଧୁସୂଦନ ଜେନା ଓ ନାରାୟଣ ମିଶ୍ର ସରକାରୀ ଚାକିରିରୁ ଇସ୍ତଫା ଦେଲେ । ଫଳରେ ଆଚାର୍ଯ୍ୟ ହରିହର ଦାସଙ୍କ ଅଧ୍ୟକ୍ଷତାରେ ଉତ୍କଳ ମୌଳିକ ଶିକ୍ଷା ପରିଷଦ ଗଠିତ ହେଲା । ଏହି ପରିଷଦର ସମ୍ପାଦକ ହେଲେ ଶରତଚନ୍ଦ୍ର ମହାରଣା । ଏହି ପରିଷଦଦ୍ୱାରା ବେସରକାରୀ ଭାବରେ ହାଟସାହି, ହଳଦୀବସନ୍ତ, ବାଲିବିଲ, ଅନ୍ୟାସୀପୁର, ରାମଚନ୍ଦ୍ରପୁର, ରତଳାଂ, ଅରଙ୍ଗାବାଦରେ ସାତୋଟି ମୌଳିକ ବିଦ୍ୟାଳୟ ଖୋଲିଲା । ଗାଁ ଲୋକେ ଜମି, ଅର୍ଥ ଓ ନୈତିକ ସମର୍ଥନ ଦେଲେ । ମହାତ୍ମାଗାନ୍ଧୀଙ୍କୁ ଏହା ଜଣାଇ ଦେବାରୁ ସେ ଆଶୀର୍ବାଦ-ପତ୍ରରେ ଲେଖିଥିଲେ—

ଚିରଂଜୀବୀ ରମା !

ତୁମ ଚିଠି ପଢ଼ି ମୁଁ ଅତ୍ୟନ୍ତ ଆନନ୍ଦିତ ହେଲି । ଯେଉଁ ଶିକ୍ଷକମାନେ ସଂକଳ୍ପ କରିଛନ୍ତି ସେମାନଙ୍କୁ ଧନ୍ୟବାଦ । ମୋର ଆଶା ଅନ୍ୟ ଶିକ୍ଷକମାନେ ମଧ୍ୟ ଏହିପରି ତ୍ୟାଗ କରିବେ ଏବଂ ନିଜ ନିଜ ବିଦ୍ୟାଳୟ ଛାଡ଼ିବେ ନାହିଁ । ଗ୍ରାମବାସୀଙ୍କୁ ମଧ୍ୟ ଧନ୍ୟବାଦ । ଯଦି ଏ କାମ ସଫଳ ହେବ ତେବେ ଏକ ମହାନ୍ ସେବା ହେବ । ବାପୁର ଆଶୀର୍ବାଦ ।

(ସେବାଗ୍ରାମ, ୧୪-୨-୪୧)

ଏହି ସାତୋଟି ମୌଳିକ ବିଦ୍ୟାଳୟ ସହିତ ଶିକ୍ଷକ ତାଲିମ କେନ୍ଦ୍ର ମଧ୍ୟ ଚାଲିଲା। ଗାନ୍ଧୀଜୀ, ତାଲିମ ସଂଘ ଓ ଜନସାଧାରଣ ଏହି କାମ ପାଇଁ ଆର୍ଥିକ ସାହାଯ୍ୟ ଦେଲେ। ମାତ୍ର ତାହା ମଧ୍ୟ ଯଥେଷ୍ଟ ନ ଥିଲା। ତଥାପି ଶିକ୍ଷକମାନେ ନିଜ ପରଖରେ ଦୃଢ଼ ରହିଲେ ଓ ବହୁ ଦୁଃଖ କଷ୍ଟ ସହି ସ୍କୁଲ ଚଳାଇଲେ। ୧୯୪୨ ଅଗଷ୍ଟର 'ଭାରତ ଛାଡ଼' ଆନ୍ଦୋଳନରେ ଯୋଗଦେଇ ଶିକ୍ଷକମାନେ କାରାବରଣ କଲେ। ୧୯୪୩ରେ କେତେ ଜଣ ଶିକ୍ଷକ କାରାମୁକ୍ତ ହେବା ପରେ ପୂଜ୍ୟ ଠକ୍କରଙ୍କର ବାପାଙ୍କ ସାହାଯ୍ୟରେ ପୁଣି ଏହି ପରଖ ଚଳାଇଲେ। ମୌଳିକ ବିଦ୍ୟାଳୟ ବେସରକାରୀ ଭାବରେ ଚଳିବା ଦିନୁଁ ସବୁ ଶିକ୍ଷକ ଏକ ପ୍ରକାର ପାରିଶ୍ରମିକ ନେଉଥିଲେ।

୧୯୪୬ରେ ପୁନର୍ବାର କଂଗ୍ରେସୀ ମନ୍ତ୍ରୀମଣ୍ଡଳ ସ୍ଥାପିତ ହେଲା। ଶିକ୍ଷାମନ୍ତ୍ରୀ ପଣ୍ଡିତ ଲିଙ୍ଗରାଜ ମିଶ୍ରଙ୍କ ଆଗ୍ରହ ଓ ଶ୍ରୀ ବିଶ୍ୱନାଥ ଦାସଙ୍କ ଅଭିଜ୍ଞ ଫଳରେ ରାଜ୍ୟ ସରକାର ପୁଣି ବୋର୍ଡ଼ ଅଫ୍ ବେସିକ୍ ଏଜୁକେସନ ଗଠନ କଲେ। ପୁଣି ସମଗ୍ର ପ୍ରଦେଶରେ ଶହେରୁ ଅଧିକ ମୌଳିକ ବିଦ୍ୟାଳୟ ସ୍ଥାପିତ ହେଲା। ମାତ୍ର ରାମଚନ୍ଦ୍ରପୁରରେ ୧୯୩୯ରେ ଯେଉଁ ବିଦ୍ୟାଳୟ ସ୍ଥାପିତ ହୋଇଥିଲା ତାହା ଉତ୍କଳ ମୌଳିକ ଶିକ୍ଷା ପରିଷଦ ଦ୍ୱାରା ପରିଚାଳିତ ହେଲା। ଏହି ବିଦ୍ୟାଳୟରୁ ଚଉଦ ଜଣ ଛାତ୍ର ଉଚ୍ଚତର ମୌଳିକ ଶିକ୍ଷା ଲାଭ କରିବା ନିମନ୍ତେ ସେବାଗ୍ରାମ ଗଲେ।

୧୯୪୫ରେ ଶ୍ରୀମତୀ ମାଳତୀ ଚୌଧୁରୀ ଓ ଶ୍ରୀ ସାରଙ୍ଗଧର ଦାସଙ୍କ ଉଦ୍ୟମରେ ଅନୁଗୁଳରେ ମୌଳିକ ଶିକ୍ଷାର ପରଖ ଆରମ୍ଭ ହେଲା। ପୁଣି କୁଶିଆପାଲ, ଭୁଣ୍ଡଗଡ଼ିଆ, ଆଦମପୁରରେ ମଧ୍ୟ ଏ କାମ ଆରମ୍ଭହେଲା।

୧୯୫୧ ଡିସେମ୍ବର ମାସରେ ଓଡ଼ିଶାରେ ଭୂଦାନ ଯଜ୍ଞ ଆନ୍ଦୋଳନ ଆରମ୍ଭ ହେଲା, ଫଳରେ ସାତଜଣ ପ୍ରବୀଣ ଶିକ୍ଷକ ରାମଚନ୍ଦ୍ରପୁର ବିଦ୍ୟାଳୟ ଛାଡ଼ି ଭୂଦାନ ଆନ୍ଦୋଳନକୁ ସଂଗଠନ କରିବା କାମରେ ଲାଗିଲେ। ଫଳରେ ରାମଚନ୍ଦ୍ରପୁର ମୌଳିକ ବିଦ୍ୟାଳୟର ପରଖ କାର୍ଯ୍ୟ ଶିଥିଳ ହୋଇଗଲା।

୧୯୪୯ରେ ଶ୍ରୀ ନବକୃଷ୍ଣ ଚୌଧୁରୀ ରାଜସ୍ୱମନ୍ତ୍ରୀ ପଦରୁ ଇସ୍ତଫା ଦେବା ପରେ କିଛିଦିନ ପାଇଁ ମୌଳିକ ଶିକ୍ଷା ସଂଗଠନର ଦାୟିତ୍ୱ ତୁଲାଇଥିଲେ। ସେତେବେଳେ ସମଗ୍ର ପ୍ରଦେଶରେ ମୌଳିକ ଶିକ୍ଷାପ୍ରତି ଏକ ନୂଆ ଆଗ୍ରହ ଦେଖାଦେଇଥିଲା। ସେ ମୁଖ୍ୟମନ୍ତ୍ରୀ ହେବାବେଳକୁ ଗ୍ରାମଦାନ ଭୂଦାନ କାମରେ ଗଠନମୂଳକ କର୍ମୀମାନଙ୍କର ସମୁଦାୟ ଶକ୍ତି ନିୟୋଜିତ ହୋଇସାରିଥିଲା। ତଥାପି ରାମଚନ୍ଦ୍ରପୁରରେ ଉତ୍ତର ମୌଳିକ, ମୌଳିକ ଓ ପୂର୍ବମୌଳିକ ବିଦ୍ୟାଳୟ ଚାଲିଥିଲା। ଓଡ଼ିଶାରେ ଓଡ଼ିଆଭାଷା ମାଧ୍ୟମରେ କୌଣସି ବାଲ୍ୱାଡ଼ୀ ବା ନର୍ସରୀ ସ୍କୁଲ ଚାଲୁନଥିବା ଦୃଷ୍ଟିରୁ ୧୯୪୬ରେ ପ୍ରଥମ କରି ଓଡ଼ିଆ ଭାଷା ମାଧ୍ୟମରେ ବାଲ୍ୱାଡ଼ୀ ଆରମ୍ଭ କରାଯାଇଥିଲା। ଶ୍ରୀମତୀ ତ୍ରୁପ୍ତା ପରିଡ଼ା ଏହି ବାଲ୍ୱାଡ଼ୀର ପ୍ରଥମ ଶିକ୍ଷୟିତ୍ରୀ ଥିଲେ।

ବର୍ତ୍ତମାନ ମଧ୍ୟ ରାମଚନ୍ଦ୍ରପୁରରେ ମୌଳିକ ବିଦ୍ୟାଳୟ ଚାଲିଛି । ମାତ୍ର ପରୀକ୍ଷା ଦୃଷ୍ଟିରୁ ସେଥିରେ ଯେପରି ନୂଆ ନୂଆ ପାଠ୍ୟକ୍ରମ ଯୋଗକରାଯାଉଥିଲା, ତାହାର ଅବକାଶ ଆଉ ନାହିଁ । ଉଦାହରଣ ସ୍ୱରୂପ—ଗୋଶାଳା ଓ ଉତ୍ତମ ଷଣ୍ଢଦ୍ୱାରା ଗାଈ ଗୋରୁଗାଈଙ୍କ ଉନ୍ନତି ପାଇଁ ଯେଉଁ କାର୍ଯ୍ୟ ମୌଳିକ ବିଦ୍ୟାଳୟ ମାଧ୍ୟମରେ ଶିକ୍ଷା ଦୃଷ୍ଟିରୁ କରାଯାଉଥିଲା, ତାହା ହେଉନାହିଁ । ସେ ଅଞ୍ଚଳରେ ନଥିବା ଫଳଗଛ ଓ ଫସଲ ବାହାର ଅନ୍ୟଆଡୁ ଆଣି ସେଠାରେ ଲଗାଇବା, ମହୁଚାଷ, ଗାଁର ରୋଗୀଙ୍କ ସେବା ଶୁଶ୍ରୂଷା, ଶିଳ୍ପକାର୍ଯ୍ୟ, ଦାଣ୍ଡିଆ ନାଚ ଆଦି ରୁଚିସମ୍ପନ୍ନ ମନୋରଞ୍ଜନ, ରାତିରେ ନକ୍ଷତ୍ର ପରିଚୟ ଆଦିକୁ ଶିକ୍ଷା କ୍ଷେତ୍ରରେ ପ୍ରୟୋଗ କରିବାର ଉଦ୍ୟମ ଆଉ ନାହିଁ ।

## ୨୮ । ଖଦୀ କାମର ନୂଆ ରୂପ

୧୯୪୪ ମସିହା । ଗାନ୍ଧୀଜୀ ଜେଲରୁ ବାହାରି ଅସୁସ୍ଥତା ଯୋଗୁ କିଛିଦିନ ପଞ୍ଚଗନିରେ ରହି ଅଗଷ୍ଟ ମାସରେ ସେବାଗ୍ରାମକୁ ଆସିଲେ । ସେତେବେଳେ ଆମ ପରିବାରର ସମସ୍ତେ ଜେଲରେ ଥାନ୍ତି । କେବଳ ମୋତେ ସେହି ଜୁଲାଇ ମାସରେ ଖଲାସ କରିଦିଆଯାଇଥାଏ ।

ଉଆର୍ଦ୍ଧାରୁ ଗୋଟିଏ ପରିପତ୍ର ମୋ ନିକଟକୁ ଆସିଲା । ସେତେବେଳେ ମୁଁ ଚରଖା ସଂଘର ଟ୍ରଷ୍ଟୀ ଥାଏ । ପରିପତ୍ରର ବିଷୟ ହେଉଛି—ସେବାଗ୍ରାମରେ ଗୋଟିଏ କର୍ମୀ ସମ୍ମିଳନୀ ହେବ । ସେଥିରେ ଚରଖାସଂଘ ବିଷୟରେ ଗାନ୍ଧୀଜୀ ତାଙ୍କ ବିଚାର ପ୍ରକାଶ କରିବେ । ଚରଖା ସଂଘ ବିଷୟରେ ଗାନ୍ଧୀଜୀ ଯାହା ଭାବୁଥାନ୍ତି ତାର ଆଭାସ ଏହି ପରିପତ୍ରରେ ଥାଏ । ତାହାର ସାରମର୍ମ ହେଉଛି—ଗାନ୍ଧୀଜୀ ଜେଲରେ ଅନୁଭବ କଲେ ଯେ ଚରଖାସଂଘ ଯେପରି ଚାଲିଛି ତାର କାମର ଧାରା ବଦଳାଇବା ଦରକାର । କାରଣ ପ୍ରଚଳିତ ମଜୁରୀ ଦିଆ ସୂତାକଟାରେ କଟାଳିମାନେ ଚରଖାକୁ ସେମାନଙ୍କ ପେଟ ପୋଷିବାର ଉପକରଣ ବୋଲି ମନେ କରୁଛନ୍ତି । ତେଣୁ କଟାଳି ଖଦଡ଼ଲୁଗା ପିନ୍ଧୁ ନାହାନ୍ତି । ଚରଖାକୁ ଯେ ଗାନ୍ଧୀଜୀ ଅହିଂସାର ପ୍ରତୀକ ରୂପେ ସ୍ୱାଧୀନତା ଆନ୍ଦୋଳନରେ ରଖିଛନ୍ତି, ତାହା କଟାଳିମାନଙ୍କୁ ଜଣାନାହିଁ ।

ଭାରତ ଯେ ଅଳ୍ପଦିନ ଭିତରେ ସ୍ୱାଧୀନ ହେବ, ଜେଲରେ ଥାଉଁ ଥାଉଁ ଗାନ୍ଧୀଜୀ ଏକଥା ଅନୁମାନ କରିଥିଲେ । ସ୍ୱାଧୀନ ଭାରତ ବିଷୟରେ ତାଙ୍କର କଳ୍ପନାରେ ଥିଲା — ଭାରତ ଅନ୍ନବସ୍ତ୍ରରେ ସ୍ୱାବଲମ୍ବୀ ହେବ ଏବଂ ଶୋଷଣରହିତ ସମାଜ ହେବ । କେହି ବେକାର ଓ ଭୋକିଲା ରହିବେ ନାହିଁ । ଶ୍ରମିକ ଓ ମାଲିକ ଭିତରେ ସଦ୍‌ଭାବ ରହିବ, ଶ୍ରମମର୍ଯ୍ୟାଦାର ଭାବନା ଜାଗ୍ରତ ହେବ । ଲୋକଙ୍କ ଭିତରେ ଆତ୍ମବିଶ୍ୱାସ ଆସିବ । ପରସ୍ପର ସହିତ ସଦ୍‌ଭାବ ରକ୍ଷାକରି ଚଳିବାର କଳାକୁ ଲୋକେ ଆୟତ୍ତ କରିବେ ଏବଂ ହିଂସାତ୍ମକ ଆକ୍ରମଣକୁ

ଅହିଂସାତ୍ମକ ଉପାୟରେ ପ୍ରତିରୋଧ କରିବାର ଶକ୍ତି ଲୋକେ ଅର୍ଜନ କରିପାରିବେ । ଗାଁ ଗାଁରେ ଏପରି ସଂଗଠନ କରିବାକୁ ହେଲେ ଅହିଂସାର ପ୍ରତୀକ ଚରଖାକୁ ଏହାର ମାଧ୍ୟମ କରିବାକୁ ହେବ । ଚରଖା ମାଧ୍ୟମରେ ଏହି କାମ କରିବାକୁ ହେଲେ ଚରଖାସଂଘ ଯେ ଗରିବ ଲୋକଙ୍କର ଅନ୍ନଦାତାର କାମ କରୁଛି ତାକୁ ଗୁଡ଼ି ଚରଖାକୁ ଗ୍ରାମସଂଗଠନର ଆୟୁଧ କରିବାକୁ ହେବ ।

ଆମେ ଉଆର୍ଦ୍ଧା ଯିବାକୁ ସ୍ଥିରକଲୁ । ସମ୍ମିଳନୀରେ ଯୋଗଦେବା ଅପେକ୍ଷା ଗାନ୍ଧୀଜୀଙ୍କୁ ଦେଖିବାର ବାସନା ଅଧିକ ବଳବତୀ ଥିଲା । ନିର୍ଦ୍ଦିଷ୍ଟ ଦିନରେ ଆଚାର୍ଯ୍ୟ ମହାଶୟ, ଗୁଣନିଧି ବାବୁ, ବ୍ୟାସଜୀ, ପୂରୁବାଈ ଓ ମୁଁ ଉଆର୍ଦ୍ଧା ଯିବାପାଇଁ ରେଲ୍‌ରେ ବସିଲୁ । ଉଆର୍ଦ୍ଧା ଯିବାପାଇଁ ଖଡ଼ଗପୁରରେ ଗାଡ଼ି ବଦଳ କରିବାକୁ ହୁଏ । ତେଣୁ ଆମେ ଖଡ଼ଗପୁରଠାରୁ ବମ୍ବେ ମେଲ୍‌ରେ ବସିଲୁ । ଅନ୍ୟକୁ ସାହାଯ୍ୟ କରିବା ବୃତ୍ତି ଆଚାର୍ଯ୍ୟ ମହାଶୟଙ୍କର ରେଲ୍ ଭିତରେ ମଧ୍ୟ ଚାଲିଥାଏ । ଦୁଇଜଣ ବିଦେଶୀ ମହିଳା ଗୋଟିଏ ନଡ଼ିଆକୁ ବସିବା ବେଞ୍ଚ୍ ପଟାରେ ବାଡ଼େଇ ବାଡ଼େଇ ଭାଙ୍ଗିଲେ । ଖଡ଼େଇରୁ ନଡ଼ିଆ ଅଲଗା କରିବା କାମ ତାଙ୍କୁ ଜଣା ନାହିଁ ବୋଲି ଜଣାପଡ଼ିବାରୁ ଆଚାର୍ଯ୍ୟ ମହାଶୟ ଆପଣା ବ୍ୟାଗରୁ ଛୁରିଟିଏ କାଢ଼ି ତାଙ୍କୁ ନଡ଼ିଆ କାଟି ଦେଲେ । ସେମାନେ ନଡ଼ିଆ ଖାଇ ଖୁସିହେଲେ ଏବଂ ଆଚାର୍ଯ୍ୟ ମହାଶୟଙ୍କୁ ଧନ୍ୟବାଦ ଜଣାଇଲେ । ସେମାନେ ଯେତେବେଳେ ଖୁସିହୋଇ ନଡ଼ିଆ ଖାଉଥାନ୍ତି ଆଚାର୍ଯ୍ୟ ମହାଶୟ ମୁଗ୍ଧ ହୋଇ ତାହା ଦେଖୁଥାନ୍ତି । ଆଚାର୍ଯ୍ୟ ମହାଶୟଙ୍କର ଏହା ଏକ ବିଶେଷ ଗୁଣ ଯେ ସେ ମଣିଷ ଭିତରେ ଆନନ୍ଦ ସୃଷ୍ଟିକରିପାରନ୍ତି । ବ୍ୟାସଜୀ ଆଉ ଗୋଟିଏ କଳାରେ ଅଭ୍ୟସ୍ତ । ତାହା ହେଉଛି କେହି ଅକ୍ଷମ ସ୍ତ୍ରୀଲୋକ ରେଲକୁ ଉଠିପାରୁ ନାହିଁ, ତାକୁ ବ୍ୟାସଜୀ ରେଲରେ ଚଢ଼େଇଦିଅନ୍ତି । ଭିଡ଼ ଅତ୍ୟଧିକ ହୋଇଥିଲେ ପାଖରେ ଥିବା ଲୋକଙ୍କୁ କଲିକିଆ ବା ଫଳ ଦେଇ ପ୍ରସନ୍ନ କରାଇ ନିଜ ପ୍ରାର୍ଥୀ ପାଇଁ ଜାଗା କରାଇଦିଅନ୍ତି । ସନ୍ଧ୍ୟା ପାଞ୍ଚଟାବେଳେ ଆମେ ଉଆର୍ଦ୍ଧା ଷ୍ଟେସନରେ ପହଞ୍ଚିଲୁ । ଷ୍ଟେସନରେ ଦେଖିଲୁ ଅନ୍ୟ ପ୍ରଦେଶର କର୍ମୀମାନେ ଆସିଛନ୍ତି । କୁଲି ଓ ଟାଙ୍ଗା ବ୍ୟବସ୍ଥା କରି ଦେବା ପାଇଁ ସ୍ୱେଚ୍ଛାସେବକମାନେ ମଧ୍ୟ କାମ କରୁଛନ୍ତି । ସେବାଗ୍ରାମ ଉଆର୍ଦ୍ଧାଠାରୁ ଛଅମାଇଲ୍ ଦୂରରେ । ଟାଙ୍ଗାରେ ଯାଇ ସେବାଗ୍ରାମରେ ପହଞ୍ଚିବା ବେଳକୁ ଅଳ୍ପ ରାତି ହୋଇଥାଏ । ପହଞ୍ଚି ଦେଖିଲୁ ଅନେକ କର୍ମୀ ଆସିଛନ୍ତି । ବ୍ୟବସ୍ଥାପକମାନେ ଆଗନ୍ତୁକମାନଙ୍କର ରହିବା ଆଦିର ବ୍ୟବସ୍ଥା କରିବାରେ ବ୍ୟସ୍ତ । ଆମକୁ ଦେଖି ବ୍ୟବସ୍ଥାକାରୀଙ୍କ ମଧ୍ୟରୁ ଜଣେ କହିଲେ—ଆପଣଙ୍କ ପାଇଁ ତ ବାପୁ (ଗାନ୍ଧୀଜୀ) ଆଜି ସକାଳୁ ନିଜେ ଘର ଠିକ୍‌କରିଦେଇଛନ୍ତି । ଏହା କହି ସେ ଭଦ୍ରଲୋକ ଆମକୁ ଆମ ରହିବା ଘର ଦେଖାଇଦେଲେ ।

ଆମେ ସେ ଘରେ ବିଛଣାପତ୍ର ରଖି ଗାନ୍ଧୀଜୀଙ୍କୁ ପ୍ରଣାମ କରିବାପାଇଁ 'ବାପୁକୁଟୀ'କୁ ଗଲୁ । ସେଠାରେ ମଧ୍ୟ ଆଗନ୍ତୁକ କର୍ମୀମାନେ ଗାନ୍ଧୀଜୀଙ୍କୁ ପ୍ରଣାମ କରିବା ପାଇଁ ଅପେକ୍ଷା

କରୁଥାନ୍ତି । ଦୀର୍ଘ ଦୁଇବର୍ଷ ପରେ ଗାନ୍ଧୀ ପରିବାର ଗାନ୍ଧୀଙ୍କ ପାଖେ ଏକାଠି ହୋଇଥାନ୍ତି । ତେଣୁ ସବୁ ଗୁଞ୍ଜନ ଆରମ୍ଭ ହୋଇଗଲା । କଥାବାର୍ତ୍ତାର ମୁଖ୍ୟ ବିଷୟ ୧୯୪୨ର ଆନ୍ଦୋଳନ କେଉଁଠି କିପରି ହୋଇଥିଲା । କିଏ କେତେ ଦିନ ଜେଲ୍ ଭୋଗିଛନ୍ତି । ଜେଲରେ ବ୍ୟବହାର କିପରି ଥିଲା । ଧୀର ସ୍ୱରରେ ନାନା ସ୍ଥାନରେ ଆଲୋଚନା ଚାଲିଛି, ଏପରି ସମୟରେ ଜଣେ ଆସି କହିଲେ— ବାପୁଜୀ ଆସୁଛନ୍ତି । ମୁହୂର୍ତ୍ତକ ଭିତରେ ସେ ସ୍ଥାନ ନିସ୍ତବ୍ଧ ହୋଇଗଲା । ଗାନ୍ଧୀଜୀ ଆସିବା ମାତ୍ରେ ମୁଁ ପ୍ରଣାମ କରିଲି । ପ୍ରଣାମ କରିବା ମାତ୍ରେ ସେ କହିଲେ—ଆସିବା କଥାତ ମୋତେ ଆଗରୁ ଜଣାଇଲ ନାହିଁ— ଏବେ ରହିବ କେଉଁଠି ? ଏ ପରିହାସର ଉତ୍ତର କଣ ଦେବି ଠିକ୍ କରିନପାରି ଚୁପ୍ ରହିଲି ।

ସକାଳ ନଅଟା ବେଳେ ସମ୍ମିଳନୀ ଆରମ୍ଭ ହେବ । ସମସ୍ତେ ନିଜ ନିଜ କାମସାରି ଯଥା ସମୟରେ ସମ୍ମିଳନୀରେ ପହଞ୍ଚିବା ପାଇଁ ଚେଷ୍ଟା କରୁଥାନ୍ତି । ଯେଉଁମାନେ ଆସି ସମ୍ମିଳନୀରେ ବସିଲେ ସେତେବେଳେ ସେମାନେ କର୍ମୀଭାବରେ ପରିଗଣିତ ହେଉଥିଲେ । ଦେଶ ସ୍ୱାଧୀନ ହେବା ପରେ ସେହିମାନଙ୍କ ମଧ୍ୟରୁ କେହି କେହି ରାଜଦୂତ, ରାଜ୍ୟପାଳ, ମୁଖ୍ୟମନ୍ତ୍ରୀ ଓ ଅନ୍ୟ ମନ୍ତ୍ରୀ ପଦରେ ଦାୟିତ୍ୱରେ ରହିଲେ । ସର୍ବଶ୍ରୀ ଆର୍ଯ୍ୟନାୟକମ୍, ଆଶା ଦେବୀ, ଶ୍ରୀ କୃଷ୍ଣଦାସ ଜାଜୁ ପ୍ରଭୃତି ବିଶିଷ୍ଟ ବ୍ୟକ୍ତିମାନେ ସମ୍ମିଳନୀ ମଣ୍ଡପର ବିଶିଷ୍ଟ ସ୍ଥାନରେ ବସିଲେ । ଠିକ୍ ସମୟରେ ଶ୍ରୀ ପ୍ୟାରେଲାଲଜୀ ଓ ଡାକ୍ତର ସୁଶୀଳା ନାୟାରଙ୍କ ସାଙ୍ଗରେ ଗାନ୍ଧୀଜୀ ଆସି ସମ୍ମିଳନୀରେ ବସିଲେ । ସମ୍ମିଳନୀର କାର୍ଯ୍ୟ ଯଥାରୀତି ଆରମ୍ଭ ହେଲା । ଶ୍ରୀ କୃଷ୍ଣଦାସ ଜାଜୁ ପ୍ରାରମ୍ଭିକ ଭାଷଣ ପଢ଼ିଲେ ।

ଗାନ୍ଧୀଜୀ ସମ୍ମିଳନୀରେ ତାଙ୍କ ଭାଷଣରେ କହିଲେ, "ସ୍ୱାଧୀନତା ଆସୁଛି ଏବଂ ଅଳ୍ପକାଳ ପରେ ଆସିଯିବ । ମାତ୍ର ତାହା ମୋ ପରିକଳ୍ପିତ ସ୍ୱାଧୀନତା ନୁହେଁ । ତାହାଦ୍ୱାରା ସବୁଠାରୁ ତଳେ ପଡ଼ିରହିଥିବା ଲୋକର ଉତ୍ଥାନ ହେବ ନାହିଁ । ତେଣୁ ଆମମାନଙ୍କୁ ଚରଖା ମାଧ୍ୟମରେ ଏ କାମ କରିବାକୁ ହେବ । ଆମକୁ ମାନିନେବାକୁ ହେବ ଯେ ଏ କାମ କରିବାକୁ ଆମ ମଧ୍ୟରେ ଶ୍ରଦ୍ଧାଧାରୀ କମ୍ ଅଛନ୍ତି । ଆମ ହାତରେ ପାଣ୍ଠି ନାହିଁ କି ପାରିଲାପଣିଆ ନାହିଁ । ଏସବୁ ଅସୁବିଧା ମୁଁ ବୁଝିପାରୁଛି । ତାହାରି ମଧ୍ୟରେ ହସି ହସି ମୁଁ ପଞ୍ଚସ୍ତରି ବର୍ଷ କଟେଇ ଦେଲିଣି । ନିର୍ଭୟ ହୋଇ ଆପଣା ରାସ୍ତା ମୁଁ ଆପେ ବାହାର କରୁଛି । ନିର୍ଭୟତା ଆପମୋନଙ୍କ ମଧ୍ୟରେ ଆସୁ, ମୁଁ ଏହି ଆଶା କରୁଛି । ଯଦି ଏହିପରି ନିର୍ଭୟତା ଆମ ଭିତରେ ରହିବ, ତେବେ ଆମେ ଜ୍ଞାନପୂର୍ବକ ଆପଣା ବାଟ ବାହାର କରି ପାରିବୁ । ଏହାହିଁ ଅହିଂସା । ମୋ ଭିତରେ ଏହି ବିଶ୍ୱାସ ପୂରି ରହିଛି । ସେଥିପାଇଁ ମୁଁ କାହାରିକୁ ଭୟ କରେନାହିଁ । ମୋ ଗାଡ଼ି ଗାତରେ ପଡ଼ି ମଧ୍ୟ ଚାଲିଛି ।

"କୋଟି କୋଟି ଟଙ୍କା ପାଣ୍ଠି କରିବା ମୁଁ ଚାହୁଁ ନାହିଁ । ଯଦି ଆମେ କର୍ତ୍ତବ୍ୟ ପାଳନରେ ନିଜକୁ ଆହୁତି ଦେଇପାରିବୁ, ତେବେ ତା ତୁଳନାରେ ପଇସା କିଛି ନୁହେଁ ।

"ଏଥିପାଇଁ ନିଜ ଉପରେ ନିଜର ଭରସା ଥିବା ଦରକାର । ନିଜର ଲକ୍ଷ୍ୟ ପୂରଣପାଇଁ ଆମକୁ ଗୋଟିଏ ଧୂଳିକଣା ପରି ନମ୍ର ହେବାକୁ ହେବ । ଦୁଧରେ ମିଶ୍ରି ମିଶିଗଲା ପରି ଆମକୁ ଲୋକଙ୍କ ସହିତ ମିଶିଯିବାକୁ ହେବ । ତାହା ସଙ୍ଗେ ସଙ୍ଗେ ନିଜର ବୌଦ୍ଧିକ ବିସ୍ତୃତି ପାଇଁ ମଧ୍ୟ ସମୟ ଦେବାକୁ ହେବ । ଭବିଷ୍ୟତରେ ଯେଉଁ ଅହିଂସାତ୍ମକ ସମାଜ ରଚନା କରିବାକୁ ଆମେ ଚାହୁଁଛୁ, ଏହି ଉପାୟରେ ସେହି ଜାଗରଣ ସୃଷ୍ଟି କରିବାକୁ ହେବ ।

"ହିଂସାବାଦୀଙ୍କ ଘରକୁ ଗଲେ ଦେଖିବ, କେଉଁଠି ବାଘଚମଡ଼ା ଟଙ୍ଗା ହୋଇଛି ତ କେଉଁଠି ହରିଣଚମଡ଼ା । କାନ୍ଥରେ ଖଣ୍ଡା ବନ୍ଧୁକ ଝୁଲୁଥିବ । ମତେ ମୁସୋଲିନୀଙ୍କ ପାଖକୁ ନେଇଯାଇଥିଲେ । ସେଠାରେ ଦେଖିଲି ଘରପାଖରେ ଅସ୍ତ୍ରଶସ୍ତ୍ର ରହିଛି । ସେହିପରି ଆମପାଇଁ ଅହିଂସାର ପ୍ରତ୍ୟକ୍ଷ ଦର୍ଶନ କରାଇବାର ପ୍ରତୀକ ହେଉଛି ଅରଟ । ମୁସୋଲିନୀଙ୍କ ଦରବାରରେ ତରବାରି କହୁଥିଲା—ତମେ ଯଦି ମତେ ଛୁଇଁବ ମୁଁ ତୁମକୁ ହାଣିବି । ମୋତେ ଛୁଅଁ, ମୋ ପ୍ରତାପ ଦେଖ । ସେହି ତରବାରିକୁ ହିଂସାର ପ୍ରତ୍ୟକ୍ଷ ଦର୍ଶନ ମିଳୁଥିଲା । ସେହିପରି ଆମକୁ ଚରଖାର ପ୍ରତାପ ସିଦ୍ଧ କରିବାକୁ ହେବ—ଯେପରି ଚରଖାର ଦର୍ଶନ ମାତ୍ରେ ଅହିଂସାର ଦର୍ଶନ ମିଳିବ ।

"ମୁସଲମାନମାନଙ୍କ ଅମଳରେ ଚରଖା ଚାଲୁଥିଲା । ସେ ସମୟରେ ଢ଼ାକାରେ ମଲ୍‌ମଲ୍ ତିଆରି ହେଉଥିଲା । ମାତ୍ର ଚରଖା ଥିଲା କାଙ୍ଗାଳପଣିଆର ନିଦର୍ଶନ । ରାଜାଙ୍କ ଲୋକେ ସ୍ତ୍ରୀଲୋକଙ୍କୁ ଓ ତଳ ଶ୍ରେଣୀର ଲୋକଙ୍କୁ ବେଠି ଖଟାଉଥିଲେ । ଇଷ୍ଟ ଇଣ୍ଡିଆ କମ୍ପାନୀ ମଧ୍ୟ ସେଇଆ କଲେ । କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରେ ମଧ୍ୟ ସେହି କଥା କୁହାଯାଇଛି । ସେହି ଯୁଗରୁ ଚରଖା ଜୋରଜବରଦସ୍ତିର ପ୍ରତୀକ ହୋଇ ରହିଥିଲା । ସୂତାକଟାଳିକୁ ପୋଷେ ଶସ୍ୟ କିମ୍ବା ଦୁଇ ପାହୁଲା ମିଳୁଥିଲା । ଅଥଚ ସେହିମାନଙ୍କଦ୍ୱାରା ଉତ୍ପାଦିତ ମଲ୍‌ମଲ୍ ପିନ୍ଧିକରି ବାଦଶାହାଙ୍କ ବେଗମ୍‌ମାନେ ବିବସ୍ତ୍ର ଦେଖାଯାଉଥିଲେ । କିନ୍ତୁ ଆପଣମାନଙ୍କୁ ମୁଁ ଯେଉଁ ଚରଖା ଦେଇଛୁ ତାହା ହେଉଛି ଅହିଂସାର ପ୍ରତୀକ । ଏହି ଚରଖା ଚଳାଉଥିବା କଟାଳିମାନଙ୍କୁ ଏପରି ନିଜ ନିଜ ଜ୍ଞାନ ବଢ଼ାଇବାକୁ ହେବ ଯେ ତଦ୍ୱାରା ସେମାନେ ସମଗ୍ର ଭାରତବର୍ଷର ରାଜ-କାର୍ଯ୍ୟକୁ ବାଟ କଢ଼େଇବେ ।

"ଆମେ ଆଜି ଭାବୁଛୁ ରାଜାଜୀ ମାନ୍ଦ୍ରାଜରେ ମୁଖ୍ୟମନ୍ତ୍ରୀ ହେବା ପରେ ଆମ ଖଦୀ କାମ ବଢ଼ିବ । ଆଶାପୂର୍ଣ୍ଣ ନେତ୍ରରେ ବଡ଼ଲାଟଙ୍କ ପ୍ରାସାଦ ଆଡକୁ ଚାହିଁ ରହିବା କଣ ଠିକ୍ ? ଯଦି ଆମେ ଆମ କାମ ଠିକ୍ ଭାବରେ କରିବା, ତେବେ ଓ୍ୱେଲଟି ବଡ଼ଲାଟ ଆମ ପାଖକୁ ଆସିବେ । ସେ ଆମ କାମ ଦେଖିବେ ଏବଂ ଅନୁଭବ କରିବେ ଯେ ଏହି ଲୋକଙ୍କ ଉପରେ ରାଜତ୍ୱ କରିବା କିମ୍ବା ଏମାନଙ୍କୁ ଗୋଲାମ କରି ରଖିବା ଅସମ୍ଭବ । ଯଦି ସାତଲକ୍ଷ ଗାଁରେ ଏହି କାମ କରିବାପାଇଁ ଆମେ ଲାଗିପଡ଼ିବା, ତେବେ ଆମର ଗୋଲାମୀ ଶେଷହୋଇଯିବ । ସେତେବେଳେ ଆମର ପ୍ରତ୍ୟେକ ଗାଁ ସ୍ୱାଧୀନ ଓ ସ୍ୱାବଲମ୍ବୀ ହେବ । ଏହାହିଁ ହେବ ପ୍ରକୃତ ସ୍ୱରାଜ୍ୟ, ପ୍ରକୃତ ଗଣତନ୍ତ୍ର ।

"ସେଥିପାଇଁ ଏଣିକ ଯେ ସୂତା କାଟିବ ବୁଝି ବସ୍ତ୍ର କାଟ । ଯେ କାଟିବ ସେ ପିନ୍ଧିବ, ଯେ ଖଦୀ ପିନ୍ଧିବ ସେ କାଟିବ । ବୁଝି ବସ୍ତ୍ର କାଟିବାର ଅର୍ଥ ହେଉଛି ସୂତାକଟା ଯେ ଅହଂକାର ପ୍ରତୀକ ତାହା ଉପଲବ୍ଧି କରିବା । ଚିକିଏ ଚିନ୍ତାକଲେ ଏହା ପ୍ରତ୍ୟକ୍ଷ କରିପାରିବ ।"

ଗାନ୍ଧୀଜୀଙ୍କର ଏହି ବସ୍ତ୍ର ଉପରେ ସାତଦିନ କାଳ ଆଲୋଚନା ଚାଲିଲା । ସ୍ୱାବଲମ୍ବୀ ଖଦୀର ପ୍ରସାର ପାଇଁ ସମଗ୍ର ଗ୍ରାମସେବା ଯୋଜନା ଗଢ଼ାଗଲା ଏବଂ ଗାନ୍ଧିଜୀଙ୍କର ଏହି କଳ୍ପନାକୁ ରୂପାୟିତ କରିବା ପାଇଁ ବହୁ ଯୁବକ ସମଗ୍ର ଗ୍ରାମସେବା କାମରେ ଲାଗିପଡ଼ିଲେ । ଗାନ୍ଧୀଜୀଙ୍କ ଅନୁମାନ ସତ୍ୟ ହେଲା । ତିନି ବର୍ଷ ପରେ ଦେଶ ସ୍ୱାଧୀନ ହେଲା ।

କଥାଟା ସିଧାସଳଖ । ଗାଁରେ କପା, ସୋରିଷ, ରାଶି, ଧାନ ଆଦି କଞ୍ଚାମାଲ ଲୋକେ ଉତ୍ପାଦନ କରୁଛନ୍ତି । ସେହିମାନେ ତାକୁ ଲୁଗା, ତେଲ, ଚାଉଳ ଆଦି ପକ୍‌କାମାଲରେ ପରିଣତ କରିବେ । ଗାଁଲୋକେ କାମ ପାଇବେ । ଅପମିଶ୍ରଣ ହେବ ନାହିଁ । ଦରଦାମ ମଧ୍ୟ ମନୋମୁଖୀ ବଢ଼ିବ ନାହିଁ । ସହରବାସୀଙ୍କର ଯାହା ଅନ୍ନବସ୍ତ୍ର ଦରକାର, ସେମାନେ ଗ୍ରାମବାସୀଙ୍କୁ ଉଚିତ ମୂଲ୍ୟ ଦେଇ ତାହା ନେବେ । ସହରର କଳକାରଖାନାରେ ତିଆରି ହେଉଥିବା ଆବଶ୍ୟକ ବସ୍ତୁ ଏବଂ ଗାଁରେ ଉତ୍ପାଦନ ହେଉଥିବା ବସ୍ତୁର ମୂଲ୍ୟର ଅନୁପାତ ନ୍ୟାୟୋଚିତ ହେବ । ଗାନ୍ଧୀଜୀଙ୍କର ସେହି ବିକେନ୍ଦ୍ରିତ ଅର୍ଥନୀତିକୁ ପୃଥିବୀର ଚିନ୍ତାଶୀଳ ବ୍ୟକ୍ତିମାନେ ସ୍ୱୀକୃତ ଦେଲେଣି । ଆମେ ଗାନ୍ଧୀ ଦେଶର ଲୋକେ କେଉଁଠି ଅଛୁ ?

## ୬୯ । କସ୍ତୁରବା ନିଧିର କାମ

୧୯୪୨ ଅଗଷ୍ଟ ଆନ୍ଦୋଳନରେ ଆମେମାନେ ଜେଲ ଗଲୁ । ୧୯୪୪ ରେ ଖବର କାଗଜରୁ ଜାଣିଲି ଯେ ମାତା କସ୍ତୁରବା ପୀଡ଼ିତ ଅଛନ୍ତି । ଜେଲରେ ଆମକୁ ଖବରକାଗଜ ଦିଆଯାଏ, ମାତ୍ର କେତେକ ବିଷୟ ଉପରେ ଜେଲ ଅଫିସର କାଳି ବୋଳି ଦେଇଥାନ୍ତି । ମାତ୍ର କସ୍ତୁରବାଙ୍କ ଖବର ଉପରେ କାଳି ବୋଳା ଯାଇ ନ ଥାଏ । କ୍ରମେ କ୍ରମେ କସ୍ତୁରବାଙ୍କର ଅସୁସ୍ଥତା ବଢ଼ିଲା । ଦେବଦାସ ଗାନ୍ଧୀ ତାଙ୍କ ପାଖକୁ ଆସିଲେ । ତନେ କାଗଜରେ ଦେଖିଲୁ ଯେ କସ୍ତୁରବା ଆଉ ଏ ସଂସାରରେ ନାହାନ୍ତି ।

ତାଂକଛି ଦିନ ପରେ କାଗଜରେ ବାହାରିଲା ଯେ, କସ୍ତୁରବାଙ୍କ ସ୍ମୃତିରକ୍ଷା ପାଇଁ ଚାନ୍ଦା ସଂଗ୍ରହ କରାଯିବ, ସେହି ଟଙ୍କାରେ ସ୍ମୃତିରକ୍ଷା କାମ ହେବ । ୧୯୪୪ ଜୁଲାଇ ମାସରେ ମତେ ବିନା ସର୍ତ୍ତରେ ଜେଲରୁ ମୁକ୍ତକରିଦେଲେ । ବାହାରକୁ ଆସି ଜାଣିଲି ସ୍ୱାମୀ ବିଚିତ୍ରାନନ୍ଦ ଦାସ ପ୍ରମୁଖ କସ୍ତୁରବାଙ୍କ ସ୍ମୃତିରକ୍ଷା କାମ ପାଇଁ ଚାନ୍ଦା ସଂଗ୍ରହ ଆରମ୍ଭ କରିଛନ୍ତି ଓ ଏକ କମିଟି ଗଢ଼ାହୋଇଛି । ଜାନୁଆରୀରେ ସେବାଗ୍ରାମରେ ଏହି ଚାନ୍ଦା ସଂଗ୍ରହକାରୀଙ୍କର ଗୋଟିଏ ବୈଠକ ଡକାହେଲା । ଶରତ୍ ଓ ଚୂନୀ ସେତେବେଳକୁ ଜେଲରୁ ବାହାରିଲେଣି । ସେ

ଦୁହିଁଙ୍କ ସହିତ ମୁଁ ସେବାଗ୍ରାମ ଗଲି । ମହାଦେବ ଭବନରେ ସଭା ହେଲା । ଆଶା ଦେବୀ ଆର୍ଯ୍ୟନାୟକମ୍ ସଭାପତିତ୍ୱ କଲେ । ମୃଦୁଲା ସାରାଭାଇ ଏଥିରେ ମୁଖ୍ୟ ବ୍ୟବସ୍ଥାପିକା ହୋଇଥାନ୍ତି । ବମ୍ବେରୁ ଖେର୍ ସାହେବ, ମହୀଶୂରରୁ ଯଶୋଧାରାମ୍ମା, ମାନ୍ଦ୍ରାଜରୁ ଦୁର୍ଗାବାଈ ଦେଶମୁଖ, ପୁନାରୁ ଠକ୍କରବାପା ଆଦି ସମଗ୍ର ଭାରତର ବିଶିଷ୍ଟ ଲୋକେ ଅସିଥାନ୍ତି । କସ୍ତୁରବାଙ୍କ ସ୍ମୃତିରକ୍ଷା ପାଇଁ ନିଜ ନିଜ ପ୍ରଦେଶରେ କାମର ଯୋଜନା ମଧ୍ୟ ସେମାନେ ଆଣିଥାନ୍ତି । ହାସ୍ପାତାଳ, କଲେଜ୍, ଜାତୀୟ ବିଦ୍ୟାପୀଠ ଆଦି ସ୍ଥାପନ କରିବା ପ୍ରଭୃତି ସେମାନଙ୍କର ଲକ୍ଷ୍ୟ ଥିବାର ମୁଁ କଥାବାର୍ତ୍ତାରୁ ଜାଣିଲି । ଓଡ଼ିଶା ପକ୍ଷରୁ ମହିଳା କର୍ମୀ ତାଲିମ ଶିବିର ଓ କନ୍ୟାଶ୍ରମ ଚଳାଇବା ଯୋଜନା ଯାଇଥାଏ ।

ସଭାରେ ଗାନ୍ଧୀଜୀ କହିଲେ ଯେ କସ୍ତୁରବାଙ୍କ ସ୍ମୃତି ରକ୍ଷା ପାଇଁ ଏ ଯେଉଁ ଏକକୋଟି ତିରିଶ ଲକ୍ଷ ଟଙ୍କା ସଂଗ୍ରହ କରାହୋଇଛି ଏହା ଦୁଇହଜାରରୁ ଅଳ୍ପ ଲୋକସଂଖ୍ୟା ବିଶିଷ୍ଟ ଗାଁଗୁଡ଼ିକର ମହିଳା ଓ ଶିଶୁମାନଙ୍କ ଉନ୍ନତି ପାଇଁ ଖରଚହେବ ଏବଂ କେବଳ ମହିଳାମାନେ ଏ କାର୍ଯ୍ୟ ପରିଚାଳନା କରିବେ । ଖେର୍ ସାହେବ ପ୍ରଭୃତି କସ୍ତୁରବାଙ୍କ ନାମରେ ହାସ୍ପାତାଳ କରିବା କଥା କହିବାରୁ ଗାନ୍ଧୀଜୀ ସେ କଥାକୁ କାଟିଦେଲେ । କସ୍ତୁରବା ଗାନ୍ଧୀ ସ୍ମାରକ ଟ୍ରଷ୍ଟ ପାଇଁ କମିଟି ଗଢ଼ାହେଲା । ସେଥିରେ ଗାନ୍ଧୀଜୀ ସଭାପତି ରହିଲେ । ଠକ୍କରବାପା ସମ୍ପାଦକ ଓ ମୃଦୁଲା ସାରାଭାଇ ଯୁଗ୍ମସମ୍ପାଦକ ହେଲେ ।

ପରଦିନ ପାହାନ୍ତ୍ୟା ପ୍ରାର୍ଥନା ପରେ ଆମେ ଆଶା ଦେବୀଙ୍କ ସାଙ୍ଗରେ ଗାନ୍ଧିଜୀଙ୍କ ପାଖକୁ ଗଲୁ, କାରଣ ଆମ ଯୋଜନା ଠକ୍କରବାପାଙ୍କ କରସ୍ଥରେ ଗାନ୍ଧୀଜୀଙ୍କୁ ମିଳିସାରିଥାଏ । ସେହି ଯୋଜନାର ସ୍ୱୀକୃତି ପାଇଁ କାଳେ ମିଠା ଗାଳି ଖାଇବାକୁ ପଡ଼ିବ ସେ ଡର ମନରେ ଥାଏ । ଗାନ୍ଧୀଜୀ ଆମକୁ ଦେଖି ଆଗ ଖୁବ୍ ହସି ତାପରେ କହିଲେ—'ଗାଁରେ କାମ କରିବାପାଇଁ ଏଇ ଗୋଟିଏ ଯୋଜନା ମୋ ହାତକୁ ଆସିଛି । ଆଉସବୁ ଯୋଜନା ସହରପାଇଁ; ତେଣୁ ସର୍ବପ୍ରଥମେ ଏହି ଯୋଜନାଟି ମଂଜୁର କରିଛି ।' ମନ ଉପରୁ ଗୋଟାଏ ବୋଝ ଉତୁରିଗଲା ପରି ଲାଗିଲା ।

ଓଡ଼ିଶାକୁ ଫେରି ମୁଁ ବରୀରେ ଗୋବର୍ଦ୍ଧନ ପ୍ରଧାନଙ୍କ ଘରେ ଥାଏ । ସୋଦପୁରରେ ଗାନ୍ଧୀଜୀଙ୍କୁ ଦେଖାକରିବାପାଇଁ ଗୋଟାଏ ଟେଲିଗ୍ରାମ ଆସିଲା । ମୁଁ ଅନୁମାନ କଲି କସ୍ତୁରବା ନିଧି କାମର ଦାୟିତ୍ୱ ନେବାକୁ ଏ ଡାକରା ଆସିଛି । ସେତେବେଳେ ଦେଶର ଯାହା ଅବସ୍ଥା, ମୁଖ୍ୟ ମୁଖ୍ୟ ଲୋକ ସବୁ ଜେଲ ଭିତରେ ଥାଆନ୍ତି । ୧୯୪୨ ଆନ୍ଦୋଳନର ସୋରିଶବ୍ଦ ନଥାଏ । ଯେଉଁମାନେ ଜେଲରୁ ବାହାରୁଥାନ୍ତି ତାଙ୍କ ଉପରେ ମଧ୍ୟ ନିଷେଧାଜ୍ଞା ଜାରି ହେଉଥିବାରୁ ସେମାନେ ପୁଣି ନିଷେଧାଜ୍ଞା ଅମାନ୍ୟ କରି ଜେଲକୁ ଯାଉଥାନ୍ତି । ବ୍ରଜ, ଅଲେଖ, ଶକ୍ତିଙ୍କ ଭଳି କଲେଜପାଠୁଆ ଯୁବକମାନେ ଜେଲରୁ ବାହାରି କଣ କରିବେ ବୋଲି ଆସି ପଚାରି ଉତ୍ୟକ୍ତ କରୁଥାନ୍ତି । ସେମାନଙ୍କୁ କୌଣସି ଗଠନମୂଳକ କାମରେ ଲଗାଇବା, ରାମଚନ୍ଦ୍ରପୁର ମୌଳିକ ବିଦ୍ୟାଳୟକୁ ସଜାଡ଼ିବାରେ ସାହାଯ୍ୟ

କରିବା ଆଦି କାମରେ ମୁଁ ମନଦେଇଥାଏ । ରାଜକୃଷ୍ଣ (ବୋଷ), ସୁଧୀର ଘୋଷ, ପଦ୍ମନାଭ ରାୟ ପ୍ରଭୃତି ଯେ ଜେଲ୍‌ରେ ଥାନ୍ତି ତାଙ୍କ ପିଲଙ୍କୁ ଆଣି ମୁଁ ରାମଚନ୍ଦ୍ରପୁରରେ ରଖିଥାଏ । ସେ ପିଲଙ୍କ ଚିନ୍ତା ମଧ୍ୟ ଥାଏ । ତେଣୁ ବରୀ ଛାଡ଼ି ଓଡ଼ିଶାର ଅନ୍ୟଆଡ଼େ ବୁଲାବୁଲି କରିବା କଥା ମୁଁ ଭାବୁ ନ ଥାଏ । କସ୍ତୁରବା ଟ୍ରଷ୍ଟର ଦାୟିତ୍ୱ ନେଲେ ତ ବୁଲାବୁଲି କରିବାକୁ ହେବ— ତେଣୁ ମନରେ ଦ୍ୱିଧା ଥାଏ । ଯାହାହେଉ, ଯାହା ଆଦେଶ ମିଳିବ ତାକୁ ମୁଣ୍ଡପାତି ନେବା ପାଇଁ ଠିକ୍ କରି ମୁଁ ସୋଦପୁର ଖଦୀ ପ୍ରତିଷ୍ଠାନକୁ ଗଲି । କସ୍ତୁରବା ଗାନ୍ଧୀ ଟ୍ରଷ୍ଟର କାର୍ଯ୍ୟ ପରିଚାଳନା କରିବାପାଇଁ ଗାନ୍ଧୀଜୀ ପ୍ରତି ପ୍ରଦେଶରୁ ଜଣେ ଜଣେ ମହିଳା ପ୍ରତିନିଧି ବାଛୁଥାନ୍ତି । ଅସାମରେ ଅମଲପ୍ରଭା ଦାସ, ବଙ୍ଗଳାରେ ଲବଣ୍ୟଲତା ଚନ୍ଦ, ପଞ୍ଜାବରେ ରାମେଶ୍ୱରୀ ନେହେରୁ, ବିହାରରେ ପ୍ରିୟମ୍ବଦା ନନ୍ଦକେଲିଓର, ମହାରାଷ୍ଟ୍ରରେ ଯଶୋଧାରା ଦାସାପ୍ପା ଅଦିଙ୍କୁ ପ୍ରତିନିଧି ବାଛିସାରିଥାନ୍ତି । ମୋ ଉପରେ ଏହି ବୋଝଟି ସେ ଲଦିଲେ । ମୁଁ ବରୀ ଛାଡ଼ି ଅନ୍ୟତ୍ର ଯାଇ ନ ପାରିବା କଥା ଦର୍ଶାଇଲି । ସେ କହିଲେ ଯେଉଁଠି ରହିଛ ସେଇଠି ଏ କାମ ଆରମ୍ଭ କର ।

ଓଡ଼ିଶା ଫେରି ପୂର୍ବ ଯୋଜନା ଅନୁସାରେ ରାମଚନ୍ଦ୍ରପୁରରେ ମହିଳା କର୍ମୀ ତାଲିମ ଶିବିର ଓ କନ୍ୟାଶ୍ରମ ଆରମ୍ଭହେଲା । ୧୯୦୬ ରେ ନବବାବୁ ରାଜସ୍ୱ ମନ୍ତ୍ରୀ ଥାନ୍ତି । ପାଣି କାଦୁଅରେ ଯାଇ ସେ ଅଗଷ୍ଟ ମାସରେ ଶିବିର ଉଦ୍‌ଘାଟନ କଲେ । ମଙ୍ଗଳା, ଚୂନୀ ପ୍ରଭୃତି ସେ କାମରେ ଲାଗିଲେ । ଓଡ଼ିଶାର ଯୋଜନା ଗାଁରେ କର୍ମୀ କାମ କରିବାକୁ ଗରିବାନା । ଅନ୍ୟ ପ୍ରଦେଶ ଭଳି ଉଚଶିକ୍ଷିତା କର୍ମୀ ମଧ୍ୟ ଓଡ଼ିଶାରେ ସେତେବେଳେ ପ୍ରାପ୍ୟ ନ ଥାନ୍ତି । ସେହି ପୁରୁଣା ଲୋକଙ୍କୁ ନେଇ କାମ ଆରମ୍ଭ କରାହେଲା । କେତେ ମାସ ପରେ ଠକ୍କର ବାପା ରାମଚନ୍ଦ୍ରପୁରକୁ ତାଲିମ ଶିବିର ଦେଖିବାକୁ ଗଲେ । ସର୍ବଶ୍ରୀ ଶ୍ୟାମସୁନ୍ଦର ମିଶ୍ର, ନାରାୟଣ ଘୋଷ ପ୍ରଭୃତି ସାଂଗରେ ଥାନ୍ତି । ନଡ଼ା ଛପର, ବାଉଁଶ ପେଲ ଦିଆ ନୂଆଣିଆ ମାଟିଘରେ ତାଲିମ ବ୍ୟବସ୍ଥା ଦେଖି ସନ୍ତୋଷ ପ୍ରକାଶକଲେ ।

ଏହି ତାଲିମ ପାଇଥିବା କର୍ମୀମାନଙ୍କଦ୍ୱାରା ଓଡ଼ିଶାରେ କାମ ଆରମ୍ଭ ହେଲା । କଟକରେ ବରୀ, ସତ୍ୟଭାମାପୁର ଓ କୋରାପୁଟର ଡ଼ୁମ୍ବୁରିଗେଡ଼ାରେ ପ୍ରଥମେ କସ୍ତୁରବା ସେବାକେନ୍ଦ୍ର ସ୍ଥାପିତ ହେଲା । ନିର୍ମଳା ଦତ୍ତ ନାଗପୁରରୁ ଧାତ୍ରୀବିଦ୍ୟା ଶିଖି ଆସି ବରୀରେ ମାତୃମଙ୍ଗଳ କେନ୍ଦ୍ରରେ ରହିଲେ । ସେତେବେଳେ ବରୀରେ ଡାକ୍ତରଖାନା ନ ଥିଲା । ବିଂଝାରପୁର ଡାକ୍ତରଖାନାକୁ ଯିବାକୁ ପାଟ ପାର ହେବାକୁ ପଡ଼ୁଥାଏ । ପ୍ରସୂତିମାନଙ୍କ ଦୁର୍ଦ୍ଦଶା କହିଲେ ସରିବ ନାହିଁ । ତେଣୁ ଏ କାମଟି ଆରମ୍ଭ କରିବା ଦ୍ୱାରା ମୋର ବହୁଦିନର ଇଚ୍ଛା କସ୍ତୁରବା ସ୍ମାରକ ଟ୍ରଷ୍ଟ ଯୋଗୁଁ ପୂରଣହେଲା । କେତକୀ ଦେବୀ ଓ ମାଳତୀ ବିଶ୍ୱାଳଙ୍କୁ କୋରାପୁଟ ପଠାହେଲା । ଏମାନେ ଅଳ୍ପ ପଢ଼ାଶୁଣା କରିଥିବା ଝିଅ । କାମ ପ୍ରତି ନିଷ୍ଠା ଓ ସଦାଚାରକୁ ଯୋଗ୍ୟତାର ମାପକାଠି କରି ସେମାନଙ୍କୁ କୋରାପୁଟ ପଠାଇବାକୁ ଠିକ୍ କଲି । ସେମାନେ ଆଦିବାସୀଙ୍କ ଉନ୍ନତି ଓ ଆଦିବାସୀଙ୍କ ପ୍ରତି ଅବଶ୍ୟର ଅନ୍ୟାୟର ପ୍ରତିକାର ଦିଗରେ ଭଲ

କାମ କଲେ । ତେଣୁ କୋରାପୁଟ ଓ ଅନ୍ୟ ଜିଲ୍ଲାରେ ଏ ପ୍ରକାର କେନ୍ଦ୍ର ଆରମ୍ଭ କରାଗଲା । ବୈଦେହୀ, ମେନକା, ଅନସୂୟା, ବାସନ୍ତୀ ପ୍ରଭୃତି ନିଜ ନିଜ କ୍ଷେତ୍ରରେ ଭଲ କାମ କଲେ ।

କସ୍ତୁରବା ସ୍ମାରକ ଟ୍ରଷ୍ଟର ପ୍ରତିନିଧିଙ୍କର କାର୍ଯ୍ୟକାଳ ଛଅବର୍ଷ ରଖାଯାଇଥିଲା । ତେଣୁ ନୂଆ ପ୍ରତିନିଧି ବାଛିବା ତାଗିଦା ଆସିଲା । ନୂଆ କର୍ମୀ ବାହାର କରିବାପାଇଁ ସବୁବେଳେ ଏଣେ ତେଣେ ଆଖି ପକାଇବା ମୋର ଅଭ୍ୟାସ । ଜଣେ ଶିକ୍ଷାର୍ଥିନୀ ମେନକା ମହାପାତ୍ରଙ୍କ ଠାରୁ ଅନ୍ନପୂର୍ଣ୍ଣା ଦାସଙ୍କ କଥା ଶୁଣି ତାଙ୍କ ଭାଇ ଗୋଲୋକ ବାବୁଙ୍କୁ ଦେଖାକଲି । ଅନ୍ନପୂର୍ଣ୍ଣା ଡେପୁଟି ମାଜିଷ୍ଟ୍ରେଟ ହେବାପାଇଁ ପରୀକ୍ଷା ଦେବାକୁ ସଜବାଜ ହେଉଥାନ୍ତି । ତାଙ୍କୁ ଗାନ୍ଧୀ କାମରେ ପଶିବାପାଇଁ ପ୍ରବର୍ତ୍ତାଇଲି । ମୋ ଭାଗ୍ୟ ଭଲ ଗୋଲୋକବାବୁ ତାଙ୍କୁ ଏ ପ୍ରକାର କାମ କରିବାକୁ ଛାଡ଼ିଦେଲେ । ସେ ସେବାଗ୍ରାମରେ ମୌଳିକ ଶିକ୍ଷା ବିଷୟରେ ବର୍ଷେ ତାଲିମ ନେବା ପରେ କିଛିଦିନ ରାମଚନ୍ଦ୍ରପୁରରେ କାମ କରି କସ୍ତୁରବା ସ୍ମାରକ ଟ୍ରଷ୍ଟ କାମରେ ଯୋଗଦେଲେ । ତାଂକୁ ଉପପ୍ରତିନିଧି କରିସାରିଥିଲି । ମୋର କାର୍ଯ୍ୟକାଳ ପୂରିବା ବେଳକୁ ଏଣେ ଭୂଦାନ ଗ୍ରାମଦାନ କାମ ଆରମ୍ଭ ହେଲା । ତାଙ୍କୁ ପ୍ରତିନିଧି ଦାୟିତ୍ୱ ଦେଇ ମୁଁ ପଦଯାତ୍ରା ଓ ଭୂଦାନ ଗ୍ରାମଦାନ କାମରେ ଲାଗିଲି ।

କସ୍ତୁରବା ସ୍ମାରକ ଟ୍ରଷ୍ଟର କାମ ପାଇଁ ମୋ ମନରେ ଆଉ ଚିନ୍ତା ରହିଲା ନାହିଁ—କାରଣ ରମ୍ଭା ଦେବୀ ବୁଢିଆ ସେତେବେଳକୁ ମୋ ସାଂଗରେ କାମ କରିବାକୁ ବମ୍ବେରୁ ଆସି ସାରିଥାନ୍ତି । କୁନ (ତୁଙ୍ଗ ବିଦ୍ୟା) ମଧ୍ୟ ଡାକ୍ତରୀ ପାଠ ସରିଥାଏ ଭରିକରି ଛାଡ଼ି ଆସି ବାରି ମାତୃମଙ୍ଗଳ କେନ୍ଦ୍ର ସମ୍ଭାଳୁଥାଏ । ସୁମିତ୍ରାର ଯାଆଁଳା ପିଲା ନିଖିଣଯାଇଥିବାରୁ ସେ ମଧ୍ୟ ବାରିରେ ବାଲବାଡ଼ୀ ଆଦି କାମରେ ସାହାଯ୍ୟ କରୁଥାଏ । ତେଣୁ ପାଠୁଆ ଝିଅମାନେ ଆଗକୁ ଏ କାମ ଚଳେଇ ନେବାର ପ୍ରତ୍ୟୟ ମନରେ ଜନ୍ମିଥାଏ ।

## ୩୦ । ଓଡ଼ିଶା ପଦଯାତ୍ରା

ସାଧାରଣତଃ ସ୍ୱାଧୀନତା ଆନ୍ଦୋଳନରେ ଯାହା ଲୋକଙ୍କୁ କୁହାଯାଉଥିଲା ଗଡ଼ଜାତ ଆନ୍ଦୋଳନକାରୀମାନେ ମଧ୍ୟ ସେଯା କହୁଥିବେ । ଆମ ମନର ଧାରଣା ଯେପରି ଆମେ ଲୋକଙ୍କୁ କହୁଥିଲୁ—ଦେଶ ସ୍ୱାଧୀନ ହେଲେ ନିଶା ଉଠିଯିବ, ଗୋଲାମି ପାଠ ରହିବନାହିଁ— ନୂଆ ପ୍ରକାର ପାଠ ପଢ଼ାହେବ, ଅତ୍ୟାଚାର ଓ ଶୋଷଣ ରହିବ ନାହିଁ ଇତ୍ୟାଦି । ଲୋକେ ଭାବିଥିଲେ ରାଜାଙ୍କ ହାତରୁ ରାଜ୍ୟ ଚାଲିଗଲେ ସେମାନେ ରାମରାଜ୍ୟ ଭୋଗକରିବେ । ମାତ୍ର ସରକାରୀ କର୍ମଚାରୀଙ୍କ ଦାଉରେ ସେମାନେ ବ୍ୟତିବ୍ୟସ୍ତ । ଗଡ଼ଜାତ ଆନ୍ଦୋଳନକାରୀଙ୍କ ମନୋବୃତ୍ତି ଅନ୍ୟପ୍ରକାର । ସେମାନେ ବି ଏମାନଙ୍କ ସାଙ୍ଗରେ ଆଉ ନାହାନ୍ତି ।

ଆମେ ପଦଯାତ୍ରାରେ ବାହାରିବା ପୂର୍ବରୁ ଆମେ ଭୋଟ ନ ଦେବୁ କାହିଁକି—ଏକଥା ପ୍ରଚାରପତ୍ରର ଶିରୋନାମାରେ ଲେଖାଯାଇ ପ୍ରଚାରପତ୍ର ବଣ୍ଟାଯାଇଥିଲା । ଦେଶ ସ୍ୱାଧୀନ

ହୋଇଛୁ । ନବୀଚନ ହେବ । ଭୋଟ ଅଧିକାର ମିଳଛୁ । ସମସ୍ତେ ଭୋଟ ଦେବାକୁ ବ୍ୟସ୍ତ । ଏପରବେଳେ ଗୋପବଂଧୁ ଚୌଧୁରୀ, ମନମୋହନ ଚୌଧୁରୀ, ଫକୀର ମିଶ୍ର ପ୍ରଭୃତିଙ୍କ ଦସ୍ତଖତରେ 'ଆମେ ଭୋଟ ନ ଦେବୁ କାହିଁକି ?' ଏ ପ୍ରଚାରପତ୍ର ବଣ୍ଟାହେଲା । ରାଜନୀତକ ଦଳମାନେ ଏହାକୁ ପସନ୍ଦ କଲେ ନାହିଁ । ସମାଲୋଚନା ଚାଲିଲା ତାହାର ଉପରେ । ଆମର ଯେ ରହଣି ସ୍ଥାନମାନଙ୍କରେ ସଭା ହୋଇଥାଏ ସେଥିରେ ଅମେ ସେହି ପ୍ରଚାରପତ୍ର ବାଣ୍ଟିବାର ଉଦ୍ଦେଶ୍ୟ ବୁଝାଇ କହୁଥାଉ ଏବଂ ଭୂଦାନ କଥା ମଧ୍ୟ କହୁଥାଉ । ବିନୋବାଜୀଙ୍କ ପରିଚୟ, ଭୂଦାନକାମ କାହିଁକି କିପରି ଆରମ୍ଭ ହେଲା ଇତ୍ୟାଦି କଥା କହୁଁ । ଢେଙ୍କାନାଳ ଜିଲ୍ଲାରେ ପ୍ରବେଶକରି ନୀଳକଣ୍ଠପୁରରେ ବାଜିରାଉତ ଘରକୁ ଗଲୁ, ମାତ୍ର ରହିଲୁ ନାହିଁ । ପ୍ରଫୁଲ୍ଲ ସାହୁଙ୍କ କେନ୍ଦ୍ର ତାରଣୀପଶିରେ ଏବଂ କୃପାସିନ୍ଧୁ ରଥଙ୍କ କେନ୍ଦ୍ର ଗଦାଶିଳାରେ ଗୋଟିଏ ଗୋଟିଏ ଦିନ ରହିଗଲୁ । ଶୀତଦିନ । ଦିନ ଛୋଟ ହେଲେ ମଧ୍ୟ ଆମେ କେତେଗୁଡ଼ିଏ ଜାଗାରେ ଦୁଇଓଳି ପଦଯାତ୍ରା କରୁ । ସୁବିଧା ସ୍ଥାନ ଓ ରହଣିର ଦୂରତ୍ୱ ଅନୁସାରେ କେଉଁଠି କେଉଁଠି ଦିନେ ଲେଖାଁ ହେଉ; ଅର୍ଥାତ୍ ସକାଳେ ପଦଯାତ୍ରା କରି ଯେଉଁଠି ରହଣିରେ ପହଞ୍ଚୁ, ସେହିଠାରେ ଦିନଟି ରହି ତା'ପରଦିନ ସକାଳେ ଦେଠୁଁ ବାହାରୁ । ଦୁଇଓଳିଆ ପଦଯାତ୍ରାରେ ଲୋକଙ୍କ ସମ୍ପର୍କରେ ଆସିପାରୁନାହିଁ । ଦୁଇପହରେ ପଦଯାତ୍ରାରେ ବାହାରିବା ବେଳକୁ, ଶୀତଦିନ ଯୋଗୁଁ, ଲୋକେ ଗାଧୁଆ ଖିଆପିଆରେ ବ୍ୟସ୍ତ ଥାନ୍ତି । କାମ ନକରିବା ଲୋକ କେତେକ ଅଛନ୍ତି । ଧାନକଟା, ଧାନ ଅମଳ ବ ଠାଏ ଠାଏ ଚାଲିଥାଏ । ତେଣୁ ଲୋକେ ବିଲରୁ ଆସିବାକୁ ଡେରିହୁଏ । ସଂଧ୍ୟାବେଳେ ରହଣିରେ ପହଞ୍ଚି ଯେଉଁ ସଭାହୁଏ ସେ ସଭା ଭଲହୁଏ ।

ପଦଯାତ୍ରାରେ ଭୂଦାନ ପ୍ରଚାର ସିନା ହେଉଥାଏ ଜମି କିଆଯାଉ ନ ଥାଏ । ଢେଙ୍କାନାଳ ଜିଲ୍ଲାରେ ପ୍ରବେଶ କରି ବାଜିରାଉତ ଛାତ୍ରାବାସ ପର୍ଯ୍ୟନ୍ତ ଯିବା ଭିତରେ ବାଜିରାଉତର ଘର ନୀଳକଣ୍ଠପୁର, ପ୍ରଫୁଲ୍ଲ ସାହୁଙ୍କ କେନ୍ଦ୍ର ତାରଣୀପଶି, ତାଙ୍କ ଗାଁ ସାନବାଘଲୁଣ୍ଡା ଓ କୃପାସିନ୍ଧୁ ରଥଙ୍କ କେନ୍ଦ୍ର ଗଦାଶିଳା ପଡ଼ିଲା । ଶଣାପଶି ରହଣିର କଥା ମନେରଖିଛୁ, ସେ ଗାଁରେ ସଂଧ୍ୟାବେଳେ ପହଞ୍ଚିଲୁ । ରହିବା ଘରକୁ ଉପରଓଳି ଲିପାପୋଛା କରିଦେଇଥାନ୍ତି, ତାହା ଶୁଖିନଥାଏ । ଭୟଙ୍କର ଶୀତ । ଘର ସେକିବା ଓ ନିଆଁ ପୁଇଁବା ଏ ଦୁଇଟି କାମ ପାଇଁ ନିଆଁ ଅତଡ଼ା ଲଗିଲା । ଯେତେ କାଠ ସେଦିନ ପୋଡ଼ିରେ ଜଳିଲା କଟକରେ ତାର ମୂଲ୍ୟ ପ୍ରାୟ ପଚାଶ ଟଙ୍କା ହେବ । ତାରଣୀପଶି ରହଣି ଦିନ ମାଳତୀ ଦେବୀ ଆସିଥିଲେ । ଗଦାଶିଳା କେନ୍ଦ୍ର ସାଂଗରେ ଅଗରୁ ସମ୍ପର୍କ । କେତେ ବର୍ଷ ପୂର୍ବେ ମୁଁ କଟକରେ ଖଦୀ-କେନ୍ଦ୍ରକୁ ଯାଇଥିଲି । କୃପାସିନ୍ଧୁ ରଥ ଖଦୀ କିଣିବାପାଇଁ ଖଦୀଭଣ୍ଡାରକୁ ଆସିଥିଲେ । ସେ ଢେଙ୍କାନାଳର ଲୋକ, ନିଜପାଇଁ ଖଦୀ କଟକରୁ କିଣୁଛନ୍ତି ଦେଖି ତାଙ୍କର ପରିଚୟ ନେବାକୁ ମୋର ଆଗ୍ରହ ହେଲା । ମୁଁ ତାଙ୍କ ସହିତ କଥାବାର୍ତ୍ତା କରି ଜାଣିଲି ଯେ ତାଙ୍କର ଖଦୀ କାମ ପ୍ରତି ଶ୍ରଦ୍ଧା ଅଛି । ସେ କେନ୍ଦ୍ର କରି କାମ କରିପାରିବେ କି ନାହିଁ ତାଙ୍କ ସହିତ କଥାବାର୍ତ୍ତା

ହେଲା । ପରେ ସେଠାରେ ଖଦୀକେନ୍ଦ୍ର ହେଲା । କସ୍ତୁରବା କର୍ମୀ ଜନଆଧାରିତ, ଅର୍ଥାତ୍ ନିଜର ଖାଦ୍ୟପେୟ ପାଇଁ ଗ୍ରାମବାସୀଙ୍କ ଉପରେ ନିର୍ଭର କରି ଚଳିବେ, କସ୍ତୁରବା ଟ୍ରଷ୍ଟର କାମ ଆରମ୍ଭ ପୂର୍ବରୁ ଏହା ମୋର ଇଚ୍ଛା ଥିଲା । ଏପରି କାମ ନାରୀକର୍ମୀମାନେ ପରୀକ୍ଷା ସ୍ୱରୂପ କେତେଜଣ କରିଛନ୍ତି ମଧ୍ୟ । ସେତେବେଳର କସ୍ତୁରବା କର୍ମୀ ଶ୍ରୀ ବୈଦେହୀ ପଣ୍ଡା ଜନଆଧାରିତ କର୍ମୀ ଭାବରେ ଗଦାଶିଳାରେ କାମ କରିଥିଲେ । ଗଦାଶିଳାରେ ଆମେ ଦୁଇଦିନ ରହିଲୁ । ମଠକରଗୋଳାରେ ଗୋଟିଏ ରହଣି ଥିଲା । ସେ ଗାଁ ଗୋଟିଏ ଡାକ ଗାଁ । ବ୍ରାହ୍ମଣ ବସ୍ତି । ବଡ଼ ଗାଁ । କଥାକହିବାବାଲା ଲୋକ ସେଠି କେତେଜଣ ଅଛନ୍ତି । ୧୯୬୩ରେ ବିନୋବାଙ୍କ ପଦଯାତ୍ରାବେଳେ ମଠକରଗୋଳାରେ ରହଣି ପଡ଼ିଥିଲା । ୧୯୫୬ ରୁ ୬୩ ମଧ୍ୟରେ କୌଣସି ପରିବର୍ତ୍ତନ ପରିଲକ୍ଷିତ ହେଲା ନାହିଁ । ଅଣ୍ଡା ସହ୍ଦ ନ ପାରି ଆମ ସାଙ୍ଗରେ ଥିବା ଜଣେ ଦୁଇଜଣଙ୍କୁ ତା ଭିତରେ ଅଳ୍ପ ଜ୍ୱର ହେଲା । ତଥାପି ସେମାନେ ଚାଲିବା ବନ୍ଦକରିନଥିଲେ । ମାତ୍ର ତାଙ୍କ ପାଇଁ ଦହି ଚୁଡ଼ାଭଜା ବା ଖଇ, ଟିକିଏ ଦୁଧ ଯୋଗାଡ଼ କରିବା କଷ୍ଟକର ହେଉଥିଲା । ଗୋଟିଏ ସମୃଦ୍ଧ ଗାଁରେ ରହଣି ଥିଲା । ବ୍ରାହ୍ମଣ ବସ୍ତି । ଆମେ ଆଶା କରୁଥିଲୁ ସେଠି ବ୍ୟବସ୍ଥା ଭଲ ହେବ । ଉପରଓଳି ପଦଯାତ୍ରା ସେଦିନ ଥିଲା । ବାଟରେ ଯାଉ ଯାଉ ଗ୍ରେଟିଆ ପାହାଡ଼ରେ ସୂର୍ଯ୍ୟାସ୍ତର ଅତି ମନୋହର ଦୃଶ୍ୟ ଦେଖିବାକୁ ମିଳିଲା । ସେ ଦୃଶ୍ୟ କେବେ ଭୁଲିହେବ ନାହିଁ । ପାହାଡ଼ ଉପରେ ଜଙ୍ଗଲ ଭିତରୁ ସୂର୍ଯ୍ୟ ଧୀରେ ଧୀରେ ଚାଲିଗଲେ । ଘନ ଜଙ୍ଗଲ ଦୂରକୁ ଘୋର ନୀଳବର୍ଣ୍ଣ । ନିର୍ମଳ ଆକାଶ ନୀଳବର୍ଣ୍ଣ । ତହିଁରୁ ଅସ୍ତଗାମୀ ସୂର୍ଯ୍ୟ ତାଙ୍କର ଆଭା ବିକିରଣ କରି ଧୀରେ ଧୀରେ ଜଙ୍ଗଲ ଭିତରେ ବୁଡ଼ିଗଲେ । ଗୋଟିଏ ପଥର ଉପରେ କିଛି ସମୟ ବସି ସୂର୍ଯ୍ୟାସ୍ତର ସେ ସୁନ୍ଦର ଦୃଶ୍ୟକୁ ଉପଭୋଗ କଲୁ । ସେ ଦୃଶ୍ୟ ଚିରକାଳ ମନରେ ଲାଖିରହିବାର ଦୃଶ୍ୟ ।

କର୍ମୀମାନଙ୍କ କେନ୍ଦ୍ରରେ ବା ଘରେ ରହଣି ହେଲେ ସେମାନେ ଆଗ୍ରହରେ ଭଲ ଖାଇବା ଜିନିଷ ତିଆରି କରନ୍ତି । ପଦଯାତ୍ରା କରି ବୁଲୁଛନ୍ତି । ଖାଇବାକୁ ଭଲ ସବୁଠିଁ ମିଳେ ନାହିଁ । ସେମାନେ ଖୁଆଇବାକୁ ଚାହାନ୍ତି ।

## ୩୧ । ଶିଶୁ-ବିହାର

ସ୍କୁଲକୁ ଯିବା ପୂର୍ବ ଅବସ୍ଥାରେ ଥିବା ଶିଶୁଙ୍କ ପ୍ରତି ଅବହେଳା ଆମ ରାଜ୍ୟରେ ସହର ଓ ମଫସଲରେ ସମାନ । ଶିଶୁର ଏହି ବୟସଟିର ଗୁରୁତ୍ୱ ଶିକ୍ଷାବିତ୍‌ମାନେ ଉପଲବ୍‌ଧି କରିଥିଲେହେଁ ସମାଜ ଏଥିପ୍ରତି ଆଦୌ ଅବହିତ ନୁହେଁ । ଏହି ବୟସର ଶିଶୁଙ୍କ ବିକାଶ-ପାଇଁ ଭାରତର ବିଭିନ୍ନ ରାଜ୍ୟରେ ନାନା ଅନୁଷ୍ଠାନ ଅଛି । ଓଡ଼ିଶାରେ କସ୍ତୁରବା ଗାନ୍ଧୀ

ସ୍ମାରକ ଟ୍ରଷ୍ଟ, ନବଜୀବନ ମଣ୍ଡଳ ଆଦି ସଂସ୍ଥା ତରଫରୁ ଗାଁଗହଳରେ ଏ ପ୍ରକାର କେତେକ ଅନୁଷ୍ଠାନ ଚାଲୁଥିଲେ ହେଁ ରାଜ୍ୟର ଶିକ୍ଷା ବ୍ୟବସ୍ଥାରେ ଏହା କାର୍ଯ୍ୟତଃ ମୁଖ୍ୟ ସ୍ଥାନ ଗ୍ରହଣ କରିନଥିଲା । ସତ୍ୟାଗ୍ରହ ଆନ୍ଦୋଳନ ଯୁଗରେ ଜନସଂପର୍କ ସ୍ଥାପନ ପାଇଁ ଗାଁଗହଳରେ ରହିବାପାଇଁ ଗାନ୍ଧୀଜୀଙ୍କଠାରୁ ନିର୍ଦ୍ଦେଶ ମିଳିଥିଲା । ସେଥିପାଇଁ ଗାଁରେ ଏ ପ୍ରକାର ପରୀକ୍ଷା ଚଳେଇବାକୁ ଆମେମାନେ ଉଦ୍ୟମ କରିଥିଲୁ ।

ସର୍ବୋଦୟ ଆଦର୍ଶରେ ଯେଉଁ କେତୋଟି ସହରକୁ ଆଦର୍ଶ ଭାବରେ ସଂଗଠନ କରିବା କଥା ବିନୋବାଜୀ କହିଲେ ସେଥିରେ କଟକ ସହରର ନାମ ସେ ଦେଲେ । ତାଙ୍କର ଇଚ୍ଛାନୁସାରେ ମଫସଲରେ ବୁଲିବା ସଙ୍ଗେ ସଙ୍ଗେ ମୁଁ କଟକ ସହରରେ ରହିବା ଆରମ୍ଭ କଲି ଓ ଭିକାରି, କୁଷ୍ଠରୋଗୀ ସମସ୍ୟା, ଦଳୀୟ ଗଣ୍ଡଗୋଳ, ମଦ ନିଶାର ପ୍ରସାର ଆଦି ନାନା ସମସ୍ୟା ସଂକ୍ରାନ୍ତରେ କଟକର ବିଶିଷ୍ଟ ନାଗରିକ ଓ ତତ୍ସଙ୍ଗେସଙ୍ଗେ ବିଭିନ୍ନ ସ୍ତରର ସ୍ଥାୟୀ ବାସିନ୍ଦାଙ୍କ ସଙ୍ଗେ ଆଲୋଚନା ଆରମ୍ଭ କଲି । କଟକ ସହରରେ ଦାଣ୍ଡକୁ ପାଦ କାଢ଼ିବା ମାତ୍ରେ ଗ୍ରେଷ୍ଟପିଲ୍ଲ ନିଜନିଜର ଅବହେଳିତ ଅବସ୍ଥା ଆଖିରେ ଆଙ୍ଗୁଠି ଗୁଞ୍ଜି ଦେଖାଇଦେଉଥିଲା ପରି ଦେଖାଇ ଦିଅନ୍ତି । ଏ ଦିଗରେ କିଛି ସଂଗଠନ କରିବାପାଇଁ ଶ୍ରୀମତୀ ବସନ୍ତ କୁମାରୀ, ଶ୍ରୀମତୀ ପ୍ରଭାମୟୀ ପ୍ରଭୃତିଙ୍କ ସହିତ ଗତ କେତେବର୍ଷ ହେଲା ବହୁବାର ଆଲୋଚନା କରିଥିଲି । ଅବଶେଷରେ ଏହି ନିଷ୍ପତ୍ତିରେ ପହଞ୍ଚିଲି ଯେ ସାହସ କରି ଏ କାମ ଆରମ୍ଭ କରିଦେବି । ଯଦି ଭଗବାନଙ୍କ ବରଦ ଥିବ ଓ ସମାଜରେ ଯଥାର୍ଥରେ ଏହା ଆବଶ୍ୟକ ହେଉଥିବ ତେବେ ଏହା ବଞ୍ଚିବ ଓ ମନକୁମନ ସବୁଆଡ଼େ ବ୍ୟାପିଯିବ, ନଚେତ୍ ଏହା ଆପେ ମଉଳିଯିବ । କିଛି ନ ହେଲେ ଏ ପ୍ରତ୍ୟକ୍ଷ କାମ ଆରମ୍ଭ କରିଲେ ଏ ଦିଗରେ ଜନସାଧାରଣଙ୍କୁ ଚିନ୍ତା କରିବାପାଇଁ ପ୍ରେରଣା ମିଳିବ—ଏତିକ ଫଳ ତ ହେବ !

ଶ୍ରୀମତୀ ବିଦ୍ୟୁତ୍‌ଲତା ମହାନ୍ତି ଓ ଶ୍ରୀମତୀ ଅନସୂୟା ମହାପାତ୍ରଙ୍କର ସ୍ୱେଚ୍ଛାକୃତ ସାହାଯ୍ୟ ଦାନର ପ୍ରତିଶ୍ରୁତି ମୋତେ ଏ କାମ ଆରମ୍ଭ କରିବାରେ ଅଧିକ ପ୍ରେରଣା ଦେଲା । କେତେକ ସହୃଦୟ ବ୍ୟକ୍ତି ପ୍ରତ୍ୟକ୍ଷ କର୍ମ ନଦେଖି ମଧ୍ୟ ମୋ କଥାଉପରେ ବିଶ୍ୱାସ ସ୍ଥାପନ କରି ମୋତେ ଆର୍ଥିକ ସାହାଯ୍ୟ ଦେଲେ । ତାହା ପରିମାଣ ଦୃଷ୍ଟିରୁ ଯତ୍‌ସାମାନ୍ୟ ହେଲେ ହେଁ ଆରମ୍ଭ ବେଳର ପରିସ୍ଥିତିକୁ ତାହା ବଡ଼ ସାହାଯ୍ୟ ହେଲା । ମ୍ୟୁନିସିପାଲିଟିର ଚେୟାରମ୍ୟାନ୍ ଶ୍ରୀ ମନମୋହନ ମିଶ୍ର ଏ ଯୋଜନାକୁ ସ୍ୱାଗତ କଲେ ଓ ସହରରେ ମ୍ୟୁନିସିପାଲିଟିର ଅବ୍ୟବହୃତ ହୋଇ ପଡ଼ିରହିଥିବା ସ୍ଥାନଗୁଡ଼ିକର ବିନିଯୋଗ ଏଇ କାର୍ଯ୍ୟ ପାଇଁ କରିବାକୁ ନିର୍ଭର ଜବାବ ଦେଲେ । ଘର ଭିଆଣ ଓ ସ୍କୁଲ ପାଇଁ ଗ୍ରାଣ୍ଟ ଆଦିର ବ୍ୟବସ୍ଥା କରାଇ-ଦେବାର ଦାୟିତ୍ୱ ମଧ୍ୟ ସେ ବହନ କରିଥିଲେ । ଯାହାହେଉ ୧୯୭୨ ମାର୍ଚ୍ଚ ଊଣେଇଶ ତାରିଖରେ ବାଖରାବାଦରେ ଥିବା ଆମର ଘରେ ଶ୍ରୀ ଈଶ୍ୱରଲାଲ ବ୍ୟାସ ଓ ବାଖରାବାଦର କେତେକ ବାସିନ୍ଦାଙ୍କ ଉପସ୍ଥିତିରେ ଏ କାମର ଶୁଭାରମ୍ଭ ସର୍ବୋଦୟ ମଣ୍ଡଳ ତରଫରୁ ହେଲା ଓ ଅଗଷ୍ଟ ବାର ତାରିଖରେ ଗୃହଦାତା ଗ୍ରହୀଙ୍କ ଅଭିଭାବକ ଓ ଅନ୍ୟାନ୍ୟ ସହିତ

ସହଯୋଗ ଦେଇଥିବା ବ୍ୟକ୍ତିମାନଙ୍କର ଗୋଟିଏ ବୈଠକରେ କେବଳ ଏହି ସ୍କୁଲର ପରିଚାଳନା ସମିତି ଶ୍ରୀ ଦୁଃଖୀଶ୍ୟାମ ମିଶ୍ରଙ୍କ ସଭାପତିତ୍ବରେ ଗଢ଼ାହେଲା । ଶ୍ରୀ ଶୈଳେନ୍ କୁମାର ରାୟ ଏହି ପରିଚାଳନା ସମିତିର ସମ୍ପାଦକ ଓ ଗଜାନନ୍ଦ ଅଗ୍ରୱାଲ କୋଷାଧ୍ୟକ୍ଷ ନିର୍ବାଚିତ ହେଲେ । ସର୍ବୋଦୟ ମଣ୍ଡଳ ଏହି କାର୍ଯ୍ୟ ପାଇଁ କିଛି ଚାନ୍ଦା ସଂଗ୍ରହ କରି ଦେଇଥିଲେ ।

ଏଠାରେ ଅଢ଼େଇବର୍ଷରୁ ସାଢ଼େ ଚାରିବର୍ଷର ଶିଶୁଙ୍କୁ ନିଆଯାଉଥିଲା ଏବଂ ଅକ୍ଷର ଶିକ୍ଷା ଦିଆଯାଉନଥିଲା ।

ସେହି ଅଗଷ୍ଟ ବାର ତାରିଖ ବୈଠକରେ ଗୋଟିଏ ପ୍ରସ୍ତାବ ହୋଇଥିଲା ଯେ ସହରର ବିଭିନ୍ନ ସାହିରେ ଏ ପ୍ରକାର ଶିଶୁ-ବିହାର କରିବାପାଇଁ ଉତ୍କଳ ସର୍ବୋଦୟ ମଣ୍ଡଳ ଯେଉଁ ଯୋଜନା ପ୍ରସ୍ତୁତ କରିଛନ୍ତି ସେହି ଯୋଜନା କିପରି ସଂଗଠିତ ହେବ ସେ ବିଷୟରେ ବିଚାର ବିମର୍ଶ କରିବାପାଇଁ ଏ ଦିଗରେ ଆଗ୍ରହୀ ସହରର କେତେକ ବିଶିଷ୍ଟ ବ୍ୟକ୍ତିଙ୍କର ଗୋଟିଏ ବୈଠକ ଡକାଯାଉ । ସରକାରଙ୍କର ପ୍ରାକ୍ ପ୍ରାଥମିକ ବିଦ୍ୟାଳୟର ପାଠ୍ୟକ୍ରମ ପ୍ରସ୍ତୁତ ହୋଇଥିଲେ ହେଁ ତାହା ଏପର୍ଯ୍ୟନ୍ତ ଜନସାଧାରଣଙ୍କ ଦୃଷ୍ଟିଗୋଚର ନହୋଇଥିବାରୁ ଓ ସେହି ସିଲାବସ୍ ଅନୁସାରେ ସରକାର କୌଣସି କାର୍ଯ୍ୟ ଆରମ୍ଭ ନ କରିଥିବା ଦୃଷ୍ଟିରୁ ଏହି ସମିତି ବର୍ତ୍ତମାନ ପାଇଁ ଶିଶୁବିହାର ଗୁଡ଼ିକର ପାଠ୍ୟକ୍ରମ ନିର୍ଦ୍ଧାରିତ କରିବେ ବୋଲି ସ୍ଥିର ହୋଇଥିଲା ଓ ଶିକ୍ଷୟିତ୍ରୀମାନଙ୍କୁ ଆବଶ୍ୟକ ତାଲିମ ଦିଆଯିବାର ବ୍ୟବସ୍ଥା ହୋଇଥିଲା ।

ପୁଣି ସ୍ଥିର ହୋଇଥିଲା ଯେ, ଏ ଅନୁଷ୍ଠାନ ଏ ପର୍ଯ୍ୟନ୍ତ ସରକାରୀ ବେସରକାରୀ କୌଣସି ପ୍ରକାର ଅନୁଷ୍ଠାନରୁ ଆର୍ଥିକ ସାହାଯ୍ୟ ନପାଇଥିବା ଦୃଷ୍ଟିରୁ ଏହାର ଆବଶ୍ୟକ ଅର୍ଥ ସଂଗ୍ରହ ପାଇଁ ଏ ସମିତି ଯତ୍ନବାନ୍ ହେବେ । ସହରର ବିଭିନ୍ନ ସାହିରେ ଯେଉଁ ଶିଶୁବିହାର ଗଢ଼ିଉଠିବ ତାହାର ସ୍ଥାନୀୟ "ଶିଶୁବିହାର ସକ୍ରିୟ ସହଯୋଗ ସମିତି" ସହିତ ଏ ସମିତିର କି ପ୍ରକାର ସକ୍ରିୟ ସହଯୋଗ ରହିବ ତାହାର ଯୋଜନା କରିବ । ଇଂରାଜୀ, ଗୁଜରାଟ ଓ ବଙ୍ଗଳା ସାହିତ୍ୟରେ ଯେପରି ନର୍ସରୀ ସ୍କୁଲ ପାଇଁ ପ୍ରାଚୀନ ଗଳ୍ପ କବିତାର ସଚିତ୍ର ସଂଗ୍ରହ ଅଛି ଓଡ଼ିଆରେ ସେହିପରି ସାହିତ୍ୟ ସୃଷ୍ଟି କରିବା ପାଇଁ ଏ ସମିତି ଯତ୍ନବାନ୍ ହେବେ ।

ଅଗଷ୍ଟ ପନ୍ଦର ତାରିଖ ଦିନ ଶ୍ରୀ ବସନ୍ତ କୁମାରୀ ମହାନ୍ତି ଓ ପ୍ରଭାମୟୀ ଦାଶଙ୍କ ଉଦ୍ୟମରେ ରାଜାବଗିଚା ଲେବର୍ କଲୋନୀରେ ଗୋଟିଏ ଶିଶୁବିହାର ଆରମ୍ଭ ହୋଇଥିଲା ।

ଶିଶୁ, ଅଭିଭାବକ ଓ ଶିକ୍ଷକ ଏହି ତ୍ରିମୂର୍ତ୍ତିଙ୍କ ସହଯୋଗରେ ଶିକ୍ଷା କାମ ସଫଳ ହୋଇ-ପାରେ । ସେଥିପାଇଁ ଶିଶୁବିହାରକୁ ଆସୁଥିବା ଛାତ୍ରଛାତ୍ରୀଙ୍କ ଅଭିଭାବକଙ୍କ ସହିତ ସମ୍ପର୍କ ସ୍ଥାପନ କରିବା ଶିଶୁବିହାରର ଆଉ ଏକ କାର୍ଯ୍ୟକ୍ରମ ହେଲା । ଅଭିଭାବକମାନଙ୍କର ବୈଠକ

ଡକାଇ ଶିଶୁପାଳନ ଓ ଶିଶୁ ଶିକ୍ଷା ବିଷୟରେ ସେହି ବୈଠକରେ ଆଲୋଚନା ହେଲା ' ୧୯୬୨ ମସିହା ଶେଷକୁ ଚୀନ ଭାରତ ସଂଘର୍ଷ ହେଲା । ଦେଶରେ ଯୁଦ୍ଧ ଲାଗିଲେ ମହିଳାମାନଙ୍କର ଉତ୍ତରଦାୟିତ୍ୱ ଯେ ଅଧିକ ଲୋଡ଼ା ଏ ବିଷୟରେ ଆଲୋଚନା ହୋଇ ବାଖରାବାଦ ଓ ଆଖପାଖର ମହିଳା ଅଭିଭାବକମାନଙ୍କୁ ପ୍ରାଥମିକ ଚିକିତ୍ସା ଶିଖିବା ପାଇଁ ପ୍ରବର୍ତ୍ତାଇ ସେମାନଙ୍କୁ ଏହି ଶିକ୍ଷା ଶିଶୁବିହାରରେ ଦେବାପାଇଁ ବ୍ୟବସ୍ଥା ହେଲା । ଡାକ୍ତର ଗୁରୁପ୍ରସାଦ ମହାନ୍ତି ସେମାନଙ୍କୁ ଏହି ତାଲିମ ଦେଲେ । ଏହି ଅନୁଷ୍ଠାନ କିଛିଦିନ ପରେ ଲାଲବାଗରେ ଶିଶୁଭବନ ହତା ମଧ୍ୟରେ ଥିବା ଘରକୁ ଉଠିଯାଇଥିଲା ଓ ସେହିଠାରେ କାମ କରୁଛି । ଏଥିସହିତ ଅଙ୍ଗହୀନ ଶିଶୁଙ୍କୁ ଶିକ୍ଷା ଦେବାପାଇଁ ଗୋଟିଏ ବିଭାଗ ରଖାଯାଇଛି ।

## ୩୨ । ଆସାମ ସୀମାରେ

ଆମ ଦେଖାନ୍ତରେ ପୃଥିବୀରେ ଦୁଇଟି ମହାଯୁଦ୍ଧ ହୋଇଯାଇଥିଲେ ମଧ୍ୟ ଚୀନ ସହିତ ଭାରତର ଯେତେବେଳେ ଯୁଦ୍ଧ ଲାଗିଲା ସେତେବେଳେ ମନରେ ଆତଙ୍କ ସୃଷ୍ଟି ହେଲା । ଖବରକାଗଜରେ ପଢ଼ି ବା ଯୁଦ୍ଧ ବ୍ୟାପାରକୁ ମନେପକେଇ କେତେ କଳ୍ପନା ଜଳ୍ପନା ମନ ଭିତରେ ଗୁଳିଲା ।

ବେଡ଼ଛି (ଗୁଜରାଟ ରାଜ୍ୟ) ଠାରେ ହେଉଥିବା ଅଖିଳ ଭାରତ ସର୍ବୋଦୟ ସମ୍ମିଳନୀରେ ଯୋଗ ଦେବାକୁ ଗଲି । ମତେ ଜ୍ୱର ହେବାରୁ ଅଧିବେଶନରେ ଯୋଗ ଦେଇପାରିଲି ନାହିଁ । ଯେଉଁମାନେ ଯୋଗଦେଇଥିଲେ ତାଙ୍କଠାରୁ ଖବର ସଂଗ୍ରହ କଲି । ସେହି ସମ୍ମିଳନୀରେ ଶାନ୍ତିସେନାମାନଙ୍କୁ ଦୁଇଭାଗରେ ବିଭକ୍ତ କରାଗଲା । ଶାନ୍ତିସେନା ସଂକଳ୍ପ ପତ୍ରରେ ସର୍ତ୍ତ ଥିଲା ଯେ ଶାନ୍ତିସେନା ଆବଶ୍ୟକ ପଡ଼ିଲେ ଯେ କୌଣସି ସ୍ଥାନକୁ ଶାନ୍ତିରକ୍ଷା କରିବା ପାଇଁ ଯିବ । ଏଥର ତାକୁ କୋହଳ କରିଦେଇ ନିୟମ କରାଗଲା ଯେ ସମସ୍ତେ ଯେ କୌଣସି ସ୍ଥାନକୁ ଶାନ୍ତିରକ୍ଷା କାର୍ଯ୍ୟରେ ଯିବାକୁ ବାଧ୍ୟ ନୁହନ୍ତି । ବାହାରକୁ ଯେଉଁମାନେ ଯାଇ ନ ପାରିବେ ସେମାନେ ମଧ୍ୟ ଶାନ୍ତିସେନା ତାଲିକାରେ ରହିବେ । ଯେଉଁ ଶାନ୍ତିସେନା ଯେ କୌଣସି ସ୍ଥାନକୁ ଯିବାପାଇଁ ପ୍ରସ୍ତୁତ ସେମାନଙ୍କର ଦସ୍ତଖତ ସଂଗ୍ରହ କରାଗଲା । ମତେ ଜ୍ୱର ହେଉଥିବାରୁ ମୁଁ ସଭାସ୍ଥାନକୁ ଯାଉନଥିଲି । ପୂଜ୍ୟ ବାବୁଲାଲ ମିତ୍ତଲ ମୋ ପାଖକୁ ଖଣ୍ଡେ ଫରମ୍ ନେଇକରି ଆସିଲେ ଦସ୍ତଖତ ନେବାପାଇଁ । ବର୍ତ୍ତମାନ ମୋ ସ୍ୱାସ୍ଥ୍ୟ ଭଲ ନାହିଁ ବୋଲି ସାବଧାନ କରାଇଦେଲେ । ବାହାରକୁ ଯିବାର କଠିନତା କଥା ମଧ୍ୟ କହିଲେ । ମୁଁ କେବଳ ତାଙ୍କୁ କହିଲି, ଈଶ୍ୱରଙ୍କ ପରି କହିଛନ୍ତି "ସବ୍ ଭଲେ ହବେ"—ଏତିକି କହି ବାହାରକୁ କାମ କରିବାକୁ ଯିବା ଫରମ୍ ଦସ୍ତଖତ କରି ନିଜର ସମ୍ମତି ଦେଲି ।

୧୯୬୨ ଡିସେମ୍ବର ମାସ ୧୨ ତାରିଖରେ ଅ. ଭା ଶାନ୍ତିସେନା ମଣ୍ଡଳ ସଂଯୋଜକଙ୍କ ଠାରୁ ଟେଲିଗ୍ରାମ୍ ପାଇଲି ଯେ ଡିସେମ୍ବର ମାସ ୧୫ ତାରିଖରେ ଗୌହାଟୀରେ ପହଞ୍ଚିବାକୁ ହେବ । କେବଳ ମୁଁ ଏକା ନୁହଁ ସମସ୍ତେ ଚିନ୍ତାରେ ପଡ଼ିଲେ—ଏତେ ଅଳ୍ପ ସମୟରେ କିପରି ଯିବା ବ୍ୟବସ୍ଥା ହେବ ? ଏ କାମରେ ସମସ୍ତଙ୍କର ସାହାଯ୍ୟ ସହାନୁଭୂତି ମୁଁ ପାଇଲି । କଟକରୁ କଲିକତା ଯିବାପାଇଁ ପୁରୀ ଏକସ୍‌ପ୍ରେସ୍‌ରେ ଟିକଟ ଓ ରିଜର୍ଭେସନ ମିଳିଲା ଏବଂ କଲିକତାରୁ ଗୌହାଟୀ ଯିବା ପାଇଁ ଉଡ଼ାଜାହାଜ ଟିକେଟ ବ୍ୟବସ୍ଥା ମଧ୍ୟ ହେଲା । ବେଲା ପରିଜା ମୋ ସାଙ୍ଗରେ ଯିବା ଠିକ ହେଲା । ପୁରୀ ଏକ୍‌ସପ୍ରେସ୍‌ରେ ମୁଁ ଓ ବେଲା ବସିଲୁ । ଷ୍ଟେସନ୍‌କୁ ଯେଉଁମାନେ ବିଦାୟ ଦେବାକୁ ଆସିଥିଲେ ତାଙ୍କ ଭିତରୁ କେହି କେହି ଫେରିବା କଥା ପଚାରିବାରୁ ଜବାବ ପାଇଲେ "ସୁପ୍ରୀମ୍ କମାଣ୍ଡ ଯେଉଁଦିନ କହିବେ ସେଦିନ ଫେରିବ ।"

ସକାଳ ନଅଟା ସମୟରେ କଲିକତାରେ ପହଞ୍ଚି ଜଣେ ଆତ୍ମୀୟଙ୍କ ଘରେ ରହିଲୁ ଓ ଦଶଟା ବେଳେ ସେହି ଆତ୍ମୀୟ ଆମକୁ ଉଡ଼ାଜାହାଜରେ ବସେଇ ଦେଲେ । ସେଇଁ ଉଡ଼ାଜାହାଜ ପର୍ଯ୍ୟନ୍ତ ଯାଇଥିଲେ, ଯେଉଁ ପର୍ଯ୍ୟନ୍ତ ଦେଖାଯାଉଥାଏ ଦେଖିଲୁ ସେ ଠିଆ ହୋଇ ରୁମାଲ ହଲଉଛନ୍ତି । ଦୁଇଟାବେଳେ ଗୌହାଟୀରେ ପହଞ୍ଚିଲୁ । ଗୌହାଟୀରେ ଶ୍ରୀ ଅମଳପ୍ରଭା ବାଇଦେଓଙ୍କ ଶରଣିଆ ଆଶ୍ରମ ସର୍ବଜନବିଦିତ । କଟକରୁ ଟେଲିଗ୍ରାମରେ ଆମର ଗୌହାଟୀ ଉଡ଼ାଜାହାଜ ଘାଟିରେ ପହଞ୍ଚିବା ଖବର ଜଣାଇଦିଆଯାଇଥିଲା । ସେମାନେ ଟେଲିଗ୍ରାମ୍ ପାଇଥିଲେ ମଧ୍ୟ ସମୟ ସ୍ଥିର କରି ନ ପାରି କେହି ଆସି ନ ଥିଲେ । ଅମଳପ୍ରଭା ବାଇଦେଓ ଆଶ୍ରମରେ ନଥିଲେ । ଶକୁନ୍ତଳା ଚୌଧୁରୀ, ହେମ କାକତି ପ୍ରଭୃତି ଝିଅମାନେ ଆମ ରହିବା ବ୍ୟବସ୍ଥା କଲେ । ସମୀରଣ ବାଇଦେଓ ଜଣେ କଲେଜ ପ୍ରଫେସର୍, ସେ କଲେଜରୁ ଫେରି ପ୍ରତିଦିନ ଶରଣିଆ ଆଶ୍ରମକୁ ଆସନ୍ତି ଏବଂ ଆଶ୍ରମବାସୀଙ୍କ ପରି ଜଣେ ହୋଇ ସବୁ କାମ କରନ୍ତି । ତାଙ୍କ ସାଙ୍ଗରେ ଖୁବ୍ କଥାବାର୍ତ୍ତା ହେଲା । ଚମତ୍କାର ଲୋକଟିଏ ସେ ।

ଭୋର ପ୍ରାର୍ଥନାରେ ଯୋଗ ଦେବାକୁ ଯାଇ ଦେଖିଲି ଅମଳପ୍ରଭା ବାଇଦେଓ ଆସିଛନ୍ତି । ପ୍ରାର୍ଥନା ପରେ ତାଙ୍କ ସଙ୍ଗେ କଥାବାର୍ତ୍ତା ହୋଇ ସ୍ଥିର ହେଲା ଯେ ଆମେ ତେଜପୁର ଯିବୁ, ତେଜପୁରରେ ଅମତୁସ୍‌ସଲାମ ରହି କାମ କରୁଛନ୍ତି, ଆମେ ତାଙ୍କ ସାଙ୍ଗରେ କାମ କରିବୁ । ମୁଁ ଓ ବେଲା ସଙ୍ଗେ ସଙ୍ଗେ ଯିବାକୁ ପ୍ରସ୍ତୁତ ହେଲୁ ଏବଂ ସାତଟା ବେଳର ତେଜପୁର ବସ୍‌ରେ ଆମକୁ ଆଶ୍ରମର ଜଣେ ଝିଅ ବସେଇଦେଲେ ।

ଏହା ପୂର୍ବରୁ ମୁଁ ଥରେ ଆସାମ ଗସ୍ତରେ ଓ ଥରେ କସ୍ତୁରବା ଟ୍ରଷ୍ଟ ପ୍ରତିନିଧି ସଭାରେ ଯୋଗ ଦେବାପାଇଁ ଗୌହାଟୀର ଶରଣିଆ ଆଶ୍ରମକୁ ଆସିଥିଲି ଏବଂ ଅନ୍ୟ ସ୍ଥାନକୁ ମଧ୍ୟ ଯାଇଥିଲି ।

ଅମଲପ୍ରଭା ଦେବୀଙ୍କ ବାପା ଶ୍ରୀ ହରେକୃଷ୍ଣ ଦାସ୍ ଜଣେ ଅତି ଅମାୟିକ ଲୋକ । ଅମଲପ୍ରଭା ଦେବୀଙ୍କ ମା ହାଇସ୍କୁଲରେ ଶିକ୍ଷୟିତ୍ରୀ କାମ କରୁଥିଲେ ମଧ୍ୟ ସେ ଗାନ୍ଧୀ ବସ୍ତୁରକୁ ସର୍ବାନ୍ତଃକରଣରେ ମାନୁଥିଲେ ଓ ପାଳୁଥିଲେ । ଅମଲପ୍ରଭା ଦେବୀ ଏମ୍. ଏସ୍.ସି ପାସ୍ କରସାରିବା ପରେ ସେବାଗ୍ରାମରେ ଗାନ୍ଧୀ କାମର ଯେତେ ପ୍ରକାରର ତାଲିମ ଦିଆଯାଉଥିଲା ଯଥା— ବୁନିୟାଦୀ ଶିକ୍ଷା, ଖଦୀ ଗ୍ରାମୋଦ୍ୟୋଗ ଆଦି ସେ ସବୁ ତାଲିମ ନେଇଛନ୍ତି । ଆସାମ ପ୍ରଦେଶରେ ନଈତାଲିମ କାମକୁ ଅମଲପ୍ରଭା ଦେବୀ ହିଁ ମୁଖ୍ୟତଃ ଚଳାଉଥିଲେ । ଅମଲପ୍ରଭା ଦେବୀ ମାତ୍ର ଦୁଇଟି ଭଉଣୀ । ବଡ଼ ଭଉଣୀ ଉଲୋଭମା ଦେବୀ ଡାକ୍ତର୍ । ସେ ନିଜ ଘରସଂସାର କରିବା ସାଙ୍ଗରେ ଡାକ୍ତରୀ ବ୍ୟବସାୟ ମଧ୍ୟ କରନ୍ତି । ଆସାମରେ ଥିବା ଗୃହଗିରିମାନଙ୍କରେ ଯେଉଁସବୁ ଅର୍ଥନୈତିକ କାର୍ଯ୍ୟ ହୁଏ ତା'ର ଫଳ ସ୍ୱରୂପ ଅଳ୍ପବୟସ୍କା ସ୍ତ୍ରୀଲୋକମାନେ ଛୋଟ ଛୋଟ ସନ୍ତାନମାନଙ୍କୁ ନେଇ ଅମଲପ୍ରଭା ଦେବୀଙ୍କ ମା'ଙ୍କ ପାଖକୁ ଆସନ୍ତି । ଅମଲପ୍ରଭାଙ୍କ ମା ବିଶେଷକରି ଝିଅ ଶିଶୁମାନଙ୍କୁ ରଖନ୍ତି । ସ୍ୱାମୀ ସ୍ତ୍ରୀ ଉଭୟେ ମା ବାପଙ୍କ ସ୍ଥାନ ନେଇ ସେ ଶିଶୁକୁ ପାଳନ୍ତି, ପଢ଼ାନ୍ତି ଓ ବିଭା କରିଦିଅନ୍ତି । ମୁଁ ପୂର୍ବଥର ଆସାମରେ ଥିବା ସମୟରେ ଅମଲପ୍ରଭାଙ୍କ ବାପାଙ୍କ ସଙ୍ଗେ ସାକ୍ଷାତ କରିବାକୁ ଯାଇ ଦେଖିଲି ବୁଢ଼ା ଗୋଟିଏ ଚୌକିରେ ବସି ପିଲମାନଙ୍କର ଖେଳ ଓ କଳକଳିଆ ଦେଖୁଛନ୍ତି ଓ ମୃଦୁ ମୃଦୁ ହସୁଛନ୍ତି । କହିଲେ ମୋ ଘରେ ମୁଁ ଏକା ହେଲେ ମଧ୍ୟ ଲୋକଗହଳି ସବୁଦିନ ଲାଗିଥାଏ । ଏସବୁ ଅମଲଙ୍କର କାମ । ସେ ଯେଉଁ ଝିଅମାନଙ୍କୁ ପାଳିଥିଲେ, ସେମାନେ ମୋ ଘରକୁ ବାପଘର ବୋଲି ମନେକରି ବରାବର ଶାଶୁଘରୁ ଝିଅ ବାପଘରକୁ ଆସିବା ପରି ଆସନ୍ତି । କିଏ ଦକ୍ଷିଣ ଆଫ୍ରିକାରେ ଅଛି ତ କିଏ ପଞ୍ଜାବରେ ବା ଆଉ କିଏ ଦକ୍ଷିଣରେ ବାହା ହୋଇଛି । ଭଲ ପାତ୍ରମାନଙ୍କର ପଢ଼ାଶୁଣା, ଉତ୍ତମ ଚରିତ୍ର ଓ ସ୍ୱାସ୍ଥ୍ୟ ଦେଖି ଝିଅମାନଙ୍କୁ ବାହା ଦେଇଛନ୍ତି । କେବଳ ନୂଆ ଲୁଗା ଝିଅ ଓ ଜୁଆଁଇଁକୁ ପିନ୍ଧାଇ ବାହା ଦେଇଛନ୍ତି । ତାଛଡ଼ା ଆଉ କିଛି ଦିଆ ନିଆ ନାହିଁ । ଜୁଆଁଇଁମାନଙ୍କର ଆର୍ଥିକ ଅବସ୍ଥା ଭଲ ।

ଶରଣିଆ ଆଶ୍ରମର କାମ ଆଦିରେ ଅମଲପ୍ରଭା ତାଙ୍କ ପିତାଙ୍କର ସଞ୍ଚିତ ଧନ ଖରଚ କରି କାମ ଚଳାନ୍ତି । ପିତାଙ୍କର ନିର୍ଦ୍ଦେଶ ଥିଲି ଯେ ଗାନ୍ଧୀ କାମ ଅମଲପ୍ରଭା ଯାହା କରିବ ତାହା ପ୍ରଥମେ ପିତୃଅର୍ଜିତ ଧନରେ କରିବ । ଆସାମର ନାରୀକର୍ମୀମାନେ ପ୍ରାୟ ଅଧିକାଂଶ କୁମାରୀ । କର୍ମତତ୍ପରତା ଯେପରି ତାଙ୍କଠାରେ ପୂରିରହିଛି ।

ମୁ ଓ ବେଲା ବସ୍‌ରେ କିଛି ବାଟ ଆସିଲୁ ପରେ ନଈ ପାର ହେବାକୁ ପଡ଼ିଲା । ସେଠାରେ ଖୁବ ବଡ଼ ବଡ଼ ଡଙ୍ଗା (ପଟଡିନ)ରେ ଇଞ୍ଜିନ୍ ଲାଗିଛି । ତେଣୁ ଡଙ୍ଗା ଦ୍ରୁତ ଗତିରେ ଚାଲୁଥାଏ । ଅଳ୍ପ ସମୟରେ ନଈ ପାର ହୋଇଗଲୁ । ତା'ପରେ ପୁଣି ବସ୍‌ରେ ବସିଲୁ । ତେଜପୁରରେ ବସ୍‌ଷ୍ଟାଣ୍ଡକୁ ଲୋକ ଆସିଥିଲେ, ସେ ନେଇ ଆମକୁ ଅମରୁସ୍‌ସଲମଙ୍କ ପାଖରେ ପହଞ୍ଚାଇ ଦେଲେ । ଆମକୁ ଦେଖି ତ ବିବିଜୀ ମହାଖୁସି । କୁଣ୍ଢେଇ କରି କାନ୍ଦିଲେ ପ୍ରଥମେ । ତା'ପରେ ଗାନ୍ଧୀଜୀଙ୍କ କଥା ମନେପକେଇ କେତେ

କଥା କହିଲେ । ତାଙ୍କର ପରିଚୟ ଏଠି ଟିକିଏ ଦେବି । ପଞ୍ଜାବ ରାଜ୍ୟର ପାଣ୍ଡିଆଲ ଜିଲ୍ଲାରେ ଏକ ମୁସଲମାନ ପରିବାରରେ ଅମତୁସ୍‌ସଲାମ୍‌ଙ୍କର ଜନ୍ମ । ଆଠ ବର୍ଷ ବୟସ ପର୍ଯ୍ୟନ୍ତ ବିବିଜୀ ପାଠ ପଢ଼ୁଥିଲେ ଏବଂ ପର୍ଦ୍ଦାପ୍ରଥା ତାଙ୍କ ଉପରେ ଲାଗୁ ହୋଇ ନଥିଲା । ଘରର ଅନ୍ଦର ମହଲ ଓ ବାହାର ମହଲକୁ ସେ ଅବାଧରେ ଯାଇପାରୁଥିଲେ । ଆଠବର୍ଷ ପୂରିଯିବାରୁ ତାଙ୍କ ଉପରେ ମୁରବିମାନଙ୍କର କଟକଣା ଜାରିହେଲା ଯେ ସେ ଆଉ ପର୍ଦ୍ଦା ବାହାରକୁ ଯାଇପାରିବେ ନାହିଁ । କାହିଁକି ଯିବ ନାହିଁ ବୋଲି ବିବିଜୀ କାରଣ ପଚାରିଲେ ଜବାବ ନାହିଁ । ବିବିଜୀ ପର୍ଦ୍ଦା ପ୍ରଥାକୁ ନମାନିବାରୁ ସେ ଅମାନିଆ ଝିଅଙ୍କ ଭିତରେ ପରିଗଣିତ ହେଲେ । ବିବାହ ବୟସ ହେବାରୁ ବିବିଜୀଙ୍କ ପାଇଁ ବାହାଘର ପ୍ରସ୍ତାବ ଆସିଲା । ବିବିଜୀ ଲଜ୍ଜାସଙ୍କୋଚକୁ ଏଡ଼ିଦେଇ ସିଧା କହିଦେଲେ ଯେ ସେ ବାହା ହେବେ ନାହିଁ । ଏ କଥା ତାଙ୍କ ପରିବାରର ସମସ୍ତଙ୍କ ପାଇଁ ଅପ୍ରତ୍ୟାଶିତ । ଯେତେ ବୁଝାସୁଝା ଅନୁରୋଧ ଉପରୋଧ ସବୁ କାଟିଦେଇ ବିବିଜୀଙ୍କର ତ ଗୋଟିଏ କଥା ଯେ ସେ ବାହା ହେବେ ନାହିଁ । ତାଙ୍କର ଗାନ୍ଧୀଜୀଙ୍କ ପାଖକୁ ଯିବା ସ୍ଥିର ହେଲା । ସେ ସେହିଦିନୁ ଗାନ୍ଧୀଜୀଙ୍କ ପାଖରେ ତାଙ୍କ କାମ କରୁଥିଲେ । ଗାନ୍ଧୀଜୀଙ୍କ ସହିତ ବିବିଜୀ ନୂଆଖାଲିରେ ମଧ୍ୟ ବୁଲିଥିଲେ । ନୂଆଖାଲିରେ ଗାନ୍ଧୀଜୀଙ୍କ ସହିତ ଅମତୁସ୍‌ସଲାମ୍, ଆଭା ଗାନ୍ଧୀ ଓ ମନୁ ଗାନ୍ଧୀ ଥିଲେ । ବିବିଜୀ କହୁଥିଲେ ଯେ ଦିନେ ଦିନେ ଅନ୍ଧାର ରାତିରେ ଯଦି ଦରକାର ପଡ଼େ ଗାନ୍ଧୀଜୀ ଏମାନଙ୍କୁ କହନ୍ତି ଲଣ୍ଠନ ଧରି ଅନ୍ୟ ଗାଁକୁ ଯିବାପାଇଁ । ଯିବାବେଳେ କହନ୍ତି ରଘୁପତି ରାଘବ ବୋଲି ବୋଲି ଚାଲିଯିବ, ଡର କିଛି ନାହିଁ । ଭିତରେ ଡରଗୁଡ଼ିକୁ ରଖି ମୁହଁରେ ରାମନାମ ନେଇ ଏମାନେ ଜଣେ ଲେଖାଁ ଅନ୍ଧାର ରାତିରେ ଗୋଟିଏ ଗୋଟିଏ ଗାଁକୁ ଯାଆନ୍ତି । ଗାନ୍ଧୀଜୀଙ୍କ କଥା ମାନି ଏହିପରି ବହୁତ କାମ ନିର୍ବିକାର ଓ ନିର୍ଭୀକତାର ସହିତ ଏ ଝିଅଜଣ କରିଛନ୍ତି । ଗାନ୍ଧୀଜୀଙ୍କର ମହାପ୍ରୟାଣ ପରେ ବିବିଜୀ ନିଜକୁ ନିଃସହାୟ ବୋଧକଲେ । ମାତ୍ର ସେ ଖୁବ ବେଶିଦିନ ରହିଲେ ନାହିଁ । ଶରଣାର୍ଥୀଙ୍କୁ ଥଇଥାନ କରିବା କାମରେ ଲାଗିଲେ । ଶରଣାର୍ଥୀଙ୍କୁ ଥଇଥାନ କରିବା ସଙ୍ଗେ ସଙ୍ଗେ ତାଙ୍କୁ କାମରେ ଲଗାଇବାର ପ୍ରଶ୍ନ ଆସିଲା । ବିବିଜୀ ଖଦି କମିଶନ୍ ସାହାଯ୍ୟରେ ପଞ୍ଜାବ ରାଜ୍ୟର ରାଜପୁରାଠାରେ ଗୋଟିଏ ଗ୍ରାମୋଦ୍ୟୋଗ କେନ୍ଦ୍ର ଆରମ୍ଭ କଲେ । ସେଠାରେ ସବୁପ୍ରକାରର ଗ୍ରାମୋଦ୍ୟୋଗ କାମ ଚାଲୁଥାଏ । ଶରଣାର୍ଥୀମାନେ ସେଥିରେ କାମରେ ଲାଗିଲେ । ଯେଉଁମାନଙ୍କର ତାଲିମର ଆବଶ୍ୟକତା ଥିଲା ସେମାନେ ତାଲିମ ନେଲେ । ରାଜପୁରାର ସେ ଗ୍ରାମୋଦ୍ୟୋଗ କାମ ଯେ କେତେ ବଡ଼ ବ୍ୟାପାର ତାହା ନ ଦେଖିଲେ ଜାଣି ହେବ ନାହିଁ । ବିବିଜୀ, ତାଙ୍କ ପୁରପ୍ରଥମ କର୍ମୀ ସୁଶୀଲ ସାହାଯ୍ୟରେ ଗ୍ରାମୋଦ୍ୟୋଗ କାମ ଚଳାଇବାରେ ଲାଗିଲେ । ତେଜପୁରରେ ଥିବାବେଳେ ମତେ କହୁଥିଲେ—"ମା, ଗାନ୍ଧୀଜୀଙ୍କ କାମସବୁ ରାଜପୁରାରେ କରିଲି । କେବଳ ସେବାଗ୍ରାମରେ ଥିବା ଗାନ୍ଧୀକୁଟୀ ଓ ପ୍ରାର୍ଥନା ସ୍ଥାନ ପରି କୁଟୀର ଓ ସ୍ଥାନ କରି ପାରିନାହିଁ । ତାହା କରିବାକୁ ଚାହିଁବାର ଉଦ୍ଦେଶ୍ୟ ସେହି ସ୍ଥାନରେ ବସି ବସି ଅନ୍ତରର ସ୍ଥିତି ମନେକରିବି ଓ ଭଗବାନଙ୍କର ନାମ ନେବି ।"

ତେଜପୁରରେ ବିବଜୀଙ୍କ ସାଙ୍ଗରେ ଆମେ ରହିଲୁ । ସେ ଘରଟି ବେଶ୍ ବଡ଼ । ଗୁଜୁରାଟର ଦୁଇଜଣ ଲୋକସଭା ସଦସ୍ୟ ଶାନ୍ତିକାର୍ଯ୍ୟ କରିବାପାଇଁ ସେଠି ଥାଆନ୍ତି । ଆମେ ଥିବା ସମୟରେ ଜାପାନର ବୌଦ୍ଧ ସନ୍ୟାସୀ ଫୁଜି ଗୁରୁଜୀ ଓ ଆଉ ତିନି ଜଣ ସନ୍ନ୍ୟାସୀ ମଧ୍ୟ ସେଠାରେ ରହିଲେ । ମୋର କାର୍ଯ୍ୟକ୍ରମ ବିବଜୀ ପ୍ରସ୍ତୁତ କରିଦେଲେ । ପ୍ରତିଦିନ ସନ୍ଧ୍ୟା ବେଳେ ଆଉ ଦୁଇ ତିନିଜଣ ଭଦ୍ରଲୋକଙ୍କ ସାଙ୍ଗରେ ମୁଁ ଓ ବେଲା ଗୋଟିଏ ଗୋଟିଏ ମଫସଲ ସଭାକୁ ଯାଉ । ସେ ଭଦ୍ରଲୋକମାନେ ଆସାମୀ ଭାଷାରେ ଆମ ପରିଚୟ ଦେଇ ତାଙ୍କର ବକ୍ତବ୍ୟ କହନ୍ତି । ମୁଁ କେଉଁଠି ବଙ୍ଗଳାଭାଷା ଓ କେଉଁଠି ଓଡ଼ିଆ ଭାଷାରେ କୁହେ । ମୁଁ ପ୍ରଥମେ ଓଡ଼ିଆରେ ଓ ବଙ୍ଗଳାରେ ଗୋଟିଏ ପଦ କହି ଲୋକମାନଙ୍କୁ ମତ ପଚାରେ । ସେମାନେ ବଙ୍ଗଳାରେ ବା ଓଡ଼ିଆରେ ଯେଉଁ ଭାଷାରେ କହିବାକୁ କହନ୍ତି ସେ ଭାଷାରେ କୁହେ । ଆସାମୀ ଭାଷାରେ ଅନ୍ୟମାନେ ଯେଉଁ ଭାଷଣ ଦିଅନ୍ତି ତାହା ମୁଁ ଅନେକ ପରିମାଣରେ ବୁଝିପାରେ । ମୋ ସାଙ୍ଗରେ ଯେଉଁମାନେ ଯାଉଥାନ୍ତି ସେମାନେ ମୋ ପରିଚୟ ଦେବା ସମୟରେ ସାଧାରଣତଃ ସବୁ ଜାଗାରେ ଏତିକ ନିଶ୍ଚୟ କହନ୍ତି ଯେ ଏ ରମାଦେବୀଙ୍କର ବୟସ ଷାଠିଏରୁ ବେଶି । ବର୍ତ୍ତମାନ ଏ ଶୀତଦିନେ ବୁଢ଼ୀଲୋକମାନେ ନାତିନାତୁଣୀଙ୍କୁ ଧରି ନିଆଁ ପୁଇଁବାର କଥା, ମାତ୍ର ସେ ତାହା ନ କରି ଏତେ ଦୂରରୁ ଆସିଛନ୍ତି ଶାନ୍ତିକାମ କରିବା ପାଇଁ । ତେଣୁ କେହି ସମୟ ନଷ୍ଟ ନ କରି କାମରେ ଲାଗିବା ଦରକାର । ସନ୍ଧ୍ୟାରେ ଦୂର ଗାଁକୁ ଜୀପ୍‌ରେ ଯାଇ ସଭା କରୁଥାଏ । ଦିନରେ ପଡ଼ା ପ୍ରତିବେଶୀଙ୍କ ସଙ୍ଗେ ପରିଚୟ କିମ୍ବା ବିବଜୀଙ୍କ ସାଙ୍ଗରେ ଅଫିସରମାନଙ୍କ ଘରକୁ ଓ ସୈନ୍ୟଶ୍ରେଣୀକୁ ଯିବା କାମ ହୁଏ । ସେଠାରେ ଭାରତ ସରକାରଙ୍କର ସବୁଠୁ ବଡ଼ ସୈନ୍ୟଶ୍ରେଣୀ ମିସାମରି ଯାଇ ଦେଖିଲି । ସେ ତ ଆଶ୍ଚର୍ଯ୍ୟ କାଣ୍ଡ । ମେଜର୍, କାପ୍ଟେନ୍, ବ୍ରିଗେଡ଼ିଅର୍ ପ୍ରଭୃତି ଅଫିସର୍‌ମାନଙ୍କର ରହିବା ଘର ଭିନ୍ନ ସ୍ତରର ଅର୍ଥାତ୍ ଆସବାବପତ୍ର, ଫୁଲକ୍ଷେତ୍ର ଆଦି ସାଜସଜ୍ଜା ଅଫିସରଙ୍କ ମାନବଡ଼ ପଦ ଅନୁସାରେ । ସୈନ୍ୟମାନଙ୍କ ରହିବା ଘର ଲମ୍ବା ସାହାଲି । ବିବଜୀଙ୍କ ଯୋଗୁଁ ଅଫିସରମାନଙ୍କ ସହିତ ପରିଚୟ ହେଲା, ଘନିଷ୍ଠତା ମଧ୍ୟ ହେଲା । ଜଣେ ବ୍ରିଗେଡ଼ିୟର ମୁଁ ମୈତ୍ରୀ ଆଶ୍ରମରେ ରହିଥିବା ବେଳେ ମିଳାବାଡ଼ି ସୈନ୍ୟଶ୍ରେଣୀରୁ ଆସିଥିଲେ । ସେ ମୋ ସାଙ୍ଗରେ ଦେଖାକରିବାକୁ ମୈତ୍ରୀ ଆଶ୍ରମକୁ * ଆସିଲେ । ସେ ବିନୋବାଜୀଙ୍କ ପାଖରେ ମତେ ଦେଖିଥିବା କଥା କହିଲେ ଏବଂ ବିନୋବାଜୀଙ୍କ ବିଚାର କିପରି ତାଙ୍କ ପ୍ରାଣକୁ ସ୍ପର୍ଶ କରିଛି ସେ କଥା ମଧ୍ୟ କହିଲେ ।

ମିସାମାରି ସୈନ୍ୟଶ୍ରେଣୀର ଅଫିସରଙ୍କୁ ମୁଁ ପଚାରିଲି ଯେ କେଉଁ ପ୍ରଦେଶରୁ ଅଧିକ ସଂଖ୍ୟକ ସୈନ୍ୟ ଏବଂ କେଉଁଠୁ କମ୍ ସଂଖ୍ୟାରେ ସୈନ୍ୟବାହିନୀକୁ ଆସିଛନ୍ତି । ସେ କହିଲେ ସବୁଠୁ ବେଶି ପଞ୍ଜାବ, ସବୁଠୁଁ କମ୍ ଓଡ଼ିଶା ଓ ବଙ୍ଗଳା । ଏ ସବୁ କଥାବାର୍ତ୍ତା ପରେ ସେ ମତେ କହିଲେ, "ଆପଣ ଓଡ଼ିଶାରୁ ଆସିଥିବା ଲୋକଙ୍କ ସଙ୍ଗେ ଯଦି କଥାବାର୍ତ୍ତା କରିବାକୁ

* ମୈତ୍ରୀ ଆଶ୍ରମ ଆସାମର ଲକ୍ଷ୍ମୀପୁର ଜିଲ୍ଲାରେ ।

ଗ୍ରହାନ୍ତି ତ ମୁଁ ଡକେଇଦେବ ।" ତାଙ୍କୁ ଧନ୍ୟବାଦ ଜଣାଇ ସେମାନଙ୍କୁ ଡାକିବାକୁ କହିଲି । ସଙ୍ଗେ ସଙ୍ଗେ ଓଡ଼ିଶାର ସୈନ୍ୟମାନେ ଏକାଠି ହେଲେ ଓ ମୁଁ ତାଙ୍କ ସହିତ କଥାବାର୍ତ୍ତା କରିଲି ।

ପଞ୍ଜାବର ସୈନ୍ୟ ଓ ଡଳଆ ଅଫିସରମାନେ ବବଜୀଙ୍କୁ କହିଲେ ଯେ ସେମାନେ 'ଗ୍ରନ୍ଥ-ସାହେବ'ଙ୍କ ପୂଜା କରିବାକୁ ଗ୍ରହାନ୍ତି । ଆମେ ଯାଇଁ ବଡ଼ ଅଫିସରଙ୍କଠାରୁ ଅନୁମତି ଆଣିଲୁ । ବବଜୀଙ୍କର ଆନନ୍ଦ ଦେଖେ କିଏ ! ସେମାନଙ୍କୁ ପଗ୍ଚରି ତାଲିକା କଲେ କ'ଣ କ'ଣ ଜିନିଷ ଦରକାର । ସେମାନେ ତାଲିକା ଦେଲେ ଓ ଆମେ ନେଇକରି ଆସିଲୁ । ବବଜୀ ସମସ୍ତ ଜିନିଷ ଯୋଗାଡ଼ କରି ସେଠାକୁ ପଠାଇଲେ । ବଙ୍ଗାଳୀ ଓ ଓଡ଼ିଆ ସୈନ୍ୟମାନେ ତାଙ୍କର କ'ଣ ପୂଜା କରିଲେ, ତାଙ୍କ ପାଇଁ ମଧ୍ୟ ବବଜୀ ପୂଜା ସରଞ୍ଜାମ ପଠାଇଲେ ।

ଏ ସବୁ କରୁ କରୁ ଦିନେ ବବଜୀଙ୍କ ମୁଣ୍ଡରେ ପଶିଲା ଯେ ଜବାହରଲାଲଜୀଙ୍କର ରିଷ୍ଟ ଅଛି, ତାକୁ ଖଣ୍ଡନ କରିବାପାଇଁ ମହାମୃତ୍ୟୁଞ୍ଜୟ ଯଜ୍ଞ କରାଇବାକୁ ହେବ । ମୋ ପରାମର୍ଶ ପୁଛିବାରୁ ମୁଁ କହିଲି—ମୁଁ ତ ଏସବୁ କରେ ନାହିଁ, ତା'ଛଡ଼ା ମହାମୃତ୍ୟୁଞ୍ଜୟ ଯଜ୍ଞ ବିଷୟରେ ମୁଁ କିଛି ଜାଣେ ନାହିଁ । ସେ ମୋଠାରୁ କିଛି ସାହାଯ୍ୟ ପାଇବେ ନାହିଁ ଜାଣି ଟିକିଏ ଦୁଃଖିତ ହେଲେ ଏବଂ ମତେ କହିଲେ—"ମୁଁ ଦିଲ୍ଲୀ ଯାଉଛି, ସେଠି ରେହାନାଜୀଙ୍କ ସଙ୍ଗେ ପରାମର୍ଶ କରିଆସିବି ।" ବବଜୀ ଯାହା ଭାବିବେ ତାହା ସଙ୍ଗେ ସଙ୍ଗେ କାର୍ଯ୍ୟକାରୀ କରିବେ, ତେଣୁ ତାଙ୍କ ମନ ମହାମୃତ୍ୟୁଞ୍ଜୟ ଯଜ୍ଞରେ ରହିଲା । ସେ ଦିଲ୍ଲୀ ଯାଇ ରେହାନାଜୀଙ୍କ ସଙ୍ଗେ କଥାବାର୍ତ୍ତା କରି ଓ ପଣ୍ଡିତଜୀ ଏବଂ ଇନ୍ଦିରାଙ୍କ ସଙ୍ଗେ ଦେଖାକରି ଆସିଲେ । ବାପାଙ୍କ ପାଇଁ ବବଜୀ ଯଜ୍ଞ କରୁଛନ୍ତି ଶୁଣି ଇନ୍ଦିରା ଖୁବ୍ ଖୁସିହୋଇ ବବଜୀଙ୍କୁ ଆଦର କରିଲେ । ମହା-ସମାରୋହରେ ମହାମୃତ୍ୟୁଞ୍ଜୟ ଯଜ୍ଞର କାମ ଚାଲିଲା । ବବଜୀଙ୍କର କୌଣସି କାମ ଛୋଟ ଆକାରରେ ହୁଏ ନାହିଁ । ତେଣୁ ଏ ଯଜ୍ଞ ପଣ୍ଡିତଜୀଙ୍କର ରିଷ୍ଟଖଣ୍ଡନ ଉଦ୍ଦେଶ୍ୟରେ ହେଉ-ଥିବାରୁ ତାର ସମାରୋହର ସୀମା ନ ଥିଲା ।

ମୁଁ ପୂର୍ବରୁ କେବେ ମହାମୃତ୍ୟୁଞ୍ଜୟ ଯଜ୍ଞ ଦେଖି ନ ଥିଲେ ମଧ୍ୟ ଯଜ୍ଞ ଦେଖିବାକୁ ଗଲି ନାହିଁ । ଗ୍ରନ୍ଥସାହେବଙ୍କ ପୂଜାଦିନ ଆମକୁ ନିମନ୍ତ୍ରଣ କରିଥିଲେ ମଧ୍ୟ ଅନ୍ୟ କାମ ଥିବାରୁ ଯାଇ ନ ଥିଲି । ଯେଉଁଦିନ ସଭାକୁ ଯିବାର ନ ଥାଏ ସେଦିନ ସନ୍ଧ୍ୟା ପରେ ଗୁଜୁରାଟର ଏମ୍. ପି. ଦୁଇଜଣଙ୍କ ସଙ୍ଗେ କଥାବାର୍ତ୍ତା ହୁଏ । ସେମାନେ ତାଙ୍କ ନିର୍ବାଚନମଣ୍ଡଳୀରେ ଯେଉଁ ପ୍ରକାର କାମ କରିଛନ୍ତି ବୋଲି କହିଲେ ତାହା ଶୁଣି ମୁଁ ଅବାକ୍ ହେଲି । କୃଷି ପାଇଁ କି ସୁନ୍ଦର ପାଣିର ବ୍ୟବସ୍ଥା ଆଉ କେତେ ପ୍ରକାରର ସଂଗଠନ କାମ ସେମାନେ ପଗ୍ଚରନ୍ତି ଓଡ଼ିଶାର ଏମ୍. ପି. ମାନେ କି ଧରଣର କାମ କରନ୍ତି ? ମୁଁ ଆଉ କହିବି କଣ ?

ବୌଦ୍ଧ ସନ୍ନ୍ୟାସୀମାନଙ୍କ ଭିତରୁ କେବଳ ଯାହା ସୁଗେଇଙ୍କ ସଙ୍ଗେ କଥାବାର୍ତ୍ତା ଓ ପରିଚୟ ହୁଏ । ସେମାନେ ପାଞ୍ଚ ଛଅଦିନ ରହିବା ପରେ ସେଠୁ ଚାଲିଗଲେ । ଇତି

ମଧ୍ୟରେ ଭିତରରୁ ଶରଣାର୍ଥୀମାନେ ଦଳ ଦଳ ହୋଇ ଆସିବାକୁ ଲାଗିଲେ । ସେ ତ ଗୋଟିଏ ଦୃଶ୍ୟ । ପିଲାଙ୍କୁ ପିଠିରେ ବାନ୍ଧିଦେଇ, ଜିନିଷ ପତ୍ର ଗଣ୍ଠିଲିକୁ ମୁଣ୍ଡରେ ଥୋଇ ଦଳ ଦଳ ହୋଇ ଆସିଗଲେ । ସ୍ଥାନୀୟ ଭଦ୍ରମହିଳାମାନଙ୍କ ସାଙ୍ଗରେ ଆମେ ମିଶି ସେମାନଙ୍କର ରହିବା ବ୍ୟବସ୍ଥା ଆରମ୍ଭ କରାଇବାକୁ ଲାଗିଲୁ । ଇତିମଧ୍ୟରେ ବାବାଜୀ ମତେ କଲେକ୍ଟର, ଏସ୍.ପି., ସିଭିଲ୍‌ସର୍ଜନ ପ୍ରଭୃତିଙ୍କ ସହିତ ପରିଚୟ କରାଇଦେଇଥିବାରୁ ମୁଁ ସେମାନଙ୍କ ସଙ୍ଗେ ଦେଖାକରି ତାଙ୍କଦ୍ୱାରା ଯାହା କାମ କରାଇବା ଦରକାର ତାହା କରାଇନେଉଥାଏ ।

ଇତି ମଧ୍ୟରେ ତେଜପୁରର କାହାଣୀ ଶୁଣିନେଇଥାଏ । ଚୀନ ସୈନ୍ୟ ଯେଉଁଦିନ ବମଡ଼ିଲା ପାରହୋଇ ମାଡ଼ିଆସିଲେ ସେ ଦିନ ବଡ଼ ବଡ଼ ଅଫିସରମାନେ ହେଡକ୍ୱାର୍ଟର ଛାଡ଼ି ପଳାଇବାଙ୍କ ପରି ପଳାଇଲେ । ସାଧାରଣ ଲୋକମାନେ ବି ଯାଇ ନଦୀକୂଳରେ ଜମା ହେଲେ । ବୋଟ୍ ପ୍ରଥମେ ଅଫିସର୍ ଓ ତାଙ୍କ ଲୋକଙ୍କୁ ପାରି କରାଇବାରେ ଲାଗିଲେ, ସାଧାରଣ ଲୋକେ ଯାଇ ନ ପାରି ପଡ଼ିରହିଲେ । କସ୍ତୁରବା ଟ୍ରଷ୍ଟର କେନ୍ଦ୍ର ଯେଉଁ ଗାଁରେ ଥିଲା, ସେ ଗାଁର ଲୋକେ ଘରେ ରହିଥିବାର ଦେଖାଗଲା । ସେ ଲୋକମାନେ କହିଲେ ଯେ କସ୍ତୁରବା କର୍ମୀ ତାଙ୍କୁ ଘର ଛାଡ଼ି ପଳେଇ ନ ଯିବାକୁ ଏବଂ ଚୀନା ସୈନ୍ୟମାନେ ଗାଁ ଭିତରକୁ ଆସିଲେ କ'ଣ କ'ଣ କରିବାକୁ ହେବ ତାହା ତାଙ୍କୁ ବୁଝାଇ ଦେଇଥିଲେ । ସେମାନେ ତାଙ୍କ ପରାମର୍ଶ ମାନି ରହିଥାନ୍ତି ।

ଚୀନ ସୈନ୍ୟ ମାଡ଼ିଆସୁଛନ୍ତି ବୋଲି ଯେଉଁଦିନ ରାତିରେ ଲକ୍ଷ ଲକ୍ଷ ଟଙ୍କାର ନୋଟ୍ ସବୁ ପୋଡ଼ିଦିଆଗଲା, ଆଉସବୁ ଯାହା ସତର୍କତା ଅବଲମ୍ବନ କରିବାକୁ ହେବ ତାହା କରାଗଲା, ସେଦିନ ଯୁଦ୍ଧ ପରିଚାଳନାର ପ୍ରଧାନ ସେନାପତି ତେଜପୁରରେ ଥାନ୍ତି । ତାଙ୍କୁ ଖବରଦିଆଗଲା ଯେ ଚୀନ ସୈନ୍ୟବାହିନୀ ବମଡ଼ିଲା ପାର ହୋଇ ବାଟରେ ଭାରତର ପେଟ୍ରୋଲ ଟାଙ୍କି ପ୍ରଭୃତି ଯୁଦ୍ଧ ପାଇଁ ରଖାଯାଇଥିବା ସବୁ ସରଞ୍ଜାମ ଦଖଲ କରିନେଇଛନ୍ତି । ଏ ଖବର ପାଇବା ସଙ୍ଗେ ପ୍ରଧାନ ସେନାପତି ବିଛଣାରୁ ଉଠିଲେ ନାହିଁ — କହିଲେ ସକାଳ ହେଉ ଦେଖାଯିବ । ମୁଁ ତେଜପୁରରେ ରହିବା ସମୟରେ ଶ୍ରୀ ଜୟପ୍ରକାଶ ନାରାୟଣ ଓ ଶ୍ରୀ ନାରାୟଣ ଦେଶାଇ ତେଜପୁରକୁ ଆସିଲେ । ତେଜପୁର ରହଣି ମଧ୍ୟରେ ସେ ଦୁହେଁ ନେଫାର ଦୁଇଟି ସ୍ଥାନକୁ ଯାଇଥିଲେ । ନାରାୟଣଠାରୁ ସେଠା ଖବର ଶୁଣିଲି । ଭାରତ ସ୍ୱାଧୀନ ହେବା ପରେ ଭାରତ ସରକାରଙ୍କ ତରଫରୁ ନେଫାରେ କାମ କରିବାପାଇଁ ଅଫିସର ନିଯୁକ୍ତି ଓ ଅନ୍ୟ ବ୍ୟବସ୍ଥା ହୋଇଥିଲେ ମଧ୍ୟ ସେମାନେ ନେଫାରେ ପ୍ରକୃତରେ ରହିନାହାନ୍ତି କି ସେଠାରେ କିଛି କାମ କରିନାହାନ୍ତି ।

ବାବାଜୀଙ୍କୁ ମୁଁ କହିଲି ଯେ ଯେଉଁଠି ସୈନ୍ୟଛାଉଣୀ ଥାଏ ସେଠି ଓ ତା' ପାଖ ଗାଁରେ ସୈନ୍ୟମାନଙ୍କର ଉପଦ୍ରବ ଗାଁବାଲାଙ୍କୁ ଭୋଗିବାକୁ ପଡ଼େ ବୋଲି ମୁଁ ଶୁଣିଛି । ଏଠାରେ ତ ସୈନ୍ୟଛାଉଣୀ ଅଛି । ସୈନ୍ୟମାନଙ୍କର କି ପ୍ରକାର ଉପଦ୍ରବ ହେଉଛି ତାହା ବୁଝିଲେ

ହୁଅନ୍ତି । ସେ ଉଦ୍ଦେଶ୍ୟରେ କେତେଖଣ୍ଡ ଗାଁକୁ ଯାଇ ବୁଝିଲୁ ଯେ ସୈନ୍ୟମାନଙ୍କର ଉପଦ୍ରବ ଅଛି । ମୁଁ ଓ ବାବାଜୀ ସବୁ ଘଟଣା ଅଫିସରଙ୍କୁ ଜଣାଇଲୁ । ପରେ ଖବର ନେଇ ଜାଣିଲୁ ଯେ ସେସବୁ ଉପଦ୍ରବ ବନ୍ଦହୋଇଯାଇଛି ।

ଦିନେ ବାବାଜୀ କହିଲେ, "ମା, ଚାଲ ହସ୍‌ପିଟାଲକୁ ଯିବା, ସେଠାକୁ ଆହତ ସୈନ୍ୟମାନେ ଆସିଛନ୍ତି ।" ମୁଁ କହିଲି, "ଖାଲି ହାତରେ କେମିତି ଯିବା ? ସେମାନଙ୍କ ପାଇଁ କିଛି ନେଇ କରି ଯିବା ।" କ'ଣ ନେବା ସେ ହେଲା ପ୍ରଶ୍ନ । ମତେ ହଠାତ୍ ବୁଦ୍ଧି ଦିଶିଲା । ମୁଁ କହିଲି ଯେ, ଆହତ ସୈନ୍ୟଙ୍କ ଭିତରେ ପଞ୍ଜାବୀ ସୈନ୍ୟ ତ ଥିବେ ସେମାନଙ୍କ ପାଇଁ ପଗଡ଼ି କିଣା ନେଲେ ସେମାନେ ଖୁସି ହେବେ—କାରଣ ସେମାନଙ୍କର ତ ପଗଡ଼ି ନ ଥିବ । ଅନେକ ପ୍ରକାର ଜିନିଷ ନେଇ ବାବାଜୀଙ୍କ ସାଙ୍ଗରେ ମୁଁ ଓ ଆଉ କେତେଜଣ ହସପିଟାଲକୁ ଗଲୁ । ସେଠା ଦୃଶ୍ୟ ଦେଖି ମୁଁ ତ ସ୍ତମ୍ଭୀଭୂତ ହୋଇଗଲି । କେତେ ଲୋକଙ୍କର ହାତ ଗୋଡ଼ କଟିଯାଇଛି । କେତେଜଙ୍କର କହୁଣି ଯାଏ ଓ ଗୋଡ଼ର ଆଣ୍ଠୁ ତଳ ପର୍ଯ୍ୟନ୍ତ ଆଙ୍ଗୁଠିଗୁଡ଼ାକ ବୋଲା ହେଲାପରି କଳା ପଡ଼ି ଯାଇଛି । ପଚାରିବାରୁ କହିଲେ—ଶୀତଲୁଗା ପ୍ରୟୋଜନ ଅନୁସାରେ ନଥିବାରୁ ବରଫ ପଡ଼ି ଗୋଡ଼ହାତ କଳା ପଡ଼ିଗଲା । ବ୍ୟସ୍ତ ଚତ୍ମକାର । ଜଣେ ଜଣେ ପାଗଳଙ୍କ ପରି କେବଳ 'ଆମ ମେଜର୍ କାହାନ୍ତି' ବୋଲି ପାଟିକରି ପଚାରୁଥାନ୍ତି । ମେଜର୍ ତମର ଅଛନ୍ତି, ତମ ସଙ୍ଗେ ପୁଣି ଦେଖାହେବ ଇତ୍ୟାଦି ବୁଝାଇ କହିଲେ ବି ସେମାନେ ଶୁଣିବା ଅବସ୍ଥାରେ ନ ଥାନ୍ତି । ତାଙ୍କ କଥା କହୁଯାଉଥାନ୍ତି ଯେ, ସେ ମେଜର୍‌ଙ୍କୁ କେପରି ଭଲପାଉଥିଲେ, ଭକ୍ତି କରୁଥିଲେ, କଥା ମାନୁ ଥିଲେ, ବ୍ୟାକୁଳ କଣ୍ଠରେ ସେ ସବୁର ବର୍ଣ୍ଣନା କରୁଥାନ୍ତି ତ ପୁଣି ମେଜର୍ କେପରି ତାଙ୍କୁ ଭଲପାଉଥାନ୍ତି, ସ୍ନେହ କରନ୍ତି ତା'ର ଉଦାହରଣ ଦେଇ କେତେ କଥା କହୁଥାନ୍ତି । ତାଙ୍କ ଭିତରେ ଯାହାଙ୍କର ଧୈର୍ଯ୍ୟ ଥାଏ ତାଙ୍କ ସଙ୍ଗେ କଥାବାର୍ତ୍ତା କରି ବୁଝିଲୁ ଯେ ସୈନ୍ୟମାନେ ଖାଇବାକୁ ପାଇଲେ ନାହିଁ । ପ୍ରୟୋଜନ ଅନୁସାରେ ଶୀତବସ୍ତ୍ର ପାଇଲେ ନାହିଁ । ଏମାନଙ୍କ ସାଙ୍ଗରେ ରାସ୍ତା ଦେଖାଇବା ଲୋକ ନ ଥିଲେ । ଚୀନର ସରକାର ଏଥିମଧ୍ୟରେ ନେଫା ଲୋକଙ୍କୁ କରଗତ କରିବାରେ ଲାଗିଛି । ନେଫାରୁ ପିଲା ନେଇ ପଢ଼ାଶୁଣା କରାଉଛି । ବାହାଘର ସାହାଘର ବି ଆରମ୍ଭ କରୁଛି । ନାନା ଭାବରେ ସେମାନଙ୍କର ଉପକାର କରି ସେମାନଙ୍କୁ ଆପଣାର କରିବାରେ ଲାଗିଛି । ଭାରତ ଆଜି କୌଣସି ଉଦ୍ୟମ ନାହିଁ । ଭାରତର ସୈନ୍ୟମାନେ ଯେ ନେଫାରେ ବାଟବଣା ହୋଇ ଏଣେ ତେଣେ ବୁଲିଲେ ସେତେବେଳେ ନେଫାଲୋକେ ଏମାନଙ୍କୁ ଗଣ୍ଡାଏ ଖାଇବାକୁ ବି ଦେଲେ ନାହିଁ । ସେମାନେ ସମ୍ପୂର୍ଣ୍ଣ ଚୀନ ପକ୍ଷର ଥାନ୍ତି । ଏମାନଙ୍କୁ ଶତ୍ରୁ ସୈନ୍ୟ ଭଲ ବ୍ୟବହାର କରୁଥାନ୍ତି । କେତେ ସୈନ୍ୟ କେବଳ ଗଛର ପତ୍ର ଗ୍ଲେବାଇ ଗ୍ଲେବାଇ ଓ ଝରଣାରୁ ପାଣି ପିଇ ରହିଥାନ୍ତି । ଦିଗ ବାରିପାରିବାର ଉପାୟ ହେଉଛି ଦିନ ହେଲେ ସୂର୍ଯ୍ୟ ଉଠିଲେ ତାହାକୁ ପୂର୍ବ ଦିଗ ବୋଲି ଧରିନେଇ ସେହି ଅନୁସାରେ ବାଟ ସ୍ଥିର କରି ଚାଲନ୍ତି । ଘନ ଜଙ୍ଗଲ ଯୋଗୁ ସେଠାରେ ସୂର୍ଯ୍ୟୋଦୟ ପ୍ରାୟ ଦିନ ନଅଟାରେ

ହୁଏ । ସୂର୍ଯ୍ୟାସ୍ତ ମଧ୍ୟ ସେହିପରି ଶୀଘ୍ର ହୁଏ । ସୈନ୍ୟମାନଙ୍କର ଗୋଡ଼ର ଦଶା ଏପରି ହୋଇଥାଏ ଯେ ସେମାନେ ବାଟ ଚାଲିବେ ବା କିପରି ? ଏମିତି ଚାଲି ଚାଲି ଆସୁ ଆସୁ ହେଲିକପ୍‌ଟର୍ ବ୍ୟବସ୍ଥାରେ ସେମାନେ ତେଜପୁରକୁ ଆସିଲେ । ଯେଉଁ ସୈନ୍ୟମାନେ ନେଫାରେ ଲଢ଼େଇ ଉପରେ ଥିଲେ ସେମାନଙ୍କ ପାଇଁ ଶୀତବସ୍ତ୍ର ଓ ଖାଦ୍ୟର ବ୍ୟବସ୍ଥା ଭଲ ନ ଥିଲା ବୋଲି ସୈନ୍ୟମାନେ କହିଲେ । ତା'ପରେ ସୈନ୍ୟମାନଙ୍କୁ ଜଙ୍ଗଲ ଭିତରୁ ହେଲିକପ୍‌ଟର୍‌ରେ ଆଣି, ଏକାଠି କରି ଉଡ଼ାଜାହାଜରେ ତେଜପୁର ଅଣାଯାଉଥାଏ । ତେଜପୁରରୁ ସେମାନଙ୍କୁ ଦିଲ୍ଲୀ ପଠାଯାଉଥାଏ । ତେଜପୁରରେ ଉଡ଼ାଜାହାଜ କିଛି ସମୟ ରହେ । ସେହି ସମୟରେ ସେମାନଙ୍କୁ ଚା ବିସ୍କୁଟ ପ୍ରଭୃତି ଦିଆଯାଏ । ଶିଖମାନଙ୍କୁ ପଗଡ଼ି କନା ଓ ପାନିଆ ଦିଆଗଲେ ସେମାନେ ଭାରି ଖୁସି ହୁଅନ୍ତି । ବନ୍ଦୀସୈନ୍ୟଙ୍କ ଉଡ଼ାଜାହାଜ ମଧ୍ୟ ଆସିଲା, ଅର୍ଥାତ୍ ଯେଉଁ ସୈନ୍ୟଙ୍କୁ ଯୁଦ୍ଧ ସମୟରେ ଚୀନ ସୈନ୍ୟମାନେ ପରାସ୍ତ କରି ବନ୍ଦୀ କରି ରଖିଥିଲେ । ସେମାନେ କହିଲେ ଯେ ଚୀନ ସୈନ୍ୟବାହିନୀରେ ଏତେ ଭେଦଭାବ ନାହିଁ । ଆମର ଭାରତରେ ଯେପରି ସୈନ୍ୟବାହିନୀର ଅଫିସରଙ୍କ ପଦ ଅନୁସାରେ ସେମାନଙ୍କୁ କୁର୍ଣ୍ଣିସ କରିବାକୁ ହୁଏ ବା ଅଭିବାଦନ କରିବାକୁ ହୁଏ ତାଙ୍କର ସେପରି ନାହିଁ । ଖାଇବା ଓ ପିନ୍ଧିବା ଷ୍ଟାଣ୍ଡାର୍ଡ ଏକାପ୍ରକାର ସମସ୍ତଙ୍କର । ପଦ ଅନୁସାରେ ଭାରତରେ ଯେପରି ଘର ଓ ତାର ସାଜସଜ୍ଜା, ସେମାନଙ୍କର ସେପରି ନାହିଁ, ଇତ୍ୟାଦି । ଜଣାଗଲା ଭାରତର ସୈନ୍ୟବାହିନୀ ଏଠାକାର ଉଚ୍ଚ ନୀଚ ପଦପଦବୀ ଓ ତାର କାଏଦା କାନୁନକୁ ପସନ୍ଦ କରୁନାହାନ୍ତି ।

## ୩୩ । ବମ୍‌ଡ଼ିଲା ଓ ତ୍ୱାଙ୍ଗ

ଆହତ ସୈନ୍ୟମାନଙ୍କ ସଙ୍ଗେ କଥାବାର୍ତ୍ତା କରି ମୋର ଓ ବବିଙ୍କର ଇଚ୍ଛା ହେଲା ବମଡ଼ିଲା ଓ ତ୍ୱାଙ୍ଗ ପର୍ଯ୍ୟନ୍ତ ଯାଇ ଦେଖିଆସିବା ପାଇଁ । ବବିଜୀ ଏକଥା ଅଫିସରମାନଙ୍କ ଆଗରେ ପ୍ରକାଶ କଲେ । ନେଫାରେ କାର୍ଯ୍ୟ କରୁଥିବା ଭାରତ ସରକାରଙ୍କ କମିଶନର୍-ମାନେ ତେଜପୁରକୁ ଆସନ୍ତି । ସେମାନଙ୍କ ସଙ୍ଗେ କଥାବାର୍ତ୍ତା ହୋଇ ବମଡ଼ିଲା ଓ ତ୍ୱାଙ୍ଗ ଯିବାର ସ୍ଥିର ହେଲା । କମିଶନର ସାହେବ ବନ୍ଦୋବସ୍ତ କରି ଦେଇ ବମଡ଼ିଲା ଗଲେ । ଆମ ଗାଡ଼ି ସାଙ୍ଗରେ ଜଣେ ମିଲିଟାରୀ ଅଫିସର ଯିବେ ତାଙ୍କ ଗାଡ଼ିରେ । ଅସଂଖ୍ୟ ଗାଡ଼ି ସବୁବେଳେ ଯାଆସ କରୁଛି । ରାସ୍ତା ଅତି ଖରାପ । ଯୁଦ୍ଧ ପାଇଁ ଗାଡ଼ି ଚଳାଚଳ ହେବାପାଇଁ ରାସ୍ତା ଏତେ ଖରାପ କିପରି ହେଲା ପଚାରିବାରୁ ଜଣାଗଲା ଯେ ଯେଉଁ ଟେଣ୍ଡର ଏସବୁ ରାସ୍ତା ତିଆରି କରିବାକୁ କଣ୍ଟ୍ରାକ୍ଟ ନେଇଥିଲେ ସେ ଠକାମି କରି ଏପରି ଖରାପ ରାସ୍ତା କରିଛନ୍ତି । ଟଙ୍କା କିନ୍ତୁ ଭଲ ରାସ୍ତା ପାଇଁ ଯାହା ନେବାର ତାହା ନେଇଛନ୍ତି । ତେଜପୁରରେ ତ ସେ

ରାସ୍ତାର ନନ୍ଦା ବହୁତ ଶୁଣିଥିଲି, ଏବେ ପ୍ରତ୍ୟକ୍ଷରେ ଦେଖିଲି । କମିଶନରଙ୍କ ଲୋକ ଆମ ଗାଡ଼ି ସାଙ୍ଗରେ ଆସୁଥିବାରୁ "ଚେକ୍ ପୋଷ୍ଟ"ରେ ଆମକୁ କିଛି ଅସୁବିଧା ହେଲା ନାହିଁ । ଯିବା ବାଟରେ ଯେଉଁ ଦୃଶ୍ୟ ତାକୁ ଯଦି ଲେଖକ ବର୍ଣ୍ଣନା କରିବେ ତେବେ ସେ ତ ଗୋଟିଏ ଉପାଦେୟ ବହି ହେବ । ରାସ୍ତାରେ କେବଳ ଖୁବ୍ ଲମ୍ବା ଲମ୍ବା କଦଳୀ ଗଛ ଛଡ଼ା ଆଉ ପରିଚିତ ଗଛ କିଛି ଦେଖିଲି ନାହିଁ । ନାନାପ୍ରକାର ଫୁଲ ଦେଖିଲି । ସୁନ୍ଦର ସୁନ୍ଦର ଫୁଲ ଏପରି ଫୁଟିଛି, ଯେପରି କିଏ ସେ ଜାଗାକୁ ଫୁଲରେ ସଜେଇଦେଇଛି ।

ଆମ ଗନ୍ତବ୍ୟ ସ୍ଥାନରେ ପହଞ୍ଚିବା ବେଳକୁ ପ୍ରାୟ ରାତି ଆଠଟା ହୋଇଥିଲା । ଗାଡ଼ି ପ୍ରଥମେ କମିଶନରଙ୍କ ଫାଟକ ପାଖରେ ଠିଆ ହେଲା । ଖବର ପାଇ କମିଶନର୍ ସାହେବ ଗାଡ଼ି ପାଖକୁ ଆସି ମୋର ବାଟରେ କିଛି ଅସୁବିଧା ହୋଇଛି କି ନାହିଁ ପଚାରି ଅନ୍ୟଜଣଙ୍କ ଘରକୁ ମତେ ନେଇଯିବାକୁ କହିଲେ । ଯାହାଙ୍କ ଘରକୁ ଗଲି ସେ ଜଣେ ବଡ଼ ଅଫିସର । ଦେଖିଲି ତାଙ୍କର ପ୍ରତ୍ୟେକ କୋଠରୀରେ ନିଆଁ ରଖାଯାଇଛି । ଘରର ଗୃହିଣୀ ମତେ କହିଲେ—ଆପଣ ଆଗେ ନିଆଁ ପାଖରେ ବସି ହାତ ଗୋଡ଼କୁ ସେକି ଗରମ କରି ନିଅନ୍ତୁ । କଲିକତାଠାରୁ ଅଣ୍ଡା । ହାତ ଧୋଇବା ପାଇଁ ମଧ୍ୟ ଗରମ ପାଣି ଦରକାର । ନାମକୁ ମାତ୍ର ଗରମ ପାଣିରେ ହାତ ମୁହଁ ଧୋଇଲୁ । ରାତିରେ ତ ମୋର ଖାଇବା କଥା ନ ଥାଏ । ମୁଁ ଖାଇବି ନାହିଁ ଶୁଣି ସମସ୍ତେ ଆଶ୍ଚର୍ଯ୍ୟ ହେଲେ । ବେଳା ଖାଇଲେ । ଆମେ ଶୋଇଲୁ । ସକାଳେ ଦେଖିଲି ଭିଣା ତୁଳାର ଆଁଶୁଗୁଡ଼ାକ ଯେପରି ପଡ଼ିଥାଏ ସେହିପରି ବରଫ ଗୁଣ୍ଡଆଡ଼େ ପଡ଼ିଛି । ଘାସ ଉପରେ, ଗଛପତ୍ର ଉପରେ ଗୁରିଆଡ଼େ ବିଛିହୋଇ ପଡ଼ିଛି । ଏହା ପୂର୍ବରୁ ମୁଁ କେବେ ବରଫ ପଡ଼ିବା ଦେଖି ନ ଥିଲି । ସେତେବେଳେ ତ କୁଆଡ଼େ ଯାଇହେବ ନାହିଁ—ଏକ ଦୃଷ୍ଟିରେ ଦେଖୁଥାଏ । ପ୍ରାୟ ଆଠଟା ବେଳେ ସୂର୍ଯ୍ୟ ଉଦୟ ହେବାର ଦେଖାଗଲା । ସେ ଘରର ସମସ୍ତେ ଓ ଅନ୍ୟମାନେ ମୋ ପାଖରେ ଆନନ୍ଦ ପ୍ରକାଶ କଲେ । ମୁଁ ବୁଝି ନ ପାରି କାରଣ ପଚାରିବାରୁ ଜବାବ ପାଇଲି—ସୂର୍ଯ୍ୟୋଦୟ ଦେଖିବା ତାଙ୍କ ଭାଗ୍ୟରେ ଖୁବ୍ କମ୍ ଘଟେ । ତାପରେ ଏତେ ସକାଳେ ଏବଂ ଏତେ ପରିଷ୍କାର ସୂର୍ଯ୍ୟୋଦୟ ଦେଖି ସେମାନେ ଭାବୁଛନ୍ତି ଯେ ମୁଁ ଆସିଛି ବୋଲି ଆଜି ସୂର୍ଯ୍ୟଙ୍କର ଏ କୃପା ହୋଇଛି ।

ପ୍ରାୟ ଦଶଟା ବେଳକୁ କମିଶନରଙ୍କ ପାଖକୁ ଗଲି । ଭାରତ କଥା ସେ ସବୁ ପଚାରିଲେ ଓ ଚୀନ ଯୁଦ୍ଧ ଯୋଗୁ ଭାରତର ପ୍ରତିରକ୍ଷା ଜାଣିବାକୁ ଚାହିଁଲେ । ନେଫାର ଛଅଟା ଡିଭିଜନ ଭିତରୁ ଏ ଭଦ୍ରଲୋକ ଗୋଟିଏ ଡିଭିଜନର କମିଶନର୍ । ଏ ମୋ ସାଙ୍ଗରେ କିପରି ଏତେ ଆତ୍ମୀୟତା କରୁଛନ୍ତି ଦେଖି ମୁଁ ଆଶ୍ଚର୍ଯ୍ୟ ହେଲି । କଥାପ୍ରସଙ୍ଗରେ ଜାଣିଲି ତାଙ୍କର ବିଜୁ ପଟ୍ଟନାୟକଙ୍କ ସଙ୍ଗେ ବନ୍ଧୁତ୍ୱ ଅଛି । ମୁଁ ଭାବିଲି, ବିଜୁ ସାଙ୍ଗରେ ବନ୍ଧୁତ୍ୱ ଯୋଗୁଁ ମୋ ପ୍ରତି ଏପରି ସୌଜନ୍ୟପୂର୍ଣ୍ଣ ବ୍ୟବହାର । ମୋ ସାଙ୍ଗରେ ଲୋକ ଦେଇ ଅଫିସ ସବୁ ବୁଲି ଦେଖିବାକୁ ପଠାଇଲେ । ଯେଉଁସବୁ ଅଫିସକୁ ଗଲି ସବୁଠାରେ ଦେଖିଲି ଗାନ୍ଧୀଜୀଙ୍କ ଫଟୋ କାନ୍ଥରେ ଅଛି ଏବଂ ହଲ୍‌ର ଗୋଟିଏ ମୁଣ୍ଡରେ ନିଆଁ ଜଳୁଛି । ଜାଳେଣି କାଠ

ମଧ୍ୟ ଅଫିସ ଭିତରେ ରଖାଯାଇଛି । ଦେଖିଲି ଯେ ଅଫିସର କାନ୍ଥ ସବୁ କେତେ ଜାଗାରେ ଖୁଙ୍ଗି ଦିଆଯାଇଛି । କାନ୍ଥରେ ବଡ଼ ବଡ଼ କଣା । ଅଫିସରେ ହିନ୍ଦୀ ଓ ବଙ୍ଗଳା କହିବା ଅଫିସର୍ ଥିଲେ । ସେମାନଙ୍କ ସଙ୍ଗେ କଥାବାର୍ତ୍ତା କରି ଜାଣିଲି ଚୀନ ସୈନ୍ୟ କପରି ଅବାଧରେ ବମ୍‌ଡିଲରେ ପଶିଲେ । ତାଙ୍କୁ ପ୍ରତିରୋଧ କରିବାକୁ ଭାରତୀୟ ସୈନ୍ୟ ନ ଥିଲେ । ଚୀନ ସୈନ୍ୟ ବମଡ଼ିଲା ଆଡ଼କୁ ମାଡ଼ି ଆସିଲା ବେଳେ ଭାରତ ପକ୍ଷରୁ ତାର ପ୍ରତିରୋଧ କାହିଁକି ନ ହେଲା, ସେମାନେ କପରି ବମଡ଼ିଲାରେ ପଶି ତାପରେ ତେଜପୁର ଆଡ଼କୁ ଗଲେ ଏବଂ ବାଟରେ ଥିବା ପେଟ୍ରୋଲ ଟାଙ୍କି ପ୍ରଭୃତି ଦଖଲ କରିନେଲେ ସେ ବିଷୟରେ ଭିନ୍ନ ଭିନ୍ନ ପ୍ରକାର କଥା ଶୁଣିବାକୁ ମିଳିଲା । କିନ୍ତୁ ଏତିକି ନିରାଟ ସତ୍ୟ ଯେ, ଭାରତୀୟ ସୈନ୍ୟଙ୍କର ପରିଚାଳନା ଠିକ୍ ଭାବରେ କରାଯାଇ ନଥିଲା, କାରଣ ଯାହା ହେଉ । ପ୍ରଧାନ ସେନାପତି ଯେ ସେ ରାତିରେ ତେଜପୁରଠାରେ ନିଦ୍ରାଭିଭୂତ ଥିଲେ ଏହା ସତ୍ୟ । ବମଡ଼ିଲାର ଅଫିସ ଆଦିରେ ଚୀନା ସୈନ୍ୟମାନେ ତାଙ୍କର କାର୍ଯ୍ୟ ପୂରା କରିଛନ୍ତି, ମାତ୍ର ଗାନ୍ଧୀଜୀଙ୍କ ଫଟୋରେ ହାତ ଦିଆଯାଇନାହିଁ । ଅଫିସର କାଗଜପତ୍ର ଓ ଆସବାବପତ୍ର ସବୁ ଧ୍ୱସ୍ତବିଧ୍ୱସ୍ତ ଅବସ୍ଥାରେ ଗୁଡ଼ାଯାଇଥିଲେ ମଧ୍ୟ ଗାନ୍ଧୀଜୀଙ୍କ ଫଟୋ ଯେପରି ଥିଲା ଠିକ୍ ସେହିପରି ଥାଏ । ବମଡ଼ିଲା ସହର ହେଉଛି ଘନ ଜଙ୍ଗଲ ଭିତରେ କେତେ ଗୁଡ଼ିଏ ଅଫିସର୍ ଆଦିଙ୍କ ରହିବା ଘର ଓ ଅଫିସ ଘରକୁ ନେଇ । ସୈନ୍ୟମାନେ ସେହି ଛୋଟିଆ ସହରଟିରେ ପଶି ଯାହାସବୁ ଭଙ୍ଗାରୁଜା କରିଥିଲେ ତାହାର ପ୍ରମାଣ ଆମେ ଯିବା ପର୍ଯ୍ୟନ୍ତ ଥାଏ; ଅର୍ଥାତ୍ ଚାରିଆଡ଼େ ଭଙ୍ଗା ଜିନିଷମାନ ପଡ଼ିଥାଏ । ବମଡ଼ିଲା ପାଖରେ ଥିବା ଦୁଇ ତିନୋଟି ଗ୍ରାମକୁ ଗଲୁ । ଆମ ପୂର୍ବରୁ ଆଉ କେତେଜଣ ଶାନ୍ତିସୈନିକ ବମଡ଼ିଲା ଆସି ଗାଁ ଦେଖି ଫେରୁଥିଲେ । ସେମାନେ ମତେ ସାବଧାନ କରିଦେଲେ ଯେ ଗାଁଲୋକମାନେ ଯାହା କହିବେ ମୁଁ ତହିଁରେ ହଁ ମାରିବି, ପ୍ରତିବାଦ କରିବି ନାହିଁ । ଯାହା ଖାଇବାକୁ ଦେବେ ତା ଅଳ୍ପ ଟିକିଏ ହେଉ ପଛେ ନିଶ୍ଚୟ ଖାଇବି—ନଖାଇଲେ ପ୍ରଳୟକାଣ୍ଡ ହେବ । ମୁଁ ପଚାରିଲି—ସେମାନେ ଆପଣମାନଙ୍କୁ କ'ଣ ଖାଇବାକୁ ଦେଲେ ? ଉତ୍ତର ପାଇଲି ଶାନ୍ତିସୈନିକମାନେ ଗାଁରେ ବୁଲି ଲୋକଙ୍କ ସହିତ କଥାବାର୍ତ୍ତା କରି ଗାଁ ମୁଖିଆ ଘରକୁ ଗଲେ । ସମସ୍ତଙ୍କ ଘରେ ତ ନିଆଁ ଉହ୍ନେଇ ଅଛି—ମୁଖିଆଙ୍କ ଘରେ ଗୋଲ ଆକାରରେ ବଡ଼ ଆକାରରେ ନିଆଁ ଅଛି ଓ କାଠ ପକାଇ ଜଳାଯାଉଛି । ସେ ନିଆଁରେ ଗୋଟିଏ ପାତ୍ରରେ ପାଣି ସହିତ ଦୁଧ ମିଶାଯାଇ ରଖାଯାଇଛି । ଅତିଥି ଗଲେ ସେ ଦୁଧମିଶା ଫୁଟା ପାଣିରେ ମୁଠାଏ ଲୁଣ ଓ ମେଞ୍ଚାଏ ବସିଲା ଘିଅ ପକେଇ ତାକୁ ଗୋଳେଇକରି ପିଇବାକୁ ଦେଲେ । ମୋ ମୁଣ୍ଡରେ ବଜ୍ର ପଡ଼ିଲା ପରି ଲାଗିଲା । ଭଗବାନଙ୍କୁ ଡାକିଲି ମତେ କେମିତି ଏଥିରୁ ରକ୍ଷାକର । ଏହି କାରଣରୁ ତ ଡରିଯିବି ନାହିଁ । ସାହସ କରି ଗାଁକୁ ଗଲି । ଗାଁ ଭିତରକୁ ପଶିବା ମାତ୍ରେ ଦେଖିଲି ପିଲା-ମାନେ ଖେଳୁଛନ୍ତି । ସେ ପିଲାଙ୍କୁ ଦେଖିଲେ ତାଙ୍କୁ ଦେଖୁଥିବି ଆଉ କୁଆଡ଼େ ଯିବାକୁ ମନ ହେବ ନାହିଁ । ଖୁବ୍ ଗୋରା ଗୋରା ମୋଟା ସୁନ୍ଦର ଗଠନର ପିଲା । ଗୋଟିଏ ହେଲେ ପିଲା

ପତଳା ବା ରୁଗ୍ଣ ଦେଖିଲି ନାହିଁ । ଯଥେଷ୍ଟ ଗରମ କୁର୍ତ୍ତା ପିନ୍ଧିଛନ୍ତି । ମୁଣ୍ଡରେ ଟୋପି, ଗୋଡ଼ରେ ଜୋତା ମୋଜା । ସେ ପିଲାଏ ଏତେ ସୁନ୍ଦର ଯେ ଥରେ ଦେଖିଲେ ଭୁଲି ହେବ ନାହିଁ । ଗାଁର କେତେକଜଣଙ୍କ ଘରକୁ ଗଲୁ, ଦେଖିଲୁ ନିଆଁ ଜଳୁଛି । ଘରେ ଗୋଟିଏ ସୁତୁଲି ଦଉଡ଼ି ସେ ନିଆଁ ଉପରେ ଟଙ୍ଗା ହୋଇଛି, ସେଥିରେ ମାଂସ ଝୁଲୁଛି । ଖରା ତ ହୁଏ ନାହିଁ—ଏହି ନିଆଁରେ ସେ ମାଂସକୁ ଶୁଖେଇ କରି ରଖି ଥାଆନ୍ତି ବୋଲି ସେମାନେ କହିଲେ । ସେମାନଙ୍କର ଭାଷା ଜାଣିବାବାଲା ଜଣେ କର୍ମୀ ଆମ ସାଙ୍ଗରେ ଥିଲେ । ସେ ଦୋଭାଷୀର କାମ କରିବାରୁ ଆମେ ଲୋକମାନଙ୍କ ସହିତ କଥାବାର୍ତ୍ତା କରି ସବୁ ବୁଝିଲୁ । ପ୍ରାୟ ଅଧିକାଂଶ ଲୋକଙ୍କ ଦାଣ୍ଡରେ ଘୋଡ଼ା ବନ୍ଧାହୋଇଥାନ୍ତି । ଆମର ଏଠାର ଗାଡ଼ି ଟାଣୁଥିବା ଘୋଡ଼ା ପରି ସେ ଘୋଡ଼ା ନୁହନ୍ତି, ବେଶ୍ ବଡ଼ ବଡ଼ ଘୋଡ଼ା ଓ ଯତ୍ନରେ ରଖାଯାଇଥିବା ପରି ମନେହେଲା ।

ମୁଖିଆଙ୍କ ଘରକୁ ଗଲୁ । ମୁଖିଆ ଗାଧୋଇବାକୁ ଯାଇଥିଲେ । ତାଙ୍କ ସ୍ତ୍ରୀଙ୍କ ସଙ୍ଗେ କଥାବାର୍ତ୍ତା ହେଲି । ମୁଁ ଚେଷ୍ଟା କରୁଥାଏ ମୁଖିଆ ଫେରିବା ପୂର୍ବରୁ ଆମେ କେମିତି ତାଙ୍କ ଘର ଛାଡ଼ିବା—କାରଣ ମୁଖିଆଙ୍କ ସ୍ତ୍ରୀ ସୂଚନା ଦେଲେ ଏବଂ ଦୁଃଖ ପ୍ରକାଶ କଲେ ଯେ ମୁଖିଆ ନଥିବାରୁ ସେ ଆମକୁ କିଛି ଖାଇବାକୁ ଦେଇପାରୁନାହାନ୍ତି । ତାଙ୍କୁ ଜଣାନଥିଲା ଯେ ଆମେ ସେଥିରେ ଖୁସି । ମୁଖିଆଙ୍କ ଘରୁ ବାହାରି ଆମେ ଅଳ୍ପ ଟିକିଏ ଦୂର ଆସିଛୁ, ଜଣେ ଲୋକ ଦୌଡ଼ି ଦୌଡ଼ି ଆସି କହିଲେ ଯେ ମୁଖିଆ କହିଛନ୍ତି ସେ ଘରକୁ ଆସିବା ଯାଏ ଆପଣ ତାଙ୍କ ଘରେ ଥିବେ—ସେ ଅଳ୍ପ ସମୟ ଭିତରେ ଆସିବେ । ମୁଖିଆ ଅସନ୍ତୁଷ୍ଟ ହେବା ଭୟରେ ଆମେ ଫେରିଲୁ । ଘର ଆଉ ଅଳ୍ପ ବାଟ ଅଛି ଦେଖିଲୁ, ମୁଖିଆ ଗୋଟିଏ ବଡ଼ ଘୋଡ଼ାରେ ଚଢ଼ି ଆସୁଛନ୍ତି । ଆମେ ଅପେକ୍ଷା କଲୁ । ସେ ଆମ ପାଖକୁ ଆସି ନମସ୍କାର କରି ଦୁଃଖ ପ୍ରକାଶ କଲେ ଯେ, ଆମେ ତାଙ୍କ ଘରକୁ ଗିବାବେଳେ ସେ ନ ଥିଲେ, ତେଣୁ ସେ ଆମକୁ କିଛି ଖୁଆଇ ପାରିଲେ ନାହିଁ । ଓଦା ଗାମୁଛାରେ ବାନ୍ଧି ଆଣିଥିବା ଦଶପନ୍ଦରଟି ଅଣ୍ଡା ମତେ ଯାଚି କହିଲେ ଯେ, ମୁଁ ମୋ ଜାଗାରେ ତାଙ୍କର ଅଣ୍ଡାତକ ନେଲେ ସେ ଖୁସି ହେବେ । ଅଣ୍ଡାଗୁଡ଼ିକ ତାଙ୍କ ଘରର ଅଣ୍ଡା । ତାଙ୍କ ଘରର ଅଣ୍ଡା ଦେବା ଅର୍ଥ ସେ ମତେ ସମ୍ମାନ ଜଣାଇଲେ ବୋଲି ସେଠା ଲୋକେ କହିଲେ । ଏହିପରି ଦୁଇ ତିନି ଖଣ୍ଡ ଗାଁ ବୁଲିକରି ଦେଖିଲୁ । ସବୁଠି ଏକା କଥା । ଚୀନା ସୈନ୍ୟ କପରି ପଶିଲେ, କ'ଣ ହେଲା, ସେ ସବୁ କଥା ଲୋକେ କହିଲେ । ବମଡ଼ିଲାରେ ରାତିରେ ରହି ତହିଁ ଆରଦିନ ସକାଳେ ତ୍ୱାଙ୍ଗ ଗଲୁ । ତ୍ୱାଙ୍ଗ ପାଖରେ ଗୋଟିଏ ଗ୍ଲେଟିଆ ନଈ ଅଛି । ପ୍ରବଳ ସୁଅ । ଆମେ ପ୍ରାୟ ଦଶଟାବେଳେ ପହଞ୍ଚିଲୁ । ବଡ଼ ବଡ଼ ପିଲାମାନେ ନଈରେ ଖୁବ୍ ଗାଧୋଇ ପହଁରୁଥାନ୍ତି । ଏତେ ଶୀତରେ ଏମାନେ କେମିତି ଏନେ ଗାଧୋଉଛନ୍ତି ଦେଖି ମତେ ଆଶ୍ଚର୍ଯ୍ୟ ଲାଗିଲା । ପୁଣି ଭାବିଲି ଆମକୁ ଏଠା ଶୀତ ପବଳ ବୋଧ ହେଉଛି, ମାତ୍ର ଏହା ଏମାନଙ୍କ ପାଇଁ ସ୍ୱାଭାବିକ । ଗ୍ଲେଟ ପିଲାଗୁଡ଼ାକ କେମିତି ଗୋରା ଗୋରା ଓ ସୁନ୍ଦର । ସୁନ୍ଦର ସୁନ୍ଦର ପୋଷାକ ପିନ୍ଧି ଛବି ପରି ବା କଣ୍ଢେଇ

ପର ଦେଖାଯାଉଥାନ୍ତି । ତୱାଙ୍ଗ ଆସିବା ବାଟରେ ଆମକୁ ଦେଖାଇ ଦିଆଗଲା, କେଉଁଠି ଭାରତର ସୈନ୍ୟ ଥିଲେ, ଅର୍ଥାତ୍ କେଉଁ ଉପରେ ଚୀନା ସୈନ୍ୟ ଥିଲେ ଓ କେଉଁ ତଳେ ଭାରତର ସୈନ୍ୟ ଥିଲେ । ଯୁଦ୍ଧକ୍ଷେତ୍ରକୁ କେବଳ ଚୀନର ସୈନ୍ୟବାହିନୀ ଆସି ନଥିଲେ – ସାଧାରଣ ଲୋକ ମଧ୍ୟ ବହୁତ ଆସିଥିବାରୁ ଚୀନ ସୈନ୍ୟ ବାହିନୀର ଆକାର ବିରାଟ ଦେଖା ଗଲା । ଯୁଦ୍ଧ ବିଷୟରେ କୌଣସି ଜ୍ଞାନ ନ ଥିବା ଆମେ ସାଧାରଣ ବୁଦ୍ଧିରେ ମଧ୍ୟ ବୁଝି ପାରିଲୁ ଯେ ଭାରତର ସୈନ୍ୟ ବହୁତ ତଳେ ରହିଥିବାରୁ କିଛି କରିପାରିଲେ ନାହିଁ । ଚୀନ ସୈନ୍ୟ ଉପରେ ରହି ଭାରତ ସୈନ୍ୟଙ୍କୁ ବହୁତ ସଂଖ୍ୟାରେ ମାରିପାରିଲେ । ଫଳରେ ଆମେ ତେଜପୁର ଫେରିବା ବେଳେ ଦେଖିଲୁ ବମଡ଼ିଲା ପାରିହେବା ପରେ ମଧ୍ୟ ବାଟ ପାଖରେ ଗଦା ଗଦା ହୋଇ ଭାରତର ସୈନ୍ୟଙ୍କ ଶବ ପଡ଼ିରହିଛି । ପେଟ୍ରୋଲ ଆସିଲେ ତାହା ଜଳାଇ ଦିଆଯିବ ବୋଲି ଶୁଣିଲୁ । ଏପରି ଶବଗଦା କେଉଁଗୁଡ଼ିଏ ଦେଖିଲୁ । ତୱାଙ୍ଗରେ ଭାରତ ସୈନ୍ୟଙ୍କର ଯୁଦ୍ଧକାଳୀନ ହସ୍‌ପିଟାଲ୍ ଥିଲା । ସେ ସବୁ ଚୀନାମାନେ ଦଖଲ କରିନେଇଥିଲେ । ସେ ସବୁର ଭଗ୍ନାବଶେଷ ଦେଖିଲୁ । ତୱାଙ୍ଗ ନଈରେ ପଥର ଚକ ଦେଇ ଗୋଟିଏ ଯନ୍ତ୍ର ତିଆରି କରିଛନ୍ତି, ନଦୀ ସୁଅରେ ସେ ଯନ୍ତ୍ରଟି ଆପେ ବୁଲୁଛି ଓ ନଈ କୂଳରେ ଗୋଟିଏ ଘରେ ହିଲେ ବିରାଟ ଚକ ଅଛି—ସେଥିରେ ଗହମ ପେଷା ହେଉଛି । ସେ ଚକ ଅନବରତ ବୁଲୁଛି । ଗାଁରେ ଯାହାର ଯେଉଁବେଳେ ଯାହା ଦରକାର ସେ ପେଷି ନେଇଯାଉଛି । ବମଡ଼ିଲାର ଗାଁ ଯେପରି ତୱାଙ୍ଗର ଗାଁ ମଧ୍ୟ ତଦ୍ରୂପ । ଏଠି ସରକାରୀ ଅଫିସ ନ ଥାଇ ଏବଂ ଗାନ୍ଧୀଜୀଙ୍କ ଫଟୋ ଦେଖିବା ସୁବିଧା ନ ଥିଲେ ମଧ୍ୟ ଏମାନେ ଗାନ୍ଧୀଜୀଙ୍କୁ ଜାଣନ୍ତି । ଅନ୍ୟ ନେତାମାନଙ୍କ ନାଁ ପଚାରିଲେ କିଛି କହି ପାରନ୍ତି ନାହିଁ । କେବଳ ଜବାହରଲାଲ ନେହେରୁଙ୍କ କଥା ପଚାରିଲେ ବମଡ଼ିଲା ଗାଁରେ ଯାହା କହୁଥିଲେ ଏମାନେ ମଧ୍ୟ ସେୟା କହିଲେ ଯେ ଜବାହରଲାଲ ତ ଭାରତର ରଜା । ସେ ରଜା ହେଲେ କ'ଣ ହେବ—ଆମ ଭଲ ପାଇଁ ସେ କିଛି କରିନାହିଁ । ଚୀନ ଭଲ, ସେ ଆମକୁ ସାହାଯ୍ୟ କରେ । ଶ୍ରୀ ଜୟପ୍ରକାଶ ନାରାୟଣ ଓ ନାରାୟଣ ଦେଶାଇ ନେଫାର ଆଉ ଗୋଟିଏ ସବ୍‌ଡିଭିଜନ୍‌କୁ ଯାଇଥିଲେ । ସେମାନେ ସେଠା ଲୋକମାନଙ୍କଠାରୁ ମଧ୍ୟ ଏହିପରି କଥା ଶୁଣିଲେ । ସେଠାରେ ବାଉଁଶକୁ କାଟି ଓ ତାକୁ ଗୁନ୍ଥିକରି ଗୋଟିଏ ସୁନ୍ଦର ଗ୍ଲାସ ତିଆରି କରି ସେଥିରେ ଜୟପ୍ରକାଶ ନାରାୟଣଙ୍କୁ ମଦ ଯାଚିଲେ । ଅତିଥିଙ୍କର ମନାକରିବାର ଉପାୟ ନାହିଁ । ତାଙ୍କ ହାତରୁ ଜୟପ୍ରକାଶଜୀ ତାହା ନେଲେ ।

ଏଠାପରି ସେଠି ମଧ୍ୟ ପ୍ରଥମେ ମାରୱାଡ଼ି ନେଫାକୁ ଆସି ବେପାର କରିଲେ । ତାପରେ ବେପାର ଓ କଣ୍ଟ୍ରାକ୍ଟର ଆଦି କାମ ପାଇଁ ଅନ୍ୟମାନେ ଆସିଲେ । ଏମାନେ ନିଜ ସ୍ୱାର୍ଥ ପାଇଁ ସିନା ପଶିଲେ—ସରକାରୀ କର୍ମଚାରୀମାନେ ମଧ୍ୟ ସ୍ୱାର୍ଥପରତାର ପରିଚୟ ଦେଲେ, ଅର୍ଥାତ୍ କୌଣସି କାମ ହେଲନାହିଁ । ଚୀନ ଆକ୍ରମଣ ବେଳେ କ'ଣ କେମିତି ହେଲା ସବୁ କାହାଣୀ ଶୁଣିଲୁ । ରାତିରେ ସେଠାରେ ରହି ତହିଁଆରଦିନ ସକାଳେ ସିଧା ତେଜପୁରକୁ

ଆସିଲୁ । ସେଠାରୁ ଫେରି ବିବାଙ୍କୁ ସବୁ କଥା କହିଲି । ସରକାର ତରଫରୁ ତ କିଛି ନାହିଁ—ସେଠାରେ କିଛି ରଚନାତ୍ମକ କାମ କରାଯିବା ଦରକାର ଏବଂ ଭିନ୍ନ ଭିନ୍ନ ସ୍ଥାନରେ ଭିନ୍ନ ଭିନ୍ନ ପ୍ରକାର କାମ ନେଇ କର୍ମୀମାନେ ରହିବା ଦରକାର ବୋଲି ବିବାଙ୍କୁ କହିବାରୁ ବିବା କହିଲେ, ସେ ରାଜପୁରାରୁ କର୍ମୀ ଅଣାଇବେ, ଏବଂ ତାଙ୍କ ପ୍ରଥମପ୍ରଥମ ସୁଶୀଳକୁ ପଠାଇ କେଉଁ ଅଞ୍ଚଳରେ କି ପ୍ରକାର କାମ ହେବା ଦରକାର ତାହା ସୁଶୀଳ ଜଣାଇଲେ ଓ ଯୋଜନା ଦେଲେ ତଦନୁସାରେ କାମ ହେବ ।

ମୈତ୍ରୀ ଆଶ୍ରମରେ କିଛିଦିନ ରହିବାପାଇଁ ଅମଲପ୍ରଭା ଦେବୀ ମତେ ଗୌହାଟୀ ଠାରେ ଅନୁରୋଧ କରିଥିଲେ । ମୁଁ ସେ କଥା ବିବାଙ୍କୁ କହିବରୁ ସେ ରାଜି ହେଲେ । ମୁଁ ଓ ବେଲା ଉଡ଼ାଜାହାଜରେ ଲୀଲାବାରୀ ଉଡ଼ାଜାହାଜ ବନ୍ଦରକୁ ଯାଇ ସେଠାରୁ ଦୁଇମାଇଲରୁ କମ୍ ଦୂରରେ ଅବସ୍ଥିତ ମୈତ୍ରୀ ଆଶ୍ରମରେ ପହଞ୍ଚିଲୁ । ସେଠାରେ ପହଞ୍ଚି ଦେଖିଲି ମୋର ଏକମାତ୍ର ପରିଚିତ ଲୋକ ସେଠି ଅଛନ୍ତି କୁସୁମ ଦେଶପାଣ୍ଡେ । ୧୯୫୫ରେ ବିନୋବାଜୀ ଓଡ଼ିଶାରେ ପଦଯାତ୍ରା କରୁଥିବାବେଳେ ସର୍ବଶ୍ରୀ ନିର୍ମଳା ଦେଶପାଣ୍ଡେ ଓ କୁସୁମ ଦେଶପାଣ୍ଡେ ପଦଯାତ୍ରାରେ ବିନୋବାଜୀଙ୍କ ଭାଷଣ ଲେଖି ରଖୁଥିଲେ । ସେମାନେ ଭୋରରୁ ବିନୋବାଜୀଙ୍କ ସହିତ ପଦଯାତ୍ରାରେ ଯାଉଥିଲେ । ରହଣି ସ୍ଥାନରେ ପହଞ୍ଚି ବିନୋବାଜୀ ସଭାରେ ଯାହା ଭାଷଣ ଦିଅନ୍ତି ଏମାନେ ତାକୁ ଲେଖନ୍ତି । ତାପରେ ଗାଧୁଆ ଆଦି ନିତ୍ୟକର୍ମ ସାରି ଏଗାରଟା ବେଳେ ବିଷ୍ଣୁସହସ୍ରନାମ ପାଠ ହେବାପରେ ବିନୋବାଜୀ ପୁଣି ଯାହା ଭାଷଣ ଦିଅନ୍ତି ତାହାକୁ ମଧ୍ୟ ଲେଖନ୍ତି । ତାଛଡ଼ା ମଝିରେ ମଝିରେ କେହି କଥାବାର୍ତ୍ତା କଲେ ବା ବିଶିଷ୍ଟ ଲୋକ ବିନୋବାଜୀଙ୍କ ସଙ୍ଗେ କଥାବାର୍ତ୍ତା କଲେ ତାକୁ ମଧ୍ୟ ଲେଖନ୍ତି । ପୁଣି ଉପରଓଳି ପାଞ୍ଚଟା ବେଳେ ସାଧାରଣ ସଭାର ଭାଷଣ ମଧ୍ୟ ଲେଖନ୍ତି । ରାତିରେ ତାକୁ ପଢ଼ି ସବୁ ଠିକ୍‌ଠାକ୍ କରି ଅଫିସ୍‌କୁ ଦିଅନ୍ତି । କୁସୁମ ଦେଶପାଣ୍ଡେ ବି. ଏ. ପାଶ କରି ଗୋଟିଏ ସରକାରୀ ଚାକିରୀ କରୁଥିଲେ । ବିନୋବାଜୀଙ୍କ ସାନ୍ନିଧ୍ୟ ଲଭପାଇଁ ଚାକିରୀରୁ ଇସ୍ତଫା ଦେଇ ଏ ପଦଯାତ୍ରାରେ ରହିଲେ । ବିନୋବାଜୀଙ୍କର ଆସାମ ପଦଯାତ୍ରା ବେଳେ କୁସୁମ ତାଙ୍କ ସାଙ୍ଗରେ ଥିଲେ । ଉତ୍ତର ଲକ୍ଷ୍ମୀପୁରରେ ପଦଯାତ୍ରା ଚାଲିଥାଏ, ବର୍ତ୍ତମାନ ମୈତ୍ରୀ ଆଶ୍ରମ ଯେଉଁଠି ଅଛି ତାହାର ପାଖରେ ବିନୋବାଜୀଙ୍କ ରହଣି ସ୍ଥାନ ଥାଏ । ପଦଯାତ୍ରାରେ ମଝିରେ ମଝିରେ ଗୋଟାଏ ଗୋଟାଏ ସ୍ଥାନରେ ଗୋଟିଏ ଦିନ ଅଧିକ ରହଣି ରଖାଯାଇଥାଏ, ଅର୍ଥାତ୍ ମଝିରେ ମଝିରେ ଗୋଟିଏ ଗୋଟିଏ ରହଣିରେ ଦୁଇଦିନ ମଧ୍ୟ ରହନ୍ତି । ଏହିପରି ଏକ ଦୁଇଦିନିଆ ରହଣିରେ ବିନୋବାଜୀ ଖୋଲା ଜାଗାରେ ବୁଲୁ ବୁଲୁ ସାଥୀମାନଙ୍କୁ ଆଙ୍ଗୁଠି ଦେଖାଇ କହିଲେ—ଏଇ ଆଡ଼ୁ ଚୀନ ଭାରତ ଆଡ଼କୁ ଆସିବ । ସମ୍ପର୍କ କରିବା ପାଇଁ । ଚୀନ ଭାରତ ଯୁଦ୍ଧବେଳେ ବିନୋବାଜୀ ତାଙ୍କ ଭାଷଣରେ ଚୀନ ଭାରତ ଯୁଦ୍ଧ ବା ସଂଘର୍ଷ ଆଦି ଶବ୍ଦ ବ୍ୟବହାର ନ କରି ଚୀନ ଭାରତ ସମ୍ପର୍କ ହିଁ କହୁଥିଲେ । ଏପରି ଭବିଷ୍ୟତବାଣୀ କହିସାରି କହିଲେ ଯେ ଏଠି ଗୋଟିଏ ଆଶ୍ରମ ସ୍ଥାପନ କରିବାକୁ ହେବ—ତାର ନାମ ହେବ ମୈତ୍ରୀ ଆଶ୍ରମ । ସେ ଆଶ୍ରମର

ନାମ ହେବ ମିଳତାର କାମ ଓ ମିତ୍ରତାର ଭାବନା ସୃଷ୍ଟିକରିବା । ବିନୋବାଜୀଙ୍କ ଆସାମ ପଦଯାତ୍ରା ଶେଷ ହେବା ପୂର୍ବରୁ ଅମଲପ୍ରଭା ଦେବୀ ଗଣ୍ଡେ ଗ୍ରେଃ ଘର ତରତର କରି ତିଆରି କରାଇଦେଲେ । ବିନୋବାଜୀଙ୍କ ପାଦସ୍ପର୍ଶଦ୍ୱାରା ମୈତ୍ରୀ ଆଶ୍ରମର ପ୍ରତିଷ୍ଠା ହେଲା । ବିନୋବାଜୀ କହିଲେ—ମୈତ୍ରୀ ଆଶ୍ରମରେ ଆସାମର କର୍ମୀମାନେ ତ ରହିବେ, କୁସୁମ ମଧ୍ୟ ସେଠାରେ ରହିବ । ସେହି ଅନୁସାରେ କୁସୁମ ମୈତ୍ରୀ ଆଶ୍ରମରେ ରହୁଥାନ୍ତି । ମୁଁ ପହଞ୍ଚିବା ବେଳକୁ ଶାନ୍ତିସେନା କାମରେ ଆସିଥିବା ବମ୍ବେର ଜଣେ ଓ ମାନ୍ଦ୍ରାଜର ଜଣେ ଭଉଣୀ ସେଠି ଥାନ୍ତି । ଆଶ୍ରମର ଅନ୍ୟତମ ବିଶିଷ୍ଟ କର୍ମୀ ଗୁଣଦା ସେଦିନ ଆସି ପହଞ୍ଚିଲେ । ବର୍ତ୍ତମାନ ଭାରତବର୍ଷ ସଂକଳ୍ପ ନେଇ "ଲୋକଯାତ୍ରା" ଚଳାଉଥିବା ଶ୍ରୀଲକ୍ଷ୍ମୀ ଫୁକନ ମଧ୍ୟ ସେଠାରେ ଥିଲେ । ଏମାନେ ସମସ୍ତେ ପ୍ରାୟ ସମବୟସୀ ଥିଲେ । ମୁଁ ତାଙ୍କ ଭିତରେ ବୟସରେ ବଡ଼ ଥିବାରୁ ଗ୍ରେଃ ଗ୍ରେଃ ମତାନ୍ତରର ସମାଧାନ ମୋତେ କରିବାକୁ ପଡ଼ୁଥିଲା । ସୁଖର କଥା ଯେ ଅଳ୍ପ ଦିନର ପରିଚୟ ହେଲେ ମଧ୍ୟ ସେମାନେ ମୋ କଥା ମାନୁଥିଲେ । ମୈତ୍ରୀ ଆଶ୍ରମର ଅଳ୍ପ ଦୂରରେ ଉଡ଼ାଜାହାଜ ପଡ଼ିଆ ଓ ତାରି ପାଖରେ ଗୋଟିଏ ଗ୍ରେଃଆ ସୈନ୍ୟଗୁଳୁଣୀ । ସେଠାର ଅଫିସରମାନେ କଥାବାର୍ତ୍ତା କରିବାକୁ ମୈତ୍ରୀ ଆଶ୍ରମକୁ ଆସନ୍ତି । ମୁଁ ବୁଝାଇ କହିଦେଲି ଯେ ସନ୍ଧ୍ୟା ପରେ ଆଉ ବାହାର ଲୋକ କେହି ଆଶ୍ରମକୁ ଆସିବେ ନାହିଁ । ତାହା ସମସ୍ତେ ମାନିଲେ ଓ ସେ ନିୟମ ଚାଲିଲା । ଗୋପା ବହିନ ବମ୍ବେ ସହରରେ କାମ କରିବା ଲୋକ, ତାଙ୍କୁ ଏ ମଫସଲ କାମ ଆରମ୍ଭ ନଥାଏ ବା ସେ କାମ କ'ଣ କିପରି କରିବେ ତାହାର ଯୋଜନା କରିପାରୁ ନ ଥାନ୍ତି । ଅନ୍ୟ ଜଣକ ବି. ଏ. ପରୀକ୍ଷା ଦେବାକୁ ପ୍ରସ୍ତୁତ ହେଉଥିଲେ, ଏଠାରେ ତାଙ୍କୁ ମଧ୍ୟ କର୍ମଯୋଜନା ଦେଖାଯାଉ ନଥିବାରୁ ସେ ପରୀକ୍ଷା କଥା ଭାବୁଥାନ୍ତି । ମୁଁ ଲକ୍ଷୀ ଫୁକନଙ୍କୁ ସାଙ୍ଗ କଲି । ତାଙ୍କ ସାଙ୍ଗରେ ଗାଁକୁ ଯାଇ ଖବର ସଂଗ୍ରହ କରେ । ଗୌହାଟୀ ଓ ତେଜପୁରରେ ଶୁଣିଥିଲି ଯେ ଅନ୍ୟ ପ୍ରଦେଶର ଲୋକମାନେ ଆସାମରେ ସବୁ କାମ ଏପରିକି ମେହେନ୍ତରର କାମ ମଧ୍ୟ ଚଳାନ୍ତି । ଗାଁର ଅବସ୍ଥା ଯାହା ଦେଖିଲି ସେଥିରୁ ସେକଥା ସତ୍ୟ ହୋଇଥିବ ବୋଲି ମୋର ମନେହେଲା । ଗାଁର ସାଧାରଣ ଚାଷୀଙ୍କ ଘରେ ଦେଖାଗଲା ଯେ ପୁରୁଷମାନେ କିଛି କାମ କରନ୍ତି ନାହିଁ । ଧାନ ଚାଷ ତ ଅଦ୍ଭୁତ ! ଜମି ହଳକରି ଧାନ ବୁଣିଦିଅନ୍ତି, ତାପରେ ବିଲକୁ ଆଉ କେହି ଯାଆନ୍ତି ନାହିଁ । ପୁଣି ଧାନ ପାଚିଲେ ବିଲକୁ ଯାଇ ଧାନ କାଟି ଆଣନ୍ତି । ଅଗରୁ ଅଗରୁ ଧାନ କାଟି ଆଣନ୍ତି, ନଡ଼ାଗୁଡ଼ାକରେ ନିଆଁ ଲଗାଇ ଦିଆଯାଏ । ସେ ନଡ଼ା ଜଳିଯାଏ ଓ ତାର ପାଉଁଶ ଖତ ହୁଏ । ଧାନ ବେଙ୍ଗଲାପଡ଼ି ବା ବାଡ଼ିଆ ହୋଇ ଅମଳ ହୁଏ ନାହିଁ । ସେହିପରି ଅଗ କଟାହୋଇ ରଖାହୋଇଥାଏ । ସେଥିରୁ ପ୍ରତିଦିନ କିଛି ଆଣି ମିଳିକରି ଧାନ ବାହାର କରି, ତାକୁ କୁଟି ଭାତ ରାନ୍ଧନ୍ତି । ଆଜି କୁଟା ହୋଇଥିବା ଚାଉଳର ଭାତ କାଲି ରନ୍ଧାହେଲେ ସେମାନେ ଖାଇ ପାରିବେ ନାହିଁ । ହାଇସ୍କୁଲ ଶିକ୍ଷୟିତ୍ରୀ ସ୍କୁଲରୁ ଆସି ଧାନ କୁଟି ଚାଉଳ କରି ତାକୁ ରାନ୍ଧିଲେ । ମୁଁ ତ କେତେଥର ଗାଁକୁ ଯାଇ ଦେଖିଲି ସ୍କୁଲ ଶିକ୍ଷୟିତ୍ରୀ ସ୍କୁଲରୁ ଆସି ଚା ଖାଇ ତାପରେ ପ୍ରଥମ କାମ ଧାନ କୁଟିଲେ, ତାପରେ

ଅନ୍ୟ କାମ । ଗାଁର ସ୍ତ୍ରୀଲୋକମାନେ କହିଲେ ଯେ କେତେବର୍ଷ ପୂର୍ବେ ଲୁଗାବୁଣା, ଧାନକୁଟା ଓ ଭାତରନ୍ଧା ପରି ଘରୋଇ ଧନ୍ଦା ଥିଲା । ସ୍ତ୍ରୀଲୋକମାନେ ଗନ୍ଧ୍ ଗନ୍ଧୁ ଭାତ ବା ତାଲି ବସେଇଦେଇ ଆସି ତାହା ହେବା ପର୍ଯ୍ୟନ୍ତ ଲୁଗା ବୁଣୁଥିଲେ । ପ୍ରତ୍ୟେକ ଲୋକର ରୋଷେଇଘର ସାମନାରେ ତନ୍ତ ଥାଏ । ଆସାମରେ ସ୍ତ୍ରୀଲୋକମାନେ ମେଖଲା ଓ ଗୁଦର ବ୍ୟବହାର କରୁଥିବାରୁ ଅଣଓସାରିଆ ଥାନ ବୁଣାଯାଏ – ତେଣୁ ବୁଣିବା ସହଜ । ସୁନ୍ଦର ସୁନ୍ଦର ଫୁଲ ପକାଇ ମଧ୍ୟ ବୁଣିପାରନ୍ତି । କଲେଜ ପ୍ରଫେସର୍ ଶ୍ରୀମତୀ ସମୀରଣ ମତେ ଦେଖାଇଲେ କିପରି ସେ ଯୋଡ଼େଇହୋଇଥିବା ଗୁଦରରେ ତାଙ୍କ ମା' ସୁନ୍ଦର ଫୁଲ ପକାଇ ବୁଣିଛନ୍ତି । ଅଭ୍ୟାସବଶତଃ ତାଙ୍କ ମା ବର୍ତ୍ତମାନ ଯୁଦ୍ଧା ଟିକଏ ସମୟ ପାଇଲେ ତନ୍ତ ପାଖରେ ବସି ବୁଣନ୍ତି । ଏବେ ଗାଁରେ କ୍ୱଚିତ୍ କେଉଁଠି ଖଣ୍ଡେ ତନ୍ତ ରୋଷେଇ ଘର ବାରଣ୍ଡାରେ ଲଗିଛି । ଗାଁରେ ସମସ୍ତଙ୍କ ବାଡ଼ିରେ କଦଳୀଗଛ, ଗୁଆଗଛ । ଗୁଆଗଛ ପାଖରେ ପାନ ଲଗାଯାଇଛି । ପାନର ଲଟା ଗୁଆଗଛରେ ମାଡ଼ିଛି । ପାନଗଛରୁ ପତ୍ର ଛିଣ୍ଡାଇ ଆଣନ୍ତି । ଗୁଆ ପାରିକରି ରଖଥାନ୍ତି, ଚୂନ ଖଇର ଦେଇ ପାନ ଖାଆନ୍ତି । ପାନ ଗଛ ମାଡ଼ିଥିବା ଗୁଆଗଛ ସମସ୍ତଙ୍କ ବାଡ଼ିରେ । ଯାହା ଘରକୁ ଯିବ ସେ ଘ୍ର, ଗୋଟାପାନ ଓ କଟାଗୁଆ ଖଣ୍ଡେ ଥାଳିଆରେ ଆଣିଦେବେ । ସ୍ତ୍ରୀଲୋକମାନେ ଖୁବ୍ ପରିଶ୍ରମୀ । ଗୋଟିଏ ଗୋଟିଏ ଗାଁରେ ଗିର୍ଜାଘର ଅଛି, ମାଟି ଘର । ରବିବାର ଦିନ ସେଠାକୁ ବହୁତ ଲୋକ ଆସି ପ୍ରାର୍ଥନା କରନ୍ତି । ପିଲାଛୁଆ ଓ ସ୍ତ୍ରୀଲୋକମାନେ ନାନା ପ୍ରକାର ରଙ୍ଗୀନ ଲୁଗା ପିନ୍ଧି ଗାଁ ରାସ୍ତାରେ ଚାଲିକରି ଆସୁଥିବେ । ତାହା ବଡ଼ ସୁନ୍ଦର ଦୃଶ୍ୟ । ମୁଁ ତାଙ୍କ ପ୍ରାର୍ଥନାରେ ଯୋଗଦିଏ । ସାଧାରଣ ଗାଉଁଲି ସ୍ତ୍ରୀଲୋକ, ପଢ଼ାଶୁଣା ନାହିଁ, କିନ୍ତୁ ତାଙ୍କ ଭିତରେ ଯୀଶୁଙ୍କ ପ୍ରତି ଯେଉଁ ଭକ୍ତି ଓ ବିଶ୍ୱାସ ଏବଂ ଧର୍ମନିଷ୍ଠା ତାହା ଅସାଧାରଣ ବୋଲି ମନେହୁଏ । ବଡ଼ ବଡ଼ ଝିଅମାନେ ରାସ୍ତାରେ ଯାଉଥିବେ, ସପ୍ରତିଭ ଭାବରେ । ତାଙ୍କ ମନ ଯେପରି ନିର୍ମଳ ଓ ସେ ଯେପରି ଭାବୁଛନ୍ତି ଯୀଶୁ ତାଙ୍କ ପାଖରେ ଅଛନ୍ତି ତାଙ୍କୁ ରକ୍ଷା କରିବେ । ଓଡ଼ିଶାରେ ଗାଁଲୋକ ବିଶେଷକରି ସ୍ତ୍ରୀଲୋକମାନଙ୍କର ଯେପରି ନାନାପ୍ରକାର ରାନ୍ଧବାର ଓ ପୂଜାପାର୍ବଣରେ ବା ଭଲଦିନରେ ନାନା ପ୍ରକାରର ପିଠାପଣା କରିବାର ବାଧ୍ୟ ଅଛି ଓ ସମସ୍ତେ ତାକୁ ବିଶ୍ୱାସର ସହିତ ପାଳନ୍ତି, ଆସାମର ଗାଁ ସ୍ତ୍ରୀଲୋକଙ୍କ ଭିତରେ ସେପରି ନାହିଁ । ରୋଷେଇରେ ପରିପାଟୀ ଥିବାର ଦେଖାଯାଏନାହିଁ । ଯାହା ପରିପାଟୀ ଭାତରାନ୍ଧିବାରେ । ପ୍ରତିଦିନ ଧାନ ମଲା ହେବ, ସେହି ଧାନ କୁଟାଯାଇ ସେହି ଚାଉଳର ଭାତ ରନ୍ଧାହେବ । ଦିନକ ପାଇଁ ସୁଦ୍ଧା ସେମାନେ ଘରେ ରଖାଥିବା ଚାଉଳରୁ ଭାତ ରାନ୍ଧନ୍ତି ନାହିଁ । ଘ୍ର ଚଳନ ଖୁବ୍ । ଓଡ଼ିଶାରେ ଯେପରି କୁମାରୀମାନଙ୍କର, ସଧବା ସ୍ତ୍ରୀଲୋକମାନଙ୍କର ଓ ବିଧବାମାନଙ୍କର ଅଲଗା ଅଲଗା ପର୍ବପର୍ବାଣୀ, ସେଠି ସେପରି ନାହିଁ । ସହରମାନଙ୍କରେ ବଙ୍ଗାଳୀ ଥିବାରୁ ସେଠାରେ ଦୁର୍ଗାପୂଜା ହୁଏ । ହାରି ଆସାମରେ ପ୍ରତି ଘରେ ଘରେ ମକରସଂକ୍ରାନ୍ତି ଉତ୍ସବ ପାଳନ କରାଯାଏ । ସଂକ୍ରାନ୍ତି ପୂର୍ବଦିନ ଘରେ ଘରେ ନାନାପ୍ରକାରର ପିଠା ତିଆରିକରି

ରଖନ୍ତି । ସନ୍ଧାନ୍ତ ଦିନ ସକାଳ ହେବାମାତ୍ରେ ବନ୍ଧୁବାନ୍ଧବଙ୍କ ଘରକୁ ପିଠା ନେଇକରି ଯାଆନ୍ତି ।

ମୁଁ ମୈତ୍ରୀ ଆଶ୍ରମରେ ଥିବା ସମୟରେ ପାଖ ଗାଁରେ ବାହାଘର ହେଲା । ଗାଁକୁ ଯାଆସ କରି ମୋ ସହିତ ପରିଚୟ ହୋଇଥିବାରୁ ମତେ ବି ସେମାନେ ନିମନ୍ତ୍ରଣ କଲେ । ଅନ୍ୟ-ମାନଙ୍କ ସଙ୍ଗେ ମୁଁ ଓ ବେଲା ବାହାଘରକୁ ଗଲୁ । ବାହାଘର ଖୁବ୍ ସାଦାସିଧା । ଚିତାଲେଖା ବା ଅନ୍ୟ ପ୍ରକାର ସଜାସଜି କିଛି ନାହିଁ । ହୋସ୍ପେଇର ଆଡ଼ମ୍ବର ମଧ୍ୟ ନାହିଁ । ଘଣ୍ଟା ନଅଟା ଦଶଟା ଭିତରେ ବାହାଘର ସରିଲା । ବାହାଘର ସରିବା ମାତ୍ରେ ବରକନ୍ୟା ବରଘରକୁ ଗଲେ । ଆମେ ବି ତାଙ୍କ ସାଙ୍ଗରେ ଗଲୁ କ'ଣ ହେବ ଦେଖିବାପାଇଁ । ବରକନ୍ୟାଙ୍କୁ ବନ୍ଦାପନା ଆଦି କରି ବସେଇଲେ । ଅବସ୍ଥାପନ୍ନ ଲୋକ ହୋଇଥିଲେ ଝିଅଜ୍ୱାଇଁଙ୍କୁ ଫେରାଇ ଆଣି ପରେ ବିଦା କରନ୍ତି । ଗରିବ ଲୋକ ହେଲେ ଝିଅ ଆଉ ବାପଘରକୁ ସେଦିନ ନ ଆସି ପରେ ଆସେ । ଗହଣାର ଆଡ଼ମ୍ବର ମଧ୍ୟ ନ ଥିଲା । ଗାଁ ଲୋକଙ୍କର ଘର ଆମର ଯାହି ପରି ଧାଡ଼ିବାନ୍ଧି ନୁହେଁ । ପ୍ରତ୍ୟେକ ଲୋକର ଘର ଚାରିପାଖରେ ଜମି, ମଝିରେ ଘର । ଏହିପରି ଗୋଟିଗୋଟିକିଆ ଘର ।

## ୩୪ । କାଛାଡ଼୍ ଓ ମିକୋଗ୍ରାମ

ଗାଁର ସାଧାରଣ ଚାଷୀମାନେ କହୁଥାନ୍ତି ଚୀନ ଆସିଲେ ଆମର କ'ଣ କରିବ ? ଆମେ ଯେମିତି ଚାଷକରି ଚଳୁଛୁ ସେମିତି ଚଳିବୁ । ବଡ଼ ବଡ଼ ଲୋକଙ୍କ ପାଇଁ ସିନା ଆଇନ୍ କରିବ— ଆମର କ'ଣ ଅଛି ? ତେଜପୁରରେ ଶକ୍ତିବାଲା ପ୍ରଭୃତି କହୁଥାନ୍ତି, ଚୀନ ଆସିଲେ ଆମର କଣ ଅଛି । ଯେ ଟିକସ ଚଢ଼ିବ ସେ ପଇସା ଦେବ । ଶ୍ରେଷ୍ଠ ଶ୍ରେଷ୍ଠ ଦୋକାନୀଙ୍କର ମଧ୍ୟ ସେହି ମତ । କିନ୍ତୁ କଣ୍ଟ୍ରାକ୍ଟର ଲାଭ ଉଠାଇବାକୁ ଚେଷ୍ଟାକଲେ, ମୂଲିଆଙ୍କ ମଜୁରି ଭୟ ଦେଖାଇ କମେଇଦେଲେ—ଚୀନ ମାଡ଼ି ଆସିବ, ତେଣୁ ଅଧିକ ସମୟ ଲଗେଇ କାମ କରିବାକୁ ହେବ ଇତ୍ୟାଦି । ମୁସଲମାନମାନେ କହିବାକୁ ଲାଗିଲେ ଯେ—ତମେ ମୁସଲମାନ ହେଲେ ଚୀନାମାନେ ତୁମ ପ୍ରତି ଅତ୍ୟାଚାର କରିବେ ନାହିଁ—ତମେ ସ୍ୱଚ୍ଛନ୍ଦରେ ଚଳିବ ଇତ୍ୟାଦି ।

ଭିନ୍ନ ଭିନ୍ନ ପ୍ରଦେଶରୁ ଯାଇଥିବା ଶାନ୍ତିସୈନ୍ୟମାନେ ଭିନ୍ନ ଭିନ୍ନ ସ୍ଥାନରେ ଥାନ୍ତି । ସେମାନେ ମଝିରେ ମଝିରେ ମୈତ୍ରୀଆଶ୍ରମକୁ ଆସନ୍ତି; ତେଣୁ ଅନ୍ୟ ଆଡର ଖବର ଶୁଣିବାକୁ ମିଳେ । ଖବର ମିଳିଲା ଯେ କାଛାଡ଼୍ ଜିଲ୍ଲାରେ ହିନ୍ଦୁ ମୁସଲମାନ ଗଣ୍ଡଗୋଳ ଆରମ୍ଭ ହୋଇଛି । ଖବରକାଗଜରେ ଖବର ବାହାରିଲା ଯେ କାଛାଡ଼୍ ସହରରେ ହିଁ ଗଣ୍ଡଗୋଳ ଲାଗିଛି— ମଫସଲକୁ ବ୍ୟାପିବାର ଆଶଙ୍କା ମିଳୁଛି । ଅମଳପ୍ରଭା ଦେବୀଙ୍କୁ ସମସ୍ତେ 'ବାଇଦେଓ'

ବୋଲି ସମ୍ବୋଧନ କରନ୍ତି । ଅସମୀୟା ଭାଷାରେ ବାଇଦେଓର ଅର୍ଥ ଓଡ଼ିଆରେ ଅପା ପରି । ଅମଲବାଇ ଦେଓ ମୈତ୍ରୀ ଆଶ୍ରମରେ ଥିଲେ । କାଛାଡ଼ ଯିବାପାଇଁ ମୁଁ ତାଙ୍କୁ କହିବାରୁ ସେ ସମ୍ମତ ହେଲେ ଓ କାଛାଡ଼ ଯିବାପାଇଁ ଜୀପ ଗାଡ଼ି ଓ ପୁରୁଷ କର୍ମୀ ମୋ ସାଙ୍ଗରେ ଦେଲେ । କାଛାଡ଼ ସହରରେ ପହଞ୍ଚିଲୁ । ଯେଉଁ ଭଦ୍ରଲୋକଙ୍କ ଘରେ ପହଞ୍ଚିଲୁ ସେ ଜଣେ ସ୍କୁଲ ଶିକ୍ଷକ । ତାଙ୍କଠାରୁ ସବୁ ଖବର ବୁଝିଲୁ । ଗଣ୍ଡଗୋଳ ମଫସଲକୁ ମଧ୍ୟ ବ୍ୟାପିଯାଇଥିଲା, ମାତ୍ର ସ୍ଥାନୀୟ ଲୋକେ ତାକୁ ଆୟତ୍ତକୁ ଆଣିଲେଣି ବୋଲି ଶୁଣିଲୁ । କାଛାଡ଼ ସହରରେ ବଙ୍ଗାଳୀ ଅଧିବାସୀ ବେଶି ସଂଖ୍ୟାରେ ଥାନ୍ତି । ସେଠାରେ ଉଭୟ ରହି ହିନ୍ଦୁ ଓ ମୁସଲମାନମାନଙ୍କ ସଙ୍ଗେ କଥାବାର୍ତ୍ତା କରିଲି । କେତେକ ହିନ୍ଦୁ ଓ କେତେକ ମୁସଲମାନ ଭଦ୍ରଲୋକଙ୍କ ସଙ୍ଗେ ଝିକିଏ ବନ୍ଧୁତ୍ୱ ବା ଘନିଷ୍ଠତା ହେଲା । ମୁଁ ସେଠାରେ ରହିବା ଭିତରେ ମୁସଲମାନଙ୍କର ଇଦ୍ ପର୍ବ ପଡ଼ିଲା । ଇଦ୍ ପ୍ରାର୍ଥନାରେ ଯୋଗଦେବାକୁ ମୁସଲମାନଙ୍କ ପକ୍ଷରୁ ମତେ ନିମନ୍ତ୍ରଣ କଲେ । ମୁଁ ଯାଇ ପ୍ରାର୍ଥନାରେ ଯୋଗ ଦେଲି । ଆମେ କାଛାଡ଼ ସହରରେ ଗୋଟିଏ ଡାକବଙ୍ଗଳାରେ ରହୁଥାଉ । ଖାଇବା ଭଦ୍ରଲୋକଙ୍କ ଘରେ ହୁଏ । କଥାପ୍ରସଙ୍ଗରେ ବୁଝିଲି ମିଜୋ ଅଞ୍ଚଳର ଖବର । ମୋର ମିଜୋ ଅଞ୍ଚଳକୁ ଯିବାକୁ ଭାରି ଇଚ୍ଛା ହେଲା । ଆସାମର ପାର୍ବତ୍ୟ ଅଞ୍ଚଳକୁ ମୁଁ ଆଦୌ ଯାଇନଥିଲି । ଅମଲ ବାଇଦେଓଙ୍କୁ କହିଲି ଗାରୋହିଲ, ମଣିପୁର ବା ଅନ୍ୟ କୌଣସି ସ୍ଥାନକୁ ମୋର ଯିବାର ବ୍ୟବସ୍ଥା କରିବାପାଇଁ । କାଛାଡ଼ ପାଖରେ ମିଜୋ ଅଞ୍ଚଳକୁ ଯିବାକୁ ହେଲେ କମିଶନରଙ୍କ ଅନୁମତି ନେବାକୁ ହେବ । କାଛାଡ଼ର ଜଣେ ଭଦ୍ରଲୋକ ମତେ କମିଶନରଙ୍କ ପାଖକୁ ନେଇକରି ଗଲେ, ତାଙ୍କୁ ମୋର ପରିଚୟ ଦେଇ ସବୁ କଥା କହିଲେ । ମୋର ଭାଗ୍ୟ ଭଲ ଯେ କମିଶନର ସାହେବ ମତେ ମିଜୋ ଯିବାପାଇଁ ଅନୁମତି ଦେଲେ ଏବଂ ମିଜୋର ରାଜଧାନୀ ଆଇଜଲ ସହରରେ ରହୁଥିବା ଅଫିସରଙ୍କୁ ମୋର ପରିଚୟ ଆଦି ଦେଇ ଖଣ୍ଡେ ଚିଠି ଲେଖି ମୋ ହାତରେ ଦେଲେ ଏବଂ ଆଇଜଲ ଯିବାପାଇଁ ବାଟ ବଡ଼ ଖରାପ ଥିବାରୁ ଆଇଜଲର ରାସ୍ତା ଜାଣିଥିବା ଜଣେ ଜିପ୍ ଡ୍ରାଇଭର୍ ସହିତ ଗୋଟିଏ ଭଲ ଜିପ୍ ଗାଡ଼ି ମଧ୍ୟ ଦେଲେ । ସେ ମତେ ପରାମର୍ଶ ଦେଲେ ଯେ ଆଇଜଲରେ ପାଣିର ଅଭାବ—ତେଣୁ ପିଇବା ପାଣି ସାଥିରେ ଯଥେଷ୍ଟ ଯେପରି ନିଏ । ବାଟରେ କେତେ ଲୋକ ଡାକ୍ତରଖାନାକୁ ରୋଗୀ ନେବାପାଇଁ ଗାଡ଼ି ମାଗିବେ, ତାଙ୍କୁ ଗାଡ଼ି ନଦେବାପାଇଁ କହିଲେ । କମିଶନର ସଙ୍ଗେ ସଙ୍ଗେ ଗାଡ଼ି ଓ ଡ୍ରାଇଭର ଦେଲେ । ଆମେ ପ୍ରାୟ ଗୋଟାଏ ବେଳେ କାଛାଡ଼ ଛାଡ଼ି ଆଇଜଲ ଅଭିମୁଖରେ ବାହାରିଲୁ । ସେଠାରେ ପହଞ୍ଚିଲା ବେଳକୁ ପ୍ରାୟ ରାତି ଆଠଟା । ବାଟସାରା ସୁନ୍ଦର ଦୃଶ୍ୟ ଦେଖିଲୁ । ଲୋକେ ସମସ୍ତେ ଇଂରେଜ ପୋଷାକ ପିନ୍ଧିଛନ୍ତି । ବାଟରେ ଦେଖିଲୁ ଠାଏ ଠାଏ ଫସଲ କଟା ହୋଇ ରହିଛି । ସାନ ବଡ଼ ସବୁ ପିଲାଗୁଡ଼ିକ ସୁସ୍ଥ ଦେଖାଯାଉଥାନ୍ତି । ବାଟରେ ଠାକୁ ଠା ଲୋକ ଆସି ଗାଡ଼ି ଅଟକେଇ କହିଲେ ଆମର ରୋଗୀ ଡାକ୍ତରଖାନାକୁ ଯିବାର ଅଛି, ଆପଣମାନେ ନେଇଯାନ୍ତୁ କିମ୍ବା ଆପଣମାନେ ଅପେକ୍ଷା କରନ୍ତୁ ଜିପ୍ ରୋଗୀକୁ ଡାକ୍ତରଖାନାରେ ଛାଡ଼ିଆସିଲେ ଆପଣମାନେ ଯିବେ ।

ଗାଡ଼ି ଆମକୁ ସିଧା ନେଇ ଆଇଜଲ୍‌ର ଅଫିସର୍‌ଙ୍କ ଘର ପାଖରେ ପହଞ୍ଚାଇଲା । ବାଟରେ ଗାଡ଼ିରେ ଯେଉଁ ଉଠା ପକା ହେଲା ସେଥିରେ ସମସ୍ତେ କ୍ଲାନ୍ତ । ଅଫିସରଙ୍କ ସଙ୍ଗେ ଦେଖା କରି କଥାବାର୍ତ୍ତା କଲୁ । ଅଫିସର୍ ଡାକବଙ୍ଗଳାର ଗୋଟିଏ ବଖରାର ବ୍ୟବସ୍ଥା କରି-ଦେଲେ । ଅନ୍ୟ ବଙ୍ଗଳାଗୁଡ଼ିକରେ ଅନ୍ୟ ଅଫିସରମାନେ ଥାନ୍ତି । ଡାକବଙ୍ଗଳାରେ ଆଦୌ ପାଣି ନାହିଁ । ଅନ୍ୟ ବଖରାରେ ଥିବା ଅଫିସର୍ କେହି କେହି ବାରଣ୍ଡାରେ ଥିଲେ, ତାଙ୍କୁ ପାଣି କଥା ପଚାରିବାରୁ ସେମାନେ କହିଲେ ଯେ ଆମର ତ ପାଣି ନାହିଁ ଆମେ ବସିଛୁ, କାଲି ସକାଳେ ପାଣି ଆସିଲେ ଯାହା ହେବ । ଅନ୍ୟ ଉପାୟ ନ ଦେଖି ମୁଁ ସେ ଅଫିସର୍‌ଙ୍କ ପାଖକୁ ଗଲି ଏବଂ ଗୋଟିଏ ବାଲ୍‌ଟି ପାଣି ତାଙ୍କ ଘରୁ ମାଗି ଆଣିଲି । ସେହି ବାଲ୍‌ଟିକ ପାଣିରୁ ପୁଣି ଅନ୍ୟମାନେ ଗିଲାସେ ଗିଲାସେ ପିଇଗଲେ । ରାତିରେ ଶୋଇଲୁ—ଖାଇବା ପ୍ରଶ୍ନ କାହାର ନାହିଁ । ଭୋର ହେଲା ବେଳକୁ ଦେଖାଗଲା ଆମେ ରହୁଥିବା ଡାକବଙ୍ଗଳା ସାମନାରେ ଶହ ସଂଖ୍ୟାରେ ବାଲ୍‌ଟି ଓ ନାନା ପ୍ରକାରର ପାଣି ପାତ୍ର । ପିଲାମାନେ ଗ୍ରେଟ ଗ୍ରେଟ ପାଣିପାତ୍ର ଆଣିଛନ୍ତି । ବାଉଁଶ ଫୁଟେରେ କରି ତିନ ଗ୍ୟାଲନ୍‌ର ବାଲ୍‌ଟି ଦୁଇଜଣ ଲେଖା କାନ୍ଧେଇ ନେବେ । ପାଣି ଗାଡ଼ି ଆସିଲା । ଏତେ ଲୋକ ପାଣି ନେବାକୁ ଜମା ହୋଇଥାନ୍ତି ମାତ୍ର ବିଶୃଙ୍ଖଳା ବା ଗୋଳମାଳ ନାହିଁ । ଆଗେ ପାଣି ନେଇଯିବା ପାଇଁ କେହି ବ୍ୟଗ୍ରତା ଦେଖାଉନଥାନ୍ତି । ସେମାନେ ପାଣି ନେଲେ ଓ ସାରାଦିନର ବ୍ୟବହାର ପାଇଁ ଡାକବଙ୍ଗଳାରେ ପାଣି ରଖାଗଲା । ଦିନ ଆଠଟା ବେଳକୁ ଆମେ ସେ ଅଫିସର୍‌ଙ୍କ ଘରକୁ ଗଲୁ । ଆଜି ରବିବାର, ସମସ୍ତେ ଗିର୍ଜାକୁ ଯିବେ ଡାକବଙ୍ଗଳାର ଅନ୍ୟ କୋଠରୀରେ ଥିବା ଅଫିସରମାନେ ସେମାନେ ଅଫିସର୍ ଥିବାରୁ ତାଙ୍କମାନଙ୍କର ଖାଇବା ବ୍ୟବସ୍ଥା ହୋଇଥାଏ । ଖାଇବା କଥା ଅଫିସରଙ୍କୁ ପଚାରିବାକୁ ସଙ୍କୋଚ ହେଉଥାଏ । ସେଠା ଜିଲ୍ଲାପରିଷଦର ଚେୟାରମ୍ୟାନ ଆସି ପହଞ୍ଚିଲେ । ସେ ଅଫିସର୍ ଆମକୁ କହିଲେ ଯେ ଏହାଙ୍କଠାରୁ ଆପଣ ମିଜୋରାମ ଖବର ଯାହା ଜାଣିବାକୁ ଚାହାନ୍ତି ପଚାରି ବୁଝନ୍ତୁ ଏବଂ ଆପଣଙ୍କର ଖାଇବା ଆଦିର ବ୍ୟବସ୍ଥା ମଧ୍ୟ ଇଏ କରାଇଦେବେ । ଜିଲ୍ଲା ପରିଷଦ ଚେୟାରମ୍ୟାନ କହିବା ଆରମ୍ଭ କଲେ, "ମିଜୋ ଗୋଟିଏ ପାର୍ବତ୍ୟ ଅଞ୍ଚଳ । ଜିଲ୍ଲାର ଲୋକସଂଖ୍ୟା ଅଳ୍ପ । ଏ ଜିଲ୍ଲାର ସମସ୍ତେ ଖ୍ରୀଷ୍ଟିୟାନ । ମିଶନାରୀମାନେ ବହୁ ବର୍ଷ ପୂର୍ବରୁ ମିଜୋକୁ ଆସି ଆଦିବାସୀ ଲୋକମାନଙ୍କୁ ଖ୍ରୀଷ୍ଟିୟାନ କରାଇଛନ୍ତି । ମିଜୋ ଜିଲ୍ଲାରେ ଗୋଟିଏ ମାତ୍ର କଲେଜ ଆଇଜଲ୍‌ରେ ଅଛି । ପ୍ରାଇମେରୀ ସ୍କୁଲ ସଂଖ୍ୟା ଓ ଛାତ୍ରସଂଖ୍ୟା ଅନୁସାରେ ମାଇନର ସ୍କୁଲ । ମାଇନର ସ୍କୁଲ ଛାତ୍ରଛାତ୍ରୀ ଅନୁସାରେ ମାତ୍ର ଦୁଇ ତିନୋଟି ହାଇସ୍କୁଲ ଅଛି । ମିଜୋ ଜିଲ୍ଲାର ସଙ୍ଗଠନ ଯାହା ଶୁଣିଲି ତାହା ବଡ଼ ଚମତ୍କାର । ଯେଉଁଦିନ ମିଜୋରେ ଥିଲି ସେଦିନ ଥିଲା ରବିବାର, ସମସ୍ତେ ଗିର୍ଜାକୁ ଯାଉଛନ୍ତି । ଗୋଟିଏ ହେଲେ ଲୋକ ଘରେ ନାହାନ୍ତି । ବଜାର ବନ୍ଦ । ସମସ୍ତେ ଗିର୍ଜାକୁ ଯାଉଛନ୍ତି, ମାତ୍ର ଦେଖିଲି କୌଣସି ଘରେ ତାଲା ଦିଆଯାଇ ନାହିଁ କି ଦାଣ୍ଡ କବାଟ ଭିତରୁ ବନ୍ଦ ନୁହେଁ । ଚେୟାରମ୍ୟାନ ବର୍ଣ୍ଣନା କଲେ ଯେ ଏଠି ଘରେ ତାଲା ପଡ଼େ ନାହିଁ ବା ଝୋଲାରେ ଯେ

ଫସଲ ରଖାଯାଇଛି ତା'ର ଜଗୁଆଳି ନାହାନ୍ତି । ଏ ଜିଲ୍ଲାରେ ଚୋର ନାହିଁ । ଗ୍ରାମ ସଂଗଠନ ବିଷୟରେ କହିଲେ ଯେ ପ୍ରତି ଗାଁରେ ଗାଁ କମିଟି ଅଛି । ସ୍ୱେଚ୍ଛାସେବକବାହିନୀ ଅଛନ୍ତି । ସ୍ୱେଚ୍ଛାସେବକଙ୍କୁ ଭିନ୍ନ ଭିନ୍ନ କାମ ବାଣ୍ଟି ଦିଆଯାଇଛି । ସ୍ୱେଚ୍ଛାସେବକଙ୍କ ଭିତରୁ କେତେ ଜଣ ସକାଳେ ଗୋଟିଏ ଗୋଟିଏ ପାଛିଆ ନେଇ ଗାଁକୁ ବାହାରିଯିବେ ଓ ଅବସ୍ଥାପନ୍ନ ଲୋକଙ୍କ ଘରେ ସେ ପାଛିଆ ରଖିଦେବେ । ସେମାନେ ଗାଁରେ ବୁଝିଥିବେ ଯେ କେତେ-ଜଣଙ୍କ ଘରେ ଖାଇବାକୁ ନାହିଁ ଏବଂ ତାଙ୍କ ଲୋକସଂଖ୍ୟା କେତେ । ସେହି ଅନୁସାରେ ଘରେ ଘରେ ପାଛିଆ ରଖିବେ ହିସାବ କରି । କିଛି ସମୟ ପରେ ପାଛିଆ ଗୁଡ଼ିକ ଆଣି ତହିଁରେ ରଖାଯାଇଥିବା ଶସ୍ୟକୁ ନେଇ ନଥିବା ଲୋକଙ୍କ ଘରେ ବାଣ୍ଟିଦେବେ । କେତେ ଜଣ ସ୍ୱେଚ୍ଛାସେବକ ଗାଁରେ ବୁଝିବେ ଯେ କେତେ ଜଣ ହସପିଟାଲ୍‌କୁ ଯିବା ଦରକାର ଓ କେତେଜଣଙ୍କ ପାଇଁ ଔଷଧ ଆଣିଦେବା ଦରକାର । ରୋଗୀକୁ ନେଇ ଡାକ୍ତର ଦେଖାଇ ତାଙ୍କୁ ଔଷଧ ଆଣି ଦେବା, ରୋଗୀକୁ ହସପିଟାଲ୍‌କୁ ନେବାପାଇଁ ଯା ଆସ କରୁଥିବା ଜିପ୍ ଗାଡ଼ିକୁ ଧରି କୁହାବୋଲା କରି ତାଙ୍କ ଗାଡ଼ିରେ ରୋଗୀକୁ ହସପିଟାଲ୍ ନିଅନ୍ତି । ସ୍ୱେଚ୍ଛାସେବକମାନେ ସକାଳେ ବୁଲି କାହାର କ'ଣ ଦରକାର ଖବର ବୁଝି ଯାହାର ଯାହା ଦରକାର ତାର ସେ କାମ କରନ୍ତି । ଏ କାମ ବର୍ଷ ବର୍ଷ ଧରି ବ୍ୟବସ୍ଥିତ ଭାବରେ ଚାଲିଛି । କାହାର ବାଡ଼ ଭୁଜାହେବ, କାହାର ଚାଷ କରିବାକୁ ଲୋକ ନାହାନ୍ତି, ତାଙ୍କୁ ସାହାଯ୍ୟ ଦରକାର ତ ସ୍ୱେଚ୍ଛାସେବକମାନେ କରନ୍ତି ବା କରାଇଦିଅନ୍ତି । ବାହାଘରେ ଭୋଜି ବ୍ୟବସ୍ଥା ମଧ୍ୟ ସ୍ୱେଚ୍ଛାସେବକମାନେ ଚଳାନ୍ତି ।" ସବୁ କଥା କହିସାରି ରେସ୍ତୋରମ୍ୟାନ ପଚାରିଲେ, "ଆଜି ରବିବାର, ହୋଟେଲ ବନ୍ଦ, ଦୋକାନ ପଣ ବନ୍ଦ । ଆପଣମାନେ ଖାଇବେ କିପରି ?" ଆମର ତ ଜବାବ ନାହିଁ । ସେ ଚାଉଳ ଡାଲି ପଠାଇ ଆଉ ପଠାଇ-ଦେଲେ ଓ ଡାକବଙ୍ଗଳା ଚୌକିଦାରକୁ କହିଲେ ଗିର୍ଜାକାମ ସରିଲେ ଆମକୁ ରୋଷେଇ କାର୍ଯ୍ୟରେ ସାହାଯ୍ୟ କରିବ । ଆମେ ରାନ୍ଧିକରି ଖାଇଲୁ ।

ଅପରାହ୍ନରେ ଆମକୁ ସେ ତାଙ୍କ "କମନ୍‌ରୁମ୍"କୁ ଡାକି ନେଇଗଲେ । ରେସ୍ତୋରମ୍ୟାନ୍ ଲୋକମାନଙ୍କୁ କହିଲେ କମନରୁମ୍‌ରେ ଏକାଠି ହୋଇ ଆମ ସାଙ୍ଗରେ କଥାବାର୍ତ୍ତା କରିବା-ପାଇଁ । କମନ୍‌ରୁମ୍‌କୁ ଯାଇ ଦେଖିଲୁ ଗାନ୍ଧୀଜୀଙ୍କର ଖଣ୍ଡେ ବଡ଼ ଫଟୋ ଟଙ୍ଗା ହୋଇଛି । ଗାନ୍ଧୀଙ୍କୁ ଜାଣନ୍ତି ମାତ୍ର ତାଙ୍କ ବିଷୟରେ ବିଶେଷ କିଛି ଜାଣନ୍ତି ନାହିଁ । ଜବାହରଲାଲଙ୍କ କଥା ପଚାରିବାରୁ କହିଲେ, "ହଁ ସେ ଏବେ ଭାରତର ପ୍ରଧାନମନ୍ତ୍ରୀ । ତାଙ୍କ ବିଷୟରେ ଆଉ କିଛି ଆମେ ଜାଣୁନାହିଁ ।" ଅନ୍ୟ ନେତାମାନଙ୍କ ନାଁ ପଚାରିଲି, କାହାରିକୁ ଜାଣନ୍ତି ନାହିଁ । ଗାନ୍ଧୀଜୀ ଅହିଂସ ଉପାୟରେ ଭାରତକୁ ସ୍ୱାଧୀନ କରିଥିଲେ ଏତିକି ଜାଣନ୍ତି । ବଜାରରେ ଦରଦାମ୍ କରାଯାଏ ନାହିଁ, ଦୋକାନୀ ଯାହା ଦାମ୍ କହିବ ସେହି ଦାମ୍ ଦେଇ ଜିନିଷ କିଣାଯିବ । କଳିକଜିଆ ନାହିଁ । ମୋକଦ୍ଦମା କରିବା ଦରକାର ହୁଏ ନାହିଁ । ଆମେ ସବୁବେଳେ ପରସ୍ପରକୁ ସାହାଯ୍ୟ କରିବାକୁ ପ୍ରସ୍ତୁତ ଥାଉ । ଯାହାର ଯାହା ଅଭାବ ତାକୁ ପୂରଣ କରିବାରେ ସଚେଷ୍ଟ ଥାଉ । ତାଙ୍କ ସଂଗଠନ କଥା ସେ କହିଲେ ବିସ୍ତାରିତ ଭାବରେ, ତାପରେ ଆମକୁ ତାଙ୍କ

ନେଲେ ବଜାର ଦେଖେଇବାକୁ । ଅତି ଶ୍ରେଷ୍ଠ ବଜାର । ରବିବାର ଯୋଗୁ ସକାଳେ ବନ୍ଦ ଥିଲା । ଦୋକାନୀ ମଧ୍ୟ କହିଲେ ସେମାନେ ଯାହା ଦାମ୍ କହିବେ ଗ୍ରାହକ ସେହି ଦାମ୍‌ରେ ନେବେ—ଦ୍ୱିରୁକ୍ତି କରୁ ନାହିଁ ।

କଳିକଜିଆ ନ ହେବାର କାରଣ ହେଲା ଯେ ଯାହାର ବାଡ଼ ଭାଙ୍ଗି ଯାଇଛି ତା' ଘର ଲୋକଙ୍କ ସାହାଯ୍ୟ କରି ସ୍ୱେଚ୍ଛାସେବକ ବାଡ଼ ବୁଜିଦେବେ । ଫସଲ ଅମଳବେଳେ ଯାହା କିଆରୀରୁ ଫସଲ ଆଗ କଟାଯିବା ଦରକାର ବା ଉପୁଡ଼ା ହେବା ଦରକାର ତା କିଆରୀ କାମ ଆଗେ ହେବ, ତାପରେ ଆବଶ୍ୟକ ଅନୁସାରେ ଅନ୍ୟମାନଙ୍କର ହେବ । ବିଲ ଚଷ ହେବା, ବିହନ ବୁଣାଯିବା ଓ ବଗ୍ରବଛ ଆଦି ସବୁ ଯାହାର ଯେତେବେଳେ ଦରକାର ସେହି ଅନୁସାରେ ହେବ । ସେଥିରେ ଧନୀ ବା ପ୍ରତିଷ୍ଠାବାନ୍ ଲୋକର ପ୍ରଶ୍ନ ନାହିଁ । ଫସଲ ଅମଳ କରି ଖଳାରେ ରଖାହୋଇଥିବ—ବର୍ଷା ହେଲେ ଘରକୁ ଆସିବ । ସକାଳେ ପାଣି ଗାଡ଼ି ଆସିବାବେଳେ ସାଗ୍ ସହରର ଲୋକ ଅସିଲେ । ପିଲାଛୁଆ ସବୁ ଆସିଥିଲେ, ମାତ୍ର ଗୋଟିଏ ହେଲେ ପିଲାକୁ ରୁଗ୍‌ଣ ଦେଖିଲି ନାହିଁ । ପିଲା ଗୁଡ଼ିକ ସୁସ୍ଥ ଓ ସତେଜ ଦେଖାଯାଉଥାନ୍ତି ।

ଅନ୍ୟ ସବ୍‌ଡିଭିଜନ୍‌ର ମୁଖ୍ୟ ସହର ପାହାଡ଼ ଉପରେ । ସେଠାକୁ ଯିବାକୁ ହେଲେ, ସେ ସ୍ଥାନକୁ ଜୀପ୍ ଗାଡ଼ି ନେଇ ଯିବାକୁ ହେଲେ ପାକବାର ଡ୍ରାଇଭର ଦରକାର । ଡାକ-ବଙ୍ଗଳାରେ ଥିବା ଜଣେ ଅଫିସର ବର୍ଣ୍ଣନା କଲେ ଯେ ସେ ଜୀପ୍‌ରେ ଯାଉଥିଲେ, ତାଙ୍କୁ ଏତେ ଡର ମାଡ଼ିଲା ଯେ ସେମାନେ ଯେଉଁ ଛଅ ଜଣ ଗାଡ଼ିରେ ଥିଲେ ସମସ୍ତେ ପରସ୍ପରକୁ କୁଣ୍ଢାଇ ଡ୍ରାଇଭରକୁ ଧରିଲେ । ଡ୍ରାଇଭର ଗାଡ଼ି ବନ୍ଦ କଲେ ଓ ସମସ୍ତେ ଯାତ୍ରା ବନ୍ଦ କରି ତଳକୁ ଫେରିଆସିଲେ ।

ଆସାମ ପ୍ରଦେଶର ସବୁଠୁ ଗୋଟିଏ ଉଲ୍ଲେଖଯୋଗ୍ୟ କଥା ହେଉଛି ସେଠା "ନାମଘର" । ପ୍ରତି ଗାଁରେ ଗୋଟିଏ ଲେଖାଁ ନାମଘର ଅଛି । ସନ୍ଧ୍ୟାବେଳେ ନାମଘରେ ସମସ୍ତେ ଏକାଠି ହୋଇ ମାଧବ ଦେବ ଓ ଶଙ୍କର ଦେବଙ୍କ ପ୍ରଣୀତ ନାମଘୋଷା ବୋଲନ୍ତିଏ । ସବୁ ନାମ ଘୋଷାର ସ୍ୱର ଏକାପରି, ତେଣୁ ସମସ୍ତେ ଏକାଠି ବୋଲିଲେ ମଧ୍ୟ ବେସୁରା ହୁଏ ନାହିଁ । ନାମଘରେ ଗାଁର ପୁରୁଷ ଲୋକ, ସ୍ତ୍ରୀଲୋକ, ପିଲାଛୁଆ ସମସ୍ତେ ଏକାଠି ବସି ନାମଘୋଷା ବୋଲିବା ସେମାନଙ୍କର ରୀତି । ଖ୍ରୀଷ୍ଟିୟାନମାନଙ୍କର ଗିର୍ଜାରେ ବୋଲି ଯାଉଥିବା ପ୍ରାର୍ଥନା ସଙ୍ଗୀତ ଯେପରି ଗୋଟିଏ ସ୍ୱରରେ ସମସ୍ତେ ବୋଲନ୍ତି, ସେଥିରେ ବେସୁରା ନ ଥାଏ, ନାମ ଘୋଷାରେ ସେହିପରି ବେସୁରା ଆଦୌ ହୁଏ ନାହିଁ । ନାମ ଘୋଷାର ପଦ ସମସ୍ତଙ୍କର ମୁଖସ୍ଥ, ପାଠ ନ ପଢ଼ିଥିବା ଲୋକେ ବି ବୋଲନ୍ତି, ବୋଲି ବୋଲି ମୁଖସ୍ଥ ହୋଇ ଯାଇଥାଏ । ଅମଲା ବାଇଦେଓ ସଭୃତ ଆଶଙ୍କା ପ୍ରକାଶ କରନ୍ତି ଯେ ଇଂରେଜୀ ଶିକ୍ଷାର ପ୍ରାଦୁର୍ଭାବରେ ଏହା ଆଉ କେତେ ଦିନ ରହିବ ! ସମାଜମଙ୍ଗଳ ବୋର୍ଡ଼ର ଚେୟାରମ୍ୟାନ ଆସିଲେ । ସେ ସେଠାରେ ବସି ନାମଘୋଷା ବୋଲିବାକୁ ଆରମ୍ଭ କଲେ । ସେହିପରି

ଦେଖାଯାଏ ଯେ କେହି ପଦସ୍ଥ ବ୍ୟକ୍ତି ଆସି ଦେଖିଲେ ସେହି ନାମଘୋଷା ବୋଲିହେଉଛି ତ ସେ ସଙ୍ଗେ ସଙ୍ଗେ ବସିପଡ଼ି ବୋଲିବାକୁ ଆରମ୍ଭ କରନ୍ତି । ଆସାମ ଲୋକଙ୍କର ଯେପରି ସମସ୍ତଙ୍କର ନାମଘୋଷା ବୋଲିବାର ଅଭ୍ୟାସ ଅଛି ସେହିପରି କଳା ତଥା ସୌନ୍ଦର୍ଯ୍ୟଜ୍ଞାନ ମଧ୍ୟ ସମସ୍ତଙ୍କ ଭିତରେ ଅଛି । ବଗିଚ୍ଚ ଭିତରେ ଘରଟିଏ । ବାହାରୁ ଦେଖିଲେ ବଗିଚ୍ଚ ଭିତରେ ଘରଟି ଥିବାରୁ ପ୍ରାକୃତିକ ଦୃଶ୍ୟ ବଡ଼ ସୁନ୍ଦର । ସେଠା ବାଉଁଶ ଅନ୍ୟ ପ୍ରକାରର । ଘରେ କାଠ ଜିନିଷ ବହୁତ କମ୍ ଥାଏ, ପ୍ରାୟ ସବୁ ବାଉଁଶରେହିଁ ହୋଇଥାଏ । ବାଉଁଶଗୁଡ଼ାକ ନରମ, ତାକୁ ଫଟେଇ ସେଥିରେ ଶୋଇବା ଖଟ ପ୍ରଭୃତି କରନ୍ତି । ସ୍ତ୍ରୀଲୋକମାନେ ଆମ ପରି ଶାଢ଼ୀ ପିନ୍ଧନ୍ତି ନାହିଁ । ମେଖଳା, ଘାଗରା ପରି ଜିନିଷ, ତା ଉପରେ ଅଣ୍ଟାରେ ଖଣ୍ଡେ ଅଣ-ଓସାର ଗାମୁଛା ବାନ୍ଧନ୍ତି । ଦେହରେ ସାଧାରଣ ବ୍ଲାଉଜ ପିନ୍ଧନ୍ତି ଓ ଖଣ୍ଡେ ଗାମୁଛା ଦେହରେ ପକାନ୍ତି । ଅଣ୍ଟାରେ ବନ୍ଧା ସରୁ ଗାମୁଛା, ଓଢ଼ଣା ଗାମୁଛା, ମେଖଳା ଓ ବ୍ଲାଉଜରେ ଖୁବ୍ କାରୁକାର୍ଯ୍ୟ ହୋଇଥାଏ ।

## ୩୪ । ଗ୍ରାମଦାନ-ସମାଚାର

ଫେବୃୟାରୀ କୋଡ଼ିଏ ତାରିଖରୁ ମାର୍ଚ୍ଚ ପନ୍ଦର (୧୯୬୪) ପର୍ଯ୍ୟନ୍ତ କୋରାପୁଟରେ ବୁଲିଲି । କୋରାପୁଟ ଜିଲ୍ଲାର ନବରଙ୍ଗପୁର, ରାୟଗଡ଼ା, ନାରାୟଣପାଟଣା, କୋଡ଼େଙ୍ଗୁ, ଲକ୍ଷ୍ମୀପୁର, ଶିଉନାଗୁଡ଼ା, ତରାଗାଁ, ପାଡ଼ୁଆ, ପୋଟାଙ୍ଗୀରେ ବୁଲିଲି । ମୋଟ ଛଅଟି ଗ୍ରାମଦାନ ସମ୍ମିଳନୀ ହେଲା । ନବରଙ୍ଗପୁରରେ ସାଧାରଣ ସଭା ହେଲା । ଜୟପୁରର ବିଶିଷ୍ଟ ଲୋକଙ୍କ ଏକ ବନ୍ଧୁମିଳନରେ ଭେଟିଲି ।

କୋଡ଼େଙ୍ଗୁ ଗ୍ରାମଦାନ ସମ୍ମିଳନୀରେ ନଅଟି ଗ୍ରାମଦାନୀ ଗାଁର ପ୍ରାୟ ଶହେ ଲୋକ ଯୋଗ ଦେଇଥିଲେ । ବିବିଧ କାର୍ଯ୍ୟକ୍ରମ ସମ୍ବନ୍ଧରେ ଆଲୋଚନା ହେଲା । ଏହାଛଡ଼ା ଏ ଗାଁ ଗୁଡ଼ିକରେ ପାଣିର ଅଭାବ ଦୃଷ୍ଟିରୁ କୂଅ ଖୋଳାଇବା ଓ ନିଶାନିବାରଣ ବିଷୟରେ ମଧ୍ୟ ଆଲୋଚନା ହେଲା । ଏ ଗାଁ ଲୋକେ ଗ୍ରାମ-ପାଣ୍ଠି ରଖିଛନ୍ତି । ବାହାଘର ପାଇଁ କରଜ କରିବାକୁ ପଡ଼ୁଥିବାରୁ ଯୌତୁକ ପ୍ରଥା ଉଠାଇ ଦେବା ବିଷୟରେ ଆଲୋଚନା ହେଲା । ନବଜୀବନ ମଣ୍ଡଳର କର୍ମୀ ଶ୍ରୀ ଗୋଲକ ଚନ୍ଦ୍ର ମହାନ୍ତି ଏଠାରେ କାମ କରୁଛନ୍ତି ।

ନାରାୟଣପାଟଣା ନିକଟରେ ଡ଼ୁମସୁଲ ଗାଁରେ ଗୋଟିଏ ଗ୍ରାମଦାନ ସମ୍ମିଳନୀ ହେଲା । ବନ୍ଧୁଗାଁଣ ଖଣ୍ଡ ଗାଁରୁ ହଜାରେରୁ ଅଧିକ ଲୋକ ଆସିଥିଲେ । ଏ ସମ୍ମିଳନୀରେ ଗୋଟିଏ ଗ୍ରାମଦାନୀ ଗାଁର ଆଦିବାସୀ ଭାଇ ଶ୍ରୀ ରତନ ସାଓଁତା ସଭାପତି ହେଲେ । ଏ କ୍ଷେତ୍ରରେ ନାରାୟଣପାଟଣା କ୍ଷେତ୍ର ସମିତି ପକ୍ଷରୁ ଗାଁମାନଙ୍କୁ କରଜ ଦେଉଛନ୍ତି ଏବଂ ଝାଡ଼୍-

ତେନ୍ଦୁଲି ଆଦି ଜଙ୍ଗଲଜାତ ଦ୍ରବ୍ୟ ଉଚିତ ମୂଲ୍ୟରେ କିଣୁଛନ୍ତି । ଫଳରେ ଲୋକଙ୍କ ଆର୍ଥିକ ଅବସ୍ଥା ସୁଧୁରିଛି । ଏ କ୍ଷେତ୍ରରେ ମୋଟ ୧୬୦ ଗ୍ରାମଦାନ ମିଳିଛି । ୭୩ ଖଣ୍ଡ ଗାଁକୁ ସରକାରୀ ସ୍ୱୀକୃତ ମିଳିଛି । ଗାଁ ଲୋକେ ଗ୍ରାମଦାନର ଆବଶ୍ୟକତା ବିଷୟରେ ଭାଷଣ ଦେଲେ । ଦୁଇ ତିନଟି ଗାଁର ଲୋକ କହିଲେ -ଆମକୁ କହୁଛନ୍ତି ଯେ ଗ୍ରାମଦାନ କରିବା ପରେ ତମକୁ ଖୁବ୍ ଖଟେଇବେ । ତୁମ ଖାଦ୍ (ଖାଦ୍ୟ) ଗୋଟାଏ ଜାଗାରେ ଏକାଠି ରଖି ତମକୁ ଭାତୁଆ (ପଙ୍ଗୁ) ଦେବେ । ସେଥିପାଇଁ ଆମେ ଗ୍ରାମଦାନ କରିବାକୁ ଡ଼ରୁଛୁ । ଏହାର ଉତ୍ତରରେ ସଭାପତି ଶ୍ରୀ ରତନ ସାଓଁତା ଯେ କି ନିରକ୍ଷର ଅଟନ୍ତି କହିଲେ ଯେ—ହେ ଭାଇମାନେ ! ସମସ୍ତେ ଶୁଣ, ଆମେ ସବୁ ଏ ଦେଶରେ ନାରାୟଣପାଟଣାରେ ବିନୋବା ମହାପ୍ରଭୁଙ୍କୁ ଗ୍ରାମଦାନ ଦେଲୁ । ଆମେ ବହୁତ ଦୁଃଖ ସହୁଥିଲୁ । ଜମି ବିକୁଥିଲେ । ସାହୁକାର ପାଞ୍ଚଟଙ୍କା ଦେଇ ଶହେ ଟଙ୍କା ଲେଖେଇ ନେଉଥିଲା । ବିନୋବା ମହାପ୍ରଭୁ ଆମକୁ ଧର୍ମ ଶିଖେଇଲା । ସେ କହିଲା ଜମି ବିକିବା, ବନ୍ଧା ଦେବା ବନ୍ଦକର, ତା'ହେଲେ ଜମି ବାହାର ଲୋକଙ୍କ ହାତକୁ ଯିବ ନାହିଁ । ସମସ୍ତେ ବାଣ୍ଟିକୁଣ୍ଟି ଖାଅ । ଗାଁରେ ପାଞ୍ଚଘର ଥିଲେ ପାଞ୍ଚ ବାଣ୍ଟ କର । କୋଡ଼ିଏ ଘର ଥିଲେ କୋଡ଼ିଏ ବାଣ୍ଟ କର ।

ହେ ଭାଇ, ତୋ ପାଖରେ ଯଦି ଜମି କମ୍ ଅଛି, ଗୋଟାପୁଅ ଅଛନ୍ତି, ଆଉ ଗୋଟିଏ ପୁଅ ଯଦି ତୋର ଜନ୍ମନ୍ତା ତାକୁ ସେହି ଜମିରୁ ବାଣ୍ଟ ଦିଅନ୍ତୁ ନା ନାହିଁ ? ବିନୋବା ମହାପ୍ରଭୁ କହିଛି ଭୂମିହୀନଙ୍କୁ ନିଜ ପୁଅ ମଣିବ । ଆମେ ତାହା କଲୁ, ସମସ୍ତଙ୍କୁ ଜମି ବାଣ୍ଟିଲୁ । ଗ୍ରାମଦାନ ଦେଲୁ । ଜମି ବିକୀ ଖରଦ୍ ବନ୍ଦ କଲୁ । ଗାଁ ପାଣ୍ଠି କଲୁ । ଏବେ ଦେଖ୍ ଆମେ ବଞ୍ଚିଛୁ କି ନାହିଁ ।

ଲିତାପୁଟ ଗ୍ରାମଦାନ ସମ୍ମିଳନୀକୁ ପନ୍ଦର ଖଣ୍ଡ ଗାଁରୁ ପ୍ରାୟ ଦୁଇଶହ ଲୋକ ଆସିଥିଲେ । ଏଥିରୁ ଗ୍ରାମଦାନୀ ଗାଁ ହେଉଛି ଦଶଖଣ୍ଡ । ଏ ଗାଁରେ ଗ୍ରାମପାଣ୍ଠି କରାଯାଇ ଥିବାରୁ ସାହୁ-କାରଙ୍କ ଅତ୍ୟାଚାରରୁ କିଛିଏ ମୁକ୍ତି ମିଳିଛି । ତ୍ରିବିଧ କାର୍ଯ୍ୟକ୍ରମ କଥା ବୁଝାଇଲାରୁ ଲୋକଙ୍କ ମନରେ ଗୋଟିଏ ନୂଆ ଆଶାର ସଞ୍ଚାର ହେବାର ଦେଖିଲି । ଏଠାରେ ଉତ୍କଳ ନବଜୀବନ ମଣ୍ଡଳର ସେବିକା ସୁଷମା ପାତ୍ର କାମ କରୁଛନ୍ତି । ଏଠାରେ କେତେଜଣ ସାହୁକାରଙ୍କୁ ଭେଟି ସୁଲଭ ଗ୍ରାମଦାନ କଥା ଆଲୋଚନା କଲି । ନାରାୟଣପାଟଣାର ମହିଳା ସମିତିର ସଦସ୍ୟ, ପଞ୍ଚାୟତ ସମିତିର ଚେୟାରମ୍ୟାନ, ସରପଞ୍ଚଙ୍କୁ ଭେଟି ତ୍ରିବିଧ କାର୍ଯ୍ୟକ୍ରମ କଥା କହିଲି ।

ଜୟପୁର ସହରରେ ଓକିଲ, ଡ଼ାକ୍ତର ଓ ସାମ୍ବାଦିକଙ୍କୁ ଭେଟି ଗାନ୍ଧୀ ଶତବାର୍ଷିକୀ ସମାରୋହ ସମ୍ବନ୍ଧରେ ଏକ ବନ୍ଧୁ ମିଳନରେ କଥାବାର୍ତ୍ତା କଲି । ଶାନ୍ତି ସେବକ ଓ ଶାନ୍ତି ପାତ୍ର ସଂଗ୍ରହ କାମ ଆରମ୍ଭ କରିବାପାଇଁ ସ୍ଥାନୀୟ ଲୋକେ ପ୍ରସ୍ତାବ ଦେଲେ । ଶ୍ରୀ ହନୁମନ୍ତ ରାଓ ଓ ଶ୍ରୀ ରାମଚନ୍ଦ୍ର ସାହୁ ଓକିଲ ଏ କାମରେ ସମୟ ଦେବାକୁ କହିଲେ । ଶ୍ରୀ ମିଠୁଲାଲ ଜୟପୁରରେ ଏ କାମର ତତ୍ତ୍ୱାବଧାରକ ହେବେ ।

ପୋଟାଙ୍ଗୀ ଥାନାର ସିପାଷିପୁଟ ଗାଁରେ ୭୨ ଖଣ୍ଡ ଗ୍ରାମଦାନୀ ଗାଁର ପ୍ରାୟ ୫୦୦ ଲୋକ ଗ୍ରାମଦାନ ସମ୍ମିଳନୀରେ ଯୋଗଦେଇଥିଲେ । ଏଠାରେ ଗ୍ରାମଦାନ ଗାଁମାନଙ୍କରେ ଜମି ବଣ୍ଟନ କାମ ହୋଇଛି, ମାତ୍ର ସରକାରୀ ସ୍ୱୀକୃତି ଆଦୌ ମିଳିନାହିଁ । ଦ୍ୱିତୀୟତଃ ଏଠା ଗ୍ରାମଦାନରେ ବଡ଼ ବଡ଼ ଜମିମାଲିକ ସାମିଲ ହୋଇନଥିବାରୁ ଅଳ୍ପ ଜମି ଥିବା ଲୋକଙ୍କ ଜମି ବଣ୍ଟନ ହୋଇଛି । ଏ ଜମି ପର୍ଯ୍ୟାପ୍ତ ହୋଇ ନଥିବାରୁ ଲୋକେ ପୋଡ଼ୁ ଚାଷ କରି ଚଳୁଛନ୍ତି । ବର୍ତ୍ତମାନ ଜଙ୍ଗଲ ବୃଦ୍ଧି ଯୋଜନା ହେତୁ ପାହାଡ଼ରେ ପୋଡ଼ୁଚାଷ ନିଷେଧ ହେଲଣି । ସେଥିପାଇଁ ସେମାନଙ୍କୁ ବହୁତ କଷ୍ଟ ସହିବାକୁ ପଡ଼ୁଛି । କିଛି ଲୋକ ମିଗ୍ କାରଖାନାରେ ମୂଲ ଲାଗୁଛନ୍ତି । ପୋଟାଙ୍ଗୀରେ ଶୀତ ଓ ବର୍ଷା ବହୁତ ବେଶି ହେଉଥିବାରୁ ବଳଦ ଏକ ବର୍ଷରୁ ଅଧିକ ବଞ୍ଚୁ ନାହାନ୍ତି । ପ୍ରତିବର୍ଷ ବଳଦ କିଣିବାକୁ ପଡ଼ୁଥିବାରୁ ଚାଷୀ କରଜରେ ବୁଡ଼ିଯାଉଛି । ଏହା ଏକ ଚିନ୍ତାର ବିଷୟ । ଏଠାରେ ଗୋଟିଏ ଗ୍ରାମଦାନୀ ସଂଘ ଗଢ଼ାଗଲା । ତ୍ରିବିଧ କାର୍ଯ୍ୟକ୍ରମ ବିଷୟରେ ଆଲୋଚନା ହେଲା ।

ପାଡ଼ୁଆ ଥାନାର ଚମ୍ପାପୁଟ ଗାଁରେ ୫୨ ଖଣ୍ଡ ଗ୍ରାମଦାନୀ ଗାଁର ପ୍ରାୟ ୫୦୦ ଲୋକଙ୍କ ସମ୍ମିଳନୀ ହେଲା । ସ୍ଥାନୀୟ ଗ୍ରାମବାସୀ ଶ୍ରୀ ଶ୍ୟାମ ଗାଣ୍ଡା ସଭାପତି ହେଲେ । ଏଠାରେ ଭୂମି ବଣ୍ଟନ ହୋଇଥିଲେହେଁ ସରକାରୀ ସ୍ୱୀକୃତି ମିଳିନାହିଁ । ଏଠାରେ ମାଛକୁଣ୍ଡ ଯୋଜନା ହେତୁ ଚାଷ ଜମି ଜଳଭଣ୍ଡାରରେ ବୁଡ଼ିଯାଇଛି । ପୁଣି ରେଳପଥ ପାଇଁ ବହୁତ ଜମି ଚାଲି ଯାଇଛି । ସେଥିପାଇଁ ଅନେକ ଲୋକ ଦଣ୍ଡକାରଣ୍ୟ ପୁନର୍ବସତି କ୍ଷେତ୍ରକୁ ଚାଲିଯାଇଥିଲେ । ସେଠାରେ ତାଙ୍କୁ ସରକାରୀ ସାହାଯ୍ୟ ତିରିଶ ଟଙ୍କା ସ୍ଥଳେ ପାଞ୍ଚଟଙ୍କା ମାତ୍ର ମିଳିଛି । ଏଣୁ ସେମାନେ ପୁଣି ଫେରି ଆସିଛନ୍ତି । ରେଳପଥ ତିଆରି କାମ କରିବାକୁ ଗଲେ କଣ୍ଟ୍ରାକ୍ଟର କାମ କରାଇ ମୂଲ ଦେଉନାହାନ୍ତି । ମାଛକୁଣ୍ଡ ଓ ରେଳପଥରେ ଚାଷଜମି ଚାଲି ଯିବାରୁ ଲୋକେ ଜଙ୍ଗଲରେ ପୋଡ଼ୁଚାଷ କରୁଥିଲେ । ଏବେ ଜଙ୍ଗଲ ବୃଦ୍ଧି ଯୋଜନା ଯୋଗୁଁ ତାହା ନିଷିଦ୍ଧ ହୋଇଛି । ସରକାରଙ୍କ ସହିତ ଏ ବିଷୟରେ କଥାବାର୍ତ୍ତା କରିବା ପାଇଁ ଗ୍ରାମବାସୀ ଗୋଟିଏ ପ୍ରସ୍ତାବ ଗ୍ରହଣ କଲେ । କୋରାପୁଟର କଲେକ୍ଟରଙ୍କୁ ଭେଟି ମୁଁ ଏ ବିଷୟରେ କଥାବାର୍ତ୍ତା କଲି । ସେ ପ୍ରତିଶ୍ରୁତି ଦେଲେ ଯେ ପାଡ଼ୁଆ ଲୋକଙ୍କୁ ପାହାଡ଼ରେ ଚାଷ କରିବା ପାଇଁ ଅନୁମତି ଦିଆଯିବ ଏବଂ ଯେଉଁମାନେ ଦଣ୍ଡକାରଣ୍ୟ ଯିବାକୁ ଚାହିଁବେ ସେମାନଙ୍କ ପାଇଁ ସୁବ୍ୟବସ୍ଥା କରିବେ । ପାଡ଼ୁଆ ଲୋକେ କେଉଁ ପାହାଡ଼ ଗୁଡ଼ିକରେ ଚାଷ କରିବେ ଏବଂ କେଉଁ ପାହାଡ଼ରେ କାଜୁ ଗଛ ଲାଗିବ ତାହା ସରକାରୀ କର୍ତ୍ତୃପକ୍ଷଙ୍କୁ ଜଣାଇବେ ।

'ଜନସଖା' ପତ୍ରିକାର ସମ୍ପାଦକଙ୍କୁ ଭେଟି ତ୍ରିବିଧ କାର୍ଯ୍ୟକ୍ରମ କଥା କହିଲି । ସେ ଅଳ୍ପ ଦିନ ପୂର୍ବେ ଭୂଦାନ ଆନ୍ଦୋଳନ ବିଷୟରେ ପ୍ରତିକୂଳ ମତ ଦେଇଥିଲେ । ଆଲୋଚନା ପରେ ବିନୋବା-ପ୍ରବଚନର ସରଳ ଅନୁବାଦ ନିଜ ସମ୍ବାଦପତ୍ରରେ ଛାପିବାକୁ ସେ ରାଜିହେଲେ ।

ବୈପାରୀଗୁଡ଼ା ଥାନାର ନିର୍ମାଣ କର୍ମୀ ଓ କ୍ଷେତ୍ର ସମିତିର ସଦସ୍ୟଙ୍କୁ ଭେଟି ୧୯୬୯ ପର୍ଯ୍ୟନ୍ତ ତ୍ରିବିଧ କାର୍ଯ୍ୟକ୍ରମରେ ଲଗିବାକୁ ବୁଝାଇଥିଲି । ନୂଆ ଗ୍ରାମଦାନ ଓ ଶାନ୍ତିସେନା ସଂଗ୍ରହ କରିବା ପାଇଁ ସମିତି ଏକ ପ୍ରସ୍ତାବ ଗ୍ରହଣ କରିଥିଲେ ।

ନବରଙ୍ଗପୁର ସବ୍‌ଡିଭିଜନରେ ସାତୋଟି ଶାନ୍ତି କେନ୍ଦ୍ର ଅଛି । ମୋଟ ଶାନ୍ତି ସୈନିକ ହେଉଛନ୍ତି ୧୨୦ । ୩୫୦ ଗ୍ରାମଦାନ ହୋଇଛି । ୧୫୦ ଗାଁକୁ ସରକାରୀ ସ୍ୱୀକୃତି ମିଳିଛି । ଏହି ସବ୍‌ଡିଭିଜନର ଡାବୁଗାଁରେ ୨୨ ଖଣ୍ଡ ଗ୍ରାମଦାନୀ ଗାଁର ପ୍ରାୟ ୭୦୦ ଲୋକଙ୍କର ସମ୍ମିଳନୀ ହେଲା । ସ୍ଥାନୀୟ ଏମ୍.ଏଲ୍.ଏ. ଶ୍ରୀ ଜଗନ୍ନାଥ ତ୍ରିପାଠୀ ଏହି ସମ୍ମିଳନୀରେ ସଭାପତିତ୍ୱ କରିଥିଲେ । ଏଠାରେ ଶାନ୍ତିସୈନିକମାନେ ମୁଖ୍ୟତଃ ଗ୍ରାମଦାନ ସଂଗ୍ରହ, ନିଶା ନିବାରଣ ଓ ଗାଁ କଳି ତୁଟାଇବା କାମ କରୁଛନ୍ତି । ଏଠା ଗାଁ ଲୋକଙ୍କ ଉତ୍ସାହ ଏତେ ସଂକ୍ରାମକ ଯେ ଗଞ୍ଜାମ ଜିଲ୍ଲାର ଆର୍ ଉଦୟଗିରିର ଏମ୍. ଏଲ୍. ଏ ଏହି ବାତାବରଣ ଦ୍ୱାରା ପ୍ରଭାବିତ ହୋଇ ନିଜ ଅଞ୍ଚଳରେ ଗ୍ରାମଦାନ କାମ ଆରମ୍ଭ କରିବାକୁ ପ୍ରତିଶ୍ରୁତି ଦେଲେ । ସମ୍ମିଳନୀରେ ଡାବୁଗାଁ, କୋଡ଼ିଗାଁ, ଉମରକୋଟ ଓ ଝରିଗାଁ ଥାନାର ସବୁଗାଁ ଗ୍ରାମଦାନ ୧୯୬୯ ସୁଦ୍ଧା କରାଇବା ଓ ଶାନ୍ତିସେନା ଓ ଗ୍ରାମାଭିମୁଖୀ ଖଦି କାମ ସଂପନ୍ନ କରିବାକୁ ପ୍ରସ୍ତାବ ଗୃହୀତ ହେଲା ।

ବୋରିଗୁମା ଥାନାର ଡାରିଗାଁରେ ଗୋଟିଏ ଗ୍ରାମଦାନ ସମ୍ମିଳନୀ ହେଲା । ଶ୍ରୀ କ୍ଷିତୀଶ ରାୟଚୌଧୁରୀ ଉପସ୍ଥିତ ଥିଲେ । ଏଠାକୁ ୩୨ ଖଣ୍ଡ ଗାଁର ୪୦୦ ଲୋକ ଆସିଥିଲେ । ଶାନ୍ତିସୈନିକଙ୍କ ଉତ୍ସାହ ଦେଖି କ୍ଷିତୀଶବାବୁ ଖୁସିହେଲେ । ତ୍ରିବିଧ କାର୍ଯ୍ୟକ୍ରମକୁ ସଫଳ କରିବାପାଇଁ ଏଠାରେ ମଧ୍ୟ ପ୍ରସ୍ତାବ ଗୃହୀତ ହେଲା । ଶ୍ରୀ ବୃନ୍ଦାବନ ଜେନା କୋରାପୁଟ, ନାରାୟଣପାଟଣା, ଦଶମନ୍ତପୁର ଓ ଲକ୍ଷ୍ମୀପୁର ଥାନାରେ ତ୍ରିବିଧ କାର୍ଯ୍ୟକ୍ରମକୁ କାର୍ଯ୍ୟକାରୀ କରିବା ଦାୟିତ୍ୱ ନେଲେ । ଶ୍ରୀ ଅଲେଖ ପାତ୍ର ପ୍ରତିଶ୍ରୁତି ଦେଲେ ଯେ ଉତ୍କଳ ସର୍ବୋଦୟ ମଣ୍ଡଳ କୋରାପୁଟରେ ଖଦୀକାମ କରିବାର ଦାୟିତ୍ୱ ତାଙ୍କୁ ଦେଲେ ସେ ତାହା କରିବେ ।

## ୩୭ । ରାଉରକେଲାରେ ଶାନ୍ତିକାର୍ଯ୍ୟ

୯ ଓ ୧୦ ମାର୍ଚ୍ଚ, ୧୯୬୪ରେ କଲିକତାରୁ ରାୟଗଡ଼ା ବାଟେ ଦଣ୍ଡକାରଣ୍ୟ ଯାଉଥିବା ପୂର୍ବପାକିସ୍ତାନୀ ଶରଣାର୍ଥୀଙ୍କର ସ୍ପେଶାଲ୍ ଟ୍ରେନ୍ ରାଉରକେଲା ବାଟେ ଗଲା । ପ୍ରାୟ ପ୍ରତିଦିନ ଗୋଟିଏ ଲେଖା ଟ୍ରେନ୍ ଯାଉଥାଏ ଏବଂ ବିନା କାରଣରେ ବଡ଼ ବଡ଼ ଷ୍ଟେସନରେ ଅଟକୁଥାଏ । ରାଉରକେଲାକୁ ଶରଣାର୍ଥୀ ଟ୍ରେନ୍ ଆସିଛି ଶୁଣି ଲୋକେ ଶରଣାର୍ଥୀଙ୍କୁ ଖୁଆଇବାକୁ ଷ୍ଟେସନକୁ ଗଲେ । ଫଳରେ ସେମାନଙ୍କ ଉପରେ ଅତ୍ୟାଚାରର ମର୍ମନ୍ତୁଦ କାହାଣୀ ଶୁଣିଲେ । ଚାରିଆଡ଼େ ଏ ଅତ୍ୟାଚାରର କଥା ବ୍ୟାପିଗଲା । ଖବରକାଗଜରେ ମଧ୍ୟ ଉତ୍ତେଜକ ସମ୍ବାଦ ବାହାରିଲା । ସହରରେ ଉତ୍ତେଜନା ଦେଖାଦେଲା ।

ମାର୍ଚ୍ଚ ୧୯ ତାରିଖ ରାତିରେ ରାଉରକେଲା ଶାନ୍ତି କେନ୍ଦ୍ରର କର୍ମୀ ଶ୍ରୀ କ୍ଷେତ୍ରବାସୀ ପତି, ଓଡ଼ିଶାରେ ଶାନ୍ତିସେନା ମଣ୍ଡଳର ସଂଯୋଜକ ମୁଁ ଥିବାରୁ, ମୋତେ ଟେଲିଫୋନ୍‌ରେ କହିଲେ ଯେ ରାଉରକେଲାରେ ଉତ୍ତେଜନା ଦେଖା ଦେଇଛି, ଦଙ୍ଗା ହୋଇପାରେ, ମୁଖ୍ୟମନ୍ତ୍ରୀଙ୍କୁ ଜଣାଇ ପର୍ଯ୍ୟାପ୍ତ ପୁଲିସ୍ ପଠାନ୍ତୁ । କୋଡ଼ିଏ ତାରିଖ ସକାଳେ ମୁଁ ତୃପ୍ତିଙ୍କୁ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ପଠାଇଲି ଓ ନବବାବୁଙ୍କୁ ଅନୁଗୁଳ ଟେଲିଫୋନ୍ କରି ଏକଥା କହିଲି । ମୁଖ୍ୟମନ୍ତ୍ରୀ ତୃପ୍ତିଙ୍କୁ କହିଲେ—ମା'ଙ୍କୁ କହିବୁ ଚିନ୍ତା କରିବେ ନାହିଁ । ରାଉରକେଲାରେ ଗଣ୍ଡଗୋଳ ହୋଇ ପାରିବ ନାହିଁ ।

ସେହି କୋଡ଼ିଏ ତାରିଖ ରାତି ଏଗାରଟାରେ କ୍ଷେତ୍ରବାସୀ ଟେଲିଫୋନ୍ କଲେ, ଏକ-ତରଫା ହଣାକଟା ଆରମ୍ଭ ହେଲା ବୋଲି । ଗୋଟାଏ ଫଳ ଦୋକାନ ପାଖରେ ଜଣଙ୍କୁ ମାରିଦିଆଗଲାଣି । ପୁଲିସ ଅବସ୍ଥା ସମ୍ଭାଳି ପାରୁ ନାହାନ୍ତି । ମୁଖ୍ୟମନ୍ତ୍ରୀଙ୍କୁ କହନ୍ତୁ, ମିଲିଟାରୀ ଉଡ଼ାଜାହାଜରେ ପଠାନ୍ତୁ । ତା'ପରେ ରାଉରକେଲା ଫୋନ୍ କଟିଗଲା । ତତ୍‌କ୍ଷଣାତ୍ ମୁଖ୍ୟମନ୍ତ୍ରୀଙ୍କୁ ଫୋନ୍‌କରି ଏ କଥା କୁହାଗଲାରୁ ସେ କହିଲେ—"ଏ ଖବର ପାଇଲିଣି । ମିଲିଟାରୀ ଯିବାର ବ୍ୟବସ୍ଥା ହେଲାଣି ।" ନବବାବୁଙ୍କୁ ଟେଲିଫୋନ୍ କରି ରାଉରକେଲା ଯିବାକୁ କହିଲି । ନବବାବୁଙ୍କୁ ସେଠାକୁ ଯିବାକୁ କହିବାର ମୁଖ୍ୟ ଉଦ୍ଦେଶ୍ୟ ଥିଲା ତାଙ୍କ ଭଳି ଅନୁଭବୀ ଓ ପ୍ରତିଷ୍ଠିତ ବ୍ୟକ୍ତି ହିଁ ରାଉରକେଲା ପରି ସଙ୍କଟାପନ୍ନ କ୍ଷେତ୍ରରେ ସମସ୍ତଙ୍କ ସଙ୍ଗେ ତାଳ ଦେବାକୁ ସମର୍ଥ । ନବବାବୁ ତୁରନ୍ତ ରାଉରକେଲା ଯାତ୍ରାକଲେ । ବାଇଶି ତାରିଖରେ କଟକରୁ ନିର୍ମଳଚନ୍ଦ୍ର ରାୟ ସମ୍ବଲପୁରକୁ, ଅନାଦି ନାୟକ ଓ ହରମୋହନ ପଟ୍ଟନାୟକ ଝାରସୁଗୁଡ଼ାକୁ ଏବଂ ଧନେଶ୍ୱର ଦେହୁରୀ ଓ ଶରତ୍ ଚନ୍ଦ୍ର ମହାରଣା ରାଉରକେଲାକୁ ଗଲେ ।

କ୍ଷେତ୍ରବାସୀ ପତିଙ୍କୁ ମାରିଦେବାପାଇଁ ଧମକ ଦିଆଯିବା ସତ୍ତ୍ୱେ ସେ ଓ ତାଙ୍କ ସ୍ତ୍ରୀ ଅନ୍ନପୂର୍ଣ୍ଣା ପାରୁପର୍ଯ୍ୟନ୍ତ ବୁଲି ଆଖପାଖର ମୁସଲମାନ ପରିବାରଙ୍କୁ ବାହାରକୁ ପଠାଇଦେଲେ ଏବଂ କେନ୍ଦ୍ର ଆଖପାଖର ପ୍ରାୟ ଦଶ୍ଗୋଟି ପରିବାରଙ୍କ ମଧ୍ୟରେ ଶାନ୍ତିରକ୍ଷା କଲେ । ବିନୋବାଜୀ ୧୯୬୩ରେ ରାଉରକେଲାରେ କହିଥିଲେ ଯେ ଏ ସହରରେ ୩୦୦ ଶାନ୍ତିସେବକ ରହିବା ଦରକାର । ତଦନୁସାରେ ଅନେକ ରାଉରକେଲାବାସୀ ସେତେବେଳେ ଶାନ୍ତିସେବକ ହୋଇଥିଲେ । ଶ୍ରୀ ଦୈତାରି ଦାସ ନିଜ ସେକ୍ଟରର ଲୋକଙ୍କୁ ଶାନ୍ତ ରଖିବାପାଇଁ ବହୁତ କାମ କଲେ । କେତେ ମୁସଲମାନ ପରିବାରଙ୍କୁ ମଧ୍ୟ ସେ ରକ୍ଷାକଲେ । କର୍ଫ୍ୟୁଜାରି ହେବା ପରେ ସବୁ ସଂପର୍କ ତୁଟିଗଲା । ନବବାବୁ ସେଠାରେ ପହଞ୍ଚି ବିଭିନ୍ନ ସେକ୍ଟରରେ ବୁଲି ଅବସ୍ଥା ଦେଖିଲେ । ଆଶ୍ରୟ କେନ୍ଦ୍ରରେ ରହିଥିବା ଶରଣାର୍ଥୀଙ୍କୁ ଭେଟିଲେ । କ୍ରମେ ମନମୋହନ, ଆନ୍ନାସାହେବ, ମାଳତୀ ଦେବୀ, ନବଜୀବନ ମଣ୍ଡଳର ଆଦିବାସୀ ଭଉଣୀ ଗୁରିଜଣ, ଅନ୍ନପୂର୍ଣ୍ଣା ମହାରଣା, ରତନ୍ ଦାସ ଆଦି ରାଉରକେଲାରେ ପହଞ୍ଚିଲେ । ପ୍ରତି ସେକ୍ଟରରେ ବୁଲିବା, ପ୍ରାର୍ଥନାସଭା ମାଧ୍ୟମରେ ଲୋକଙ୍କୁ ଏକତ୍ର କରି ବୁଝାଇବା, ଆତ୍ମୀୟ

ସୃଜନ ହୋଇଥିବା ଲୋକଙ୍କ ପାଇଁ ଆର୍ଥିକ ସାହାଯ୍ୟ ବ୍ୟବସ୍ଥା କରିବା ଆଦି କାମ ବିଧିବଦ୍ଧ ଭାବରେ ଆରମ୍ଭ ହେଲା । ମାଳତୀ ଦେବୀ ସମଗ୍ର ସୁନ୍ଦରଗଡ଼ ଜିଲ୍ଲାରେ ଠା'କୁଠାଆ କର୍ମୀଙ୍କୁ ରଖି ଏଇଥିଲାନ କାମ କରାଇଲେ ।

ଏପ୍ରିଲ୍ ପନ୍ଦର ତାରିଖରେ ମୁଁ ରାଉରକେଲା ଗଲି । ସେଠାରେ ମାଳତୀ ଦେବୀ ଓ ଅନ୍ୟ କର୍ମୀଙ୍କ ସହ ଗଣ୍ଡଗୋଳ ଘଟିଥିବା ବାରଟି ଗାଁରେ ବୁଲିଲି । ହାସ୍ପାତାଳରେ ଥିବା ଆହତ ବ୍ୟକ୍ତି, ଆଶ୍ରୟ କେନ୍ଦ୍ରରେ ଥିବା ଶରଣାର୍ଥୀ, ଜଣେ ଭୂତପୂର୍ବ ଉପମନ୍ତ୍ରୀ, ଇଞ୍ଜିନିୟରିଂ କଲେଜର ପ୍ରିନ୍ସିପାଲ ଓ ରେଜିଷ୍ଟ୍ରାର, ଡାକ୍ତର, ପୁଲିସ ସବ୍ଇନ୍ସ୍ପେକ୍ଟର, ହାଇସ୍କୁଲ ଶିକ୍ଷକ, ମିଶନାରୀ ଫାଦର, ଜଣେ ଜମିଦାରଙ୍କ ସ୍ତ୍ରୀ, ସରକାରୀ କର୍ମଚାରୀ, ତଥା ଇସ୍ପାତ କାରଖାନାର ଲୋକଙ୍କଠାରୁ ଯାହାସବୁ ଶୁଣିଲି ତାକୁ ଲେଖିଲେ ଖଣ୍ଡେ ବହି ହେବ ।

ମୋଟ ଉପରେ ଜଣାଗଲା ଯେ ମାର୍ଚ୍ଚ ମାସ କୋଡ଼ିଏ ତାରିଖରୁ ପ୍ରବଳ ଲୁଟପାଟ ଓ ହଣାକଟା ଆରମ୍ଭ ହେଲା । ଏଥିରେ ବାହାରୁ ଟ୍ରକରେ ପେଟ୍ରୋଲ ଆଦି ଜଳାପୋଡ଼ା ଜିନିଷ ନେଇ କେତେକ ଲୋକ ଆସିଲେ ଓ ସେମାନଙ୍କ ସାଙ୍ଗରେ ସ୍ଥାନୀୟ ଲୋକ ବି ଯୋଗଦେଲେ । ମୁସଲମାନମାନେ ଭୟରେ ଘରେ ପଶି କବାଟ କିଳି ଦେବାରୁ ଘରେ ପେଟ୍ରୋଲ ଛିଞ୍ଚି ନିଆଁ ଲଗାଇ ଦିଆହେଲା ଓ ଲୋକେ ବାହାରି ଆସିବାରୁ ସେମାନଙ୍କୁ ହତ୍ୟା କରି ହେଲା । ଜଣେ ଠିକାଦାର ପ୍ରଚୁର ଯୁଦ୍ଧ ଚାନ୍ଦା ଓ ସରସ୍ୱତୀ ପୂଜା ଚାନ୍ଦା ଦେଇଛନ୍ତି ବୋଲି କହି ନେହୁରା ହେଲେ ବି ତାଙ୍କ ପରିବାରକୁ ଛାଡ଼ି ଦିଆହେଲା ନାହିଁ । ଏହିପରି ଭାବରେ ରାଉରକେଲା ସହର ଓ ଝିରପାଣି, କାମଦା, କୁଆଁରମୁଣ୍ଡା ଆଦି ଆଖପାଖରେ ଗାଁମାନଙ୍କରେ ହାଣକାଟ ଚାଲିଲା । ମୋଟରେ ଅଢ଼େଇ ହଜାର ସରିକି ଲୋକ ଏଥିରେ ପ୍ରାଣହରେଇଲେ ।

ସରକାରୀ କଳର ଅପାରଗତା ଯୋଗୁଁ ମଧ୍ୟ ଗଣ୍ଡଗୋଳର ବିସ୍ତାର ବଢ଼ିଲା । ଆକ୍ରମଣ ଯୋଗୁଁ ଆତଙ୍କିତ ଲୋକଙ୍କୁ ଉଦ୍ଧାର କରିବା ପାଇଁ ଟ୍ରକ ପଠାଇବାକୁ ଉଚ୍ଚପଦସ୍ଥ କର୍ମଚାରୀ ପ୍ରତିଶ୍ରୁତି ଦେଲେ ମଧ୍ୟ ଟ୍ରକ ଆସିଲା ନାହିଁ । ପୁଲିସ ଯଥେଷ୍ଟ ସଂଖ୍ୟାରେ ଓ ସୁସଜ୍ଜିତ ହୋଇ ନଥିବାରୁ କେତେ ଜାଗାରେ ସେମାନେ ଥାଇ ମଧ୍ୟ ବିପୁଳସଂଖ୍ୟକ ଗଣ୍ଡଗୋଳକାରୀଙ୍କ ବିରୋଧରେ କିଛି କରି ପାରିଲେ ନାହିଁ । ଅନ୍ୟାନ୍ୟ ଲୋକଙ୍କୁ ରକ୍ଷା କରିବାର ପ୍ରଶଂସନୀୟ ଉଦ୍ୟମ କେତେକ ସ୍ଥାନରେ ହୋଇଥିଲା ।

କୁଆଁରମୁଣ୍ଡା ଜମିଦାରଙ୍କ ସ୍ତ୍ରୀ ଆଖପାଖର ମୁସଲମାନ ମହିଳା ଓ ଶିଶୁଙ୍କୁ ନିଜ ଘରେ ଆଶ୍ରୟ ଦେଇଥିଲେ । ଜମିଦାର ସେତେବେଳେ କଲିକତାରେ । ଏକୋଇଶ ତାରିଖ ଦିନ ଧନୁଶର ଧରି ଆଦିବାସୀମାନେ ଆସି ଜମିଦାରଙ୍କ ପତ୍ନୀଙ୍କୁ ଧମକାଇଲେ ଓ ମୁସଲମାନ ସ୍ତ୍ରୀ ଶିଶୁଙ୍କୁ ଘରୁ ବାହାରକରିଦେବାକୁ କହିଲେ । ଜମିଦାରଙ୍କ ପତ୍ନୀ ସେମାନଙ୍କୁ ନିଜ ଘର ଛାଡ଼ିଦେଇ ଅନ୍ୟତ୍ର ଚାଲିଗଲେ । ପରଦିନ ଆକ୍ରମଣ ଆରମ୍ଭ ହୋଇଗଲା ।

ମୁସଲମାନଙ୍କ ପ୍ରାଣ ରକ୍ଷା କରିବାରେ ଇଞ୍ଜିନିୟରିଂ କଲେଜର ଛାତ୍ରମାନେ ପ୍ରଶଂସନୀୟ କାମ କଲେ । ଆଉ ଜଣେ ଲୋକ ଆକ୍ରମଣକାରୀଙ୍କୁ କହିଲେ ଆଗ ମୋତେ ମାର, ତାପରେ ସେମାନଙ୍କୁ ମାରିବ । ମିଶନାରୀ ଫାଦର୍ ରାସ୍ହାର୍ଟ କୁଟୁଙ୍ଗିଆରେ କୋଡ଼ିଏ ବର୍ଷ ଧରି ଆଦିବାସୀ ସେବାକାମ କରୁଥିଲେ । ତାଙ୍କ ଘର ବେଲ୍‌ଜିୟମ୍‌ରେ । ସେ ମୁଣ୍ଡାରୀ ଭାଷା ମଧ୍ୟ ଶିଖିଥିଲେ । ଗିରଡା ଗାଁରେ ଗଣ୍ଡଗୋଳ ଲାଗିବା ଶୁଣି ସେ ସେଠାକୁ ଏକାକିଆ ସାଇକେଲରେ ଚାଲିଗଲେ । ସେ ଗାଁ ମସ୍‌ଜିଦ୍‌ରେ ଆଖପାଖର ବହୁ ମୁସଲମାନ ଆଶ୍ରୟ ନେଇଥିଲେ । ଫାଦର୍ ଦେଖିଲେ ହଜାର ହଜାର ଆଦିବାସୀ ସେ ମସଜିଦ୍‌କୁ ଧନୁଶର ଧରି ଘେରିଛନ୍ତି । ଫାଦର୍ ସେମାନଙ୍କୁ ଯେତେ ବୁଝାଇଲେ ସେମାନେ ବୁଝିଲେ ନାହିଁ । ଫାଦର୍ କହିଲେ— ମୋତେ ମାରିସାରିଲେ ସେମାନଙ୍କୁ ମାରିବ । ଆକ୍ରମଣକାରୀମାନେ କହିଲେ ସେଇଆ ହେଉ । ଫାଦର୍ କହିଲେ ମୁଁ ତେବେ ପ୍ରାର୍ଥନା କରିସାରେ । ସେ ପ୍ରାର୍ଥନା କରୁ କରୁ ତାଙ୍କୁ ଧନୁଶରରେ ହତ୍ୟା କରାଗଲା । ତାପରେ ମସଜିଦ୍‌ରେ ଥିବା ମୁସଲମାନଙ୍କୁ ହତ୍ୟା କରାଗଲା ।

ଲୁଟ, ଘରପୋଡ଼ି, ନରହତ୍ୟା ସହିତ ମଦଭାଟି ମଧ୍ୟ ଜଳାଇ ଦିଆଗଲା । କାରଣ ମଦବ୍ୟବସାୟୀ ମୁଖ୍ୟତଃ ମୁସଲମାନ । ନିଶାନିବାରଣ ଦୃଷ୍ଟିରୁ ଏ ଭାଟି ପୋଡ଼ିଦିବା ପରେ ସୁନ୍ଦରଗଡ଼ରୁ ଯଦି ମଦ ପ୍ରଚଳନ ଉଠିଯାଇଥାନ୍ତା, ତେବେ ଅବା ବିଷ ସମୁଦ୍ରରୁ କିଛିକାଏ ଅମୃତ ବାହାରିଥାନ୍ତା । ମଦ ଯେଉଁଠି ଥିଲା ସେଇଠି ରହିଲା । ସୁନ୍ଦରଗଡ଼ ଜିଲ୍ଲାରେ ଥିବା ମୁସଲମାନମାନଙ୍କୁ ସେ ଜିଲ୍ଲାର ଜମିଦାରମାନେ ପିଆଦା କାମ କରେଇବାକୁ ଆଣିଥିଲେ । ସେଥିପାଇଁ ଆଦିବାସୀଙ୍କ ସହିତ ସେମାନଙ୍କର ସୁସମ୍ପର୍କ ନ ଥିଲା ।

ସମୁଦାୟ ସୁନ୍ଦରଗଡ଼ ଜିଲ୍ଲାରେ ଅନାଥ ମହିଳା ଓ ଶିଶୁଙ୍କ ମନରେ ବିଶ୍ୱାସ ଫେରାଇ ଆଣିବା ଓ ସେମାନଙ୍କୁ ନିଜ ଗାଁରେ ଥଇଥାନ କାମ କରିବା ଦୃଷ୍ଟିରୁ ଉତ୍କଳ ନବଜୀବନ ମଣ୍ଡଳ, ଗାନ୍ଧୀ ସ୍ମାରକ ନିଧି, ସର୍ବୋଦୟ ମଣ୍ଡଳ, କସ୍ତୁରବା ଗାନ୍ଧୀ ରାଷ୍ଟ୍ରୀୟ ସ୍ମାରକ ଟ୍ରଷ୍ଟ, ହରିଜନ ସେବକ ସମାଜ, ସର୍ବସେବା ସଂଘ ଆଦି ବିଭିନ୍ନ ସଂସ୍ଥାର କର୍ମୀ ସେ ଜିଲ୍ଲାରେ କାମ କଲେ । ବିଶ୍ରା ଓ କୁଆଁରମୁଣ୍ଡାରେ ଦୁଇଟି କର୍ମୀ ଶିବିର ହୋଇ କର୍ମୀଙ୍କୁ ଏ ପରିସ୍ଥିତିରେ କେଉଁ ପ୍ରଣାଳୀରେ କାମ କରିବାକୁ ହେବ ସେ ବିଷୟରେ ଧାରଣା ଦିଆଗଲା । ଗୁଡ଼ୁଗୁଡ଼ୁ, ଜୋରା, ତୁଡାଲଗା, ବିଶ୍ରା, ଝିରପାଣି ଆଦିରେ ଅସ୍ଥାୟୀ ଶାନ୍ତିକେନ୍ଦ୍ର ସ୍ଥାପିତ ହେଲା । ରାଉରକେଲାବାସୀଙ୍କ ଉପରେ ଏହି ଶାନ୍ତି ପ୍ରଚେଷ୍ଟାର ଏତେ ଗଭୀର ପ୍ରଭାବ ପଡ଼ିଲା ଯେ ଇସ୍ପାତ କାରଖାନାର ବଡ଼ ବଡ଼ ପଦରେ ଥିବା ଶ୍ରୀ ନରେଶ ନାୟକ, ଶ୍ରୀ ହିରଣ୍ୟ କୁମାର ମହାନ୍ତି ଓ ପରବର୍ତ୍ତୀ କାଳରେ ଜେନେରାଲ ମ୍ୟାନେଜର ଶ୍ରୀ ଅରଉଡ଼ଙ୍କ ଭଳି ବ୍ୟକ୍ତି ସ୍ୱେଚ୍ଛାରେ ଶାନ୍ତି-ସେବକ ହେଲେ ।

ବିନୋବାଜୀ ୧୯୬୩ରେ ତାଙ୍କର ତୃତୀୟ ଓଡ଼ିଶା ପଦଯାତ୍ରାବେଳେ ରାଉରକେଲାରେ କହିଥିଲେ ଯେ ଏଠାରେ ଯଦି ଲୋକଙ୍କ ଭିତରେ ମାନବିକତାର ବିକାଶ ପାଇଁ କାର୍ଯ୍ୟ କରା

ନ ଯିବ ତେବେ ଲୋକଙ୍କ ହୃଦୟ ମଧ୍ୟ ଇସ୍ପାତ ପରି କଠିନ ହୋଇଯିବ । ଏ କଥାର ବର୍ଷେ ନ ପୂରୁଣୁ ବାସ୍ତବରେ ତାହାହିଁ ଦେଖିବାକୁ ମିଳିଲା ।

ସେତେବେଳର ମୁଖ୍ୟମନ୍ତ୍ରୀ ବୀରେନ୍ ମିତ୍ର ରାଉରକେଲାକୁ ଯାଇ ପ୍ରଥମେ ଶ୍ରୀ କ୍ଷେତ୍ରବାସୀ ପତିଙ୍କୁ ଭେଟି ଦୁଃଖ ପ୍ରକାଶକଲେ ଏବଂ ଶାନ୍ତିରକ୍ଷା ପାଇଁ ନବବାବୁ ଯେଉଁ ସୂଚନାମାନ ଦେଲେ ତା'ହା ତୁରନ୍ତ କାର୍ଯ୍ୟକାରୀ କରାଇଲେ । ସୈନ୍ୟବାହିନୀର କର୍ତ୍ତା ବ୍ରିଗେଡ଼ିଆର ରେଜା ମଧ୍ୟ ନବବାବୁଙ୍କ ସହିତ ପରାମର୍ଶ କରି ସହରରେ ଶାନ୍ତିରକ୍ଷା କାମ କଲେ । ମାତ୍ର ଏହି ଯେ ହଜାର ହଜାର ନିରୀହ ସ୍ତ୍ରୀ ସେମାନଙ୍କ ସ୍ୱାମୀ ପୁତ୍ରଙ୍କୁ ଅକାରଣରେ ହରାଇଲେ, ସେମାନଙ୍କ ହୃଦୟରେ କିଏ ଶାନ୍ତି ଦେବ !

## ୩୭ । ଛାତ୍ର ଧର୍ମଘଟ

୧୯୬୪ મସିହା ସେପ୍ଟେମ୍ବର ମାସ ୨୭ ତାରିଖ । ସକାଳ ପ୍ରାୟ ଆଠଟା ବେଳେ ମୁଁ ବାଖରାବାଦ ଛକରେ ରିକସାରେ ଯାଉଥିବାବେଳେ ଜଣେ ଅପରିଚିତ ଲୋକ ମୋତେ ହଠାତ୍ କହିଲେ—"ତେଣେ କଲେଜ ପାଖରେ ଗଣ୍ଡଗୋଳ ଲାଗିଛି, ଆପଣ କଣ ଏଣେ ?" ମୁଁ ପଚାରିଲି—"କେଉଁ କଲେଜ ?" 'ରେଭେନ୍‌ସା କଲେଜ' ବୋଲି କହି ସେ ଚାଲି-ଗଲେ । ଘୋଡ଼ାଘାସାହିକୁ ଆସି ଦେଖିଲି ଶ୍ରୀମତୀ ବନ୍ଦ୍ୟୋପାଧ୍ୟାୟ ଉଜ୍ଜଳତା ମହାନ୍ତି ଆସିଛନ୍ତି । ସେ ମଧ୍ୟ ସେହି ଗଣ୍ଡଗୋଳ କଥା କହିଲେ । ଏ କଥା ଶୁଣି ନିର୍ମଳଚନ୍ଦ୍ର ରାୟ, ଶରତ ଚନ୍ଦ୍ର ମହାରଣା, ସୁମିତ୍ରା ଚୌଧୁରୀ, ଅନ୍ନପୂର୍ଣ୍ଣା ମହାରଣା ଓ ମୁଁ ରେଭେନ୍‌ସା କଲେଜ ଆଡ଼କୁ ଗଲୁ । ରାଣୀହାଟ ଛକରେ ଲୋକ ଗଦା ହୋଇଥାନ୍ତି । ଶ୍ରୀ ଶ୍ରୀକାନ୍ତ ପଣ୍ଡା ଲୋକଙ୍କୁ କ'ଣ କହୁଥାନ୍ତି, ଗୋଳମାଳରେ ଶୁଭୁ ନ ଥାଏ । ସେ କଥା ଶୁଣିବା ଆଶା ଛାଡ଼ି କଲେଜ ଆଡ଼କୁ ଗଲୁ । କଲେଜ ଆଗ ସଡ଼କରେ ବହୁ ସଂଖ୍ୟକ ପୁଲିଶ ପହରା ମାରୁଥାନ୍ତି । ଶରତବାବୁ ପୁଲିସ କର୍ତ୍ତାଙ୍କଠାରୁ ଅନୁମତି ଆଣିବାରୁ ଆମେ ତା ଭିତରେ ପଶିଲୁ ।

କଲେଜ ହତା ଭିତରେ ପିଲା ଭେଲା ଭେଲା ହେଉଥାନ୍ତି । ମୁଁ ହତା ଭିତରେ ପଶି ଘଟଣା ପଚାରିବାରୁ ଅନେକ ଛାତ୍ର ସମସ୍ୱରରେ କହିଲେ—"ଆପଣ ଆମର ପ୍ରେଷ୍ଟିଜ ରଖିପାରିବେ ?" ମୁଁ କହିଲି—"ସମଗ୍ର ଭାରତର ପ୍ରେଷ୍ଟିଜ (ଇଜ୍ଜତ) ତ ଆପଣମାନଙ୍କ ହାତରେ, ମୁଁ କ'ଣ ଇଜ୍ଜତ ରଖିବି ? ମୁଁ ଖାଲି ଗଣ୍ଡଗୋଳ ଦେଖିକରି ଚାଲିଆସିଛି ।" ପ୍ରକୃତ ଘଟଣା ସେମାନଙ୍କ ମୁହଁରୁ ଶୁଣିବାକୁ ଚାହିଁବାରୁ ସେମାନେ କହିଲେ ଯେ ଇଞ୍ଜିନିୟରିଂ ସ୍କୁଲ (କଟକ)ର ଜଣେ ଛାତ୍ରଙ୍କ ବାପା ଷ୍ଟେସନ ବଜାରର ଜଣେ ରେଡ଼ିଓ ଦୋକାନୀକୁ ରେଡ଼ିଓ ଦାମ୍ ବାବଦ ଟଙ୍କା ବାକିରଖି ଦେଇନଥିବାରୁ ସେ ଦୋକାନୀ ଛବିଶ ତାରିଖ

ସନ୍ଧ୍ୟାରେ ବଳ ପ୍ରୟୋଗ କରି ସେ ଛାତ୍ରଙ୍କ ପାଖରୁ ଗୋଟିଏ ମୁଚୁଲିକା ଲେଖାଇନେଲେ । ସେ ଛାତ୍ର ଇଞ୍ଜିନିୟରିଂ ସ୍କୁଲ, ରେଭେନ୍‌ସା କଲେଜ ଓ ଆଇନ କଲେଜ୍ ଛାତ୍ରଙ୍କୁ ଏହା ଜଣାଇଲେ । ସେହି କଲେଜମାନଙ୍କର କେତେକ ଛାତ୍ର ସେହି ଦୋକାନକୁ ଆସି ଦୋକାନୀକୁ କ୍ଷମା ମାଗିବାକୁ କହିଲେ । ଦୋକାନୀ ଉପରେ ପୁଲିଶ ସାହାଯ୍ୟ ଲୋଡ଼ିଲେ । ପୁଲିସ ଆସିବାରୁ ଉତ୍ତେଜନା ବଢ଼ିଲା । ପୁଲିଶ ଛାତ୍ର-ବଚସା ବଢ଼ି ବଢ଼ି ସେଠାରେ ରେଷ୍ଟୁରାଣ୍ଟ ଦୋକାନ ଲୁଟ୍, ପୁଲିସର ଲାଠିମାଡ଼, ଅନ୍ୟମାନଙ୍କଦ୍ୱାରା ଢେଲା ପଥର ଫିଙ୍ଗା, ପୁଲିସ ଛାତ୍ର ଗୋଡ଼ାଗୋଡ଼ି ଚାଲିଲା । ଢେଲାପଥର ମାଡରୁ ବର୍ତ୍ତିବାକୁ ଛାତ୍ରମାନେ ରେଭେନସା କଲେଜ ଓ ଲ କଲେଜ ଭିତରେ ଆଶ୍ରୟ ନେବାରୁ ପୁଲିସ ଲୁହବୁହା ଗ୍ୟାସ ପ୍ରୟୋଗ କଲେ । ଛାତ୍ରାବାସରେ ଶୋଇଥିବା ଅନେକ ପିଲାଙ୍କ ଆଖିରେ ଏ ଗ୍ୟାସ ବାଜିଲା । ଏହି ଗ୍ୟାସ ବାଜି ଆଖିରେ ଯନ୍ତ୍ରଣା ଭୋଗୁଥିବା ଜଣେ ଛାତ୍ର ସୁପରିଣ୍ଟେଣ୍ଡେଣ୍ଟଙ୍କ ଅନୁମତି ନେଇ ଚାରିଜଣ ଛାତ୍ରଙ୍କ ସଙ୍ଗେ ହସ୍‌ପିଟାଲକୁ ଗଲାବେଳକୁ ପୁଲିସ ସେ ଛାତ୍ର ଶ୍ରୀ ହରିହର ପଣ୍ଡାଙ୍କୁ ମାଡଦେଲେ । ସେ ରାତିଟା ଛାତ୍ର ପୁଲିସ ଗୋଡ଼ାଗୋଡ଼ି ଚାଲିଲା । ଅବସ୍ଥା ଶାନ୍ତ ହେବାରୁ ପୁଲିସ ସେ ସ୍ଥାନ ଛାଡ଼ି ଚାଲିଗଲେ ।

ପୁଲିସର ଆଚରଣର ପ୍ରତିବାଦ ସ୍ୱରୂପ ଗୋଟିଏ ଶୋଭାଯାତ୍ରା ବାହାର କରିବା ପାଇଁ ଛାତ୍ରମାନେ କଲେଜ ହତାରେ ଠୁଳ ହେଲେ । ଏହି ସମୟରେ ଜଣେ ପୁଲିସ ଅଫିସର ମଙ୍ଗଳାବାଗ ଆଡ଼ୁ ସଡ଼କରେ ଜିପ୍‌ରେ ଓ ଏମ୍. ସି. ଆଡକୁ ଯାଉଥିଲେ । ମେଡ଼ିକାଲ କଲେଜ ଆଡକୁ କେତେଜଣ ଛାତ୍ର ଯାଉଥିବାର ଦେଖି ସେ ଛାତ୍ରମାନଙ୍କୁ ଅଟକାଇ କୁଆଡ଼େ ଯାଉଛ ବୋଲି ପଚାରିଲେ । ସେମାନେ ଗନ୍ତବ୍ୟ ସ୍ଥାନ କହିବାରୁ ସେ ସେଠାକୁ ଯିବାକୁ ମନା କଲେ । ଛାତ୍ରମାନେ ଯିବାକୁ ଜିଦ୍ କରିବାରୁ ମାଡ ଦେବେ ବୋଲି ଧମକାଇଲେ । ତହୁଁ ଛାତ୍ର ଓ ଉପସ୍ଥିତ ଜନତା ସେ ଅଫିସରଙ୍କୁ ଜିପରୁ ଟାଣି ମାଡ଼ ଦେଇ ଜିପ୍‌ଟି ଜାଳିଦେଲେ । ଫଳରେ ପୁଲିସ୍ ଫୌଜ ଆସିଗଲେ । ପୁଣି ଢେଲା ଫିଙ୍ଗା, ଲୁହାବୁହା ଗ୍ୟାସ୍ ପ୍ରୟୋଗ ଚାଲିଲା । ଜଣେ ପିଲା ଏନ୍. ସି. ସି. ରେ ଯୋଗଦେଇ ଫେରୁଥିଲେ, ସେ ଏ ଘଟଣା ସହିତ ସମ୍ପୃକ୍ତ ନୁହନ୍ତି, ତଥାପି ପୁଲିସ ତାଙ୍କୁ ମାରିଲେ । ସେ ଆହତ ହେବା ପରେ ତାଙ୍କୁ ଭ୍ୟାନ୍ ଭିତରେ ରଖିଛନ୍ତି ବୋଲି କେତେ ପିଲା କହିଲେ । ମୁଁ ସେ ପିଲାର ଖବର ବୁଝିକରି କହିବି କହି ପୁଲିସଙ୍କଠାରୁ ବୁଝିଲି ଯେ ସେ ପିଲାକୁ ହାସ୍‌ପାତାଳକୁ ପଠାଯାଇଛି । ଛାତ୍ରମାନଙ୍କୁ ଏକଥା ଜଣାଇ ମୁଁ ଛାତ୍ର ୟୁନିୟନ୍‌ର ସଭାପତିଙ୍କୁ ଦେଖାକରିବାକୁ ଚାହିଁଲି । ସେ ଛାତ୍ର-ସଭାରେ ଅଛନ୍ତି ଶୁଣି କଲେଜ ଅଫିସ୍‌ର ପୋର୍ଟିକୋ ପାଖ ମେଲିଡରେ ସଭା ହେଉଥିବାରୁ ସେଠାକୁ ଯାଇ ବାହାରେ ଠିଆହୋଇ ତାଙ୍କୁ ଅପେକ୍ଷା କଲି । ସଭାପତି ପୂର୍ବ ରାତିର ଘଟଣା ବର୍ଣ୍ଣନା କରୁଥାନ୍ତି । ତାଙ୍କ ପରେ ଆଉ ଜଣେ ବକ୍ତା କହିଲେ ଯେ କଟକର ସବୁ

କଲେଜର ଛାତ୍ର ୟୁନିୟନ୍‌ର ସଭାପତି, ସମ୍ପାଦକଙ୍କୁ ନେଇ ଆମେ ଗୋଟିଏ ଛାତ୍ର ୟୁନିୟନ ସମିତି ଗଢ଼ି ଆମ କାର୍ଯ୍ୟପନ୍ଥା ସ୍ଥିର କରିବୁ ।

ଏହି ସମୟରେ କଲେଜର ପ୍ରିନ୍‌ସିପାଲ ସେଠାରେ ପହଞ୍ଚି ପିଲଙ୍କୁ କହିଲେ—"ତୁମେମାନେ ମୋ କଥା ନ ମାନି ମୋ ହାତରେ ନ ଆସି ଢେଲାପଥର ଫିଙ୍ଗିବାରୁ ଏପରି ଘଟିଲା । ଆଉ ଅଧିକ ଗୋଳମାଳ ହେଲେ ଗୁଳି ଚାଲିବ । ସମସ୍ତେ ଛାତ୍ରାବାସକୁ ଯାଅ । ବାହାର ଲୋକେ ବାହାରକୁ ଚାଲିଯାଅ ।" ମୋତେ ମଧ୍ୟ ସେ କଲେଜ ହତାରୁ ବାହାରି ଯିବାକୁ କହିଲେ । ଆମେ ହତାରୁ ବାହାରି ଆସିଲୁ । ଲ କଲେଜ ପାଖରେ ଦେଖିଲୁ ପୁଲିସ ଲ କଲେଜ ହଷ୍ଟେଲରେ ପଶି କବାଟ ଭାଙ୍ଗି ଛାତ୍ରଙ୍କୁ ଗିରଫ କରୁଛନ୍ତି ।

କ'ଣ କରିବା ବିଚାର କରୁ କରୁ ହାଇଷ୍ଟ୍ କଲେଜ ୟୁନିୟନର ସଭାପତି ଆଶିଷ ମହାପାତ୍ର ଆସି କହିଲେ ଯେ ମେଡ଼ିକାଲ କଲେଜ ହତାରେ ସବୁ ଛାତ୍ର ୟୁନିୟନ୍‌ର କର୍ମକର୍ତ୍ତାଙ୍କର ବୈଠକ ହେବ । ମାତ୍ର ରେଭେନ୍‌ସା ଓ ଲ କଲେଜର କର୍ମକର୍ତ୍ତା ଗିରଫ ହେବା ଆଶଙ୍କାରେ ପଦାକୁ ବାହାରୁ ନ ଥିବାରୁ ବୈଠକ ହୋଇ ପାରୁ ନାହିଁ । ଆପଣ ପୁଲିସଙ୍କ ଅନୁମତି ନେଇ ସେମାନଙ୍କୁ ବାହାରକୁ ଆଣନ୍ତୁ । ଏକଥା ବୁଝିବାକୁ ମୁଁ କଲେଜ ହତା ଭିତରକୁ ଯିବାପାଇଁ ପ୍ରିନ୍‌ସିପାଲଙ୍କ ଅନୁମତି ଆଣିବାକୁ ଗଲି । ପ୍ରିନ୍‌ସିପାଲ କହିଲେ – କଲେଜ ଛୁଟି ହୋଇଗଲାଣି । ହତା ବାହାରେ ଚହି ସଭାପତିଙ୍କୁ ବାହାରକୁ ଆସିବାକୁ ଡାକିବାରୁ ଅନ୍ୟ ଛାତ୍ରମାନେ ତାଙ୍କୁ ଆସିବାକୁ ଦେଲେ ନାହିଁ । ଏତିକିବେଳେ ପୁଲିସ ୧୪୪ ଧାରା ଜାରି କଲେ ।

ସତେଇଶ ତାରିଖ ଉପରଓଳି ମୁଁ ସହରର ପ୍ରଭାବଶାଳୀ ବ୍ୟକ୍ତିମାନଙ୍କୁ ଦେଖାକରି ଏ ଘଟଣା କହିଲି । କେତେକଙ୍କୁ ମୁଁ ଓ ଶରତ୍‌ବାବୁ ଦେଖାକରି ଅନୁଭବ କଲୁ ଯେ ଛାତ୍ର-ମାନଙ୍କର ଅଶାନ୍ତ ଆଚରଣ ହେତୁ ସେମାନଙ୍କ ପ୍ରତି କାହାରି ସହାନୁଭୂତି ନାହିଁ । ସନ୍ଧ୍ୟାରେ ଶୁଣିଲି ଯେ ୧୪୪ ଧାରା ଅମାନ୍ୟ କରୁଥିବା ଛାତ୍ରଙ୍କୁ ଗିରଫ କରିବା ପାଇଁ ପୁଲିସ କଲେଜ ହତାରେ ପଶି ସେମାନଙ୍କୁ ନିର୍ମମ ଭାବରେ ଠେଙ୍ଗେଇଛନ୍ତି । ମୁଁ ପୁଲିସ ଆଇ.ଜି. ଙ୍କୁ ଭେଟି କହିଲି—"ପିଲଙ୍କୁ ଗିରଫ କରନ୍ତୁ, ପିଟନ୍ତୁ ନାହିଁ ।" ଆଇ ଜି. କହିଲେ ଯେ ଛାତ୍ରମାନେ ହତା ଭିତରୁ ଢେଲା ପଥର ଫିଙ୍ଗିବା ବନ୍ଦ କଲେ ପୁଲିସ ହତାରୁ ବାହାରିଆସିବେ ।

ଅଠେଇଶ ତାରିଖ ସକାଳେ ଆହତ ଛାତ୍ରଙ୍କୁ ଦେଖିବାକୁ ହାସପାତାଲକୁ ଗଲି ଏବଂ ରେଭେନ୍‌ସା କଲେଜକୁ ଯାଇ କେତେକ ଅଧ୍ୟାପକଙ୍କ ସଙ୍ଗେ କଥାବାର୍ତ୍ତା କରି ସମସ୍ୟାର ସମାଧାନ କାଢ଼ିବାକୁ କହିଲି । ଏହି ଘଟଣାର ପ୍ରତିବାଦ ସ୍ୱରୂପ ମେଡ଼ିକାଲ କଲେଜର ଛାତ୍ର ଗୋଟିଏ ଶୋଭାଯାତ୍ରା ବାହାର କରିବାକୁ ସ୍ଥିର କରିଥିଲେ । ପୁଲିସ ନିର୍ଦ୍ଦେଶରେ ତାହା ବନ୍ଦ ହେଲା । ଏହି ସମସ୍ୟା ତୁଟାଇବା ପାଇଁ ମୁଁ କଟକର କେତେକ ବିଶିଷ୍ଟ ବ୍ୟକ୍ତିଙ୍କୁ ଅନୁରୋଧ କଲି । ଅଣତିରିଶ ତାରିଖରେ ଏକ ଅଭିଭାବକ ବୈଠକ ଡାକିବା ସ୍ଥିର ହେଲା ।

ଶ୍ରୀ ହରିହର ପଣ୍ଡା ଓ ଶ୍ରୀ ମନମୋହନ ଦାସ ପୁଲିସ ମାଡ଼ରେ ମରିଯାଇଛନ୍ତି ବୋଲି ଜନରବ ପ୍ରଚାରିତ ହୋଇଥିଲା । ପ୍ରକୃତ ତଥ୍ୟ ଜାଣିବାକୁ ମୁଁ ଜିଲ୍ଲା କଲେକ୍ଟରଙ୍କ ଅନୁମତି ନେଇ କେତେକ ଛାତ୍ରଙ୍କୁ ଜେଲ୍‌ରେ ସାକ୍ଷାତ କରି ସେ ଦୁଇଜଣ ବା ଅନ୍ୟ କେହି ମରି ନ ଥିବାର ଜାଣିଲି । ଏଣେ ମେଡ଼ିକାଲ କଲେଜ ହତାରେ ପ୍ରିନ୍‌ସିପାଲଙ୍କ ବିନା-ଅନୁମତିରେ ପୁଲିସ ପଶିବା ହେତୁ ସେଠାରେ ଛାତ୍ରବିକ୍ଷୋଭ ଦେଖା ଦେଲା । ଜିଲ୍ଲା କଲେକ୍ଟରଙ୍କ ଅନୁରୋଧରେ ମୁଁ ସେଠାକୁ ଯାଇ ଶାନ୍ତ ରହିବାକୁ ଛାତ୍ରଙ୍କୁ ବୁଝାଇଲି । ସମାଧାନର ଉପାୟ ଛାତ୍ରଙ୍କୁ ପଚାରିବାରୁ କେତେକ ଛାତ୍ର କହିଲେ, ୧—ବିଚାରବିଭାଗୀୟ ତଦନ୍ତ, ୨—କ୍ଷତିପୂରଣ, ୩—ସବୁ ଛାତ୍ରଙ୍କୁ ଜେଲରୁ ଖଲାସ କରିଦେଲେ ସମାଧାନ ହେବ ।

ଅଭିଭାବକ ବୈଠକରେ ମୁଖ୍ୟମନ୍ତ୍ରୀଙ୍କୁ ଭେଟି ସମାଧାନର ବ୍ୟବସ୍ଥା କରିବା କଥା ଉଠିଲା । କେତେକ ବିଶିଷ୍ଟ ନାଗରିକଙ୍କ ସହିତ ମୁଁ ଯିବା ସ୍ଥିର ହେଲା । ମାତ୍ର ବଡ଼ ଆଶ୍ଚର୍ଯ୍ୟର କଥା, ତିରିଶ ତାରିଖ ଦିନ ସେମାନଙ୍କ ମଧ୍ୟରୁ ଜଣେ ସୁଦ୍ଧା ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଯିବାକୁ ବାହାରିଲେ ନାହିଁ । ଶରତ ଚନ୍ଦ୍ର ମହାରଣାଙ୍କ ସହ ମୁଁ ମୁଖ୍ୟମନ୍ତ୍ରୀଙ୍କୁ ଦେଖାକରି ତଦନ୍ତ କଥା କହିବାରୁ ମୁଖ୍ୟମନ୍ତ୍ରୀ କହିଲେ ଯେ, ରାଉରକେଲା ଘଟଣା ପରେ ୟୁନିୟନ୍ ସରକାର ବିଚାରବିଭାଗୀୟ ତଦନ୍ତ କରିବାକୁ ନିଷେଧ କରିଛନ୍ତି । ମୁଖ୍ୟମନ୍ତ୍ରୀଙ୍କଠାରୁ ଜାଣିଲୁ କେତେକ ଛାତ୍ରନେତା ସମାଧାନ ପାଇଁ ତାଙ୍କ ସଙ୍ଗେ କଥାବାର୍ତ୍ତା କଲେଣି । ଏହା ଜାଣି ଅକ୍ଟୋବର ପହିଲା ଦିନ ଆମେ ଗୋଟିଏ ବିବୃତି ଏହି ମର୍ମରେ ଦେଲୁ ଯେ ସଂପୃକ୍ତ ଦୁଇଦଳ ମଧ୍ୟରେ ସମାଧାନ ପାଇଁ କଥାବାର୍ତ୍ତା ଚାଲିଥିବାରୁ ଆମେ ଏଥିରେ ପଶିବା ଆବଶ୍ୟକ ନାହିଁ ।

ଅକ୍ଟୋବର ଦୁଇ ତାରିଖ ଦିନ ଗାନ୍ଧୀଜୟନ୍ତୀ ପାଳନ କରାଗଲା । ହଠାତ୍ ଜଣେ ରାଜନୈତିକ କର୍ମୀ ଶ୍ରୀ ବିଜୟ ଦେ ମୋତେ କହିଲେ—"ଛାତ୍ର ସମସ୍ୟା କ୍ରମେ ଜଟିଳତର ହେଉଛି । ଆପଣ ସମାଧାନ ପାଇଁ ଚେଷ୍ଟା କରନ୍ତୁ, ନିଶ୍ଚେଷ୍ଟ ରହନ୍ତୁ ନାହିଁ ।" ଏଣେ କମ୍ୟୁନିଷ୍ଟ ପାର୍ଟିର ଲୋକେ ମୋତେ କହିଲେ ଯେ, ଜଣେ ଜଜ୍, ଜଣେ ବାରିଷ୍ଟର ଓ ରମା ଦେବୀଙ୍କୁ ନେଇ ବିଚାରବିଭାଗୀୟ ତଦନ୍ତ କମିଟି ଗଢ଼ାହେଉ । ଏହା ମୋତେ ଅବାସ୍ତବ ବୋଧହେବାରୁ ମୁଁ ଅସମ୍ମତ ହେଲି ।

ତିନତାରିଖରେ ଖାନ୍‌ନଗରରେ ସଂଯୁକ୍ତ ସୋସାଲିଷ୍ଟ ପାର୍ଟି ପକ୍ଷରୁ ହେଉଥିବା ଏକ ସଭାକୁ ମୋତେ ନଶାମଣି ଖୁଣ୍ଟିଆ ଡାକିଲେ । ମୁଁ ମୋ ବିବୃତିକୁ ଦର୍ଶାଇ ସଭାକୁ ଗଲି ନାହିଁ । ସେ ସଭାରେ ୧୪୪ ଧାରା ଅମାନ୍ୟ କରିବା ପ୍ରସ୍ତାବ ଗୃହୀତ ହେବାର ଜାଣିଲି । ଛଅ ତାରିଖ ଦିନ କଟକ ଜେଲର ଜେଲର୍ ମୋତେ ଟେଲିଫୋନରେ କହିଲେ ଯେ ଅନଶନ କରୁଥିବା ଛାତ୍ର ଅଭୟ ମହାପାତ୍ର ମୋତେ ଭେଟିବାକୁ ଚାହାନ୍ତି । ଜିଲ୍ଲା କଲେକ୍ଟରଙ୍କ ଅନୁମତି ନେଇ ମୁଁ ତାଙ୍କୁ ଭେଟିଲି । ସେ କହିଲେ ପ୍ରତାପ ମିଶ୍ରଙ୍କୁ ବ୍ୟକ୍ତିଗତ ମୁଚ୍ଲିକାରେ

ଖଲାସ କଲେ ଓ କଲେଜ ହତାରେ ପୁଲିସ୍ ପଶିବା କଥା ସରକାର ସ୍ୱୀକାର କଲେ ତାଙ୍କର ଅନ୍ୟ ଅଭିଯୋଗ ରହିବ ନାହିଁ । ସେ କହିଲେ ଚାରିଜଣ ଅନଶନକାରୀଙ୍କ ମଧ୍ୟରୁ ବାନାମ୍ବର ମର୍ଥାଙ୍କର ଅନଶନର କାରଣ ହେଉଛି ପୁଲିସ୍ ପଶିବା ଦ୍ୱାରା କଲେଜର ପବିତ୍ରତା ନଷ୍ଟ ହୋଇଛି । ଆଉ ତିନିଜଣଙ୍କ ଦାବୀ ୧-ବିନା ସର୍ତ୍ତରେ ଖଲାସ, ୨-କ୍ଷତିପୂରଣ, ୩-ବିଚାରବିଭାଗୀୟ ତଦନ୍ତ. ଏ ବିଷୟରେ କେତେକ ଓକିଲଙ୍କୁ କହିବା ପରେ ପ୍ରତାପ ମହାନ୍ତି ଓ ଅଭୟ ମହାପାତ୍ର ବ୍ୟକ୍ତିଗତ ମୁଚୁଲିକାରେ ଖଲାସହେଲେ ।

ରେଭେନସା କଲେଜର ପ୍ରିନସିପାଲଙ୍କୁ ଛାତ୍ରଙ୍କ ଦାବୀ କଥା କହିଲି ଏବଂ ଅଭୟ ମହାପାତ୍ରଙ୍କ ଅନୁରୋଧରେ ମୁଖ୍ୟମନ୍ତ୍ରୀଙ୍କୁ ଭେଟିବାକୁ ଯାଇ ଦେଖିଲି ଯେ ସେଠାରେ ଅଭୟ ମହାପାତ୍ର, ଦୀପକ ଘୋଷ୍, ପ୍ରତାପ ମିଶ୍ର, ବୃନ୍ଦାବନ ମହାନ୍ତି ପ୍ରମୁଖ ପାଞ୍ଚଜଣ ଛାତ୍ର ଅଛନ୍ତି । ମୁଖ୍ୟମନ୍ତ୍ରୀ କହିଲେ ଯେ, ଭାଇସ୍ ଚାନ୍ସେଲର, ଡି.ପି. ଆଇ. ଓ ପ୍ରିନସିପାଲ ଏ ଦାବୀକୁ ମାନିନେଲେ ମୁଁ ମାନିନେବି । ଅକ୍ଟୋବର ସତର ତାରିଖ ଦିନ ଗୋଟିଏ ବୈଠକରେ ଏ ବିଷୟ ପଡ଼ିବା ସ୍ଥିରହେଲା । ମୁଁ ବୁଝିବା ଆରମ୍ଭ କଲି ଯେ ରାଜନୈତିକ ଦଳଗୁଡ଼ିକର ବୁଦ୍ଧି ଏ ଧର୍ମଘଟ ପଛରେ ରହିଲାଣି । ମୁଁ ସବୁ ଛାତ୍ରଙ୍କୁ ବ୍ୟକ୍ତିଗତ ମୁଚୁଲିକା ଲେଖି ଖଲାସ ହେବାପାଇଁ ପ୍ରବର୍ତ୍ତାଇବାରୁ ସେମାନେ ତାହା କଲେ । ଅଭୟ ମହାପାତ୍ର ମୋତେ କହିଲେ—ସବୁ ଛାତ୍ର ଆପଣଙ୍କ କଥାମାନି ଜାମିନ୍‌ରେ ଆସିଲେ । ବର୍ତ୍ତମାନ ସମାଧାନ ଦାୟିତ୍ୱ ଆପଣଙ୍କର । ମୁଁ କହିଲି—ସବୁ ଛାତ୍ର ନେତାଙ୍କୁ ମୋ ପାଖକୁ ଡକାନ୍ତୁ । ମାତ୍ର ସେମାନେ ଆସିବେ ବୋଲି ଜବାବ ଦେଇ ମଧ୍ୟ ମୋ ପାଖକୁ ଆସିଲେ ନାହିଁ । ଅଭୟ ମହାପାତ୍ର ଏକା ଆସି କହିଲେ ଛାତ୍ରମାନେ ତାଙ୍କୁ ବିଶ୍ୱାସ କରୁନାହାଁନ୍ତି ।

ଅକ୍ଟୋବର ତେର ତାରିଖ ଦିନ ସହରର ବିଶିଷ୍ଟ ବ୍ୟକ୍ତି, ଆଚାର୍ଯ୍ୟ ମହାଶୟ ଓ ମୋର ମିଳିତ ସ୍ୱାକ୍ଷରରେ ଗୋଟିଏ ବିବୃତିରେ ପୂର୍ଣ୍ଣତଦନ୍ତ, କ୍ଷତିପୂରଣ ଓ ଛାତ୍ରଙ୍କୁ ଖଲାସ କରିବାକୁ ସରକାରଙ୍କୁ ଅନୁରୋଧ କରିବା ସଙ୍ଗେ ସଙ୍ଗେ ଛାତ୍ରଙ୍କୁ ହରତାଳ ନ କରିବା ପାଇଁ ଅନୁରୋଧ କରାଗଲା । ସତର ତାରିଖ ବୈଠକ ପୂର୍ବରୁ ମୁଁ ସହରର ପ୍ରିନସିପାଲ ସ୍ତରର ବିଶିଷ୍ଟ ବ୍ୟକ୍ତିଙ୍କୁ ଭେଟି ବୁଝିଲି ଯେ ସେମାନେ ଛାତ୍ରଙ୍କ ଦାବୀକୁ ନାପସନ୍ଦ କରୁଛନ୍ତି । ମାତ୍ର ଅନେକ ଓକିଲ ଏ ଦାବୀକୁ ସମର୍ଥନ କଲେ । ମୁଁ ଧୀରେ ଧୀରେ ଦେଖିଲି ଯେ ଛାତ୍ରମାନେ ଯେପରି ମୋ ପାଖକୁ ନ ଆସିବେ, ସେଥିପାଇଁ ଏକ ଅଦୃଶ୍ୟ ହସ୍ତ କାମ କରୁଛି ।

ଭାଇସ୍ ଚାନ୍‌ସେଲର ଅନୁପସ୍ଥିତ ରହିବାରୁ ସତର ତାରିଖରେ ବୈଠକ ବାଇଶି ତାରିଖକୁ ଘୁଞ୍ଚିଲା । ସେ ପର୍ଯ୍ୟନ୍ତ କୌଣସି ପ୍ରତ୍ୟକ୍ଷ ଆନ୍ଦୋଳନ ନ କରିବା ପାଇଁ ମୁଁ ଛାତ୍ରଙ୍କୁ କହିଲି । କୋଡ଼ିଏ ତାରିଖରେ ଶ୍ରୀ ମହତାବ ମୋତେ ଡକାଇ ଏ ସମସ୍ୟା ସମାଧାନ କରିବାକୁ କହିଲେ ଓ ବିଚାର ବିଭାଗୀୟ ତଦନ୍ତ ଦାବୀ କରିବାକୁ ଆଗ୍ରହ ପ୍ରକାଶ କଲେ । ଛାତ୍ରମାନେ ସଭା କରି ଦାବୀ ପୂରଣ ନ ହେଲେ ଆଇନ ଅମାନ୍ୟ କରିବାକୁ ପ୍ରସ୍ତାବ ଗ୍ରହଣ କଲେ । ତେଣେ ସରକାର ବିଚାର ବିଭାଗୀୟ ତଦନ୍ତ ନ କରିବାକୁ ନିଷ୍ପତ୍ତି ନେଲେ ବୋଲି

ମୋତେ ବିଶ୍ୱସ୍ତସୂତ୍ରରୁ ଖବର ମିଳିଲା । ତେଇଶ ତାରିଖରେ କଲେକ୍ଟରେଟ୍‌ରେ ଆଇନ ଅମାନ୍ୟ ଆରମ୍ଭହେଲା । ସ୍ଲୋଗାନ୍ ଓ ଛାତ୍ରଙ୍କ ଭାଷା ଅତ୍ୟନ୍ତ କୁରୁଚିପୂର୍ଣ୍ଣ ବୋଲି ଲୋକେ କହିଲେ । ସରକାର କେବଳ ଗିରଫ ଆରମ୍ଭ କଲେ । ଛାତ୍ରଛାତ୍ରୀମାନଙ୍କୁ କୁରୁଚିପୂର୍ଣ୍ଣ ଆଚରଣ ପ୍ରଦର୍ଶନ ନକରିବାପାଇଁ ମୁଁ ଅନୁରୋଧ କଲି । ଏ ଅନୁରୋଧ ଛାତ୍ରମାନଙ୍କ ନିକଟରେ ପହଞ୍ଚାଇ ଦିଆଗଲା । ଲକ୍ଷ୍ୟ କରାଗଲା ଯେ ଆଉ ସେପରି ଅଶ୍ଳୀଳ ଭାଷା ସେମାନେ ବ୍ୟବହାର କଲେନାହିଁ । ମାତ୍ର ସାରା ଓଡ଼ିଶାରେ ଏହି ବିକ୍ଷୋଭ ପ୍ରଦର୍ଶନ ବ୍ୟାପିଗଲା ।

ଛାତ୍ରଙ୍କ ଦେଖାସାକ୍ଷାତ ଆଦୌ ନ ମିଳିବାରୁ ସେମାନଙ୍କ କେନ୍ଦ୍ରସ୍ଥଳ କାଳୀଗଳି ଯାଇ କର୍ମାନୁଷ୍ଠାନ ସମିତିର ସଦସ୍ୟଙ୍କୁ ଭେଟିବାକୁ ଚେଷ୍ଟାକଲି । ଦ୍ୱାର ଜଗିଥିବା ଛାତ୍ର ଆମକୁ ଭିତରକୁ ଯିବାକୁ ଦେଲେ ନାହିଁ । ପଚିଶ ତାରିଖ ରବିବାର ଦିନ ସର୍ବଶ୍ରୀ ଅଭୟ ମହାପାତ୍ର, ପ୍ରଫୁଲ୍ଲ ମହାନ୍ତି ଓ ବସନ୍ତ କୁମାରୀ ଦେବୀ ଆସି ମୋତେ କହିଲେ ଯେ ବିନା ସର୍ତ୍ତରେ ଛାତ୍ରଙ୍କୁ ଖଲାସ, କ୍ଷତିପୂରଣ ଓ ଆସେମ୍ବ୍ଲିରେ ଦିଆଯାଇଥିବା ବିବୃତିର ପ୍ରତ୍ୟାହାର ହେଲେ ଯାଇ ଛାତ୍ର ଧର୍ମଘଟ ଭାଙ୍ଗିବ, ତାପରେ ମିଳାମିଶା ପାଇଁ କଥାବାର୍ତ୍ତା ହେବାବେଳେ ବିଶ୍ୱବିଦ୍ୟାଳୟ ତଦନ୍ତ କଥା ପଡ଼ିବ । ମୁଁ ଏକଥା ଘରୋଇ ମନ୍ତ୍ରୀଙ୍କୁ କହିବାରୁ ସେ କହିଲେ ଯେ ପିଲାଏ ମଧ୍ୟ ଏକଥା ଲେଖିଦେବେ ଯେ ଆମେ ତରବରରେ ଏ କାମ କରିଛୁ, ଭବିଷ୍ୟତରେ କଲେଜର ବିଧି ମାନି ଚଳିବୁ; ତାହାହେଲେ ବିନା ସର୍ତ୍ତରେ ଛାତ୍ରଙ୍କୁ ଖଲାସ କରିଦିଆଯିବ ଏବଂ କେବଳ ଛାତ୍ରଯୂନିୟନ ସଭାପତି ଏ ପ୍ରକାର ସ୍ୱୀକୃତି ଦେଲେ ମଧ୍ୟ ହେବ । ଏକଥା ଛାତ୍ରଙ୍କୁ କହିବାରୁ ଛବିଶ ତାରିଖ ଦିନ ଛାତ୍ର କର୍ମାନୁଷ୍ଠାନ କମିଟି ଘରୋଇ ମନ୍ତ୍ରୀଙ୍କୁ ଭେଟିବାକୁ କହିଲେ, କିନ୍ତୁ ଦିନଯାକ କୌଣସି ନିଷ୍ପତ୍ତି ଜଣାଇଲେ ନାହିଁ । ଉପରନ୍ତୁ ଶ୍ରୀ ନିଶାମଣି ଖୁଣ୍ଟିଆ କହିଲେ ଯେ, ସରକାର ମୁଣ୍ଡ ନୁଆଁଇବା ଯାଏ ଏ ଆନ୍ଦୋଳନ ଚାଲିବ । ସତେଇଶ ତାରିଖ ସକାଳୁ ଶ୍ରୀ ନିଶାମଣି ଖୁଣ୍ଟିଆ ଗିରଫ ହେବା ପୂର୍ବରୁ ମୋତେ ଟେଲିଫୋନ୍‌ରେ କହିଲେ - "ମୁଁ ଛାତ୍ର ଆନ୍ଦୋଳନକୁ ଶାନ୍ତିପୂର୍ଣ୍ଣ ରଖିଥିଲି । ବର୍ତ୍ତମାନ ମୁଁ ଯାଉଛି । ଆପଣ ମିଳମିଶା କଥା ବୁଝନ୍ତୁ ।" ମୁଁ କହିଲି—"ଛାତ୍ରମାନେ କାହାନ୍ତି ?" ସେ କହିଲେ—"ଛାତ୍ରଙ୍କୁ ଆପଣ ପାଇବେ ନାହିଁ । ବାଙ୍କବିହାରୀ ଦାସ, ଦୀନବନ୍ଧୁ ସାହୁ ଓ ଗୋବିନ୍ଦ ଦାସଙ୍କଠାରୁ ମତ ନେବେ ।" ପୁଣି ଶ୍ରୀ ନନ୍ଦକିଶୋର ଦାସ (ଏମ୍. ପି) ମୋତେ କହିଲେ—ସରକାର ଏକତରଫା ଘୋଷଣା କରି ଆନ୍ଦୋଳନ ବନ୍ଦକରନ୍ତୁ ।

ଅଠେଇଶ ତାରିଖ ସନ୍ଧ୍ୟାକୁ ପୁରୀରୁ ଆର୍ତ୍ତବାବୁ ଓକିଲ ଓ ଡାକ୍ତର ମହାଦେବ ମିଶ୍ର ଆସି କହିଲେ ଯେ, ଛାତ୍ରଆନ୍ଦୋଳନ ବନ୍ଦ ନ ହେଲେ ଆଚାର୍ଯ୍ୟ ମହାଶୟ ଆମରଣ ଅନଶନ କରିବେ । ଏକଥା ସର୍ବଶ୍ରୀ ବୀରେନ୍ ମିତ୍ର, ବିଜୁ ପଟ୍ଟନାୟକ, ନୀଳମଣି ରାଉତରାୟ ଓ ବିଜୟ ପାଣିଙ୍କୁ ଜଣାଇଲି । ମୋ ମନରେ ଆଚାର୍ଯ୍ୟ ମହାଶୟଙ୍କ ପାଇଁ ଉଦ୍‌ବେଗ ମଧ୍ୟ ଜନ୍ମିଲା । ମୁଁ ସର୍ବଶ୍ରୀ ଅଶୋକ ଦାସ, ଶ୍ରୀରାମଚନ୍ଦ୍ର ଦାସ ଓ ଦୀନବନ୍ଧୁ ସାହୁଙ୍କୁ ଡକାଇ ଏ ବିଷୟରେ କଥାବାର୍ତ୍ତା କଲି । ଅଶୋକ ଦାସ ଛାତ୍ରଙ୍କ ମତାମତ ବୁଝିବା ଦାୟିତ୍ୱ ନେଲେ ।

ଭୁବନେଶ୍ୱରରୁ ଖବର ଆସିଲା ସେଠାରେ ଗୁଳି, ଘରପୋଡ଼ି, ଲୁଟ ଚାଲିଛି । ତେଣେ ଅନଶନର ସମ୍ଭାବନା, ଏଣେ ଲୁଟ ଘରପୋଡ଼ି ଆଦି କରିବାଦ୍ୱାରା ଛାତ୍ରଙ୍କ ଅନୁଚିତ ଆଚରଣ ମୋତେ ଚିନ୍ତାରେ ପକାଇଲା । କିଛିକ୍ଷଣ ପରେ ଅଶୋକ ଦାସ ତାଙ୍କ ଘରୁ ଜଣାଇଲେ ଯେ ଛାତ୍ରମାନେ ତାଙ୍କ ଦାଙ୍କାରୁ ଓହରିବେ ନାହିଁ । ଲୁହା କୋଚଟକୁ କମାରେ କୋଚଟ । ଅଣଚରଣ ତାରିଖ ଦିନ କେତେକ ଦାୟିତ୍ୱସମ୍ପନ୍ନ ଅଭିଭାବକଙ୍କୁ ଡକାଇ ସେମାନଙ୍କୁ ଏ ମିଳାମିଶା କାମରେ ମୁଣ୍ଡ ପୂରାଇବାକୁ ପ୍ରବର୍ତ୍ତାଇଲି । ଛାତ୍ରମାନଙ୍କ ଅଶୋଭନୀୟ ଆଚରଣରେ ସମସ୍ତେ କ୍ଷୁବ୍ଧ । ଛାତ୍ରଙ୍କର ମଧ୍ୟ ଅଭିଭାବକମାନଙ୍କ ପ୍ରତି ଶ୍ରଦ୍ଧା ନାହିଁ । ଜଣେ ଛାତ୍ର ମୋତେ କହିଲେ "ବାପା ମାଆ ଆମୋଦ କରିଛନ୍ତି, ଆମେ ଜନ୍ମ ହୋଇଛୁ । ଆମ କଥା ସେମାନେ କିଛି ଭାବନ୍ତି ନାହିଁ ।" ଏସବୁ କଥା ମୋତେ ବଡ଼ ଦୁଃଖଦାୟକ ହେଉଥାଏ । ତାହା ପରଦିନ ମୋ ଉପସ୍ଥିତିରେ ଅଭିଭାବକମାନଙ୍କ ପ୍ରତିନିଧି ସରକାରଙ୍କ ସହ କଥାବାର୍ତ୍ତା କଲେ । ସରକାର ବିଶ୍ୱବିଦ୍ୟାଳୟୀୟ ତଦନ୍ତ ଓ ହିଂସାକାଣ୍ଡରେ ଜଡ଼ିତ ନ ଥିବା ଛାତ୍ରଙ୍କୁ ବିନା ସର୍ତ୍ତରେ ଛାଡ଼ିବା କଥା ମାନିନେଲେ ଏବଂ ସେହି ସନ୍ଧ୍ୟାରେ ରେଡ଼ିଓରେ ଏହା ଘୋଷଣା କଲେ । ଏଣେ ସେହି ରାତିରେ ଗୋପବନ୍ଧୁ ବାଗରେ ଛାତ୍ରମାନେ ଘୋଷଣା କଲେ ଯେ ଆମେ ଅଭିଭାବକଙ୍କର ମଧ୍ୟସ୍ଥତା ମାନିବୁ ନାହିଁ । ଏହାପରେ ଛାତ୍ର କ୍ରିୟାନୁଷ୍ଠାନ ସମିତିର ପନ୍ଦର ଜଣ ସଦସ୍ୟ ଆସି ବିଶ୍ୱବିଦ୍ୟାଳୟୀୟ ତଦନ୍ତ ଓ ହିଂସା ନ କରିଥିବା ଛାତ୍ରଙ୍କ ଖଲାସ ସମ୍ବାଦର ସ୍ପଷ୍ଟିକରଣ ଚାହିଁଲେ । ସବୁ ଅଭିଯୁକ୍ତ ଛାତ୍ର ଖଲାସ ନ ହେଲେ ଆଇନ୍ ଅମାନ୍ୟ ଚାଲିବ ବୋଲି ସେମାନେ କହିବାରୁ ଶ୍ରୀ ଚିନ୍ତାମଣି ମିଶ୍ର ଓ ମନମୋହନ ଚୌଧୁରୀ ଏ ପ୍ରକାର ଜିଦ୍‌ର ପରିଣତି ବିଷୟରେ ସେମାନଙ୍କୁ ବୁଝାଇଲେ । ଶ୍ରୀ ରାଧାନାଥ ରଥ ମଧ୍ୟ ଉପସ୍ଥିତ ଥାଆନ୍ତି । ଏ ବୁଝାବୁଝି ପରେ ଛାତ୍ରମାନେ "ପରାମର୍ଶ" କରିବାକୁ ଚାଲିଗଲେ ।

ଏହି ତରଳ ଓ ଜଟିଳ ପରିସ୍ଥିତି ଦେଖି ଆଚାର୍ଯ୍ୟ ମହାଶୟ ଖବରକାଗଜରେ ଗୋଟିଏ ବିବୃତି ଦେଲେ । ଖବର ମିଳିଲା ଯେ, ଛାତ୍ରମାନେ ସିଧାସଳଖ ସରକାରଙ୍କ ସଙ୍ଗେ ସମାଧାନ ପାଇଁ କଥାବାର୍ତ୍ତା କରିବାକୁ ଚାହିଁଥିଲେ—ମାତ୍ର ମୁଖ୍ୟମନ୍ତ୍ରୀ ଜଣାଇଦେଇଛନ୍ତି ଯେ ଛାତ୍ରମାନେ ଅଭିଭାବକଙ୍କ ପ୍ରତିନିଧିଙ୍କୁ ସାଙ୍ଗରେ ନ ଆଣିଲେ ସେ ଦେଖା କରିବେ ନାହିଁ । ଫଳରେ ଛାତ୍ରମାନେ ନଭେମ୍ବର ୪ ତାରିଖ ସକାଳଓଳି ଅଭିଭାବକ ପ୍ରତିନିଧି ଶ୍ରୀ ମୁରଲୀଧର ମହାନ୍ତି (ବାରିଷ୍ଟର) ଆଉ କେତେକ ଓକିଲଙ୍କ ସହ ଭୁବନେଶ୍ୱର ଗଲେ । ମୁଁ ମଧ୍ୟ ଗଲି । ଏଗାରଘଣ୍ଟା କାଳ ନିରବଚ୍ଛିନ୍ନ ଆଲୋଚନା ପରେ ମୁଖ୍ୟମନ୍ତ୍ରୀ ଓ ଛାତ୍ରପ୍ରତିନିଧିମାନେ ଏକ ସମାଧାନରେ ପହଞ୍ଚିଲେ । କ୍ଷତିପୂରଣ କଥା ପଡ଼ିଲାବେଳେ ଘଡ଼ି, କଲମ ଏପରିକି ଗେଞ୍ଜିଖଣ୍ଡେ ପାଇଁ ଛାତ୍ରଙ୍କ ମନୋବୃତ୍ତି ଦେଖି ବିସ୍ମିତ ହେଲି ।

ମୁଁ ଭାବୁଛି ଛାତ୍ରଙ୍କୁ ଗୋଟାଏ ସଂପ୍ରଦାୟ ଭଳି ଭାବିବା ଠିକ୍ ନୁହେଁ । ଗୋଟାଏ ସମ୍ପ୍ରଦାୟ ଭଳି ଛାତ୍ରମାନେ ଏହା କରିଛନ୍ତି ବା ଛାତ୍ର ସମ୍ପ୍ରଦାୟଙ୍କ ଉପରେ ପୁଲିସ ଲାଠି-ପ୍ରହାର କରିଛନ୍ତି

ଧରିନେବାଟା ଅନୁଚିତ । ଦୈନନ୍ଦିନ ଜୀବନରେ ଶିକ୍ଷାନୁଷ୍ଠାନର ବାହାରେ ଯାହା ଘଟୁଛି ତାକୁ ତୁଲାଇବାବେଳେ ଛାତ୍ରମାନେ ନିଜକୁ ସାଧାରଣ ନାଗରିକ ବୋଲି ଭାବିବା ଉଚିତ ।

ପୁଲିସ୍ ଟିକିଏ ବୁଦ୍ଧି ବିଚାରର କାମ କରିଥିଲେ ଏତେଦୂର ଗଣ୍ଡଗୋଳ ହୋଇନଥାନ୍ତା । ଦୋକାନୀ ଓ ସଂପୃକ୍ତ ପିଲାଙ୍କୁ ସେଠାରୁ ସ୍ଥାନାନ୍ତରିତ କରିଦେଇ ସେମାନଙ୍କ ସଙ୍ଗେ କଥାବାର୍ତ୍ତା କରିଥିଲେ ଭଲହୋଇଥାନ୍ତା ।

ସେପ୍ଟେମ୍ବର ୨୭ର ପୁଲିସ ଜୀପ୍ ପୋଡ଼ା, ପୁଣି ମାଡ଼ ଆଦିର ବିଭାଗୀୟ ତଦନ୍ତ ତୁରନ୍ତ କରାଇଦେଇ କ୍ଷତିଗ୍ରସ୍ତ ଛାତ୍ରଙ୍କୁ କ୍ଷତିପୂରଣ ଦିଆଯିବା ଘୋଷଣା ସରକାର କରିଦେଇଥିଲେ କଥାଟା ଏତେଦୂର ଗଡ଼ିନଥାନ୍ତା ।

ବିଭିନ୍ନ ରାଜନୈତିକ ଦଳ ନାନା ପ୍ରକାର ବକ୍ତୃତା ଦେଇ ଛାତ୍ରଙ୍କୁ ଅଶୋଭନୀୟ କାର୍ଯ୍ୟକରିବା ପାଇଁ ଉସ୍କାଇ ନ ଥିଲେ ଅବସ୍ଥା ଏତେ ଗୁରୁତର ହୋଇ ନ ଥାନ୍ତା । ଏହି ଘଟଣା ଓ ପୂର୍ବର ଅନେକ ଘଟଣାରୁ ମୋର ମନେହେଉଛି ଯେ କୌଣସି ଅଶାନ୍ତିକର ପରିସ୍ଥିତି ସୃଷ୍ଟି ହେଲେ ଶୀଘ୍ର ତାହାର ସମାଧାନ କରିବାର ବାଟ ନ ଖୋଜି ଅନେକେ ସ୍ୱାର୍ଥସିଦ୍ଧି ପାଇଁ ସେହି ପରିସ୍ଥିତିର ସୁଯୋଗ ନେଇଥାନ୍ତି । ବରଗଡ଼ର କିଛି ଲୋକ ଯେ ଲୁଟ୍‌ତରାଜ, ପୋଡ଼ାଜଳା କଲେ ଏହା ତାର ପ୍ରମାଣ ।

ନଭେମ୍ବର ୫ ତାରିଖର ସରକାର-ଛାତ୍ର ରାଜିନାମାରେ ଆଇନ୍‌ସଙ୍ଗତ ଦାବୀଗୁଡ଼ିକ ପୂରଣ କରିବାପାଇଁ ମୁଖ୍ୟମନ୍ତ୍ରୀ ଲିଖିତ ପ୍ରତିଶ୍ରୁତି ଦେଲେ । ଆଇନବହିର୍ଭୂତ ଦାବୀ ପୂରଣ କରିବାକୁ ସେ ମୌଖିକ ପ୍ରତିଶ୍ରୁତି ଦେଲେ । ପୁଣି ସେ ଜଣାଇଲେ ଯେ, ଆଇନ୍‌ବହିର୍ଭୂତ ଦାବୀ ପୂରଣ କଥା ଯଦି ଛାତ୍ରପ୍ରତିନିଧି ସମ୍ବାଦପତ୍ରରେ ଛାପିବେ ତେବେ ସେ ତାହା ଅସ୍ୱୀକାର କରିବେ । ଏହା ପରେ ପରେ ପଜାଚୁକ୍ତି ହେଲା ।

ନଭେମ୍ବର ୧୦ ତାରିଖରେ ଛାତ୍ରଙ୍କ ପକ୍ଷରୁ ସରକାରଙ୍କୁ ଚରମପତ୍ର ଦିଆଗଲା ଯେ କେତେକ ଛାତ୍ର ଏପର୍ଯ୍ୟନ୍ତ ଜେଲରେ ଅଛନ୍ତି—ସରକାର ଚୁକ୍ତିଭଙ୍ଗ କରିଛନ୍ତି ତେଣୁ ପୁନର୍ବାର ଧର୍ମଘଟ ଚାଲିବ । ମୁଖ୍ୟମନ୍ତ୍ରୀ ମୋତେ ଜଣାଇଲେ ଯେ ଜଣେ ସୁଦ୍ଧା ଛାତ୍ର ଜେଲରେ ନାହାନ୍ତି । ତଥାପି ଧର୍ମଘଟ ଆରମ୍ଭହେଲା । ସରକାର ଧର୍ମଘଟ ଆରମ୍ଭ ହେବା ମାତ୍ରେ ରାଜନୈତିକ ଦଳର କେତେକ ନେତାଙ୍କୁ ଗିରଫ କଲେ । ମୁଁ ପୁଣି ସମାଧାନ ବାଟ ଖୋଜିଲି । ବିଶିଷ୍ଟ ଲୋକଙ୍କ ସଙ୍ଗେ କଥାବାର୍ତ୍ତା କରି ଜାଣିଲି ଯେ ଏ ଧର୍ମଘଟକୁ କେହି ପସନ୍ଦ କରୁନାହାନ୍ତି । କଳାହାଣ୍ଡି ଜେଲରେ ଛାତ୍ର ଅଛନ୍ତି ବୋଲି କୁହାଯିବାରୁ ମୁଁ ନିଜେ ଭବାନୀପାଟଣା ଯାଇ ଦେଖିଲି ଯେ ସେ ଜେଲ୍‌ରେ ଛାତ୍ର ନାହାନ୍ତି । ସମାଧାନ ପାଇଁ କେତେକ ବିଶିଷ୍ଟ ନାଗରିକଙ୍କୁ ଅନୁରୋଧ କଲି । ସେମାନେ ଏଥିରେ ପଶିବାକୁ ରାଜି ହେଲେ ନାହିଁ । ଶେଷରେ ଅଧ୍ୟାପକମାନଙ୍କୁ ଅନୁରୋଧ କରିବାପାଇଁ ଠିକ୍ କରି ଅଧ୍ୟାପକ ପ୍ରଫୁଲ୍ଲ କୁମାର ପତି, ଦେବେନ୍ଦ୍ର ଚନ୍ଦ୍ର ମିଶ୍ର ଓ ଦେବପ୍ରସାଦ ପଟ୍ଟନାୟକଙ୍କୁ ଭେଟି କଥାବାର୍ତ୍ତା କଲି । ସେମାନେ ସମାଧାନ ପାଇଁ ଚେଷ୍ଟା କରିବାକୁ ରାଜିହେଲେ ।

୧୪ ତାରିଖରେ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଉପସ୍ଥିତିରେ କଟକରେ ଏକ ସଭାହେଲା । ସଭାରେ ପାଞ୍ଚ୍ଛଏ ଲୋକ ଗୋଳମାଳ କରିବାରୁ ପୁଲିସ ଅନ୍ଧାଧୁନ୍ଦା ଲାଠିଚାଳନା କଲେ । ଫଳରେ ସାଧାରଣ ଲୋକେ ଉତ୍ତ୍ୟକ୍ତ ହେଲେ । ଲାଠିମାଡ଼ରେ ଲୋକେ ମରିଛନ୍ତି ଓ ଚନ୍ଦନ-ପୋଖରୀରେ ସେମାନଙ୍କ ମୃତଦେହ ପଡ଼ିଛି ବୋଲି ପ୍ରଚାର ହେବାରୁ ଲୋକ ଉତ୍ତ୍ୟକ୍ତ ହୋଇ ପାଣିଟାଙ୍କି ଓ ବିଜୁଳି ବ୍ୟବସ୍ଥା ନଷ୍ଟ କରିଦେବାର ଯୋଗାଡ଼ କରୁଥିବାର ସୂଚନା ପାଇ ସର୍ବଶ୍ରୀ ଗୋବିନ୍ଦ ଦାସ ଓ ରମାକାନ୍ତ ମହାପାତ୍ର ମୋତେ ଡକାଇ ପଠାଇଲେ । ସର୍ବଶ୍ରୀ ରମ୍ଭା ଦେବୀ, ଇନ୍ଦିରା ମିଶ୍ର, ଅନ୍ନପୂର୍ଣ୍ଣା ମହାରଣା ଓ ମୁଁ ସେ ଦୁହିଁଙ୍କ ସଙ୍ଗରେ ପୋଖରୀ ପାଖକୁ ଯାଇ ଓ ହାସପାତାଳକୁ ଯାଇ କେଉଁଠିହେଲେ ମୃତଲୋକ ନଥିବା କଥା ବୁଝି ଉତ୍ତେଜିତ ଭିଡ଼କୁ ଶାନ୍ତ କଲୁ ।

ଅଧ୍ୟାପକ ମଣ୍ଡଳୀ ରେଭେନସା କଲେଜର ପ୍ରିନ୍ସିପାଲଙ୍କ ବିରୋଧ ସତ୍ତ୍ୱେ ସମାଧାନର ବାଟ କାଢ଼ିବା ପାଇଁ ଉଦ୍ୟମ କଲେ । ସିଧାସଳଖ ଛାତ୍ରଙ୍କ ସଙ୍ଗେ ସମ୍ପର୍କ ସ୍ଥାପନ କରି ସେମାନେ ଜାଣିଲେ ଯେ, ଯଦି ଜଣେ କେହି ବିବୃତି ଦେବେ ଯେ ଛାତ୍ରମାନେ ଧର୍ମଘଟ ଛାଡ଼ି ସ୍କୁଲ କଲେଜରେ ଯୋଗଦେଲେ ମୁଁ ତାଙ୍କ ଦାବୀ କଥା ବୁଝିବା ଦାୟିତ୍ୱ ନେବି, ତେବେ ସେମାନେ ଧର୍ମଘଟ ଭାଙ୍ଗିବେ । ସେତେବେଳକୁ ପୁରୀରେ ଏକ ଅଭିଭାବକ ସଭାରେ ଆଚାର୍ଯ୍ୟ ମହାଶୟ ବିବୃତି ଦେଇ ସାରିଲେଣି ଯେ ଛାତ୍ରମାନେ ଧର୍ମଘଟ ପ୍ରତ୍ୟାହାର କରି ସ୍କୁଲ କଲେଜରେ ଯୋଗଦେଲେ ମୁଁ ତାଙ୍କ ନ୍ୟାଯ୍ୟ ଦାବୀ କଥା ବୁଝିବି । ତେଣୁ ଅଧ୍ୟାପକଙ୍କ ସଙ୍ଗେ ପରାମର୍ଶ କରି ମୁଁ ଆଚାର୍ଯ୍ୟ ମହାଶୟଙ୍କୁ କଟକ ଆସିବାକୁ ଅନୁରୋଧ କଲି । ଯାହା-ହେଉ ଅଧ୍ୟାପକଙ୍କ ଉଦ୍ୟମରେ ଆଚାର୍ଯ୍ୟ ମହାଶୟଙ୍କ ମଧ୍ୟସ୍ଥତାକୁ ଛାତ୍ରମାନେ ସ୍ୱୀକାର କଲେ । ଆଚାର୍ଯ୍ୟ ମହାଶୟ କଟକରେ ଚିତ୍ତାନନ୍ଦ, ମୋହନ ଦାସ, ଶ୍ରୀନିବାସ ମିଶ୍ର ଓ ଆଉ କେତେଜଣଙ୍କୁ ନେଇ ମୁଖ୍ୟମନ୍ତ୍ରୀଙ୍କୁ ଭେଟିବା ପାଇଁ ଉଦ୍ୟମ କରିଥିଲେ, ମାତ୍ର ମୁଖ୍ୟମନ୍ତ୍ରୀ ସେମାନଙ୍କୁ ସାକ୍ଷାତ୍ ଦେବାକୁ ମନାକଲେ । ସେମାନେ ସର୍ବୋଦୟ କାର୍ଯ୍ୟାଳୟରେ ଏ କଥା ମୋତେ କହିଲେ ଏବଂ ମୁଖ୍ୟମନ୍ତ୍ରୀଙ୍କ ସଙ୍ଗେ ଦେଖା କରେଇ ଦେବାକୁ କହିଲେ । ମୁଖ୍ୟମନ୍ତ୍ରୀଙ୍କୁ ଏ କଥା କହିବାରୁ ସେ କହିଲେ ଯେ କେନ୍ଦ୍ରମନ୍ତ୍ରୀ ଗୁଲଜାରୀଲାଲ ନନ୍ଦା ନ ଆସିବା ଯାଏ ମୁଁ କାହାରି ସଙ୍ଗେ ଦେଖା କରିବି ନାହିଁ ।

ଶ୍ରୀ ଚିନ୍ତାମଣି ମିଶ୍ର ଅଭିଭାବକଙ୍କ ପ୍ରତିନିଧି ହିସାବରେ ନନ୍ଦାଜୀଙ୍କୁ ଭେଟିବାପାଇଁ ମତେ କହିଲେ । ମୁଁ ରାଜି ହେଲିନାହିଁ । ମାତ୍ର ନନ୍ଦାଜୀ ଆଚାର୍ଯ୍ୟ ମହାଶୟଙ୍କୁ ଓ ମୋତେ ଭେଟିବାପାଇଁ ଆଗ୍ରହ ପ୍ରକାଶ କଲାରୁ ଅଗତ୍ୟା ଆମେ ନନ୍ଦାଜୀଙ୍କୁ ସାକ୍ଷାତ କଲୁ । ନନ୍ଦାଜୀ କହିଲେ—"ରମାଦେବୀ ! ଆଉ କେତେଦିନ ପରେ ଛାତ୍ରମାନେ ମୋଡ଼ିମାଡ଼ି ହୋଇ ଦଳ ଭାଙ୍ଗି ସ୍କୁଲ କଲେଜରେ ପଶିଯାଇଥାନ୍ତେ । ମୋର ଆସିବା ଦରକାର ନ ଥିଲା । ମାତ୍ର କାହିଁକି ଗୋଟାଏ ତିକ୍ତତା ସେମାନଙ୍କ ମଧ୍ୟରେ ଅସିବ ସେଥିପାଇଁ ଆସିଲି । ଆଖିର ତ ସେମାନେ ଆମରି ପିଲା । ସେମାନଙ୍କର ହାର ଆମର ପରାଜୟ !" ଏହାପରେ ସେ ଛାତ୍ରଙ୍କୁ କହିଲେ—

"ଧର୍ମଘଟ ଛାଡ଼ । ସ୍କୁଲ କଲେଜରେ ଯୋଗ ଦିଅ । ରାଜନୈତିକ ଲୋକଙ୍କ ମତାଣରେ ଭୁଲ ନାହିଁ । ମୋର ଆସିବା ଦରକାର ନ ଥିଲା, କେବଳ ଗୋଟାଏ ଭିକ୍ଷୁତା ଜଣାଇବ ବୋଲି ଆସିଲି ।" ଛାତ୍ରମାନେ କହିଲେ—"ଆଗ୍ରୟ୍ଯ ମହାଶୟଙ୍କ ମଧ୍ୟସ୍ଥତା ଛଡ଼ା ଆମେ ଆଉ କାହାର ମଧ୍ୟସ୍ଥତା ମାନିବୁ ନାହିଁ ।" ନନ୍ଦାଙ୍କା କହିଲେ—"ତାହାହେଲେ ଆଗ୍ରୟ୍ଯ ମହାଶୟଙ୍କ ଉପଦେଶ ଅନୁସାରେ ସ୍କୁଲ କଲେଜରେ ଯୋଗଦେଲେ ସରକାର ପାଞ୍ଚ ତାରିଖର ଜବାବ ରକ୍ଷାକରିବେ ।"

ନଭେମ୍ବର ୨୫ ତାରିଖ ଭୋରରୁ ଶ୍ରୀ ଭାଗବତ ବେହେରା ପ୍ରମୁଖ ଆଗ୍ରୟ୍ଯ ମହାଶୟଙ୍କୁ ଲିଖିତଭାବରେ ଧର୍ମଘଟ ପ୍ରତ୍ୟାହାର କଥା ଜଣାଇଲେ । ଶ୍ରୀ ରାଧାନାଥ ରଥଙ୍କ ଅନୁରୋଧରେ ଆଗ୍ରୟ୍ଯ ମହାଶୟଙ୍କ ସହିତ ମୁଁ ଯାଇ ମୁଖ୍ୟମନ୍ତ୍ରୀଙ୍କୁ ଛାତ୍ରଙ୍କୁ ଶୀଘ୍ର ଖଲାସ କରିବା କଥା କହିଲି ।

ପଚିଶ ତାରିଖ ଦିନ ଛାତ୍ରମାନେ ଖଲାସ ହେଲେ । ଶିକ୍ଷାନୁଷ୍ଠାନମାନଙ୍କରେ ସ୍ୱାଭାବିକ ଅବସ୍ଥା ଫେରିଆସିଲା ।

## ୩୮ । କଳାହାଣ୍ଡି ମରୁଡ଼ି

କଳାହାଣ୍ଡି ମରୁଡ଼ି ଅବସ୍ଥା ଦେଖିବାକୁ ମୁଁ କଟକରୁ ମାର୍ଚ୍ଚ ୧୫, ୧୯୬୬ ତାରିଖରେ ବାହାରିଲି । ୧୭ ଓ ୧୮ ତାରିଖ ଦୁଇଦିନ କୋମନା ପଞ୍ଚାୟତରେ ଛଅଖଣ୍ଡ ଗାଁ ବୁଲି ଦେଖିଲି । ଲୋକଙ୍କ ବିକା କିଣା ଅବସ୍ଥା ଦେଖିବାକୁ ଭେଲା ହାଟକୁ ମଧ୍ୟ ଯାଇଥିଲି ।

ଭେଲା ଗୋଟିଏ ବଡ଼ ସମୃଦ୍ଧ ଗାଁ । ସେ ଗାଁର ସତରଟି ପରିବାର ଖାଦ୍ୟାଭାବ ସହି ନ ପାରି ପଳାଇଛନ୍ତି । ଶ୍ୟାମସୁନ୍ଦର ଦୁରିଆର ଭାଇ ଗୋପୀ ଦୁରିଆର ଜମି ଅଛି ମାତ୍ର ମରୁଡ଼ି ହେତୁ ଫସଲ ନ ହେବାରୁ ସେ ସ୍ତ୍ରୀର ଗହଣା, କଂସାବାସନ, ଛେଳି, କୁକୁଡ଼ା, ଘରର ଖପୁରି ସୁଦ୍ଧା ବିକି କରି ଘରର କୁଟୁମ୍ବ ଚଳାଇଲା । ଶେଷରେ ଘର ଛାଡ଼ି ପାଇକମାଳ ଆଡ଼କୁ ପଳାଇଗଲା । ଶ୍ୟାମସୁନ୍ଦର ଦୁରିଆର ପାଞ୍ଚ ଏକର ଭୂମି ଅଛି । ତାହାର ଘରେ ପଶି ଦେଖିଲୁ ଖଣ୍ଡେ ହେଲେ କଂସାବାସନ ନାହିଁ । ସେ କୌଣସି ପ୍ରକାରେ ମହୁଲ ସିଝାଁ, ପିଆଜପତ୍ର ସିଝା ଅଳ୍ପ ଅଳ୍ପ ଦେଇ କୁଟୁମ୍ବ ବଞ୍ଚାଇଛି । ତାର୍ଥ କେଉଟର ଭାଇ ହରି ସିଂ ଘରଛାଡ଼ି ପଳାଇଛି । ତାଙ୍କର ବାର ଏକର ଜମି ଅଛି ।

ଗୋଟିଏ ମୂଳିଆପୁଅ (ଅଠର ବର୍ଷ ହେବ) ଦିନସାରା କିଛି ନ ଖାଇ ତାହାର ଦେହ ଥରୁଥାଏ । ସେହି ସାହିର ଜଣେ ଗଣ୍ଡର କୁଟୁମ୍ବ ଉପାସରେ ରହି ରହି ସ୍ତ୍ରୀର କ୍ଷୀର ନଥିବାରୁ ଛୋଟ ଝିଅଟିଏ ମାଆର କ୍ଷୀର ନପାଇ ମରିଗଲା ।

ଜଣେ ଗଣ୍ଡ ତାର ୩ଟା ଗାଈ, ଦୁଇଟା ବଳଦ ବିକି କରିସାରିଲଣି । ସବର୍ଣ୍ଣ ତେଲୀର ଘଣା ବନ୍ଦ (ରାଶି ଫସଲ ନ ହେବାରୁ) । ତାର ଭେଣ୍ଡା ପୁଅ ଗୋଟିଏ କଙ୍କାଳ ପରି ଆସି ଛିଡ଼ାହେଲା । ସେ ଯେ କୌଣସି ମୁହୂର୍ତ୍ତରେ ମରିଯିବ ।

ନୂଆପଡ଼ା ସବ୍‌ଡିଭିଜନ୍‌ର ୫ ଖଣ୍ଡ ବ୍ଲକର୍ ମୋଟ ଗାଁ ସଂଖ୍ୟା ୭୨୦, ଲୋକ ସଂଖ୍ୟା ୨୪ ଲକ୍ଷ । ତନ୍ମଧ୍ୟରୁ ୭୦୦ ଗ୍ରାମର ପ୍ରାୟ ଦେଢ଼ଲକ୍ଷ ଲୋକ ଖାଦ୍ୟାଭାବରେ ରହିଛନ୍ତି ବୋଲି ପଞ୍ଚାୟତ ସମିତି ଚେୟାରମ୍ୟାନ ହିସାବ ଦେଲେ ।

୧୮ ତାରିଖ ସକାଳଓଳି ଭେଲା ହାଟର କାରବାର ଦେଖିବାକୁ ଗଲି । ଆଖପାଖ ଗାଁ ଓ ଭେଲା ଗାଁର ଅଧିକାଂଶ ଲୋକ ବାସନ, କଡ଼ରିଆ, ରୂପା ସୁନା ଗହଣା, ଏପରିକି କବାଟରେ ଲାଗିଥିବା କଡ଼ା ଓ ବଳଦ ବେକର ଘଣ୍ଟି ଘାଗୁଡ଼ି ବିକିକରି ଯତ୍‌ସାମାନ୍ୟ ମାଣ୍ଡିଆ ଗ୍ରହଣ କରୁଥାନ୍ତି । ସେ ଅଞ୍ଚଳରେ ସରକାରୀ ଗ୍ରହଣ କେ.ଜି ଚଉଦ ଅଣାରେ ବିକି ହୁଏ, ମାତ୍ର ଏହା ଦୁଇ ଦିନରେ ସରିଯାଏ । ବେପାରୀ କେ·ଜି ଏକଟଙ୍କା ଛଅଣା ଦରରେ ବିକୁଥିବାର ଦେଖିଲୁ । ମାଣ୍ଡିଆ ଟଙ୍କାକୁ ଏକଅଡ଼ା, ଜଟକି ଏକ ସେରରୁ କମ୍ ।

ହାଟରେ ସୁରତନ ମାଝି (ଜମି ୧୫ ଏକର) ସ୍ତ୍ରୀ ହାତରୁ ରୂପା କଡ଼ରିଆ କାଢ଼ି ବିକୁଥିଲା । ତାର ସ୍ତ୍ରୀ କହିଲା ଯେ ସେ ପିଲାଙ୍କୁ ବଞ୍ଚାଇବାକୁ ସାତ ତୋଳା ସୁନା, ସମୁଦାୟ କଂସା-ବାସନ, ଛେଳି ଇତ୍ୟାଦି ବିକି ଏଥର ଏହି ଗହଣା ବିକୁଛି ।

ଉଗରି ମାଝିର ଦଶ ଏକର ଜମି । ସେ କଂସାଖଣ୍ଡେ ହାଟରେ ବିକୁଛି, ଘରେ ଆଉ କିଛି ନାହିଁ ।

ସନୁ ଶବରର ତିନି ଏକର ଜମି । ସେ କଂସାବାସନ ବିକି ହେଉଥିବା ଦୋକାନରେ ବାସନ ଦେଖୁଥିଲା । ସେ କଣ ବିକୁଛି ପଚାରିବାରୁ କହିଲା ସବୁ ବିକି ସାରିଲଣି, ଜମି ବନ୍ଧା ଦେଇସାରିଛି, ସକାଳୁ ଖାଇ ନାହିଁ, ଶୂନ୍ୟ ହାତରେ ହାଟକୁ ବୁଲିବାକୁ ଆସିଛି । ତଥାପି ସେ ଭିକ ମାଗୁ ନ ଥାଏ ।

ଆଖପାଖ ଗାଁର ଅସ୍ଥିଚର୍ମସାର ପିଲା ହାଟରେ ବୁଲି ବୁଲି ଭିକ୍ଷା ମାଗୁଥାନ୍ତି । ଗୋଟିଏ ବିଧବାର ଜମି ଅଛି ମାତ୍ର ଧାନ ନାହିଁ, ଦୁଇଟା ପିଲା ଧରି ଏଣେତେଣେ ବୁଲୁଥାଏ । କୋମନା ପଞ୍ଚାୟତ ସମିତିର ମୋଟ ୧୫୦ ଗାଁ ମଧ୍ୟରୁ ୧୨୭ ଖଣ୍ଡ ଗାଁର ଅବସ୍ଥା ଏହିପରି ।

ଅକ୍ଟୋବର ମାସରେ ସମିତିର ଚେୟାରମ୍ୟାନ ଗାତବେଡ଼ା, କୁଟ୍ରାବେଡ଼ା ଆଦି ଭେଲା ପଞ୍ଚାୟତର ଅଠରଖଣ୍ଡ ଗାଁକୁ ଯାଇଥିଲେ । ସେମାନେ ଅକ୍ଟୋବର ମାସରେ କିଛି ରାଶି ଓ ମାଣ୍ଡିଆ ଥିଲା ଖାଇ ଚଳିଲେ । ନଭେମ୍ବରରେ କନ୍ଦାକୁଳିଆ, ଶାଳର କସି ପତ୍ର ଖାଇଲେ, ତାପରେ କଅଁଳିଆ ଲୁସୁମପତ୍ର ଖାଇଲେ । ସୁନା ରୁପା, ବାସନ, ଗୋରୁ, ଛେଳି, ମେଣ୍ଢା କୁକୁଡ଼ା ବିକିକରି ଶେଷରେ ଘରର ଖପର ବିକି ଜଙ୍ଗଲରେ ମହୁଲଗଛର ପତ୍ର କୁଡ଼ିଆ କରି ମହୁଲ ସାଉଁଟି ବଞ୍ଚିଛନ୍ତି । ଆମେ ଏ ଗାଁକୁ ଯାଇନାହୁଁ ।

ହାଟ ଦେଖିସାରି ଆମେ ବରଲାପାଟ ଗାଁକୁ ଗଲୁ । ଗୃହ ଏକର ଜମିର ମାଲିକ ରଘୁନାଥ ଝାଙ୍କର ଘରେ ଛ ପ୍ରାଣୀ କୁଟୁମ୍ବ । ସେମାନେ ରାତିରୁ ଉପାସ ଥିଲେ । ସକାଳେ ଦାନ୍ତ ଘଷି କେବଳ ପିଆଜପତ୍ର ଦୁଇଟା ଲେଖାଁ ଚୋବାଇଛନ୍ତି । ଆଠ ଦଶ ବର୍ଷର ଝିଅଟିଏ, ପାଏ ହେବ ମହୁଲ ଆଣିଲା । ଏହା ସେଦିନର ଆୟ । ଘରେ ପ୍ରାୟ ଅଧକେଜିଏ ହେବ ଶୁଖିଲା ମହୁଲ ଓ ପିଆଜପତ୍ର କେବଳ ଛଡ଼ା କିଛି ନ ଥିଲା । ବାସନକୁସନ ମଧ୍ୟରେ ଗୋଟିଏ ଆଲୁମିନିୟମ ଗିନା ଦେଖିଲୁ । ଘରର ଅଧା ଖପର ବିକିସାରିଲାଣି ।

ମଙ୍ଗଳ ସାହାର ସ୍ତ୍ରୀ କହିଲା କସିକେନ୍ଦୁ ସରିବା ପରେ, କସି କୁସୁମ ପଧ ଖାଉଥିଲୁ, ବର୍ତ୍ତମାନ ଉମିର, ଅଁଳା ସିଝାଇ ଖାଉଛୁ । ଏବର୍ଷ ମହୁଲ କମ୍, ଅଁଳା ଓ ମହୁଲ ମଧ୍ୟ ଅଳ୍ପ ଅଳ୍ପ ମିଳୁଛି, ତାହା ସିଝାଇ ଖାଉଛୁ । ତାର ଘରେ ଗୋଟିଏ ଛେଳିଛୁଆ ଓ ଗୋଟିଏ କୁକୁଡ଼ା ଦେଖିଲୁ । ସେ ତାହାର ଖାଦ୍ୟ ଉମିର ଗୁଣ୍ଡା ଆମକୁ ଦେଖାଇଲା ।

ବଙ୍ଗାଲି ହରିଜନର ବାରପ୍ରାଣୀ କୁଟୁମ୍ବ, ବାରମାଣ ଜମି, ଘରେ କିଛି ନାହିଁ । ସ୍ତ୍ରୀ ମହୁଲ ଓ କମ୍ବଫୁଲ ସିଝାଉଛି, ପିଲମାନେ ଚୂଲପାଖେ ଘେରି ବସିଛନ୍ତି ଖାଇବାକୁ ।

ଏହି ଗ୍ରାମଦାନୀ ଗାଁର ସେନେକେଟେରି ଆସୁବଲ ମାଝିର ପଚିଶ ଏକର ଜମି । ସେ ସୁନା, ରୁପା ବିକି ଚଳୁଛନ୍ତି । ବଳଦ ହଳହଳ ଏପର୍ଯ୍ୟନ୍ତ ବିକିନାହାନ୍ତି । ତାଙ୍କ ଘରେ ମାସକ ପାଇଁ (ଛଅ ପ୍ରାଣୀଙ୍କୁ) ମାଣ୍ଡିଆ ଅଛି ବୋଲି କହିଲେ ।

ନରସିଂହ ମାଝିର ପାଞ୍ଚ ଏକର ଜମି । ସର୍ବସ୍ୱ ବିକି ଖାଇ ତେରଟିଆ ଖପରି ଘରୁ ଓଲାରି ରଖିଛି । ବିକି କରି ଲଖନା ପଳାଇଯିବ ସକୁଟୁମ୍ବ ।

୧୮ ତାରିଖ ଉପରଓଲି ବେଲଗାଁ ଗଲୁ । ସେ ଗାଁର ଓପାସୁ ଗୌଡ଼ର ୧୫ ଏକର ଜମି । ଦିନାଏ ଧାନ ପାଇନାହିଁ । କଅଣ ଖାଉଚ ବୋଲି ପଚାରିବାରୁ କାଲିଠାରୁ ସକୁଟୁମ୍ବେ ପାଣି ପିଇ ଅଛୁ ବୋଲି କହିଲା । ତାହାର ପୁଅ ଘରେ ଅବଶିଷ୍ଟ ଥିବା ମାଇ ମେଣ୍ଢାଟିକୁ ନେଇ ଖରିଆର (କୋଡ଼ିଏ ମାଇଲ ଦୂର) ଯାଇଛି । ତାକୁ ବିକି ମାଣ୍ଡିଆ ଆଣିବ । ଏହି ଆଶାରେ ଗୃହିଁ ବସିଛନ୍ତି । ସେମାନେ ପାଞ୍ଚ ଭାଇ, ମୋଟ ଜମି ଶହେ ଏକର । ସବୁ ବଳଦ ବିକି ବିକି ହଳକ ବଳଦ ରଖିଛନ୍ତି—ଯଦି ଆସନ୍ତା ବର୍ଷକୁ ଠାକୁରେ ଦୟା କରିବେ । ଅନ୍ୟ ଭାଇମାନେ ଶିମପତ୍ର, ଓସ୍ତପତ୍ର, ବରକୋଳିପତ୍ର, ଶାଗ ଓ ଡ଼ମିରି ଶୁଖାଇ ତା'ର ଗୁଣ୍ଡ ଖାଉଛନ୍ତି କହିଲେ । ଘରେ କଂସାବାସନ ଆଦୌ ନାହିଁ ।

ଏହି ଗାଁର ଗଣ୍ଡସାହିରେ ଜଣକ ଘରେ ଡ଼ମିରଗୁଣ୍ଡ ପଡ଼ି ମାଣ୍ଡିଆ କାଉ ହୋଇଥିବାର ଦେଖିଲୁ । ସେମାନେ ନାକ, କାନ, ବେକ ଓ ହାତର ଗହଣା ବିକିସାରିଛନ୍ତି ।

ତାପରେ ସୋନବାହାଲ ଗାଁକୁ ଗଲୁ । ଏ ଗାଁରେ କୂଅରେ ପାଖରେ ପାଣି । ଖଣ୍ଡେ ବାଡ଼ିରେ ବାଇଗଣ, ଟମାଟୋ ଗଛ ବଞ୍ଚିଥିବାର ଦେଖିଲୁ । ଏ ଗାଁର ଲୋକେ କହିଲେ ଆଠ ଦିନ ମଧ୍ୟରେ କାମ ଯୋଗାଇ ଦେଲେ କରିପାରିବୁ । ଆଉ ଡ଼େରି କଲେ ଶକ୍ତି ଯାଇଥିବ । ଏ ଗାଁର ତନ୍ତୀ ସାହିର ଲୋକ ବେପାରୀ ହୋଇଥିବାରୁ ଅବସ୍ଥା ଅସମ୍ଭାଳ ହୋଇନାହିଁ ।

ଏହାପରେ କୁଞ୍ଜୁଲପଡ଼ା ଗଲୁ । ଏହା ଦେଓଦଣ୍ଡହା ଗାଁର ଗୋଟିଏ ପଡ଼ା । ଏ ଗାଁର ଅବସ୍ଥା ଆଖିରେ ନ ଦେଖିଲେ କେହି ବିଶ୍ୱାସ କରିବେ ନାହିଁ । ନଅଜଣ ଲୋକ ଖାଇବା ବିନା ମରିଲେଣି ବୋଲି ଗାଁ ଲୋକେ କହିଲେ । ୮ ଗଇଣ୍ଠ ଭୁଂଜିଆର ୬୨ ଏକର ଜମି । ସେ ଖାଇବାକୁ ନ ପାଇ ପୂର୍ବଦିନ ମରିଗଲା । ତା ଗର୍ଭବତୀ ସ୍ତ୍ରୀ ପିଲା ଦୁଇଟା ଧରି ଛିଡ଼ା ହୋଇଥାଏ । କୌଣସି କଥାର ଜବାବ ଦେଇପାରୁନଥାଏ । ପିଲା ଦୁଇଟା ବଞ୍ଚିବାର ଆଶା ଦେଖିଲୁ ନାହିଁ ।

୮ ଉଆସୁ ଭୁଂଜିଆ ବାପ ବଡ଼ ପୁଅକୁ ନେଇ ପଳେଇଗଲା । ବାପ ଗ୍ରୁଡିଯିବା ପରେ ସେ ଖାଇବାକୁ ନ ପାଇ ମଲା । ତାହାର ମା ଦୁଆରେ ଛଅୋଟି ପିଲା ନେଇ ଆମକୁ ପଗ୍ଚରିଲା ଏମାନେ କିପରି ବଞ୍ଚିବେ ? ସେ ପିଲାଙ୍କର ହାଡ଼ ଉପରେ ଚମଡ଼ା ଘୋଡାହୋଇଛି ମାତ୍ର ।

ଦୁଇଜଣ ଯୁବକ ପ୍ରେତପରି ବସିଥାନ୍ତି । ଖ୍ୱେକ ଉପାସରେ ସେମାନଙ୍କ କାନକୁ କଥା ଶୁଭୁନଥାଏ । ବଡ଼ପାଟିରେ ବାରମ୍ବାର ପଗ୍ଚରିବାରୁ ଜବାବ ଦେଲେ ଯେ ପନ୍ଦର ଦିନ ହେଲା ଭାତ ଖାଇନାହାନ୍ତି ।

ଏ ଗାଁର ୮ ଗଜଦା ଚଲା, ୮ ବେତକାର ଭୁଢଆ, ୮ ବୀରବର ଭୁଞ୍ଜିଆ, ୮ ଚଇତ ଦେଈ, ୮ ଦୁଆରୁ ଭୁଞ୍ଜିଆ, ୮ ଲଡ଼ (ଭୁଂଜିଆ) ୮ ଦୁର୍ବଳ ଭୁଂଜିଆଙ୍କର ଅନାହାରରେ ମୃତ୍ୟୁ ହୋଇଛି ବୋଲି ଗ୍ରାମବାସୀ କହିଲେ । ବଞ୍ଚିଥିବା ଲୋକଙ୍କର ଯାହା ଅବସ୍ଥା ଦେଖିଲୁ ଏଠାରେ ଲୋକ ଅନାହାରରେ ମରିଥିବେ ବୋଲି ଆମର ବିଶ୍ୱାସହେଲା ।

ମାଲପଡ଼ା ଗାଁର ଜମିଥିବା ଲୋକେ ପାହାଡ଼ରୁ କୁଲିହା କଂଦା ଖୋଳିଆଣି କାଟି ସିଝାଇ ଖାଉଛନ୍ତି । ଏସବୁ ଅଞ୍ଚଳରେ ପାଣିର ଅଭାବ । ଏପ୍ରିଲ ମାସ ବେଳକୁ ଗାଈ ଗୋରୁ ଯାହା ଅଛନ୍ତି ପାଣି ପାଇବେ ନାହିଁ । କୂଅ ବନ୍ଧରେ ଯାହା ପାଣି ଅଛି ତାହା ଚଳିବା ସମ୍ଭବ ନୁହେଁ । ଲୋକେ ଦୂର ନଈରୁ ଚୂଆ ଖୋଳି ପାଣିଆଣୁଛନ୍ତି । ବନ୍ଧରେ ମାଠିଆ ବାଲଟି ବି ବୁଡ଼ୁନାହିଁ ।

ଛତା ଗାଁର ଲୋକଙ୍କ ଅବସ୍ଥା କୁଞ୍ଜେଲପଡ଼ା ତୁଳନାରେ ଭଲ ଥିବା ଦେଖିଲୁ । ମାତ୍ର ଲୋକେ କହିଲେ ଆମକୁ ଶୀଘ୍ର କାମ ନ ଦେଲେ ଆଉ ବଞ୍ଚିପାରିବୁ ନାହିଁ ।

ଆମେ ଯେଉଁ ଗାଁଗୁଡ଼ିକୁ ଯାଇଥିଲୁ ସେଗୁଡ଼ିକ ଗ୍ରାମଦାନୀ ଗାଁ ।

ଏ ଅଞ୍ଚଳରେ (କୋମନା ବ୍ଲକ) ସରକାର ମୋଟ ଟ ୭୬,୦୦୦ ଟେଷ୍ଟରିଲିଫ ଦେଇଛନ୍ତି । ଲୋକସଂଖ୍ୟା ୬୪,୦୦୦ । ଏ ଟେଷ୍ଟ ରିଲିଫ ଟଙ୍କାରେ ଠିକାଦାରଙ୍କଦ୍ୱାରା କାର୍ଯ୍ୟ ହେଉଥିବାରୁ ଓ ସରକାରୀ କର୍ମଚାରୀ ମଜୁରୀ ଠିକ୍ ଦିଆଯାଉଛି କି ନାହିଁ ଦେଖୁନଥିବାରୁ ଲୋକେ ଯଥାସମୟରେ ମଜୁରୀ ପାଉନାହାନ୍ତି ବୋଲି ଶୁଣିଲୁ ।

ଜଳାଭାବ ଦୃଷ୍ଟିରୁ ଗାଁରେ କୂଅ, ଚହଲା ଶୀଘ୍ର ଖୋଳାଇବା ଦରକାର ବୋଲି ସେଠା ଲୋକଙ୍କର ମତ । ଗୋଟିଏ ଗୋଟିଏ କୂଅରେ ଟ୧,୫୦୦ ଖରଚହେବ ।

ଟେଷ୍ଟ ରିଲିଫ୍‌ର ସମୁଦାୟ ଟଙ୍କା ପାଣି ବ୍ୟବସ୍ଥାରେ ଖରଚ ହେଲେ ଲୋକେ ପ୍ରକୃତ ଉପକୃତ ହୁଅନ୍ତେ । ପୁରୁଣା ବନ୍ଧକୁ ଖୋଲାଇଲେ ମଧ୍ୟ ଭଲ ହୁଅନ୍ତା ।

ଲୋକଙ୍କଦ୍ୱାରା ବର୍ତ୍ତମାନ ଖପୁରି ତିଆରି କରାଇ ପରେ ବାନ୍ଧିକଲେ ବର୍ତ୍ତମାନ ପାଇଁ ଲୋକେ କାମ ପାଇଯାଆନ୍ତେ ।

ଭେଲା ଅଞ୍ଚଳରେ ବର୍ଷା ପୂର୍ବରୁ ଯଥେଷ୍ଟ ପରିମାଣରେ ଖାଦ୍ୟଶସ୍ୟ ମହଜୁଦ ରଖିବା ଆବଶ୍ୟକ । ବର୍ଷା ଆରମ୍ଭ ହେଲେ ଏ ଅଞ୍ଚଳକୁ ନଈ ପାରହୋଇ ଟ୍ରକ୍ ଆସି ପାରିବ ନାହିଁ । ଭେଲାରେ ଶସ୍ୟ ମହଜୁଦ ରଖି ବିଭିନ୍ନ ଗାଁରେ ପାଞ୍ଚ କୁଇଣ୍ଟାଲ ପରିମିତ ଦୋକାନ ଖୋଲିଲେ ଏବେ ଟେଷ୍ଟ ରିଲିଫ୍ ଦେଲେ ଲୋକେ ଠାକିଯିବେ ।

ସିନାପାଲି ଅଞ୍ଚଳକୁ ଗାଡ଼ି ନ ପାଇବାରୁ ଦୁଇଦିନ ଭବାନୀପାଟଣାରେ ବସିଗଲୁ—ଯାଇ ପାରିଲୁ ନାହିଁ । ସେ ପାଖ ଅବସ୍ଥା କଥା ଶ୍ରୀ ଭଗବାନ ବେହେରା ଓ ଅନ୍ୟମାନଙ୍କଠାରୁ ଶୁଣିଲୁ । ଜଙ୍ଗଲ ବାଟରେ ଏକାକିଆ ଯାଉଥିବା ବାଟୋଇଙ୍କୁ ଅଭାବଗ୍ରସ୍ତ ଲୋକଙ୍କ ମଧ୍ୟରୁ କେହି କେହି ମାରି ଜିନିଷ ଛଡ଼ାଇ ନେଉଥିବାର ଶୁଣିଲୁ । ସିନାପାଲିରେ ୨୨୦୦ ତନ୍ତୀ ଅଛନ୍ତି । ସେମାନେ ସୂତାକଟା ଜାଣନ୍ତି । ସେଠାରେ ଓ ଭେଲାରେ ସୂତାକଟା ରିଲିଫ ହିସାବରେ ପ୍ରବର୍ତ୍ତନ କରାହେବ ।

୧୯ ତାରିଖକୁ ଭବାନୀପାଟଣା ଆସି ସ୍ଥାନୀୟ ଲୋକଙ୍କର ଗୋଟିଏ ସଭା ତାର ପରଦିନକୁ ଡାକିଲୁ । ଗୋଟିଏ ନିର୍ଦ୍ଦଳୀୟ ରିଲିଫ୍ କମିଟି ଗଢ଼ିବା ପାଇଁ ଶ୍ରୀ ଗଜାନନ ନାୟକ (ଆଡ଼ଭୋକେଟ୍)ଙ୍କୁ ସମ୍ପାଦକ କରି କ୍ଷମତା ଦିଆଗଲା ।

ସେଠାରେ ଅର୍ଜୁନ ପାଟଯୋଶୀଙ୍କଠାରୁ ଜାଣିଲୁ ଯେ ସିନାପାଲି, ବୋଡ଼େନ ଓ ଖରିଆରରେ ଭାରତ ସେବକ ସମାଜ ପକ୍ଷରୁ ଥରେ ଗହମ ଦଲିଆ, ମକାଗୁଣ୍ଡ ଓ ଦୁଧର ମଧ୍ୟାହ୍ନ ଭୋଜନ ଦିଆଯାଇଛି । ଭେଲାକୁ ମଧ୍ୟ ଏହି ଖାଦ୍ୟ ଏକୋଇଶ ତାରିଖ ଦିନ ଯିବାର ଥିଲା ।

ଖରିଆର ବଣିକ ସଂଘ ମାସକୁ ୧୦୦୦ ଟଙ୍କା ଖରଚ କରି ମରୁଡ଼ିଗ୍ରସ୍ତ ଲୋକଙ୍କୁ ଖାଇବାକୁ ଦେବା ସ୍ଥିରକରିଛନ୍ତି ।

ଖରିଆରରେ ଦେଖିଲୁ ଯେ ପ୍ରାୟ ୧୫୦ ଅସ୍ଥିକଙ୍କାଳସାର ସ୍ତ୍ରୀ, ବାଳକ, ବୃଦ୍ଧା, ଯୁବକ ରାସ୍ତାରେ ବୁଲୁଛନ୍ତି । ଖରିଆରରେ ଶୁଣିଲୁ ଯେ ସେଠା ଗ୍ରାମଲୋକେ କୃଆପଡ଼ାରେ ପୁଅ ଝିଅ ପୁଣି ବିକିଦେଇ ଚାଲିଆସୁଛନ୍ତି । ଖରିଆରରେ ମଧ୍ୟ ଜଳାଭାବ ।

୨୦୬୭ ବର୍ଗମାଇଲ ଅଞ୍ଚଳରେ ଥିବା ୧୦ଟି ବ୍ଲକ ଅନ୍ତର୍ଗତ ୭୫୦ଟି ଗାଁର ପ୍ରାୟ ଦୁଇଲକ୍ଷ ସତୁରିହଜାର ଅଧିବାସୀ ଏହି ଦୁର୍ଭିକ୍ଷର କରାଳ କବଳରେ ପଡିଥିଲେ । ପରିସ୍ଥିତିର ମୁକାବିଲା କରିବା ପାଇଁ ଓଡ଼ିଶା ମରୁଡ଼ି ସାହାଯ୍ୟ ସମିତି ଗଢ଼ାଯାଇଥିଲା । ମୋଟେ ଏହାର

ଅଧ୍ୟକ୍ଷ ରଖାଯାଇଥିଲା । କୋଷାଧ୍ୟକ୍ଷ ଶ୍ରୀ ରାଧାନାଥ ରଥ ଓ ସଂପାଦକ ଶ୍ରୀ ବିରଜା ପ୍ରସାଦ ରାୟ ଥିଲେ ।

ସହାୟତା କାମ ପାଇଁ ରାଜ୍ୟସରକାର, ରେଡ୍‌କ୍ରସ୍ ସୋସାଇଟି, ସେଣ୍ଟ୍ରାଲ ରିଲିଫ୍ ଫଣ୍ଡ, ବାର୍‌ବାଟି ର୍ୟାଫଲ୍, ବୃନ୍ଦ୍ ସେବକ ସମାଜ, ରୋଟାରୀ କ୍ଲବ ଆଦି ସଂସ୍ଥାମାନଙ୍କଠାରୁ ସମିତି ଆର୍ଥିକ ସହାୟତା ଲାଭକରିଥିଲେ । ଏହାଛଡ଼ା ଭାରତର ବହୁସଂଖ୍ୟକ ଶିକ୍ଷାନୁଷ୍ଠାନ ଓ ଦେଶପ୍ରେମୀ ବ୍ୟକ୍ତି ସ୍ୱେଚ୍ଛାପ୍ରଣୋଦିତ ହୋଇ ସମିତିକୁ ନାନା ପ୍ରକାର ସାହାଯ୍ୟ ପ୍ରଦାନ କରିଥିଲେ । ନଗଦ ପାଞ୍ଚଲକ୍ଷ ଟଙ୍କା, ବିପୁଳ ପରିମାଣର ଖାଦ୍ୟଶସ୍ୟ, ନୂଆ ଓ ପୁରୁଣା ଲୁଗା, ଗୋଖାଦ୍ୟ ଏବଂ ଅନ୍ୟାନ୍ୟ ଉପକରଣ ଦାନସୂତ୍ରରେ ମିଳିଥିଲା । ଓଡ଼ିଶାର ବିଭିନ୍ନ ଜିଲ୍ଲାରୁ ୨୨୭ ଜଣ ସ୍ୱେଚ୍ଛାସେବକ ଏହି କାମରେ ନିଜକୁ ନିୟୋଜିତ କରିଥିଲେ । ଦୁର୍ଭିକ୍ଷ-ଗ୍ରସ୍ତ ଅଞ୍ଚଳରେ ୧୨୪ଟି ମଧ୍ୟାହ୍ନ ଭୋଜନ କେନ୍ଦ୍ର ଖୋଲାଯାଇଥିଲା । ଏଥିରେ ୧୪୪୫ ଜଣ ବାଳକ-ବାଳିକା, ବୃଦ୍ଧ-ବୃଦ୍ଧା ଓ ଅସମର୍ଥ ବ୍ୟକ୍ତିଙ୍କୁ ମୁଣ୍ଡପିଛା ୧୭୫ ଗ୍ରାମ ଖାଦ୍ୟଶସ୍ୟ ସହିତ ଲୁଣ, ପିଆଜ, ଆଳୁ, ଦୁଧଗୁଣ୍ଡ ଆଦି ଦିଆଯାଉଥିଲା । ୪୯ଟି ଅନାଥ ଅସହାୟ ଶିଶୁଙ୍କୁ ବାଟରୁ ଓ ଜଙ୍ଗଲରୁ ସାଉଁଟିଆଣି କୋମନା ବ୍ଲକର ଭେଲଠାରେ ଗୋଟିଏ ଶିଶୁ-ସଦନ ଖୋଲିଯାଇ ରଖାଯାଇଥିଲା । ଏ ପିଲାମାନଙ୍କୁ ପରେ କଟକ ଜିଲାର ସତ୍ୟଭାମାପୁର ଠାରେ ଥିବା କସ୍ତୁରବା କେନ୍ଦ୍ରରେ ଆଣି ରଖାଗଲା । ସେଇଠି ସେମାନେ ସ୍କୁଲରେ ପାଠ ପଢ଼ିଲେ ଓ ବାଡ଼ିବଗିଚା ଆଦି କାମ ଶିଖିଲେ । ଝିଅମାନଙ୍କୁ ରୋଗୀସେବା, ପ୍ରସୂତି ପରିଚର୍ଯ୍ୟା ଆଦିରେ ତାଲିମ ମଧ୍ୟ ଦିଆଗଲା । ପିଲାମାନେ ସାବାଳକ ହେବାଯାଏ ସେଠି ରହିଲେ ଓ କ୍ରମେ ପୁଅମାନଙ୍କୁ ଉପଯୁକ୍ତ ଧନ୍ଦା ବା ଚାକିରି ଖୋଜି ଯୁଟାଇ ଦିଆଗଲା ଓ ଝିଅମାନଙ୍କୁ ଯୋଗ୍ୟ ପାତ୍ର ଖୋଜି ବାହା କରିଦିଆଗଲା । କଠିନ ପରିଶ୍ରମ କରିପାରୁ ନଥିବା ଲୋକଙ୍କୁ ସୂତାକଟା ଶିଖାଯାଇ କାମ ଯୋଗାଇ ଦିଆଯାଇଥିଲା । ଏ ବାବଦରେ ୬୪୭୦ କିଲୋଗ୍ରାମ ଶସ୍ୟ ବିତରିତ ହୋଇଥିଲା । ଉଦରଜ୍ୱାଳାରେ ଲୋକେ କୋଡ଼ି କୋଦାଳ ଆଦି ବିକିଦେଇଥିଲେ । ମାଟିକାମ କରି ମୂଲଲାଗିବା ପାଇଁ ଏ ଜିନିଷ ସେମାନଙ୍କୁ ଯୋଗାଇ ଦିଆଯାଇଥିଲା । ୧୨୨୫ ବସ୍ତା ଗହମ ଗ୍ରେକଡ଼, ୩୨୧ ବସ୍ତା କୁଣ୍ଡା ଓ ୧୦ବସ୍ତା ମହୁଲ ଗୋଖାଦ୍ୟ ଭାବେ ବଣ୍ଟାଯାଇଥିଲା । ବିନା ମୂଲ୍ୟରେ ଔଷଧ ମଧ୍ୟ ବିତରଣ କରା-ଯାଇଥିଲା । ଏଠାରେ ତା ୩୧-୩-୬୭ଠାରୁ ୨-୧୦-୬୭ ପର୍ଯ୍ୟନ୍ତ ସେବାକାମ ହୋଇଥିଲା । ଏ ସଂପର୍କୀୟ ସବୁ ହିସାବ 'ବି. କିଶୋର ଆଣ୍ଡ କଂପାନୀ' କଟକଙ୍କଦ୍ୱାରା ସମୀକ୍ଷିତ ହୋଇଥିଲା ।

## ୩୯ । ଆଉ କେତେକ ସେବାକାର୍ଯ୍ୟ

୧୯୬୭ ମସିହା ସେପ୍‌ଟେମ୍ବର ମାସରେ ବଲଙ୍ଗ ନଦୀରେ ବନ୍ୟା ହେଲା । ବାଲେଶ୍ୱର ଓ ମୟୂରଭଞ୍ଜ ଜିଲାର ପ୍ରାୟ ଆଠହେ ବର୍ଗମାଇଲ୍ ଅଞ୍ଚଳ ଜଳପ୍ଲାବିତ ହେଲା । ଗ୍ରାମଗ

ଜଣ ଲୋକ ପ୍ରାଣ ହରାଇଲେ । ବହୁ ଗୋରୁ-ଗାଈ ଭାସିଗଲେ । ଅଶୀ ହଜାର ଘର ଭାଙ୍ଗିଗଲା । ହଜାର ହଜାର ଏକର ଚାଷଜମିର ଫସଲ ଧୋଇଗଲା । ବନ୍ୟାପୀଡ଼ିତ କ୍ଷେତ୍ରରେ ଷୋହଳଟି ଭୋଜନକେନ୍ଦ୍ର ଖୋଲାଯାଇଥିଲା । ପରସ୍ପର ସାହାଯ୍ୟରେ ନିଜନିଜର ଘର ଛାଆଣ କରିନେବାପାଇଁ ଗ୍ରାମବାସୀଙ୍କୁ ଚୂଡ଼ା, ଗୁଡ଼ଲ, ଗହମ, ଆଦି ଖାଦ୍ୟପଦାର୍ଥ ଯୋଗାଇ ଦିଆଯାଇଥିଲା । ନାନାପ୍ରକାର ରୋଗର ପ୍ରାଦୁର୍ଭାବରୁ ଲୋକଙ୍କୁ ବଞ୍ଚାଇବା ପାଇଁ ବିନା ମୂଲ୍ୟରେ ଔଷଧ ଦିଆଯାଇଥିଲା । ଏଥିରେ ମୁଁ ଉତ୍କଳ ରିଲିଫ୍ କମିଟିର ସାହାଯ୍ୟ ପୂରା ପାଇଥିଲି ।

୨୯ ଅକ୍ଟୋବର ୧୯୬୭ ରେ କଟକ, ପୁରୀ ଓ ବାଲେଶ୍ୱର ଜିଲ୍ଲାର ଉପକୂଳବର୍ତ୍ତୀ ଅଞ୍ଚଳରେ ନାହିଁନଥିବା ବାତ୍ୟା ହେଲା । ଦୁଇହଜାର ବର୍ଗମାଇଲ ଅଞ୍ଚଳରେ ଏକ ଭୟାବହ ପରିସ୍ଥିତି ସୃଷ୍ଟି ହେଲା । ଶହ ଶହ ଲୋକ ପ୍ରାଣ ହରାଇଲେ । ପ୍ରାୟ ଚାଳିଶ ହଜାର ଗୋରୁ-ଗାଈ ଛେଳି, ମେଣ୍ଢା ମଲେ । ହଜାର ହଜାର ଗଛ ଉପୁଡ଼ିବା ଫଳରେ ରାସ୍ତାଘାଟ ବନ୍ଦହେଲା । ଟେଲିଗ୍ରାମ୍, ଟେଲିଫୋନ୍, ଇଲେକ୍‌ଟ୍ରିକ୍ ଖୁଣ୍ଟ ଉପୁଡ଼ିଗଲା, ଯୋଗସୂତ୍ର ବିଚ୍ଛିନ୍ନ ହେଲା । ପାଖାପାଖି ଏକଲକ୍ଷ ଲୋକ ଗୃହଶୂନ୍ୟ ହେଲେ । କେନ୍ଦ୍ରାପଡ଼ା ଅଞ୍ଚଳରେ ଚଉଦଶହ ସ୍କୁଲଘରର ଛପର ଉଡ଼ିଗଲା । ଲୁଣାନଦୀର ପୋଲ ମଧ୍ୟ ଉଡ଼ିଗଲା । ଏ ଭୟାବହ ପରିସ୍ଥିତିର କଳନା କରିବା ପାଇଁ ଉତ୍କଳ ରିଲିଫ କମିଟି ସ୍ୱେଚ୍ଛାସେବକ ଦଳ ପାଦରେ ଚାଲି ଚାଲି ଚନ୍ଦବାଲିଠାରୁ ଗଡ଼ କୁଜଙ୍ଗ ପର୍ଯ୍ୟନ୍ତ ସମୁଦାୟ ବାତ୍ୟାଗ୍ରସ୍ତ ଅଞ୍ଚଳ ପରିଦର୍ଶନ କଲେ । ସେତେବେଳେ ହଜାର ହଜାର ଶବ ଓ ମଢ଼ ଗନ୍ଧରେ ରାସ୍ତାରେ ଚାଲି ହେଉ ନଥିଲା । ମଲା ଚଢ଼େଇ ଓ ଗଛପତ୍ର ଆଦି ପଡ଼ିଯିବା ଫଳରେ କୂଅ-ପୋଖରୀର ପାଣି ଅବ୍ୟବହାର୍ଯ୍ୟ ହୋଇଯାଇଥିଲା । ପରିସ୍ଥିତିର ମୁକାବିଲା ପାଇଁ ପ୍ରଥମେ ଭ୍ରାମ୍ୟମାଣ ସ୍ୱେଚ୍ଛାସେବକ ବାହିନୀ ଗଠିତହେଲା । କେନ୍ଦ୍ରାପଡ଼ା, ମହାକାଳପଡ଼ା, ପାଟକୁରା, ମାର୍ଶାଘାଇ ପ୍ରଭୃତି ଅଞ୍ଚଳରେ ଏହି ବାହିନୀ ବିଭିନ୍ନ ଦଳରେ ବିଭକ୍ତ ହୋଇ ଶବ ପୋଡ଼ିବା, ମଢ଼ ଉଠାଇବା, କୂଅ ଉଙ୍ଘାଳିବା, ଜଳ ଶୋଧନ କରିବା, ଔଷଧ ବିତରଣ କରିବା, ଶିଶୁ-ଖାଦ୍ୟ ଯୋଗାଇବା, ଚୂଡ଼ା-ଗୁଡ଼ଲ ଆଦି ବାଣ୍ଟିବା କାମ ତତ୍ପରତାର ସହିତ ଆରମ୍ଭ କଲେ । ଉଡ଼ିଯାଇଥିବା ବା ଭାଙ୍ଗିଯାଇଥିବା ଘର ଗୁଡ଼ିକ ପରସ୍ପରର ସହଯୋଗରେ ଛାଆଣ କରିବା ପାଇଁ ଗ୍ରାମବାସୀଙ୍କୁ ଖାଦ୍ୟଶସ୍ୟ ଯୋଗାଇ ଦିଆଗଲା । ୨୧ଟି ମଧ୍ୟାହ୍ନ-ଭୋଜନ-କେନ୍ଦ୍ର ବାତ୍ୟାଗ୍ରସ୍ତ ଅଞ୍ଚଳରେ ଖୋଲାଗଲା । ଶିଶୁ ଓ ଅସମର୍ଥ ଲୋକଙ୍କୁ ରନ୍ଧା ଖାଦ୍ୟ ଯୋଗାଇଦିଆଗଲା । ୧୭୬୦ ଜଣ ଶିଶୁଙ୍କୁ ଗୁଣ୍ଡଦୁଧ ରାନ୍ଧି ବଣ୍ଟାଗଲା । ସମର୍ଥ ଲୋକଙ୍କୁ କାମ କରିଆରେ ଖାଦ୍ୟ ଯୋଗାଇ ଦିଆଯିବା ସହିତ କେଉଟମାନଙ୍କୁ ଜାଲପାଇଁ, କୁମ୍ଭାରମାନଙ୍କୁ ହାଣ୍ଡି ଗଢ଼ିବାପାଇଁ, ତରେଇମାନଙ୍କୁ ଡଙ୍ଗାପାଇଁ, ଲୁଣ ଚାଷୀଙ୍କୁ ଲୁଣ ମାରିବା ପାଇଁ ମୂଳଧନ ଯୋଗାଇ ଦିଆଗଲା । ନଦୀକୂଳିଆ ଚାଷୀମାନଙ୍କୁ ପାଣି ମଡ଼ାଇ ତୁରନ୍ତ ଫସଲ କରିବା ପାଇଁ ଧାନ, ମୁଗ, ଆଳୁ ଆଦି ବିହନ ଯୋଗାଇ ଦିଆଯାଇଥିଲା

ଓ ତା'ସହିତ ପାଣିକଳର ବ୍ୟବସ୍ଥା କରାଯାଇଥିଲା । ଏହି କାର୍ଯ୍ୟ ତୁଲାଇବା ପାଇଁ ଉତ୍କଳ ରିଲିଫ କମିଟିର ପୂର୍ଣ୍ଣ ସହଯୋଗ ପାଇଥିଲି । ଏହାଛଡ଼ା ବିହାର ରିଲିଫ କମିଟିର ସଭାପତି ଜୟପ୍ରକାଶ ନାରାୟଣ, ରେଡ୍‌କ୍ରସ୍ ସୋସାଇଟି, ଓଡ଼ିଶା ସରକାର, ଭାରତର ପ୍ରଧାନମନ୍ତ୍ରୀ, କଟକ ଗୋରକ୍ଷଣୀ ସଭା, ଲୋକସେବକ ମଣ୍ଡଳ, ଉତ୍କଳ ସର୍ବୋଦୟ ମଣ୍ଡଳ, କସ୍ତୁରବା ଗାନ୍ଧୀ ରାଷ୍ଟ୍ରୀୟ ସ୍ମାରକ ଟ୍ରଷ୍ଟ, ଗାନ୍ଧୀ ସ୍ମାରକନିଧି, ଓଡ଼ିଶା ନାରୀ ସେବାସଂଘ, ଚମ୍ପତିମୁଣ୍ଡା ଜୀବନ ବିଦ୍ୟାଳୟ, ଆନନ୍ଦମାର୍ଗ, ଷ୍ଟୁଡେଣ୍ଟସ୍ ସାଇକ୍ଲୋନ ରିଲିଫ କମିଟି, କେନ୍ଦ୍ରାପଡ଼ା ବେସରକାରୀ ରିଲିଫ କମିଟି, ଉତ୍କଳ ନବଜୀବନ ମଣ୍ଡଳ, ବିଦ୍ୟାଜୀବନ ସଂଘ, ଉତ୍କଳ କୃଷି ମହାବିଦ୍ୟାଳୟ, ରେଭେନ୍‌ସା କଲେଜ, ଫକୀରମୋହନ କଲେଜ, କେନ୍ଦ୍ରାପଡ଼ା କଲେଜ ଓ ବହୁ ଶିକ୍ଷାନୁଷ୍ଠାନର ଶିକ୍ଷକ ଓ ଛାତ୍ରମାନେ କମିଟିକୁ ଅକୁଣ୍ଠ ସାହାଯ୍ୟ ଦେଇଥିଲେ ।

୧୯୬୮ ମସିହାରେ ବାଲେଶ୍ୱର, କୋରାପୁଟ, ଢେଙ୍କାନାଳ, ପୁରୀ, ଗଞ୍ଜାମ, କଟକ, ମୟୂରଭଞ୍ଜ ଓ ଫୁଲବାଣୀ ଜିଲ୍ଲାରେ ମରୁଡ଼ି ପଡ଼ିଲା । ଏହାର ମୁକାବିଲା ପାଇଁ ମୁଁ ଜୟପ୍ରକାଶ ନାରାୟଣଙ୍କ ସହଯୋଗ ଲୋଡ଼ିବାରୁ ତାଙ୍କର ଅଧ୍ୟକ୍ଷତାରେ ଦିଲ୍ଲୀରେ ୧୮ଟି ବେସରକାରୀ ଆନ୍ତର୍ଜାତିକ ରିଲିଫ୍ ସଂସ୍ଥାର ଏକ ବୈଠକ ବସିଲା । ବୈଠକର ନିର୍ଦ୍ଧାରଣ ଅନୁସାରେ ଏହି ସଂସ୍ଥାମାନଙ୍କର ରାଜ୍ୟ ସମନ୍ୱୟ କମିଟି ସହିତ ଏକ ସଂଯୁକ୍ତ ବୈଠକ ଆହୂତ ହେଲା । ଏହି ସଂସ୍ଥାମାନେ ବିଭିନ୍ନ ଜିଲ୍ଲାରେ ରିଲିଫ୍ କାର୍ଯ୍ୟ କରିବାର ଦାୟିତ୍ୱ ନେଲେ । ମୁଁ ବାଲେଶ୍ୱର, ଗଞ୍ଜାମ, ପୁରୀ, ମୟୂରଭଞ୍ଜ, ଢେଙ୍କାନାଳ, ଫୁଲବାଣୀ ଓ କୋରାପୁଟ ଜିଲ୍ଲାର ୧୭ଟି ବ୍ଲକ କାମ ସହିତ ଉତ୍କଳ ରିଲିଫ କମିଟି ଜରିଆରେ ସମ୍ପୃକ୍ତ ହେଲି । ଛୋଟ ଛୋଟ ଜଳ ଯୋଜନା କାର୍ଯ୍ୟକାରୀ କରିବା, ବିହନ ଯୋଗାଇ ଫସଲ ଉତ୍ପାଦନ ପାଇଁ ଓ ପାନ ବରଜ କରାଇବା ପାଇଁ ଲୋକଙ୍କୁ ସାହାଯ୍ୟ କରିବା, ପୋଖରୀ ଖୋଳାଇ କାମ ଜରିଆରେ ମଜୁରୀ ଦେବା ଆଦି କାମ ତତ୍ପରତାର ସହିତ କରାଗଲା । ବଣପଲ୍ଲୀରେ ସ୍ତ୍ରୀଲୋକମାନଙ୍କୁ କାର୍ଯ୍ୟ ଦେବାପାଇଁ ଧାନକୁଟା ଯୋଜନା ହାତକୁ ନିଆଗଲା । ଏସବୁ କାମଦ୍ୱାରା ପରିସ୍ଥିତି କେତେକାଂଶରେ ଆୟତ୍ତକୁ ଆସିଥିଲା ।

୧୯୬୮ ମସିହା ଅକ୍ଟୋବର ୧୭ ତାରିଖରେ ପୁଣି ଥରେ ବାତ୍ୟା ହୋଇ ପୁରୀ ଓ ଗଞ୍ଜାମ ଜିଲ୍ଲା କ୍ଷତିଗ୍ରସ୍ତ ହେଲା । ହଜାର ହଜାର ମତ୍ସ୍ୟଜୀବୀ ସେମାନଙ୍କର ଜାଲ ହରାଇଲେ । ଲୁଣଚାଷୀଙ୍କର ଲୁଣ ପଟାଳି ନଷ୍ଟହେଲା । ବହୁ ଚାଷୀଙ୍କର ଫସଲ ମଧ୍ୟ ବରବାଦ ହେଲା । ଉତ୍କଳ ରିଲିଫ କମିଟିର ସହାୟତାରେ ଏ ଅଞ୍ଚଳରେ ଖାଦ୍ୟଶସ୍ୟ, ଶିଶୁଙ୍କ ପାଇଁ ଗୁଣ୍ଡଦୁଧ, ଲୁଗା, କମ୍ବଳ ଆଦି ବଣ୍ଟାଯାଇଥିଲା । ବ୍ୟବସାୟକୁ ପୁନରୁଜ୍ଜୀବିତ କରିବାପାଇଁ ଲୋକଙ୍କୁ ମୂଳଧନ ଯୋଗାଇ ଦିଆଯାଇଥିଲା ।

କଟକରେ ସାଂପ୍ରଦାୟିକ ଗଣ୍ଡଗୋଳ ଘଟିଲା । ହିନ୍ଦୁ ଓ ମୁସଲମାନ ଉଭୟ ସମ୍ପ୍ରଦାୟର ବହୁପରିବାର କ୍ଷତିଗ୍ରସ୍ତ ହେଲେ । କ୍ଷତିଗ୍ରସ୍ତ ପରିବାରଙ୍କୁ ଖାଦ୍ୟଶସ୍ୟ, ଆର୍ଥିକ ସାହାଯ୍ୟ

ଦିଆଯାଇଥିଲା । ପରସ୍ପର ଭିତରେ ଭ୍ରାତୃଭାବ ଫେରାଇ ଆଣିବାପାଇଁ ଉଭୟ ସମ୍ପ୍ରଦାୟଙ୍କର ଦ୍ୱାରସ୍ଥ ହୋଇଥିଲି । ଭଲ ଫଳ ମିଳିଥିଲା ।

ଓଡ଼ିଶା ବାହାରେ ସାହାଯ୍ୟ ଦାନ କାର୍ଯ୍ୟ କିଞ୍ଚିତ୍ ପରିମାଣରେ କରିଥିଲି । ୧୯୬୭ ମସିହାରେ ବିହାରରେ ମରୁଡ଼ି ପରିସ୍ଥିତି ଉପୁଜିବାବେଳେ ଓଡ଼ିଶାରୁ ଗୋଟିଏ ସ୍ୱେଚ୍ଛାସେବକ ଦଳ ଶ୍ରୀ ବିରଜା ପ୍ରସାଦ ଗୁପ୍ତ ଓ ଶ୍ରୀ ରବିନାରାୟଣ ଜେନାଙ୍କ ନେତୃତ୍ୱରେ ପଠାଯାଇଥିଲା । ଏହି ଦଳ ବିହାର ରିଲିଫ୍ କମିଟିଙ୍କ ସହିତ ସାହାଯ୍ୟ ଦାନ କାର୍ଯ୍ୟ କରିଥିଲେ । ୧୯୬୮ ମସିହାରେ ପଶ୍ଚିମବଙ୍ଗର ଜଲପାଇଗୁଡ଼ି ଜିଲା ଜଳପ୍ଲାବିତ ହୋଇଥିଲା । ଗୋଟିଏ ସ୍ୱେଚ୍ଛାସେବକ ଦଳ ସେଠାକୁ ମଧ୍ୟ ଯାଇ କାମ କରିଥିଲେ । ମହାରାଷ୍ଟ୍ରର ଭୂମିକମ୍ପ ବେଳେ ପାଞ୍ଚହଜାର ଟଙ୍କାର ସାହାଯ୍ୟ ଦିଆଯାଇଥିଲା ।

## ୪୦ । ବମ୍ବେରୁ ସେବାଗ୍ରାମ

୧୯୭୧ ସର୍ବୋଦୟ ସମ୍ମିଳନୀ ଉପଲକ୍ଷେ ଏ ବର୍ଷ ନାସିକ ଯିବାକୁ ପଡ଼ିଲା । ତେଣୁ ଆଉ ଶରେ କେତେ କଲେମିଟର ଆଗକୁ ଯାଇ ଗଙ୍ଗାବାଇ ଟ୍ରଷ୍ଟ ଓ ଭଦ୍ରଖ ଗାନ୍ଧୀ ବାଳାଶ୍ରମର କେତେକ କାମ ବୁଝାଇବା ପାଇଁ ବମ୍ବେ ଯିବାକୁ ସ୍ଥିର କଲି । ବମ୍ବେରେ ଓଡ଼ିଶାର ସ୍ୱର୍ଗତ ଭୁବନାନନ୍ଦ ଦାସଙ୍କ ପୁଅ ଶ୍ରୀମାନ୍ ଚିତ୍ତରଞ୍ଜନ ସସ୍ତ୍ରୀକ ରହୁଛନ୍ତି । ଭୁବନାନନ୍ଦବାବୁଙ୍କ ପରି ଲୋକହିତକର କାର୍ଯ୍ୟ ସହିତ ନିଜକୁ ସମ୍ପୃକ୍ତ କରିବା ମନୋବୃତ୍ତି ତାଙ୍କଠାରେ ରହିଛି । ତାଙ୍କ ପ୍ରବର୍ତ୍ତନାରେ ଦୁଇଟି କରୁଣାମୂଳକ ଅନୁଷ୍ଠାନ ଦେଖିବାର ସୁଯୋଗ ପାଇଲି । ତନ୍ମଧ୍ୟରୁ ଗୋଟିଏ ହେଉଛି ସ୍ନେହସଦନ । ଇଟାଲୀର ଡୋଲଚି ସାହେବ ଯେପରି ଭିକାରି ପିଲା ଓ ଅସାମାଜିକ ବୃତ୍ତିର ପିଲାଙ୍କୁ ନିଜ ସାଙ୍ଗରେ ରଖି ସେମାନଙ୍କୁ ସାଧାରଣ ସତ୍ ନାଗରିକ ରୂପେ ଗଢ଼ିବା କାମରେ ଲାଗିଛନ୍ତି, ବମ୍ବେରେ ସେହିପରି ଜଣେ ପାଦ୍ରୀ "ସ୍ନେହ ସଦନ" ନାମରେ ଗୋଟିଏ ଅନୁଷ୍ଠାନ ଆରମ୍ଭ କରିଛନ୍ତି । ଆମେ ସେ ଅନୁଷ୍ଠାନଟି ଖୋଜି ବାହାର କରୁ କରୁ ବେଳ ଗଡ଼ିଗଲା । ଫଳରେ ପାଦ୍ରୀ ମହୋଦୟଙ୍କ ସାକ୍ଷାତ୍ ପାଇଲୁ ନାହିଁ । ଜଣେ ମରାଠୀ ଭଦ୍ରମହିଳା ଆମକୁ ଅନୁଷ୍ଠାନଟି ବୁଲାଇ ଦେଖାଇଦେଲେ ।

ଛଅବର୍ଷରୁ ବାରବର୍ଷ ବୟସର ପିଲାଙ୍କୁ ସ୍ନେହସଦନରେ ରଖାଯାଇଛି । ସମଗ୍ର ସହରରେ କୋଡ଼ିଏଟି ଲେଖା ପିଲାଙ୍କୁ ଯେପରି ନଅଟି ଏହିପରି ଆଶ୍ରମ ଅଛି । ଏହି ଆଶ୍ରମର ପରିଚାଳକ ସସ୍ତ୍ରୀକ ପିଲାଙ୍କ ସଙ୍ଗେ ରହୁଥିବା ଫଳରେ ଆଶ୍ରମରେ ଗୋଟାଏ ପାରିବାରିକ ପରିବେଶ ସୃଷ୍ଟି ହୋଇପାରିଛି । ଆମେ ଗଲାବେଳକୁ ପିଲାମାନେ ଖାଇବସିଥିଲେ । ଖାଇସାରି ସେମାନେ ନିଜେ ନିଜେ ଖାଇବା ଜାଗା ସଫାକରି ଘରଭିତରେ କ୍ୟାରମ ଆଦି ଖେଳି ଲାଗିଲେ । ସମସ୍ତଙ୍କର ସ୍ୱାସ୍ଥ୍ୟ ଭଲ ଓ ଲୁଗାପଟା ମଧ୍ୟ ସଫାସୁତୁରା । ସାଧାରଣତଃ ବାଟଘାଟ ବା ଟ୍ରେନ

ଷ୍ଟେସନରେ ଭିକ ମାଗି ବୁଲୁଥିବା ପିଲା ଦେଖି କେହି ସ୍ନେହସଦନ ପରିଚାଳକଙ୍କୁ ଖବର ଦେଲେ ସେମାନେ ଆସି ସେ ପିଲାକୁ ବୁଝେଇସୁଝେଇ ନିଜ ପରିବାରଭୁକ୍ତ କରିନିଅନ୍ତି ।

ସ୍ନେହସଦନର ଦାଣ୍ଡବାରଣ୍ଡାକୁ ଯିବାପାଇଁ ପାହାଚରେ ଚଢ଼ିବା ବେଳକୁ ପ୍ରଥମେ ଆଖିରେ ପଡ଼େ ଗାନ୍ଧିଜୀଙ୍କର ଗୋଟିଏ ବିରାଟ ରେଖାଚିତ୍ର । ତା ପାଖରେ ଲେଖା ହୋଇଛି—

The fact is that
The child never learns
In after life
What it does in
Its first five years.
The education of child begins
With conception.

ସ୍ନେହସଦନର ଅଫିସ ବାରଣ୍ଡାରେ କେବଳ ଆଶ୍ରମର ଅନ୍ତେବାସୀଙ୍କ ଛବି । ସ୍ନେହସଦନକୁ ଆସିବା ପୂର୍ବରୁ କପରି କୋଡରା ଛିଣ୍ଡା ଲୁଗା ପିନ୍ଧି ବୁଲୁଥିଲେ, ସେତେବେଳେ ତାଙ୍କ ଦୃଷ୍ଟିରେ କପରି ଭୟ, ସଙ୍କୋଚ ଓ ସଂଶୟ ପୂରିରହିଛି ଓ ସେହି ପିଲା ସ୍ନେହସଦନରେ ରହିବା ପରେ ତାର ଭାବଭଙ୍ଗୀ, ଚାହାଣି କପରି ସମ୍ପୂର୍ଣ୍ଣ ବଦଳିଯାଇଛି, ତାହା ସେ ଛବିରେ ଆମେ ଦେଖି ପାରିଲୁ ।

ଆମ ଚିତ୍ତରଞ୍ଜନ ପରି ସହରର ଅନେକ ଭଦ୍ରଲୋକ ଏହି ପିଲାମାନଙ୍କ ମଧ୍ୟରୁ ଗୋଟିଏ ଲେଖା ଧର୍ମପୁଅ କରିଛନ୍ତି । ସେ ପୁଅମାନଙ୍କର ଭରଣପୋଷଣ ବାବଦକୁ ସେମାନେ ଅନୁଷ୍ଠାନରେ ପ୍ରତିମାସରେ ଟଙ୍କା ଜମା କରିଦିଅନ୍ତି । ଏହାଛଡ଼ା ପାଦ୍ରୀ ମହୋଦୟ ଭାରତରୁ ଓ ଭାରତ ବାହାରୁ ମଧ୍ୟ ଟଙ୍କାପଇସା ସଂଗ୍ରହ କରି ଆଣି ଏ ଶହେଅଶୀଟି ପିଲାଙ୍କୁ ଅତି ଯତ୍ନରେ ପାଳିଛନ୍ତି ।

ହାଜିଆଲି ଓ ବମ୍ବେ ରେସ୍ କୋର୍ସର ମଧ୍ୟବର୍ତ୍ତୀ ସ୍ଥାନରେ ଗତ ପଚିଶ ବର୍ଷ ମଧ୍ୟରେ ଛୋଟିଆ ଅନୁଷ୍ଠାନ ଗଢ଼ିଉଠିଛି । ଶ୍ରୀମତୀ ଫାତିମା ଇସ୍‌ମାଇଲ ହେଉଛନ୍ତି ଏ ଛୋଟିଆ ଯାକ ସଂସ୍ଥାର ପ୍ରତିଷ୍ଠାତ୍ରୀ । ମଇ ମାସର ଉତ୍ତୁଙ୍ଗଦିଆ ଦିପହରଟାରେ ଆମେ ସେ ଅନୁଷ୍ଠାନ ଦେଖିବାକୁ ସେଠାରେ ପହଞ୍ଚିଲୁ । ଚିତ୍ତରଞ୍ଜନର ସ୍ତ୍ରୀ ଶ୍ରୀମତୀ ଜୟଶ୍ରୀ ଆମକୁ ସେଠାରେ ସଙ୍ଗ ଦେଲା । ଆଗପଟେ ସମୁଦ୍ର, ପଛପଟେ ରେସ୍‌କୋର୍ସ । ଖୋଲା ମେଲା ଜାଗା । ଅନୁଷ୍ଠାନ ବାରଣ୍ଡାରେ ଫାତିମା ସାହିବାଙ୍କୁ ଅପେକ୍ଷାକରି ବସିବାବେଳେ ଏଇଟା ଯେ ବୈଶାଖର ଦ୍ୱିପ୍ରହର ସେ କଥା ଆଦୌ ମନେହେଉନାହିଁ । କିଛିକ୍ଷଣ ଅପେକ୍ଷା କରିବା ପରେ ପ୍ରୌଢ଼ବୟସ୍କା ଶ୍ରୀମତୀ ଫାତିମା ନିଜେ ମୋଟର ଚଳାଇ, ସାଙ୍ଗରେ ତାଙ୍କର ସେକ୍ରେଟେରୀ ଶ୍ରୀମତୀ କୋଠାବାଲାଙ୍କୁ

ଧରି ଆସି ପହଞ୍ଚିଲେ । ପୂର୍ବ ଉପକୂଳ ପ୍ରଦେଶରୁ ଜଣେ ବୃଦ୍ଧୀ ତାଙ୍କ ଅନୁଷ୍ଠାନ ଦେଖିବାକୁ ଆସିଛନ୍ତି ଶୁଣି ସେ ଭାରି ଖୁସିହୋଇ ଅତି ଯତ୍ନରେ ଅନୁଷ୍ଠାନଟି ଦେଖାଇଲେ ଓ ଏ ଅନୁଷ୍ଠାନ ଗଢ଼ିବା ପାଇଁ କିପରି ପ୍ରେରଣା ପାଇଲେ ତାହା ମଧ୍ୟ କହିଲେ ।

୧୯୪୫ ମସିହାରେ ତାଙ୍କ ଝିଅ ପୋଲିଓ ରୋଗଗ୍ରସ୍ତ ହେଲା । ସେତେବେଳେ ବମ୍ବେରେ ପୋଲିଓ ରୋଗର ଚିକିତ୍ସା କେହି ଜାଣି ନ ଥିଲେ । ଫଳରେ ସେହି ଝିଅକୁ ଧରି ସେ ମାନ୍ଦ୍ରାଜ ଯାଇ କୋଡ଼ିଏହଜାର ଟଙ୍କା ଖରଚ କରି ଭଲକରେଇଲେ । ଝିଅର ଚିକିତ୍ସା କରିବାବେଳେ ତାଙ୍କ ମନକୁ ଆସିଲା ଯେ—ମୋର ସିନା ସମ୍ପତ୍ତି ଅଛି ବୋଲି ମୁଁ ମୋ ଝିଅ ପାଇଁ ଏତେ ଟଙ୍କା ଖରଚ କଲି, ମାତ୍ର ମୋ ଗ୍ରାମ୍ଭୀର ପିଲା ଯଦି ଏପରି ରୋଗରେ ପଡ଼ିବ, ସେ କିପରି ଚିକିତ୍ସା କରାଇବ ଓ ତା' ପିଲା କିପରି ଭଲହେବ ? ଏହି ବିଷୟର ପ୍ରଣୋଦିତ ହୋଇ ସେ ଛଅଟି ପୋଲିଓ ରୋଗଗ୍ରସ୍ତ ବିକଳାଙ୍ଗ ଶିଶୁଙ୍କୁ ନେଇ ଗୋଟିଏ ଶିଶୁଭବନ ଆରମ୍ଭ କଲେ । ଦ୍ୱାର ଦ୍ୱାର ବୁଲି ପଣତ ପତେଇ ଭିକ୍ଷା କରି ସେ ପିଲାଙ୍କ ଚିକିତ୍ସା ବ୍ୟବସ୍ଥା କଲେ । ଧୀରେ ଧୀରେ ରୁଗ୍ଣ ଶିଶୁସଂଖ୍ୟା ବଢ଼ିଲା । ସେମାନେ ଆରୋଗ୍ୟ ମଧ୍ୟ ହେଲେ । ଫଳରେ ସରକାରଙ୍କ ଦୃଷ୍ଟି ସେ ଚିକିତ୍ସାଳୟ ଉପରେ ପଡ଼ିଲା । ଶ୍ରୀମତୀ ଇସ୍‌ମାଇଲ ମାଗିଯାଚି ପାଞ୍ଚ ଲକ୍ଷ ଟଙ୍କା ସଂଗ୍ରହ କରି ହସ୍‌ପିଟାଲ୍ ପ୍ରତିଷ୍ଠା କରି ସାରିବା ପରେ ସରକାର ତାଙ୍କୁ ଛଅଲକ୍ଷ ଟଙ୍କା ଦେଲେ । ବର୍ତ୍ତମାନ ସୁଦ୍ଧା ସେ ହସ୍‌ପିଟାଲରେ ତିରିଶ ହଜାରରୁ ଊର୍ଦ୍ଧ୍ୱ ଶିଶୁ ଆରୋଗ୍ୟ ହୋଇସାରିଲେଣି ।

ଏହାପରେ ପ୍ରାପ୍ତବୟସ୍କ ବିକଳାଙ୍ଗମାନଙ୍କୁ ସ୍ୱାବଲମ୍ବୀ କରିବା ବିଷୟ ତାଙ୍କ ମନକୁ ଆସିଲା । ସେଥିପାଇଁ ସେ ପୁଣି ଗୋଟିଏ ସ୍ୱତନ୍ତ୍ର ଅନୁଷ୍ଠାନ ଆରମ୍ଭ କଲେ । ଏହି ଅନୁଷ୍ଠାନରେ କେବଳ ବିକଳାଙ୍ଗମାନେ ହିଁ କାମ କରନ୍ତି । ଆମେ ମଧ୍ୟ ଦେଖିଲୁ ଯେ ଅଫିସରେ କାମ କରୁଥିବା ଦୁଇଜଣ ବ୍ୟକ୍ତିଙ୍କ ଛଡ଼ା ଟାଇପିଷ୍ଟ ପିଅନ ଆଦି ସମସ୍ତେ ବିକଳାଙ୍ଗ । କାହାର ଗୋଟିଏ ହାତ ନାହିଁ ତ କାହାର ଗୋଡ ନାହିଁ ।

ଏହି ଅନୁଷ୍ଠାନରେ ଛତା ତିଆରି, ପ୍ରେସ୍‌କାମ, ଲୁଗାବୁଣା, କାଠ ପ୍ୟାକିଂବାକ୍ସ ତିଆରି, ସେଫ୍‌ଟିପିନ୍ ଗୁନ୍ଥିବା, ଜାହାଜ ଖଲାସିଙ୍କ ପାଇଁ ମାସ୍କମୁଖା ତିଆରି ଆଦି ପ୍ରାୟ ଲକ୍ଷେ ଟଙ୍କାର କାମ ବର୍ଷକୁ ହେଉଛି । ଶ୍ରୀମତୀ ଫାତିମା ଉଚ୍ଛ୍ୱସିତ ହୋଇ କହୁଥାନ୍ତି— ଲୋକଙ୍କର ଗୋଟିଏ ଧାରଣା ରହିଛି ଯେ ବିକଳାଙ୍ଗ ଲୋକ ଯେଉଁ ଜିନିଷ ତିଆରି କରିବ, ତାହା ନିଶ୍ଚୟ ତ୍ରୁଟିପୂର୍ଣ୍ଣ ହେବ । ସେଥିପାଇଁ ଆମ ଅନୁଷ୍ଠାନର ଜିନିଷ ପ୍ରଥମେ କେହି ନେଉ ନଥିଲେ । ବର୍ତ୍ତମାନ ଦେଖନ୍ତୁ ଫ୍ୟାକ୍ଟ୍ରୀ ଆଇନ୍ ଅନୁସାରେ ଆମ କାମ ଚାଲିଛି ଓ ବେସରକାରୀ ସରକାରୀ ସବୁ ପ୍ରକାର ଗରାଖ ଆମକୁ କାମ ବରାଦ କରୁଛନ୍ତି । କେବଳ ହାତକାମ ନୁହେଁ, ବୌଦ୍ଧିକ କାମରେ ମଧ୍ୟ ମୋର ଏ ପିଲାଏ ଊଣା ନୁହନ୍ତି । ମୋର ଗୋଟିଏ ପିଲାର ଗୋଟିଏ ହାତ ଓ ଗୋଟିଏ ଗୋଡ଼ ଖରାପ କିନ୍ତୁ ବୁଦ୍ଧି ତାର ଭାରି ତେଜ । ମୁଁ ତାକୁ ପାଠପଢ଼ାଇଲି । ସେ ବର୍ତ୍ତମାନ ଆମେରିକାରେ ଓ୍ୱାର୍ଲଡ୍ ବ୍ୟାଙ୍କରେ ଉଚ୍ଚପଦସ୍ଥ କର୍ମଚାରୀ ।

ସେ ଭଦ୍ରମହିଳା ନିଜର କୃତିତ୍ୱ ପାଇଁ ନୁହେଁ ଅକ୍ଷମ ଲୋକ ସକ୍ଷମ ହେବାପାଇଁ ସେମାନଙ୍କ ମନରେ କିପରି ଆତ୍ମବିଶ୍ୱାସ ଜନ୍ମୁଛି ସେ କଥା ବର୍ଣ୍ଣନା କରି ଆନନ୍ଦରେ ବିଭୋର ହୋଇଯାଉଥାନ୍ତି ।

ବିରାଟ ପାଞ୍ଚମହଲା କୋଠା । ସବୁଗୁଡିକ ହଲ୍ । ଉପରକୁ ଯିବାକୁ ଲିଫ୍ଟ ତ ଅଛି । ସିଡ଼ି ବାଟରେ ପାହାଚ ନାହିଁ, କେବଳ ପାହାଚ ଚଢ଼ା ବାଟ ପରି ଗଡ଼ାଣିଆ ହୋଇଛି, ଯେପରି ଗୋଡ ନ ଥିବା ଲୋକ ବାଡ଼ିଧରି ଚଢ଼ିପାରିବେ । ଗାଧୁଆଘର, ପାଇଖାନା ଆଦି ମଧ୍ୟ ଏପରି ଭାବରେ ତିଆରି, ଯେପରି କି ହାତ ଗୋଡ଼ ନଥିବା ଲୋକ ଗୋଟାଏ ଆଶ୍ରା ପାଇ ପାରିବ । ସେମାନଙ୍କର ଖାଇବା ପାଇଁ କ୍ୟାଣ୍ଟିନ୍ ଅଛି । ଅନୁଷ୍ଠାନରେ କେହି ରହନ୍ତି ନାହିଁ— ସମସ୍ତେ ବସାରୁ ଆସି କାମକରି ଫେରିଯାଆନ୍ତି । ଶ୍ରୀମତୀ ଫାତିମା, କୋଠାବାଲା ଓ ଆଉ ଦୁଇଜଣ ବ୍ୟକ୍ତିଙ୍କ ଛଡ଼ା ବାକି ପ୍ରେସ୍, ତନ୍ତ, କାଠକାମ, ଲୁହାକାମ, ଶାଳକାମ, କ୍ୟାଣ୍ଟିନ୍ ଚଳାଇବା, ଟାଇପ୍‌ରାଇଟିଂ ଆଦି ଯାବତୀୟ କାମ ସେହି ବିକଳାଙ୍ଗମାନେ ହିଁ ତୁଲାଉଛନ୍ତି ।

ଶ୍ରୀମତୀ ଫାତିମା ଏହି ବିକଳାଙ୍ଗ ପିଲଙ୍କ ପାଇଁ ଗୋଟିଏ ସ୍କୁଲ୍ ମଧ୍ୟ ଆରମ୍ଭ କରିଛନ୍ତି । ମାତ୍ର ଗ୍ରୀଷ୍ମଛୁଟି ଆରମ୍ଭ ହୋଇଯାଇଥିବାରୁ ଆମେ ସ୍କୁଲଟି ଦେଖି ପାରିଲୁ ନାହିଁ । ତେବେ ଶୁଣିଲୁ ଯେ ସେ ପିଲମାନେ ସାଧାରଣ ପିଲଙ୍କ ସାଙ୍ଗରେ ଏକାଠି ପଢ଼ନ୍ତି ଏବଂ ଶ୍ରୀମତୀ ଫାତିମାଙ୍କ ମତରେ ସେପରି ମିଳିମିଶି ପଢ଼ିବା ହିଁ ଉଭୟଙ୍କ ପକ୍ଷେ ସ୍ୱାସ୍ଥ୍ୟକର । ଆରବ ସାଗରର ନୟନାଭିରାମ ଦୃଶ୍ୟ, ସିନ୍ଧୁଶୀକରସିକ୍ତ ଶୀତଳ ପବନ ଓ ଶ୍ରୀମତୀ ଫାତିମା ଇସ୍‌ମାଇଲଙ୍କର ମନୋମୁଗ୍ଧକର କାହାଣୀ ଓ ତାଙ୍କ ଅଫିସ ଟେବୁଲ ପାଖରେ ଲେଖା ହୋଇଥିବା ମଟୋ –

A task without vision is a drudgery
A vision without task is a dream
A task with a vision is victory କୁ ପାଥେୟ କରି ଆମେ ବମ୍ବେରୁ ବିଦାୟ ହୋଇ ଆସିଲୁ ।

ବମ୍ବେରୁ ଆସି ଓହ୍ଲାଇଲୁ ୱାର୍ଦ୍ଧାରେ, ଯେଉଁ ୱାର୍ଦ୍ଧା ଏକ ସମୟରେ ସ୍ୱାଧୀନତା ଆନ୍ଦୋଳନର ମଧ୍ୟବିନ୍ଦୁ ଥିଲା । ୱାର୍ଦ୍ଧା ଷ୍ଟେସନରୁ ଆମେ ସିଧା ଗଲୁ ପଓନାର ଗାଁକୁ । ପଓନାର ଗାଁର ଧାମନଦୀ କୂଳରେ ଗୋଟିଏ ମୁଣ୍ଡିଆ ଉପରେ ରହି ବିନୋବାଜୀ ମୌଳିକ ଶିକ୍ଷାର ସିଦ୍ଧାନ୍ତ ଭାରତକୁ ଦେଇଥିଲେ। ତାଙ୍କର "କାଞ୍ଚନ ମୁକ୍ତି" ଓ "ଋଷିଖେତର" ପ୍ରୟୋଗ କ୍ଷେତ୍ର ମଧ୍ୟ ଥିଲା ସେହି ପଓନାର । "ଶିବଂ ଭୂତ୍ୱା ଶିବଂ ଯଜେତ୍" ମନ୍ତ୍ରକୁ ସାଧିବା ପାଇଁ ନିଜେ ସମାଜର ସବୁଠାରୁ ଅବହେଳିତ ଶ୍ରମିକ ମେହେନ୍ତରଙ୍କ ସହିତ ଏକରୂପ ହୋଇ ସେମାନଙ୍କ ପାଇଁ ଲଢ଼ିବା ଶକ୍ତି ଅର୍ଜନ କରିବା ଉଦ୍ଦେଶ୍ୟରେ ବିନୋବାଜୀ ଏହି ପଓନାରରୁ ପ୍ରତିଦିନ ସୁରଗାଓଁକୁ ମେହେନ୍ତର କାମ କରିବାକୁ ଯାଉଥିଲେ । ଏବେ ସେ ସ୍ଥାନରେ ବାରବର୍ଷ

ହେଲା ବ୍ରହ୍ମବିଦ୍ୟା ମନ୍ଦିର ଗୃହଳଛି । ବିନୋବାଙ୍କ ବିଗ୍ରରରେ ବିଶ୍ୱକୁ ଭାରତର ସବୁଠାରୁ ବଡ଼ ଅବଦାନ ହେଉଛି ତାର ବ୍ରହ୍ମବିଦ୍ୟା । କିନ୍ତୁ ସେ ବ୍ରହ୍ମବିଦ୍ୟାରେ ମଧ୍ୟ ତ୍ରୁଟି ଦେଖା ଦେଇଛି । ତାହା ହେଉଛି ଯେ, ସ୍ତ୍ରୀଲୋକମାନଙ୍କର ବେଦପାଠ ଓ ବ୍ରହ୍ମବିଦ୍ୟା ସାଧନାରେ ଅଧିକାର ନାହିଁ । ସେଥିପାଇଁ ଯେଉଁ ବ୍ରହ୍ମଗ୍ରଣୀମାନେ ବ୍ରହ୍ମବିଦ୍ୟା ସାଧନାରେ ଜୀବନ ଅତିବାହିତ କରିବାକୁ ସଂକଳ୍ପବଦ୍ଧ ସେହି ବ୍ରହ୍ମକନ୍ୟାମାନେ ସେଠାରେ ରହନ୍ତି । କୋଡ଼ିଏ ଜଣ ଝିଅଙ୍କ ମଧ୍ୟରୁ ପ୍ରାୟ ସମସ୍ତେ ଗ୍ରାଜୁଏଟ୍ । ସୁଶୀଳା ଦିଲ୍ଲୀରେ ପ୍ରଫେସର୍ ଥିଲେ । କାଳିନ୍ଦୀ ଏମ୍. ଏ. ପାସ୍ କରି କେନ୍ଦ୍ରୀୟ ସରକାରଙ୍କ ଦପ୍ତରରେ କାମ କରୁଥିଲେ । ନିର୍ମଳା ଗଜଣିତ ବିଜ୍ଞାନର ଲେକ୍‌ଚରର ଥିଲେ । କୁସୁମ ନାଗପୁରରେ ଶିକ୍ଷୟିତ୍ରୀ ଥିଲେ । ଉଷା ଗ୍ରାଜୁଏଟ୍ ହେବା ପରେ ବମ୍ବେରେ ଗ୍ରକିରି କରୁଥିଲେ । ଏମାନେ ସମସ୍ତେ ପୂର୍ବାଶ୍ରମକୁ ପାଶୋରିଦେଇ ଶ୍ରମ ସହିତ ବ୍ରହ୍ମବିଦ୍ୟାର ସଂଯୋଗ ସ୍ଥାପନ କରିବା ପାଇଁ ପ୍ରେସ୍‌ରେ କମ୍ପୋଜ କରୁଛନ୍ତି, ବହି ବାନ୍ଧୁଛନ୍ତି, ପ୍ରୁଫ୍ ଦେଖୁଛନ୍ତି, ବଗିଗ୍ରରେ ମାଟି ତାଡ଼ୁଛନ୍ତି । କାରଣ ବିନୋବାଜୀଙ୍କର ନିର୍ଦ୍ଦେଶ—ପ୍ରାଚୀନ ଯୁଗରେ ବ୍ରହ୍ମବିଦ୍ୟା ସାଧକମାନେ ଭିକ୍ଷା ଉପରେ ନିର୍ଭର କରୁଥିଲେ—ବର୍ତ୍ତମାନ ଯେଉଁ ଯୁଗ ଆସିଛି ଏ ଯୁଗରେ ବ୍ରହ୍ମବିଦ୍ୟା ସାଧିବାକୁ ହେଲେ ଶ୍ରମ ଉପରେ ନିର୍ଭର କରିବାକୁ ହେବ । ସେଥିପାଇଁ ବ୍ରହ୍ମବିଦ୍ୟା ମନ୍ଦିରର କୌଣସି ନିଜସ୍ୱ ସମ୍ପତ୍ତି ନାହିଁ । ଗ୍ରାମସେବା ମଣ୍ଡଳର ପ୍ରେସ୍ ଓ ଜମିରେ ମୂଲ ଲାଗି ଏହି ବ୍ରହ୍ମକନ୍ୟାମାନେ ପେଟପୋଷନ୍ତି ।

ଏମାନଙ୍କ ଛଡ଼ା ଆଶ୍ରମରେ ଅଛନ୍ତି ମନୋହର ଦିବାଣ । ସେ ନିଜେ ଗୋଟିଏ ଅନୁଷ୍ଠାନ । ଗାନ୍ଧୀଜୀ କୁଷ୍ଠ-ସେବାକୁ ଅଠର ପ୍ରକାରର ରଚନାତ୍ମକ କାର୍ଯ୍ୟ ମଧ୍ୟରେ ସ୍ଥାନ ଦେବା ସଙ୍ଗେ ସଙ୍ଗେ ଏହି କାର୍ଯ୍ୟରେ ଜୀବନ ସମର୍ପଣ କରିବା ପାଇଁ କର୍ମୀମାନଙ୍କୁ ଡାକିଗ୍ରଦେଲେ । ବିନୋବାଜୀଙ୍କ ଗ୍ରିନ ମନୋହରଜୀ ସଙ୍ଗେ ସଙ୍ଗେ ସେ ଡାକଗ୍ରର ଜବାବ୍ ଦେଲେ । ସେ ଯେଉଁ କୁଷ୍ଠ ସେବା କେନ୍ଦ୍ର ଆରମ୍ଭ କରିଥିଲେ ତାହା ବର୍ତ୍ତମାନ ଦତ୍ତପୁର ନାମରେ ସାରା ଏସିଆରେ ଖ୍ୟାତି ଲାଭ କରିଛି । ଶହ ଶହ କୁଷ୍ଠରୋଗୀ ସେଠାରେ ରହି ପନିପରିବା, କଦଳୀ, ଅଙ୍ଗୁର, ଜୁଆର, ବାଜରା ଆଦି ଗ୍ରଷକରି ଚଳି ଚକିତ୍ସିତ ହୋଇ ଆରୋଗ୍ୟ ଲାଭ କରୁଛନ୍ତି । ଦତ୍ତପୁର ଓ୍ୱାର୍ଦ୍ଧା ଷ୍ଟେସନ ଓ ପଓନାର ଆଶ୍ରମର ମଧ୍ୟବର୍ତ୍ତୀ ସ୍ଥଳରେ ଅବସ୍ଥିତ ।

ବ୍ରହ୍ମବିଦ୍ୟା ମନ୍ଦିରରେ ଛମାସ ରହନ୍ତି ବିନୋବାଜୀଙ୍କ ସାନଭାଇ ବାଲ୍‌କୋବାଜୀ । ସେ ଝିଅମାନଙ୍କୁ ବେଦ, ଉପନିଷଦ ଓ ବ୍ରହ୍ମସୂତ୍ର ପଢ଼ାନ୍ତି । ଏହାଙ୍କ ଛଡ଼ା ବାବାଜୀ ମୋଘେ, ବାଲୁଭାଇ ମେହେତା ପ୍ରଭୃତି ବିନୋବାଜୀଙ୍କର କେତେକ ସହକର୍ମୀ ମଧ୍ୟ ସେଠାରେ ରହିଛନ୍ତି । ଏବେ ପ୍ରାୟ ବର୍ଷେହେବ ବିନୋବାଜୀ ସେଠାରେ ରହୁଛନ୍ତି ।

ଆମେ ଠିକ୍ ଚବିଶଘଣ୍ଟା ବ୍ରହ୍ମବିଦ୍ୟା ମନ୍ଦିରରେ ରହିଲୁ । ତା ଭିତରେ ଭାରତ ଓ ଭାରତ ବାହାରର ବିଭିନ୍ନ ସମସ୍ୟା ନେଇ ବହୁ ଲୋକ ଆସି ବିନୋବାଜୀଙ୍କ ସାଙ୍ଗରେ ଦେଖାକରି

ପାଥେୟ ନେଇଗଲେ । ବିନୋବାଜୀଙ୍କ କଥାବାର୍ତ୍ତା ସଂକ୍ଷିପ୍ତ । ଜବାବ ଦେବାକୁ ପ୍ରସ୍ତୁତ ହୋଇ ନ ଯାଇଥିଲେ ଅନେକ ସମୟରେ ପ୍ରଶ୍ନକର୍ତ୍ତା ଚୁପ୍ ହୋଇଯାଆନ୍ତି । ଉଦାହରଣ ସ୍ୱରୂପ ନାଗାଲାଣ୍ଡର ଜଣେ ବିଦ୍ରୋହୀ ନାଗା ଶ୍ରୀଯୁକ୍ତ ହେସୋ ବିନୋବାଜୀଙ୍କୁ ଭେଟି କହିଲେ ଯେ ଆମ ଦଳ ବର୍ତ୍ତମାନ ପ୍ରସ୍ତାବ କରିଛି କି ଆମେ ଶାନ୍ତିପୂର୍ଣ୍ଣ ଅହିଂସ ଉପାୟରେ ଆମ ଦାବୀ ହାସଲ କରିବୁ—ଆପଣ ଆମକୁ ସାହାଯ୍ୟ କରିବେ ତ ? ବିନୋବାଜୀ କହିଲେ—ମୁଁ ଆସାମରେ ପଦଯାତ୍ରା କଲାବେଳେ ନାଗାଲାଣ୍ଡକୁ ଯିବାକୁ ଭାରତ ସରକାରଙ୍କୁ ଜଣାଇଲି । ସେ କହିଲେ—ତାହାହେଲେ ତୁମ ସାଙ୍ଗରେ ସଶସ୍ତ୍ର ସୈନ୍ୟ ଦେବୁ । ମୁଁ ସୈନ୍ୟ ପରିବେଷ୍ଟିତ ହୋଇ ଯିବାକୁ ରାଜି ହେଲି ନାହିଁ । ତହୁଁ ସରକାର କହିଲେ—ବିଦ୍ରୋହୀ ନାଗା ଯଦି ତୁମକୁ ନିମନ୍ତ୍ରଣ କରିନେବେ ତେବେ ଆମେ ଆପତ୍ତି କରିବୁ ନାହିଁ । ମୁଁ ବିମଳା ଠକ୍‌କରଙ୍କ ଜରିଆରେ ବିଲାତରେ ଶ୍ରୀ ଫିଜୋଙ୍କୁ ମୋ ନାଗାଲାଣ୍ଡ ଯିବା କଥା ପତ୍ରର-ପଠାଇଲି । ଫିଜୋ କହିଲେ—"**I won't say don't come, but I won't welcome.**" ତେଣୁ ମୁଁ ନାଗାଲାଣ୍ଡ ଗଲିନାହିଁ । ବର୍ତ୍ତମାନ ତୁମେ ଅହିଂସାତ୍ମକ ଉପାୟରେ ଯେ ଲଢ଼ିବ କହୁଛ—ତମର ଦାବୀ କଣ ? ହେସୋ କହିଲେ—"ପୂର୍ଣ୍ଣ ସ୍ୱାଧୀନତା ।" ବିନୋବାଜୀ କହିଲେ—"ମୁଦ୍ରା, ଦେଶରକ୍ଷା, ଯାତାୟାତ ଓ ବୈଦେଶିକ ସମ୍ପର୍କ ଛଡ଼ା ଆଉ ସବୁ ବିଷୟରେ ତୁମକୁ ସ୍ୱାଧୀନତା ଦିଆଯାଇପାରେ । ଆଚ୍ଛା କହିଲ ଦେଖି, ଭାରତର ସମ୍ବିଧାନର କେଉଁ ନିୟମଟା ତୁମକୁ ନାଗାଲାଣ୍ଡ ପାଇଁ କ୍ଷତିକାରକ ବୋଧହେଉଛି ?" ହେସୋ କିଛି ଜବାବ ଦେଇ ନ ପାରି କିଛିକ୍ଷଣ ଚୁପ୍ ରହି କହିଲେ—"ଆମ ସମ୍ବିଧାନ ଆମେ ନାଗାମାନେ ତିଆରି କରିବାକୁ ଚାହୁଁ ।" ବିନୋବାଜୀ ହସି ହସି କହିଲେ, "ସମ୍ବିଧାନ ଗଢ଼ିବାଟା ଆଜିକାଲି ଗୋଟାଏ ସଉକ ହୋଇଯାଇଛି । ମୋ କହିବାର ଉଦ୍ଦେଶ୍ୟ ହେଲା ଭାରତର ସମ୍ବିଧାନର କୌଣସି ଅଂଶ ଯଦି ନାଗାଲାଣ୍ଡର ସ୍ୱାର୍ଥବିରୋଧୀ ହୋଇଥାଏ, ତେବେ ତାହା କହିଲେ ସେହି ଅଂଶକୁ ବଦଳାଇବା ପାଇଁ ଉଦ୍ୟମ କରାଯାଆନ୍ତା । କିନ୍ତୁ ତୁମେ ବୁଝିବା ଉଚିତ ଯେ ନାଗାଲାଣ୍ଡର ଲୋକସଂଖ୍ୟା ମାତ୍ର ପାଞ୍ଚଲକ୍ଷ । ସେଥିରେ ପୁଣି ଅଠରଟି ଭାଷା ଚଳେ । ସେମାନଙ୍କ ପରସ୍ପର ଭିତରେ ସଂଯୋଗ ରକ୍ଷାକରିବାପାଇଁ ଯେଉଁ ଆସାମୀ ମିଶା ଭାଷାଟି ଚଳେ, ତାହାର ନାମ ନାଗାମିଜ୍ । ତୁମେ ବର୍ତ୍ତମାନ ସେହି ନାଗାମିଜ୍ ଭାଷା ଓ ଦେବନାଗରୀ ଲିପିରେ ଗୋଟିଏ ପତ୍ରିକା ବାହାରକର । ତାହାହେଲେ ଅନ୍ତତଃ ନାଗାଲାଣ୍ଡର ସବୁ ଅଞ୍ଚଳର ଲୋକେ ଗୋଟିଏ ଲିପି ଓ ଗୋଟିଏ ଭାଷା ଜରିଆରେ ତୁମ ବିଚାର ସହିତ ପରିଚିତ ହେବେ ।"

"ଦ୍ୱିତୀୟ କଥା, ସମଗ୍ର ଆସାମରେ ୫୨ଟି ଭାଷାର ଲୋକ ଅଛନ୍ତି । ସେମାନଙ୍କର ପରସ୍ପର ସହିତ ସମ୍ପର୍କ ନାହିଁ । ସେମାନଙ୍କ ସହିତ ସାଂସ୍କୃତିକ ସମ୍ପର୍କ ସ୍ଥାପନ କର । ପାଞ୍ଚଲକ୍ଷ ଲୋକ ସଂଖ୍ୟା ବିଶିଷ୍ଟ ଗୋଟିଏ ସ୍ୱାଧୀନ ରାଷ୍ଟ୍ର ପକ୍ଷରେ ଦେଶରକ୍ଷା, ବୈଦେଶିକ ସମ୍ପର୍କ, କରେନ୍ସି ଓ ଯାତାୟାତ ପାଇଁ ସମ୍ପୂର୍ଣ୍ଣ ଅଲଗା ବ୍ୟବସ୍ଥା କରିବା ଆଦୌ ସୁବିଧା-

ଜନକ ନୁହେଁ । ତେଣୁ ଏହି ଗୁଡ଼ିକ ବ୍ୟାପାର ଛଡ଼ା ଆଉ ଅନ୍ୟାନ୍ୟ ବିଷୟରେ ତୁମେ ସ୍ୱାୟତ୍ତଶାସନ ଦାବୀକଲେ ଯୁକ୍ତିଯୁକ୍ତ ହେବ ।" ହେସେ ଓ ତାଙ୍କ ଦଳ ସହିତ ବିନୋବାଙ୍କ ନିୟମିତ ବିଚାରବିନିମୟ କରିବେ କହି ସେ ତାଙ୍କୁ ବିଦାୟଦେଲେ ।

ଏହିପରି ଭାବରେ ବଙ୍ଗଳାଦେଶ, ପଶ୍ଚିମବଙ୍ଗ, କେରଳ ଆଦି ବିଭିନ୍ନ ଅଞ୍ଚଳର ସମସ୍ୟା ଆଲୋଚିତ ହୋଇଥାଏ । ଦାରିଦ୍ର୍ୟ, ଅଜ୍ଞତା, ସାଂପ୍ରଦାୟିକତା ଯେ ଏସବୁ ସମସ୍ୟାର ମୂଳ କାରଣ ଏବଂ ଆହୁରି ଗଭୀରକୁ ଗଲେ ଅସଂଯମ ଯେ ମୂଳ ସମସ୍ୟା, ଏ କଥାଟି ବିନୋବାଙ୍କ ବିଭିନ୍ନ ପ୍ରକାରେ ପ୍ରତିପନ୍ନ କରାଇଥାନ୍ତି ।

ପଉନାରରୁ ଆମେ ସେବାଗ୍ରାମ ଗଲୁ । ଆମ ସାଙ୍ଗରେ କେତେଜଣ ନୂଆଯାତ୍ରୀ ଥିଲେ । ଗାନ୍ଧୀଜୀଙ୍କ ରହିବା କୁଡ଼ିଆ ଓ ସେହି ମାଟିକୁଡ଼ିଆର ସଚିବାଳୟ, (ଯେଉଁ ସଚିବାଳୟ ବ୍ରିଟିଶ ସରକାରଙ୍କ ପ୍ରତିନିଧି ଦିଲ୍ଲୀର ବଡ଼ଲାଟଙ୍କ ସଚିବାଳୟକୁ ଜବାବ ଦେଉଥିଲା ) ପୁଣି ଗାନ୍ଧୀଜୀଙ୍କର ସଚିବ ମହାଦେବ ଦେଶାଇ, ନରହରି ପରୀଖ, କିଶୋରଲାଲ ମଶ୍ରୁୱାଲା, ଅମୃତ କୌର, ସୁଶୀଲା ନାୟାର, ଆଶା ଦେବୀ ଆର୍ଯ୍ୟନାୟକମ୍‌ଙ୍କ ମୃଣ୍ମୟ ବାସଭବନ ଦେଖି ଏହି ଯାତ୍ରୀମାନେ ଅଭିଭୂତ ହୋଇ କହିଲେ—ଆଇନଷ୍ଟାଇନ୍ ଯଥାର୍ଥରେ କହିଛନ୍ତି— ଦିନେ ଏହା ଅବିଶ୍ୱାସ୍ୟ ହୋଇଯିବ ।

## ୪୮ । ସେବାଗ୍ରାମରୁ ବାଙ୍କୁଡ଼ା

ସେବାଗ୍ରାମରୁ ଆମେ ସତୀଶଚନ୍ଦ୍ର ଦାସଗୁପ୍ତଙ୍କୁ ଭେଟିବାକୁ ବାଙ୍କୁଡ଼ା ବାହାରିଲୁ । ବାଟରେ କଲିକତାରେ ବାସନ୍ତୀ ରାୟଙ୍କ ସଙ୍ଗେ ଦେଖାହେଲା । ବାସନ୍ତୀ ପୁରୁଲିୟାର ସ୍ୱନାମଧନ୍ୟ ସ୍ୱାଧୀନତାସଂଗ୍ରାମୀ ଋଷିପ୍ରତିମ ନିବାରଣଚନ୍ଦ୍ର ଦାସଗୁପ୍ତଙ୍କର କନିଷ୍ଠା କନ୍ୟା । ବିହାର ଓ ଓଡ଼ିଶା ଏକାଠି ଥିଲାବେଳେ ଓଡ଼ିଶାର କ ଓ ଖ ଶ୍ରେଣୀର ରାଜନୈତିକ ବନ୍ଦୀମାନେ ହଜାରିବାଗ ଜେଲ୍‌ରେ ରହୁଥିଲେ । ସେଇଠି ନିବାରଣବାବୁଙ୍କ ସଙ୍ଗେ ଆମର ଘନିଷ୍ଠତା ହୋଇଥିଲା । ନିବାରଣବାବୁଙ୍କୁ ଆଚାର୍ଯ୍ୟମହାଶୟଙ୍କର ଦ୍ୱିତୀୟ ସଂସ୍କରଣ କହିଲେ ଅତ୍ୟୁକ୍ତି ହେବନାହିଁ । ୧୯୩୨ରେ ମାଳତୀ ଚୌଧୁରୀ, ସୁଭଦ୍ରାଦେବୀ ଓ ମୁଁ ହଜାରିବାଗ ଜେଲ୍‌ରେ ଥିବାବେଳେ ସ୍ତ୍ରୀଲୋକଙ୍କ ୱାର୍ଡ଼କୁ ଆସି ଆମକୁ ଗୀତା ପଢ଼ାଇବା ପାଇଁ ଜେଲ୍ କର୍ତ୍ତୃପକ୍ଷ ନିବାରଣବାବୁଙ୍କୁ ଅନୁମତି ଦେଇଥିଲେ । ଏଇଥିରୁ ତାଙ୍କର ଚରିତ୍ରବଳ ଓ ନୈତିକ ପ୍ରଭାବ ଅନୁମାନ କରିହେବ । ପୁରୁଲିଆର ଅନ୍ୟତମ କର୍ମୀ ଶ୍ରୀମତୀ ଲାବଣ୍ୟପ୍ରଭା ଘୋଷ ମଧ୍ୟ ଆମ ସାଙ୍ଗରେ ଜେଲରେ ଥିଲେ । ତାଙ୍କ ସ୍ୱାମୀ ଅତୁଳବାବୁ ୧୯୨୧ରେ ଓଡ଼ିଶାର ଲୁଣ ଆନ୍ଦୋଳନରେ ଯୋଗଦେଇଥିଲେ । ନିବାରଣବାବୁ ପୁରୁଲିଆ ସରକାରୀ

ଉଚ୍ଚ ଇଂରେଜୀ ବିଦ୍ୟାଳୟର ପ୍ରଧାନଶିକ୍ଷକ ପଦ ମଧ୍ୟ ସେଇଠିକାବେଳେ ଛାଡ଼ିଲେ । ଏମାନେ ସମସ୍ତେ ମିଶି "ଶିଳ୍ପାଶ୍ରମ" ନାମରେ ଗୋଟିଏ ଅନୁଷ୍ଠାନ ପୁରୁଲିଆରେ ଗଢ଼ିଲେ—କାରଣ ସେତେବେଳକୁ ନିବାରଣବାବୁଙ୍କ ପତ୍ନୀବିୟୋଗ ହୋଇସାରିଥିଲା । ତିନି ଝିଅ ଓ ସାନ ପୁଅ ମାମୁଘରେ ରହୁଥିଲେ । ମାମୁଘର ଏକେ ଜମିଦାର, ଦ୍ୱିତୀୟରେ ରାୟବାହାଦୁର, ସେନ୍ ବାହାଦୁର୍ ଘର—ଅସହଯୋଗୀ ନିବାରଣବାବୁଙ୍କ ପିଲା ସେ ଘରେ ବଢ଼ିବେ କିପରି ? ସେମାନେ ସମସ୍ତେ ଏହି ଶିଳ୍ପାଶ୍ରମରେ ବଢ଼ିଲେ । ବଡ଼ପୁଅ ବିଭୂତି କଲେଜ ପାଠ ଛାଡ଼ି ସନ୍ତ୍ରାସବାଦୀ ହେବା ଫଳରେ ବହୁବର୍ଷ ଅଟକବନ୍ଦୀ ରହି ଶେଷରେ ଏହି ଆଶ୍ରମକୁ ଫେରିଆସିଲେ । ନିବାରଣବାବୁ ଅତ୍ୟନ୍ତ ନୀତିବାନ୍ ଲୋକ । ମଝିଆଁ ଝିଅକୁ ଗାନ୍ଧୀ ମତରେ କେବଳ ଖଦଡ଼ଲୁଗା, ଶଙ୍ଖା ସିନ୍ଦୂର ପିନ୍ଧାଇ ବିଭାକରିବାକୁ ଓ ବରଯାତ୍ରୀଙ୍କୁ ମୁଢ଼ି ତେଲ ଓ ଭାତ ଡାଲମା ଖାଇବାକୁ ଦେବେ ବୋଲି କହିବାରୁ ପୁରୁଲିଆ ଲୋକେ ଗହଣା, ଲୁଗା, ବାସନ, ଟ୍ରଙ୍କ ବାକ୍ସ, ଖଟ, ଘିଅ, ପରିବା ସମେତ ଆଣି ଜମାକରି କହିଲେ—ଅନ୍ନ ଆମ ଝିଅ । ଆମେ ତାକୁ ବିଭାକରିବୁ । ରାଜେନ୍ଦ୍ର ପ୍ରସାଦ ନିବାରଣବାବୁଙ୍କର ବଡ଼ ବନ୍ଧୁ । ସେ ଝିଅ ବାହାଘର ପାଇଁ ପାଟଶାଢ଼ୀ ଓ ମଠାଜୋଡ଼ା ପଠାଇଦେଲେ । କିନ୍ତୁ ନିବାରଣବାବୁ ଅଟଳ । କଟକର ବିଖ୍ୟାତ ଓକିଲ ସତ୍ୟନାରାୟଣ ସେନଗୁପ୍ତଙ୍କ ପୁତ୍ର ବଙ୍ଗଳାର ପ୍ରତିଷ୍ଠିତ କର୍ମୀ ଭୂପେନ୍ ବାବୁଙ୍କ ସହିତ ଏ ବିଭାଘର ସେହି ଗାନ୍ଧୀମତରେ ହେଲା—ତାହା ନ ହେଲେ ଗରିବ ଲୋକେ ଦୁଃଖରେ ପଡ଼ିବେ ଯେ !

ସେହି ନିବାରଣବାବୁଙ୍କ ଝିଅ ବାସନ୍ତୀ ୧୯୩୧ରେ ପୁରୀରେ ନିଖିଳ ଭାରତ କଂଗ୍ରେସ ଅଧିବେଶନର ଆୟୋଜନବେଳେ ସ୍ୱେଚ୍ଛାସେବିକାମାନଙ୍କୁ ଡ୍ରିଲଖେଳ ଶିଖାଇବାକୁ ପୁରୀ ଆସିଥିଲା । ଅତୁଲବାବୁଙ୍କ ଝିଅ ଊର୍ମିଳା ମଧ୍ୟ ତା ସାଙ୍ଗରେ ଆସିଥିଲେ । ବାସନ୍ତୀ ଅଳ୍ପ-ବୟସରୁ ଭଲ ବକ୍ତୃତା ଦେଇ ପାରୁଥିଲା ବୋଲି ସମସ୍ତେ ତାକୁ ସ୍ନେହ କରୁଥିଲେ । ୧୯୩୨ରେ ଗାନ୍ଧୀଜୀ ଗିରଫ ହୋଇ କଂଗ୍ରେସ ବେଆଇନ ଘୋଷିତ ହେବାରୁ ପୁରୀରେ ଅଧିବେଶନ ହୋଇ ପାରିଲା ନାହିଁ । ବାସନ୍ତୀ ପୁରୁଲିଆ ଫେରିଯାଇ କିଛିଦିନ ପରେ ଉଆର୍ଦ୍ଧା ମହିଳାଶ୍ରମର ବ୍ୟବସ୍ଥାପିକା ହେଲା । ସ୍ୱରାଜ୍ୟ ପରେ ଗାନ୍ଧୀଜୀଙ୍କ ନିର୍ଦ୍ଦେଶରେ ସେ ପୁରୁଲିଆ ନିକଟସ୍ଥ ନିମ୍‌ଡିହ ଗାଁରେ ରହି ଗ୍ରାମସେବା କାମ ଆରମ୍ଭକଲା । ମୋ ବାଙ୍କୁଡ଼ା ଯିବା କଥା ଶୁଣି ନିମ୍‌ଡିହ ମଧ୍ୟ ଯିବାକୁ ସେ ମୋତେ ବହୁତ ବଳେଇଲା । ତାର ତ୍ରିଶବର୍ଷର ସାଧନାକୁ ଏଡ଼ି ନ ପାରି ମୁଁ ନିମ୍‌ଡିହ ବାହାରିଲି । ପୁରୁଲିଆରେ ଜେଲ୍‌ ସାଙ୍ଗ ଲାବଣ୍ୟପ୍ରଭା ଦେବୀଙ୍କୁ ଦେଖିବାକୁ ଶିଳ୍ପାଶ୍ରମ ଗଲି । ଶିଳ୍ପାଶ୍ରମରେ ଯୋଗକୁ ସେଦିନ ଲୋକସେବକ ସଂଘର କର୍ମୀ ବୈଠକ ଥିଲା । ଗାନ୍ଧୀଜୀ ଯେ ସ୍ୱରାଜ୍ୟ ପରେ କଂଗ୍ରେସକୁ ଭାଙ୍ଗିଦେଇ ଲୋକସେବକ ସଂଘ ଗଢ଼ିବାକୁ ଶେଷ ଇଚ୍ଛା ପ୍ରକାଶ କରିଥିଲେ ତଦନୁସାରେ ଅତୁଲବାବୁ ପ୍ରଭୃତି କଂଗ୍ରେସ ଅନୁଷ୍ଠାନ ଛାଡ଼ିଦେଇ ଏହି ସଂସ୍ଥାଟି ଗଢ଼ିଥିଲେ । ତାଙ୍କ ଅନ୍ତେ ତାଙ୍କ ପୁଅ ଅରୁଣ ଘୋଷ ଓ ନିବାରଣବାବୁଙ୍କ ପୁଅ ବିଭୂତି ଦାସଗୁପ୍ତ ଆଦିଙ୍କ ମାର୍ଗ-

ଦର୍ଶନରେ ଏ ସଂସ୍ଥା କାମ କରୁଛୁ । ଭାଷା ଦୃଷ୍ଟିରୁ ପୁରୁଲିଆ ଜିଲାକୁ ବଙ୍ଗଳା ସହିତ ମିଶାଇବାକୁ ଏହିମାନେ ଆନ୍ଦୋଳନ କରୁଥିଲେ । ଏମାନେ କ୍ଷମତା ରାଜନୀତିରେ ମଧ୍ୟ ଯୋଗ ଦିଅନ୍ତି । ବିଭୁତିବାବୁ ପଶ୍ଚିମବଙ୍ଗଳାର ଯୁକ୍ତଫ୍ରଣ୍ଟ ମନ୍ତ୍ରୀମଣ୍ଡଳରେ ମନ୍ତ୍ରୀ ହୋଇଥିଲେ । ଏଥର ନିର୍ବାଚନରେ ଏମାନେ ସମସ୍ତେ ହାରିଯାଇଛନ୍ତି । ବର୍ତ୍ତମାନ ପୁରୁଲିଆ ଜିଲାରେ କିପରି କୃଷିର ଉନ୍ନତି ହେବ, କୃଷି ସୁବିଧାରେ ଜଳ ସାର ପାଇବେ ଓ ଅନ୍ତତଃ ଦୁଇ ହଜାର କୃଷୀ ଉନ୍ନତ ଧରଣର କୃଷି ଶିଖିପିବେ, ସେହି ହେଉଛି ଏ ସଂଘର ମୁଖ୍ୟ ଯୋଜନା । ଆମେ ଅଲକ୍ଷାମବି ହୋଇ ଶୋଇପଡ଼ିଲୁ । କୃଷି ଯୋଜନା ପ୍ରସ୍ତୁତ ପାଇଁ ରାତି ସାରା କର୍ମୀ ସଭା ଚାଲିଲା ।

ପୁରୁଲିଆରୁ ନିମ୍‌ଡିହି ଷ୍ଟେସନ ଟଙ୍କାଏ ପନ୍ଦର ପଇସାର ରେଳବାଟ । ଷ୍ଟେସନଠାରୁ ବାସନ୍ତୀର "ଲୋକଶିକ୍ଷା ସୃଜନ" ଅଧମାଇଲ୍ ଏ ହେବ ନାହିଁ । ବାସନ୍ତୀର ସ୍ୱାମୀ ଶ୍ରୀ ସୁବୋଧଚନ୍ଦ୍ର ରାୟ ମଧ୍ୟ ଏଲାହାବାଦର ସରକାରୀ ଆର୍ଟ କଲେଜର ଅଧ୍ୟାପନା କାମ ଛାଡ଼ି ବାସନ୍ତୀ ସାଙ୍ଗରେ ଏହି ଅନୁଷ୍ଠାନରେ କାମ କରୁଛନ୍ତି । ଛଅଜଣ ମହିଳା ଓ କେତୋଟି ପିଲା ଆଶ୍ରମରେ ସବୁବେଳେ ଥାଆନ୍ତି । ବାକି କର୍ମୀ ଗାଁରେ ଥାଆନ୍ତି । ଆଶ୍ରମ ପକ୍ଷରୁ ପ୍ରି ପ୍ରାଇମେରୀରୁ ସପ୍ତମଶ୍ରେଣୀ ଯାଏ ସ୍କୁଲ ଚାଲିଛି । ଶିକ୍ଷୟିତ୍ରୀମାନେ କିଏ ବାରବର୍ଷ, କିଏ କୋଡ଼ିଏ ବର୍ଷ ହେଲା ଶିକ୍ଷକତା କରୁଛନ୍ତି । ସେଇଠି ରହି ପାଠ ପଢ଼ି, ଗ୍ରାଜୁଏଟ୍ ହୋଇ, ଶିକ୍ଷୟିତ୍ରୀ ହୋଇଥିବା କର୍ମୀ ମଧ୍ୟ ଦେଖିଲୁ । ସେ ସଂସ୍ଥାର ବିଶେଷତ୍ୱ ହେଲା କର୍ମୀମାନେ ଏକମନ ଏକପ୍ରାଣ ହୋଇ ସ୍କୁଲ ଓ ଅନୁଷ୍ଠାନକୁ ନିଜର କାମ ବିଚାରି ମନପ୍ରାଣ ଦେଇ କାମ କରୁଛନ୍ତି ଏବଂ ଅନୁଷ୍ଠାନର କର୍ମୀ ଓ ଗ୍ରାମବାସୀଙ୍କ ମଧ୍ୟରେ ଗୋଟିଏ ଅତି ସୁନ୍ଦର ହାର୍ଦ୍ଦିକ ସମ୍ପର୍କ ସୃଷ୍ଟି ହୋଇଛି । ଗାଁଲୋକେ ଆଶ୍ରମକୁ କିଛି ଜମି ଦାନ କରିଛନ୍ତି । ଗୋଟିଏ ଛୋଟିଆ ଗିରିନଦୀକୁ ବନ୍ଧେଇ ସେହି ବନ୍ଧାପାଣିରେ ଜଳସେଚନ ବ୍ୟବସ୍ଥା କରି କୃଷିଜମିରୁ ଆଶ୍ରମ କର୍ମୀଙ୍କ ଭରଣପୋଷଣ ଚଳାଇବା ଯୋଜନାରେ ବାସନ୍ତୀ ଓ ସୁବୋଧ ଲାଗିପଡ଼ିଛନ୍ତି । ଆଶ୍ରମରେ ଖଦୀ କାମ ଅର୍ଥାତ୍ ସୂତାକଟା ଲୁଗାବୁଣା କାମ ମଧ୍ୟ ହେଉଛି । ଅଠର ବର୍ଷ ପୂର୍ବେ ଯେତେବେଳେ ନିମ୍ନଡିହି ଯାଇଥିଲି, ସେତେବେଳେ ସେ ଟାଙ୍ଗର ମୁରୁମ ମାଟିରେ ପାଞ୍ଚ ଛଅଟି ଶାଳଗଛ, ଦୁଇଟି ବରଗଛ ଓ ଛୋଟ ଛୋଟ ପଳାଶ ଗଛ ଦେଖିଥିଲି । ବର୍ତ୍ତମାନ ଆମ୍ବ, ପଣସ, କାଜୁ, ବେଲ, ସପେଟା, କାଗିଜି ଆଦି ନାନା ଜାତି ଫଳଗଛ ନାନାପ୍ରକାର ଫୁଲ ଗଛ ଲଗାଇ ସେ ଟାଙ୍ଗର ଭୂଇଁକୁ ସେମାନେ ସୁରମ୍ୟ ଉଦ୍ୟାନରେ ପରିଣତ କଲେଣି । ସବୁଠାରୁ ଆନନ୍ଦର କଥା ହେଉଛି, ଆଖ ପାଖ ଗାଁଲୋକେ ମଧ୍ୟ ବନ୍ଧରୁ ପାଣି ପାଇ ନୂଆ ନୂଆ ଫସଲ ଉଠାଉଛନ୍ତି । ପତଳା ଜଙ୍ଗଲ ଭିତରେ ଧୀରେ ଧୀରେ ସୂର୍ଯ୍ୟ ଅସ୍ତଗଲେ । ବାୟୁମଣ୍ଡଳ ଶୀତଳ ହୋଇଗଲା । ସନ୍ଧ୍ୟାପ୍ରାର୍ଥନା ଘଣ୍ଟା ବାଜିଲା । ଆଶ୍ରମବାସିନୀମାନେ ଭଜନ ବୋଲିଲେ—

ଆପନ୍ ହତେ ବାହିର ହଏ ବାଇରେ ଦାଁଡ଼ା
ବୁକେର୍ ମାଝେ ବିଶ୍ୱଲୋକେର୍ ପାବି ସାଡ଼ା ।

ଜନମଣ୍ଡଳରେ ବାସନ୍ତୀର ସାନଭାଇ ଚନ୍ଦ୍ରଭୂଷଣ କହି ଥରେ—ଆପଣ ମାଟିହୁଡ଼ା ଯିବେ । ଚାରି ଦୁଇମାସ ବୟସରୁ ମ ତୃହୀନ । କିଶୋର ବୟସରୁ ବାପ ସଙ୍ଗେ ଆନ୍ଦୋଳନରେ କାମ କରିଆସୁଛି । ତା କଥା ଏଠି ହେଲା ନାହିଁ । ତାର ମୌଳିକ ଶିକ୍ଷା ପ୍ରୟୋଗ ଦେଖିବାକୁ ମାଟିହୁଡ଼ା ଗଲି । କୌଣସି ସ୍କୁଲ କଲେଜରେ ନ ପଢି ସୁଦ୍ଧା ଚାରି ଯେ ଜଣେ ଶିକ୍ଷାଶାସ୍ତ୍ରୀ ତାହା ଗୋଟିଏ ଉଦାହରଣରୁ ବୁଝିହେବ । ଗୋଟିଏ ନିଖିଳଭାରତୀୟ ଶିକ୍ଷା ସମ୍ମିଳନୀରେ ମାତୃଭାଷା ମାଧ୍ୟମରେ ଶିକ୍ଷା ଦିଆଯିବା ସଂପର୍କରେ ଆଲୋଚନାରେ ଚାରି ଗୋଟିଏ ବକ୍ତୃତା ଦେଲା । ସେ ବକ୍ତୃତା ଶୁଣି ଜଣେ ମହାରାଷ୍ଟ୍ରୀୟ ଭଦ୍ରଲୋକ କହିଧରିଲେ ଯେ ମୁଁ ଏହି ବିଦ୍ୱାନ୍ ପିଲାଟିକୁ ମୋ ଝିଅକୁ ବିଭାକରିବି । ତାଙ୍କ କହି ବଜାୟ ରହିଲା । ସେ ମହାରାଷ୍ଟ୍ରୀୟ ଝିଅ ବର୍ତ୍ତମାନ ବଙ୍ଗଳା ରନ୍ଧାଠାରୁ ବଙ୍ଗଳା ଭାଷାଯାଏ ସବୁଥିରେ ପାରଙ୍ଗମ ହୋଇ ଚାରିର ସ୍କୁଲରେ ଶିକ୍ଷିକା ହୋଇଛନ୍ତି ।

ବର୍ତ୍ତମାନ ବାଙ୍କୁଡ଼ା ଆଡକୁ ବଳେଇବା । ବାଙ୍କୁଡ଼ା ସହରଠାରୁ ଅଠେଇଶ ମାଇଲ ଦୂର ଗୋଗରାରେ ଶ୍ରୀ ସତୀଶଚନ୍ଦ୍ର ଦାସଗୁପ୍ତ ୧୯୬୪ ମସିହାରୁ କାମ ଆରମ୍ଭ କରିଛନ୍ତି । ଆମେ ସେଠାରେ ପହଞ୍ଚିବା ବେଳକୁ ଏକାନବେ ବର୍ଷର ବୁଢ଼ା ବାଡ଼ିଖଣ୍ଡେ ଧରି ଛୁଡ଼ାହୋଇ ଗୃହକାମ ତଦାରଖ କରୁଛନ୍ତି । ଆମେ ପ୍ରଣାମ କରିବା ମାତ୍ରେ ସେ ଆଖି ଛଳ ଛଳ କରି ଆମକୁ କୁଣ୍ଢେଇପକେଇଲେ । ବହୁତ ପୁରୁଣା ସ୍ମୃତି ମନେପଡ଼ିଗଲା । ଅସହଯୋଗ ଆନ୍ଦୋଳନରେ ଯୋଗଦେବା ପୂର୍ବରୁ ସେ ଥିଲେ ଆଚାର୍ଯ୍ୟ ପ୍ରଫୁଲ୍ଲଚନ୍ଦ୍ର ରାୟଙ୍କର ଦକ୍ଷିଣହସ୍ତ । ଭାରତବର୍ଷରେ ଯେଉଁ ବେଙ୍ଗଲ କେମିକାଲ୍ ଡାକ୍ତରୀ ଔଷଧ ତିଆରି କରିବାରେ ଅଗ୍ରଗଣ୍ୟ ଅନୁଷ୍ଠାନ ହୋଇଥିଲା, ତାକୁ ଗଢ଼ିଥିଲେ ସତୀଶବାବୁ । ଆଚାର୍ଯ୍ୟ ପ୍ରଫୁଲ୍ଲଚନ୍ଦ୍ରଙ୍କ ମୁହଁରୁ ଆମେ ସେ କାହାଣୀ ଶୁଣିଛୁ । ବେଙ୍ଗଲ୍ କେମିକାଲ୍‌ର ଯେତେବେଳେ ଭାରତବର୍ଷରେ ସବୁଠାରୁ ବେଶି ନାମ ଡ଼ାକ ସେତିକବେଳେ ଗାନ୍ଧୀଜୀଙ୍କ ଡାକରାରେ ସେ ତାଙ୍କ ପ୍ରିୟ ଅନୁଷ୍ଠାନକୁ ଛାଡ଼ିଦେଇ ଆସିଲେ । ଦେଶର ସ୍ୱାଧୀନତା ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରି ସେ ଅଧିକାଂଶ ସମୟ ଜେଲରେ ରହୁଥିଲେ ହେଁ ତାଙ୍କର ବୈଜ୍ଞାନିକ ମନୋବୃତ୍ତି ତାଙ୍କୁ ବରାବର ସୃଜନାତ୍ମକ କାମ ଆଡକୁ ଟାଣି ନେଉଥିଲା । କଲିକତାଠାରୁ ଦଶ ବାର ମାଇଲ୍ ଦୂର ସୋଦପୁରଠାରେ ଖଦୀ ପ୍ରତିଷ୍ଠାନ ନାମକ ସଂସ୍ଥା ଗଢ଼ିଥିଲେ । ତାଙ୍କର ସ୍ତ୍ରୀ ଶ୍ରୀମତୀ ହେମପ୍ରଭା ଦେବୀ ଓ ଗ୍ରେଟିଯାକ ପିଲା ତାଙ୍କ ସାଙ୍ଗରେ ଏ କାମରେ ଲାଗିପଡ଼ିଥିଲେ । ଖଦୀ କାମରେ ଅଭିଜ୍ଞତା ହାସଲ କରିବାକୁ ସେ କିଛି ଦିନ ପାଇଁ ସାବରମତୀ ଆଶ୍ରମରେ ଥିଲେ । ସେତିକି-ବେଳେ ତାଙ୍କ ବଡ଼ପୁଅର ବେଖାବେଖି ରୋଗରେ ମୃତ୍ୟୁ ହେଲା । ପୁଅ ମରିବା ଟେଲିଗ୍ରାମ ଆସିବାରୁ ଗାନ୍ଧୀଜୀ ସତୀଶବାବୁଙ୍କୁ ସାନ୍ତ୍ୱନା ଦେବା ଉଦ୍ଦେଶ୍ୟରେ ଟେଲିଗ୍ରାମ୍ କାଗଜଖଣ୍ଡକ ଧରି ସତୀଶବାବୁଙ୍କ ପାଖକୁ ଗଲାବେଳକୁ ସେ ସୂତା କାଟୁଥିଲେ । ଗାନ୍ଧୀଜୀଙ୍କ ନିଜ ମୁହଁରୁ ଶୁଣିବା କଥା—ଏ ଖବର ଶୁଣି ତାଙ୍କ ହାତ ମୁହୂର୍ତ୍ତିକ ପାଇଁ ସୁଦ୍ଧା ବନ୍ଦ ହେଲା ନାହିଁ ।

ଶାନ୍ତ ସ୍ୱରରେ ଗାନ୍ଧୀଜୀଙ୍କୁ ସେ ପଚାରିଲେ ପୁଅର କଣ ହୋଇଥିଲା ? ଗାନ୍ଧୀଜୀ ବରାବର କହୁଥିଲେ ଯେ ସତୀଶବାବୁଙ୍କ ସ୍ଥିରବୁଦ୍ଧି ହିଁ ଦେଶସେବକଙ୍କର ଆଦର୍ଶ ହେବା ଉଚିତ । ୧୯୩୦ରେ ଲବଣସତ୍ୟାଗ୍ରହ ଆରମ୍ଭ ହେବା ପୂର୍ବରୁ ଜଗତ୍ସିଂହପୁର ନିକଟସ୍ଥ ରଣହଟା ଗାଁରେ ଯେଉଁ ଗଠନମୂଳକ କାମ ଆରମ୍ଭ ହୋଇଥିଲା, ସେ କାମର ମାର୍ଗଦର୍ଶନ ଦେବାକୁ ସେ ଅଲକାଶ୍ରମକୁ ଆସୁଥିଲେ । ସେତେବେଳେ ତାଙ୍କର ଘନିଷ୍ଠ ସାହଚର୍ଯ୍ୟ ଲାଭ କରିବାର ସୁଯୋଗ ମିଳିଥିଲା । ତାପରେ ଚମଡ଼ା କାମ ଶିଖିବା ପାଇଁ ୧୯୩୫ରେ ମନମୋହନ ତାଙ୍କ ପାଖରେ କିଛିକାଳ ରହିବାରୁ ମନମୋହନ ସହିତ ମଧ୍ୟ ତାଙ୍କର ଘନିଷ୍ଠତା ବଢ଼ିଲା ।

ଗାନ୍ଧୀଜୀଙ୍କ ଆଦେଶକୁ ପାଳନ କରିବାରେ ସେ ସାମରିକ ତତ୍ପରତା ଦେଖାଉଥିଲେ । ଚମଡ଼ା ବ୍ୟବସାୟଟା ବ୍ରିଟିଶ ଅମଳରେ ଗୋରା ବେପାରୀଙ୍କର ଏକଚାଟିଆ ଥିଲା । ଗାଁରେ ମରୁଥିବା ଗୋରୁଗାଈଙ୍କ ଚମଡ଼ା କିପରି ଗାଁରେ କଷା ହେବ ଓ ଗୋରୁହାଡ଼ ଶିଙ୍ଗ ଆଦିରୁ କ୍ରମେ ନାନା ଦରକାରୀ ଜିନିଷ ଗାଁରେ ତିଆରି ହୋଇପାରିବ, ସେ ବିଷୟରେ ଗାନ୍ଧୀଜୀ ସତୀଶବାବୁଙ୍କ ପରାମର୍ଶ ନେଉଥିଲେ । ରସାୟନବିଜ୍ଞାନୀ ସତୀଶବାବୁ ସଙ୍ଗେ ସଙ୍ଗେ ସେହି ପ୍ରୟୋଗରେ ଲାଗିପଡ଼ିଲେ । କଲିକତା ସହରତଳିରେ ରହି ମଲାଗୋରୁ ସଂଗ୍ରହକରି ଚମଡ଼ା କଷାକରିବା, ହାଡ଼ ଓ ମାଂସକୁ ଖତକରିବା ଆଦିର ଗ୍ରାମୋପଯୋଗୀ ପ୍ରକ୍ରିୟା ବାହାରକରିପାରି ସେ ନିଃଶ୍ୱାସମାରିଲେ ।

ଗାନ୍ଧୀ ସାହିତ୍ୟଗୁଡ଼ିକୁ ଗୁଜରାଟୀ ଭାଷାରୁ ବଙ୍ଗଳାରେ ଅନୁବାଦ କରି ଛାପିବା କାମ ସେଇ ଆରମ୍ଭ କରିଥିଲେ । ୧୯୩୪ ମସିହାରେ ଗାନ୍ଧୀଜୀ କର୍ମୀମାନଙ୍କୁ ଗାଁକୁ ଫେରିଯାଇ ଗ୍ରାମବାସୀଙ୍କ ସଙ୍ଗେ ସମ୍ପର୍କ ବଢ଼ାଇବା ପାଇଁ ଡ଼ାକରାଦେଲେ । ସେତେବେଳେ ସେ ସତୀଶବାବୁଙ୍କୁ କହିଲେ ଯେ ବଡ ବଡ଼ କାରଖାନାରେ ତିଆରି ହେଉଥିବା ଏଲୋପାଥି ଔଷଧ ସାଧାରଣ ଗରିବ ଲୋକଙ୍କ ପକ୍ଷରେ କିଣିବା କଷ୍ଟକର । ସେହି ଦ୍ରବ୍ୟଗୁଣ ଥିବା ଔଷଧ କିପରି ଶସ୍ତାରେ ହୋଇପାରିବ ଓ ଜଣେ ସାଧାରଣ କର୍ମୀ କିପରି ରୋଗ ନିର୍ଣ୍ଣୟ କରିବା ଶିଖି ଔଷଧ ଦେଇପାରିବ ସେ ଦିଗରେ ତୁମେ କିଛି କରିପାରିଲେ ଭଲ ହେବ । ସତୀଶବାବୁ ସଙ୍ଗେ ସଙ୍ଗେ ରୋଗନିର୍ଣ୍ଣୟ, ଚିକିତ୍ସାଶାସ୍ତ୍ର ଓ ଭେଷଜତତ୍ତ୍ୱ ଅଧ୍ୟୟନ ଆରମ୍ଭ କରିଦେଲେ । କର୍ମୀମାନେ ସହଜରେ ବୁଝିପାରିବା ପାଇଁ ସେ 'ହୋମ୍ ଆଣ୍ଡ୍ ଭିଲେଜ୍ ଡକ୍ଟର' ନାମରେ ଖଣ୍ଡେ ବହି ଲେଖିଦେଲେ; ପୁଣି 'ଚୀପ୍ ରେମେଡ଼ିଜ୍' (ଶସ୍ତା ଔଷଧ) ନାମରେ ଅନେକଗୁଡ଼ିଏ ଔଷଧ ପ୍ରସ୍ତୁତ କଲେ ଯାହାର ଦାମ ବଜାର ଦରଠାରୁ ଢେର୍ ଶସ୍ତା—ଅଥଚ ସମାନ ଫଳପ୍ରଦ । ଆମେମାନେ ଗାଁରେ କାମ କଲାବେଳେ ରୋଗୀମାନଙ୍କୁ ଏହି ଶସ୍ତା ଔଷଧ ଦେଉଥିଲୁ ।

ଗାନ୍ଧୀଜୀଙ୍କର ରଚନାତ୍ମକ କାର୍ଯ୍ୟ ଭିତରେ ଗୋ-ସେବା ଅନ୍ୟତମ । ଭାରତର ଗାଈ ଓ ଗୋ-ପାଳନ ବିଷୟରେ ପରିପୂର୍ଣ୍ଣ ଜ୍ଞାତବ୍ୟ ବିଷୟ ଥିବା ବହି ଖଣ୍ଡିଏ ନାହିଁ କହି ଗାନ୍ଧୀଜୀ ଦୁଃଖ ପ୍ରକାଶ କଲାରୁ ସତୀଶବାବୁ ବିଭିନ୍ନ ପ୍ରଦେଶର ଗାଈଙ୍କୁ ଦେଖି ପ୍ରୟୋଗ କରି—

"Cow in India" ବହି ଲେଖିଲେ । ସତୀଶବାବୁଙ୍କର ବିଶେଷତ୍ୱ ହେଲା ସେ ଓ ତାଙ୍କର ସହକର୍ମୀମାନେ ନିଜ ହାତରେ କାମକରି ପ୍ରତ୍ୟକ୍ଷ ପ୍ରୟୋଗଲବ୍ଧ ଜ୍ଞାନ ସମାଜକୁ ଦେଇଥିଲେ । ଅସ୍ପୃଶ୍ୟତା ଦୂରୀକରଣ ପାଇଁ ଗାନ୍ଧୀଜୀ ଲଗ ଲଗ ତିନଥର ଉପବାସ କରିବା ଫଳରେ ଅତି କ୍ଷୀଣ ହୋଇଗଲେ । ଡାକ୍ତର ତାଙ୍କୁ ଗ୍ଳୁକୋଜ ଖାଇବାକୁ ପରାମର୍ଶ ଦେଲେ । ମାତ୍ର ସେତେବେଳେ ଭାରତବର୍ଷରେ ଗ୍ଳୁକୋଜ ତିଆରି ହେଉନଥିଲା । ତେଣୁ ବିଦେଶୀ ଗ୍ଳୁକୋଜ ଖାଇବାକୁ ଗାନ୍ଧୀଜୀ ଅସ୍ୱୀକାର କଲେ ଓ ସତୀଶବାବୁ ପାଖରେ ଥିବାରୁ ତାଙ୍କୁ ମଧ୍ୟ କହିଲେ ଯେ—ଭାରତବର୍ଷରେ କ'ଣ ଗ୍ଳୁକୋଜ ତିଆରି ହେବା ସମ୍ଭବ ନୁହେଁ ? ସତୀଶବାବୁ ଖାଦିପ୍ରତିଷ୍ଠାନକୁ ଫେରିଆସି ତାଙ୍କ ଗବେଷଣାଗାରରେ କାମ ଆରମ୍ଭ କରିଦେଲେ ଓ ତିନଦିନ ପରେ ଗ୍ଳୁକୋଜ ତିଆରି କରି ଗାନ୍ଧୀଜୀଙ୍କ ପାଇଁ ତାହା ପୁନା ପଠାଇ-ଦେଲେ ।

ଏହି ସ୍ୱାଧୀନତାପ୍ରେମୀ ବୈଜ୍ଞାନିକ ଏହିପରି ଭାବରେ ନାନାକ୍ଷେତ୍ରରେ ନିଜ ପ୍ରତିଭାର ପରିଚୟ ଦେଇଆସୁଥିଲେ । ଏବେ ୧୯୬୪ ମସିହାରେ ବାଙ୍କୁଡ଼ାରେ ଯେଉଁ ଭୀଷଣ ଦୁର୍ଭିକ୍ଷ ପଡ଼ିଲା, ତାହା ତାଙ୍କ ମନରେ ଆଲୋଡ଼ନ ସୃଷ୍ଟି କଲା । ଭାରତବର୍ଷ ସ୍ୱାଧୀନ ହେବା ବେଳେ ଗାନ୍ଧୀଜୀ କହିଥିଲେ ଯେ ଯଦି ଖାଦ୍ୟଶସ୍ୟ ପାଇଁ ଆମେରିକାର ମୁଖାପେକ୍ଷୀ ହୋଇ ରହିବ, ତେବେ ଭାରତବର୍ଷର ସ୍ୱାଧୀନତା ରକ୍ଷାକରିବା କଠିନ ହେବ । ସେ କଥାଟା ସତୀଶବାବୁଙ୍କର ବାରମ୍ବାର ମନେପଡ଼ିଲା । ସେ ଭାବିଲେ ଯେ ଗାନ୍ଧୀଜୀଙ୍କ ଆଦେଶରେ ମୁଁ ଖଦୀ, ଗୋପାଳନ ଆଦି ନାନା ପ୍ରକାର କାମ କରିଛି, କିନ୍ତୁ ଫସଲ ଉତ୍ପାଦନ ବଢ଼ାଇବା ଦିଗରେ କିଛି କରିପାରିନାହିଁ । ଏ ଦିଗରେ ମୋର ମଧ୍ୟ କିଛି କର୍ତ୍ତବ୍ୟ ଅଛି । କିନ୍ତୁ କୃଷି ବିଷୟରେ ତାଙ୍କର କୌଣସି ବ୍ୟାବହାରିକ ବା ବୌଦ୍ଧିକ ଜ୍ଞାନ ନଥିଲା । ତଥାପି ସେ ଉତ୍ପାଦନ ବଢ଼ାଇବା ସଂକଳ୍ପ ନେଇ ଆସି ଦୁର୍ଭିକ୍ଷପ୍ରପୀଡ଼ିତ ବାଙ୍କୁଡ଼ା ଜିଲ୍ଲାରେ ଡେରା ପକାଇଲେ ।

ବାଙ୍କୁଡ଼ାରେ ଆବହମାନକାଳରୁ ଦୁର୍ଭିକ୍ଷ ପଡ଼ିଆସୁଛି । କାରଣ ସେଠାର ହଜାର ହଜାର ଏକର ବାଲି ଗୋଡ଼ି ମିଶା ଅନୁର୍ବର ଜମିରେ କୌଣସି ଫସଲ ହୁଏନାହିଁ ଏବଂ ସେଠାରେ ଫସଲ ପାଇଁ ପର୍ଯ୍ୟାପ୍ତ ପାଣି ମଧ୍ୟ ମିଳେ ନାହିଁ । ସେଥିପାଇଁ ଶହ ଶହ ବର୍ଷ ହେଲା ସେ ଜମି ସେଠାରେ ପଡ଼ିଆପଡ଼ିଛି । ସତୀଶବାବୁ ସେଠାରେ ଏହିପରି ପାଣି ନ ଥିବା ଅନୁର୍ବର ଡ଼ାହି ଜମି ଉପରେ ଖଣ୍ଡିଏ କୁଡ଼ିଆ ବାନ୍ଧିଲେ । ପଞ୍ଚାଅଶୀ ବର୍ଷର ବୁଢ଼ାଙ୍କୁ ଚନ୍ଦାମୁଣ୍ଡରେ ଓଦା ଗାମୁଛା ପକେଇ ପଡ଼ିଆରେ ବୁଲିବାର ଦେଖି ଗୋଗ୍ରାମ ଓ ଆଖପାଖ ଗାଁର ଲୋକ ଯାଗଲ ଠଉରେଇଲେ । ଯେଉଁ ଜମିରେ କୁଶ କଅଁଳୁ ନାହିଁ, ବୁଢ଼ା ସେଠି ଚାଷ କରିବେ !

ସେ କୁଡ଼ିଆରେ ସତୀଶବାବୁଙ୍କର ଅଧ୍ୟୟନ ଆରମ୍ଭ ହୋଇଗଲା । ପୃଥିବୀ ଯାକର ପାଣି, ମାଟି ଓ ଚାଷ ବିଷୟକ ବହି ଆସି ଜମା ହୋଇଛି । ଗ୍ରନ୍ଥଗୁଡ଼ିକ ମୋଟର ବିରାଟ ବିରାଟ ଛନ୍ଦ । ପଞ୍ଚାଅଶୀ ବର୍ଷର ବୁଢ଼ା ତାକୁ ଟେକି ପାରନ୍ତି ନାହିଁ । ସେଥିପାଇଁ ଖଣ୍ଡେ ଖଣ୍ଡେ

ତହକୁ ଦଶବାର ଖଣ୍ଡ କରି ଛିଣ୍ଡାଇ ଦେଇ ପଢ଼ନ୍ତି । ଏଣେ ବିଲରୁ ମାଟି ସଂଗ୍ରହ କରି ଆଣି ଶ୍ରେଣୀ ଶ୍ରେଣୀ ହିସାବରେ ସେ ମାଟିକୁ ପାଣିରେ ଗୋଳି ପରଖ କରିଲାଗିଥାନ୍ତି । ସାରତର ଜିଓଲଜି ବିଭାଗର ପ୍ରବୋଧ କର୍ତ୍ତାଙ୍କୁ ସତୀଶବାବୁ ଅନୁରୋଧ କଲେ—ଏ ଅଞ୍ଚଳରେ ପାଣି କେତେ ତଳେ ଅଛି ମୋତେ କହିପାରିବ ? ଜିଓଲଜିବାଲା ମନାକରିଦେଲେ— ସେଠି ପାଣି ନାହିଁ—ଆପଣ ଅକାରଣରେ ସେଠ ଶକ୍ତି କ୍ଷୟ କରନ୍ତୁ ନାହିଁ । ସତୀଶ ବାବୁଙ୍କର ଏକା ଜିଦ୍ ଯେ ଇଣ୍ଡିଆରେ ପାଞ୍ଚଇଞ୍ଚ ବର୍ଷା ହୋଇ ଯଦି ସେମାନେ କୃଷିପାଇଁ ପାଣି ପାଇଲେ ତେବେ ବାଙ୍କୁଡ଼ାରେ ତିରିଶ ଇଞ୍ଚ ବରଷାର ପାଣି ଯିବ କୁଆଡ଼େ ? ମୁଁ ସେ ପାଣିକୁ କଷ୍ଟେ ଧରିଆଣିବି ।

ଗୋଗ୍ରାଠାରୁ ଛଅମାଇଲ୍ ଦୂରରେ ଶୁଶୁନିଆ ପାହାଡ଼ । ସେଠାରେ ଦଶହଜାର ବର୍ଷ ପୂର୍ବର ମଣିଷକଙ୍କାଳ ଓ ମାନବ ସଭ୍ୟତାର ନିଦର୍ଶନ ମିଳୁଥିବାରୁ ପ୍ରତ୍ନତତ୍ତ୍ୱ ବିଭାଗ ସେଠାରେ କାମ ଆରମ୍ଭ କରିଛନ୍ତି । ସତୀଶବାବୁ ସେମାନଙ୍କ ସାହାଯ୍ୟ ମାଗିଲେ । ସେମାନେ ମଧ୍ୟ ନିରାଶାବାଣୀ ଶୁଣାଇଲେ । ସତୀଶ ବାବୁଙ୍କ ଜିଦ୍ ଆହୁରି ବଢ଼ିଲା । ସେ ସ୍ତ୍ରୀଶ ଫୁଟ ଗଭୀର କୂଅ ଖୋଳିବା ପାଇଁ କଲିକତାରେ ବୁଲି ବୁଲି ଚାନ୍ଦା ସଂଗ୍ରହ କଲେ । କୂଅ ଖୋଳା ଆରମ୍ଭ ହେଲା । ତିନି ଚାରି ଫୁଟ ପରେ ପଥରଚଟାଣ ପଡ଼ିଲା । ଡିନାମାଇଟ୍ ଆଣି ସେ ପଥର ଉଡ଼ାଇଦେବାରୁ ପୁଣି ଦୁଇ ତିନିଫୁଟ୍ ମାଟି, ତାପରେ ପୁଣି ପଥର । ଏହିପରି ତିରିଶ ଫୁଟ ଖୋଳିବା ପରେ ପିଚ୍‌କାରି ମାରିଲା ପରି ପାଣି ଝରିଲା । କିନ୍ତୁ ଡିନାମାଇଟ୍ ମାଡ଼ରେ ପଥର ଦୁର୍ବଳଯାଇଥିବାରୁ କୂଅଟି ଭୁଶୁଡ଼ି ପଡ଼ିଲା । ସତୀଶବାବୁ ଠିକ୍ କଲେ ଏଥର ପୋଖରୀ ଖୋଳିବେ । ସେହି ଡିନାମାଇଟ୍ ସାହାଯ୍ୟରେ ପୋଖରୀ ଖୋଳି ସେ ବାଙ୍କୁଡ଼ାର ଅପାଣିଆ ରାଜ୍ୟରେ ପାତାଳ ଗଙ୍ଗାକୁ ଉପରକୁ ଆଣିଲେ ।

ଏଥର ଦେଖାଦେଲା କୃଷି ସମସ୍ୟା । ଯେଉଁ ମାଟିରେ ପାଣି ଢାଳିବା ମାତ୍ରେ ପାଣି ତଳକୁ ଶୋଷିହୋଇଯାଇ ଉପର ମାଟି ଶୁଖିଲା ଝର ଝର ହୋଇ ରହୁଛି, ସେଠାରେ ଗଛ ହେବ କିପରି ? ସତୀଶବାବୁ ମାଟି ଘାଣ୍ଟିବା ଆରମ୍ଭ କଲେ । ସେହି ଅଞ୍ଚଳର ମାଟିକୁ ପାଣିରେ ଗୋଳେଇ, ସେ ଗୋଳିଆ ପାଣିକୁ କିଆରିରେ ଢାଳି ନାନା ପ୍ରକାର ପ୍ରୟୋଗ କରି ସତୀଶବାବୁ ସେଠି ଗଛ ବଞ୍ଚେଇଲେ । ତାଙ୍କ କୁଡ଼ିଆ ଗୃହପଛ ହେଉଛି ପ୍ରୟୋଗଶାଳା । ଆମ୍ବ, ପିଜୁଳି, ଲେମ୍ବୁ, ଅର୍ଜୁନ, କାଜୁ, କୃଷ୍ଣଚୂଡ଼ା, ଇଉକାଲିପଟାସ୍ ନାନ ଜାତିର ଗୋଟିଏ ଦୁଇଟି ଲେଖାଁ ଗଛ ଲଗେଇ ସେ ପ୍ରୟୋଗ କରିଛନ୍ତି, ସେ ଗଛ ବଞ୍ଚିବ କି ନାହିଁ । ତାପରେ ଆରମ୍ଭ କରିଛନ୍ତି ଧାନ, ଗହମ ଓ ପନିପରିବା ଚାଷ । ବୈଶାଖ ମାସରେ ତାଙ୍କର ସେ ପ୍ରୟୋଗଭୂମି ଶସ୍ୟଶ୍ୟାମଳା ହୋଇ ରହିଛି । ବାଇଗଣ, ଭେଣ୍ଡି, କାକୁଡ଼ି ,ଲଙ୍କା ଆଦି ଯେଉଁ ପନିପରିବା ସେଠାରେ ସ୍ୱପ୍ନ ଥିଲି ସେ ସବୁ ଗଛରେ ଫଳ ଝୁଲୁଛି । ମୁଗ ମଧ୍ୟ ସେ ଏ ବର୍ଷ ନୂଆକରି ବୁଣିଛନ୍ତି । ତିରିଶ ବଘା ବନ୍ଧ୍ୟା ଜମିକୁ ଚାଷୋପଯୋଗୀ କରି ପଚିଶ ଜଣ ଲୋକ ଘିଅ, ତେଲ ଓ ପନିପରିବାରେ ସ୍ୱାବଲମ୍ବୀ ହୋଇସାରିଛନ୍ତି । କିଛି ଜମିରେ ଘାସ

ବଢ଼େଇ, ଗାଈ ରଖି ଗାଈର ଦୁଧ କପର ବଢ଼ିବ ସେ ଚେଷ୍ଟା ମଧ୍ୟ ଚଳାଇଛନ୍ତି । ସତୀଶ-ବାବୁଙ୍କର ଛଅବର୍ଷର ଅଖଣ୍ଡ ତପସ୍ୟା ପରେ ବର୍ତ୍ତମାନ ପଶ୍ଚିମବଙ୍ଗ ସରକାରଙ୍କ କୃଷି ବିଭାଗର ଲୋକେ ସେଠାରେ ସରକାରୀ ଫାର୍ମ କରିବା ପାଇଁ ଜମି ମାଗୁଥିବାର ଆମେ ଦେଖିଆସିଲୁ । ଗାଁଲୋକେ ମଧ୍ୟ ଏଣିକି ବିଶ୍ୱାସ କଲେଣି ଯେ ଯେଉଁ ଜମିକୁ ସେମାନେ ପୁରୁଷାନୁକ୍ରମେ ଟାଙ୍ଗର ଦେଖି ଆସିଛନ୍ତି ତାହା ବର୍ତ୍ତମାନ ଗୃଷୋପଯୋଗୀ ଭୂଇଁରେ ପରିଣତ ହୋଇପାରିବ । ବାରଟା ବେଳ ଖରାରେ ସତୀଶ ବାବୁ ଆମକୁ ନେଇ ତାଙ୍କ ପ୍ରୟୋଗ କ୍ଷେତ୍ର ଦେଖେଇଲେ । କୋଉ କିଆରୀରେ ପଦ୍ମାଧାନ ରୁଆ ହୋଇଛି, କେଉଁଠି ରୁଆ ଚାଲିଛି, କେଉଁଠି କିଆରୀ କାଦୁଅ ହେଉଛି । ପୋଖରୀରେ କେଉଁ ସ୍ତରରେ କପର ମାଟି ଓ ପଥର ପଡ଼ିଲି ସବୁ ସେ ବୁଲି ବୁଲି ଦେଖାଇଲେ—"ଦେଖିଲୁ ମା ଚମା ! ଦୁଇ ହଜାର ବର୍ଗମାଇଲ ଜମି । ଏକ ବର୍ଗମାଇଲ ଛଅଶହ ଚାଳିଶ ଏକର ସଙ୍ଗେ ସମାନ । ହିସାବ କରି ଦେଖେ କେତେ ଏକର ହେଲା । ଏ ଜମି ଯଦି ଶସ୍ୟଶ୍ୟାମଳା ହୋଇଯିବ, ବାଙ୍କୁଡ଼ାରେ ଆଉ ଦୁର୍ଭିକ୍ଷ, ବେକାର ସମସ୍ୟା ରହିବ ? ପ୍ରତ୍ୟେକ ଚାଷୀ ମାସକୁ ତିନିଶହ ଟଙ୍କା କମେଇବ । ପାଠୁଆ ପିଲା ଚାଷ କରିବାକୁ ଡରିବ ନାହିଁ । କେବଳ ବାଙ୍କୁଡ଼ାରେ ନୁହେଁ, ଭାରତର ସବୁଠାରୁ ଅଳ୍ପ ବର୍ଷା ହେଉଥିବା ପ୍ରଦେଶ ରାଜସ୍ଥାନରେ ସୁଦ୍ଧା ଏହି ପଦ୍ଧତିରେ ଚାଷହୋଇପାରିବ—କାରଣ ସେଠାରେ ବାରଇଞ୍ଚ ବର୍ଷା ହୁଏ । ଭାରତର ଯେ କୌଣସି ଅନୁର୍ବର ବନ୍ଧ୍ୟା ଜମିରେ ଫସଲ ଫଳେଇବାର କୌଶଳ ମୋର କରାୟତ୍ତ ହେଲଣି । ଯଦି ସମସ୍ତେ ଏ କାମରେ ଲାଗିପଡ଼ିବେ ଗାନ୍ଧୀଜୀଙ୍କର କ୍ଲାସଲେସ୍ ସୋସାଇଟି—ଶ୍ରେଣୀହୀନ ସମାଜର ସ୍ୱପ୍ନ ନିଶ୍ଚୟ ସଫଳହେବ ।"

ଏକୋଇଶି ବର୍ଷ ବୟସରେ ନିଜ ପ୍ରୟୋଗ କ୍ଷେତ୍ରରେ ଖରା କାକର ଖାଇ ଶ୍ରେଣୀହୀନ ସମାଜ ସ୍ଥାପନାର କାର୍ଯ୍ୟକ୍ରମରେ ନିମଗ୍ନ ସତୀଶ ବାବୁଙ୍କୁ ଓଡ଼ିଶା ଆସିବା ପାଇଁ ଆମନ୍ତ୍ରଣ ଦେଇ ଭାରକାନ୍ତ ଚିତ୍ତରେ ତାଙ୍କଠାରୁ ବିଦାୟନେଲି ।

## ୪୬ । ଶରଣାର୍ଥୀ-ସେବା

ନାସିକ ସର୍ବୋଦୟ ସମ୍ମିଳନୀରେ ପ୍ରସ୍ତାବ ଗୃହୀତ ହେଲା ଯେ ରାମକୃଷ୍ଣ ମିଶନ, ଭାରତ ସେବାଶ୍ରମ, ମାରଓ୍ୱାଡ଼ୀ ରିଲିଫ୍ ସୋସାଇଟି ପ୍ରଭୃତି ମୁଖ୍ୟତଃ ସଙ୍କଟତ୍ରାଣ କାମ କରୁଥିବା ସଂସ୍ଥାମାନେ ପୂର୍ବପାକିସ୍ଥାନରୁ ଭାରତକୁ ପଳେଇ ଆସିଥିବା ଶରଣାର୍ଥୀଙ୍କ ମଧ୍ୟରେ ସେବା କାମ କରିବେ । ଆମେମାନେ ଲୋକଙ୍କୁ ପୂର୍ବପାକିସ୍ଥାନରେ ଆଭ୍ୟନ୍ତରୀଣ ପରିସ୍ଥିତି ବୁଝାଇ ପୂର୍ବ-ପାକିସ୍ଥାନର ଆନ୍ଦୋଳନ ସପକ୍ଷରେ ଲୋକମତ ସୃଷ୍ଟି କରିବା କାମରେ ଲାଗିବୁ । ଜୟପ୍ରକାଶ ନାରାୟଣ ଓ ପ୍ରଭାବତୀ ବେନ୍ ପୂର୍ବପାକିସ୍ଥାନ ସମସ୍ୟା ପ୍ରତି ଦୃଷ୍ଟି ଆକର୍ଷଣ କରିବା ପାଇଁ ବିଦେଶ-ଯାତ୍ରା କରିବେ । ତଦନୁସାରେ ଆମେ କାମରେ ଲାଗିଲୁ ।

ଯେତେବେଳେ ଖବର ମିଳିଲା ଯେ ଶହଶହ ଶରଣାର୍ଥୀ କଲେରାରେ ମରୁଛନ୍ତି ଏବଂ ଏହା ମହାମାରୀ ରୂପ ଧାରଣକଲାଣି, ମୋ ମନ ଅସ୍ଥିର ହେଲା ସେଠାକୁ ଯାଇ କଲେରା ନିବାରଣ କାମ କରିବା ପାଇଁ । ଲକ୍ଷ ଲକ୍ଷ ଶରଣାର୍ଥୀ ଯେ ଭାରତରେ ଆଶ୍ରୟ ନେଇଥାନ୍ତି ଭାରତ ପକ୍ଷରେ ତାହା ଗୋଟିଏ ବଡ଼ ସମସ୍ୟା । ତାହା ସାଙ୍ଗକୁ ପୁଣି ଏ କଲେରାର ଆକ୍ରମଣକୁ ମୁଁ ମହାବିପଦ ମଣିଲି । ଏ ବିପଦକୁ ଦୂର କରିବା ପାଇଁ ଯାହାର ଯାହା ସାମର୍ଥ୍ୟ ଅଛି ତାହା ଅର୍ପଣକରି ଭାରତକୁ ସାହାଯ୍ୟ କରିବା କର୍ତ୍ତବ୍ୟ ବୋଲି ବିଚାରିଲି । ଏତିକିବେଳେ ସର୍ବସେବା ସଂଘରୁ ନିର୍ଦ୍ଦେଶ ଆସିଲା ଯେ ପଶ୍ଚିମବଙ୍ଗରେ ମହାମାରୀକୁ ଆୟତ୍ତ କରିବାପାଇଁ ରାଜ୍ୟସରକାର ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କ ସାହାଯ୍ୟ ଚାହୁଁଛନ୍ତି । ତେଣୁ ଯେଉଁମାନେ ଏ ପରିସ୍ଥିତିର ମୁକାବିଲା କରିବାକୁ ଚାହାଁନ୍ତି, ସେମାନେ ପଶ୍ଚିମବଙ୍ଗକୁ ଯାଆନ୍ତୁ । ଏହି ଅନୁମତି ମିଳିବାରୁ ମୁଁ ପଶ୍ଚିମବଙ୍ଗ ଯିବା ଆୟୋଜନ କଲି । ପ୍ରଥମେ ଶ୍ରୀ ବିରଜା ପ୍ରସାଦ ରାୟ ପଶ୍ଚିମବଙ୍ଗକୁ ଯାଇ ସରକାରଙ୍କ ସଙ୍ଗେ ଦେଖାକରି କେତୋଟି ଶରଣାର୍ଥୀ ଶିବିର ଦେଖିଆସିଲେ । ସେ ପଶ୍ଚିମ ଦିନାଜପୁରର ଜିଲ୍ଲା ମାଜିଷ୍ଟ୍ରେଟ ଓ ସିଭିଲ୍‌ସର୍ଜନଙ୍କ ସହିତ ମଧ୍ୟ ପରାମର୍ଶ କଲେ । ସଲଟ୍ ଲେକ୍ ପ୍ରଭୃତି କଲିକତାର ଆଖପାଖ ଅଞ୍ଚଳରେ କାମ ନ କରି ପୂର୍ବପାକିସ୍ଥାନର ସୀମାକୁ ଲାଗିଥିବା ଅଞ୍ଚଳକୁ ଯିବାକୁ ଆମେ ସ୍ଥିରକଲୁ—କାରଣ ସୀମାନ୍ତ ଅଞ୍ଚଳରେ ଅଧିକ ବିପଦର ସମ୍ଭାବନା ଥିବାରୁ ଅନ୍ୟ କୌଣସି ସେବା ସଂସ୍ଥା ସେଠାକୁ ଯାଇ ନଥିଲେ । ସେଠାରେ ଦିନକୁ ପ୍ରାୟ ଶହେ ଲୋକ ସେତେବେଳେ କଲେରାରେ ମରୁଥିଲେ । ଏ କାମ ପାଇଁ ସାଙ୍ଗରେ ଡାକ୍ତର ରହିବା ଦରକାର । ତେଣୁ କଟକ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜର କର୍ମକର୍ତ୍ତାଙ୍କୁ ଏ କଥା କହିବାରୁ ସଙ୍ଗେ ସଙ୍ଗେ ଦଶଜଣ ହାଉସ୍ ସର୍ଜନଙ୍କ ସହ ଡାକ୍ତର ଓ ଔଷଧ ପଶ୍ଚିମବଙ୍ଗ ଯିବାକୁ ବାହାରିଲେ । କସ୍ତୁରବା ସ୍ମାରକ ଟ୍ରଷ୍ଟର ନର୍ସିଂ ଜାଣିଥିବା କର୍ମୀ ପାଞ୍ଚଜଣ ଓ ସର୍ବୋଦୟ କର୍ମୀମାନଙ୍କ ସହ ଆମେ ତିରିଶ ଜଣ ପଶ୍ଚିମ ଦିନାଜପୁରକୁ କାମ କରିବାକୁ ଗଲୁ । ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ବିଶ୍ୱନାଥ ଦାସଙ୍କୁ ଆମେ ଯିବା କଥା କହିବାରୁ ସେ ତତ୍‌କ୍ଷଣାତ୍ ଦଶହଜାର ଟଙ୍କା ପଠେଇ ଦେଲେ । ୧୯୭୧ ମସିହା ଜୁନ୍ ପଚିଶ ତାରିଖରେ ଆମେ କଟକ ଛାଡ଼ିଲୁ ।

ମୁଁ ପୂର୍ବରୁ କଲେରା ନିବାରଣ କାମ କରିଥିଲି, ମାତ୍ର ଏତେ ବଡ଼ ବ୍ୟାପକ କ୍ଷେତ୍ରରେ ଏତେ ଜଣ ଡାକ୍ତର ନର୍ସଙ୍କୁ ନେଇ ସଂଗଠିତ ଭାବରେ ଏ କାମ ନୂଆକରି କଲି । ଏଥର କାମର ବିଶେଷତ୍ୱ ହେଲା ହିଲି ବ୍ଲକର ପଞ୍ଚାଅଶୀ ଖଣ୍ଡ ଗାଁରୁ ହଇଜାକୁ ତଡ଼ିବା ଓ ହଇଜା ରୋଗୀର ଚିକିତ୍ସା ବ୍ୟବସ୍ଥା କରିବା । ଏହି ବ୍ଲକରେ ପ୍ରାୟ ୨ଲକ୍ଷ ୧୧ହଜାର ଶରଣାର୍ଥୀ ଆସି ରହିଥାନ୍ତି । ସେମାନଙ୍କୁ କଲେରା ଟୀକା ଦେବା ହେଲା ପ୍ରଧାନ କାମ । ପୁଣି ଜିଲ୍ଲା କଲେକ୍ଟରଙ୍କ ଅନୁରୋଧରେ ଇସଲାମପୁରରେ ମଧ୍ୟ ଆମର କେତେଜଣ ଡାକ୍ତର କଲେରା ନିବାରଣ କାମରେ ଲାଗିଲେ । ଅଳ୍ପ ସମୟ ମଧ୍ୟରେ କୂଅଗୁଡ଼ିକୁ ବିଶୋଧନ କରାଗଲା ।

ପ୍ରତ୍ୟେକ ଗାଁର ଆବାଳବୃଦ୍ଧବନିତା ପ୍ରତ୍ୟେକଙ୍କୁ ପ୍ରତିଷେଧକ ଟୀକା ଦିଆଗଲା । କଲେରା ରୋଗୀଙ୍କ ଚିକିତ୍ସା ପାଇଁ ତମ୍ବୁ ପକାଇ ହାସପାତାଳ କରାଗଲା । ମହିଳା କର୍ମୀ ଥିବାରୁ ଘର ଭିତରକୁ ପଶି ମହିଳାମାନଙ୍କୁ ଓ ପିଲାମାନଙ୍କୁ ବୁଝାଇ ଟୀକା ଦେବା ସହଜ ହେଲା । ହଇଜା ବନ୍ଦହେଲା ।

ଏ କାମରେ 'ଅକ୍‌ସଫାମ୍' ସଂସ୍ଥା ଆମର ବଡ଼ ସହାୟକ ହେଲା । ସେମାନଙ୍କ ମନୋକେଟ୍ ସିରିଞ୍ଜରେ ଜଣେ ଲୋକ ଦିନରେ ଶହ ଶହ ରୋଗୀଙ୍କୁ ଟୀକା ଦେଇ ପାରୁଥାନ୍ତି । ଔଷଧ ଓ ପଥ୍ୟ ମଧ୍ୟ ସେମାନେ ଆଣି ଗଦେଇ ଦେଲେ । କଲେରା ଆୟତ୍ତାଧୀନ ହେବାରୁ ଅକ୍‌ସଫାମ୍ ସହିତ ମିଶି ଯୋଜନା କରି ଆମ ଡାକ୍ତର ଆଉଟ୍‌ଡୋର୍ ଆରମ୍ଭ କରି ଅନ୍ୟ ରୋଗୀଙ୍କୁ ଔଷଧ ଦେଲେ । କମପ୍ଲାନ୍, ପ୍ରୋଟିନୁଲ୍ ପ୍ରଭୃତି ପଥ୍ୟ ବାଣ୍ଟିଲେ । ଏହାର ଫଳ ତୁରନ୍ତ ଦେଖିବାକୁ ମିଳିଲା । ରୁଗ୍‌ଣ ପିଲା, ଏପରିକି ଯେଉଁମାନେ ଆସନ୍ନ ମୃତ୍ୟୁ ମୁଖରେ ପଡ଼ିଥିଲେ, ଆଶ୍ଚର୍ଯ୍ୟଜନକ ଭାବରେ ସେମାନଙ୍କ ସ୍ୱାସ୍ଥ୍ୟର ପରିବର୍ତ୍ତନ ହେବାର ଦେଖାଗଲା । ଅକ୍‌ସଫାମ୍ ଯେପରି ସହାନୁଭୂତିଶୀଳ ହୋଇ ତତ୍ପରତାର ସହିତ ଆବଶ୍ୟକ ଜିନିଷ ଯୋଗାଇଲେ, ଆମ କର୍ମୀଙ୍କ ପାଇଁ ତାହା ଶିକ୍ଷଣୀୟ ବିଷୟ ହେଲା ।

ଆମ ଦଳର ନାମ ଥିଲା ଓଡ଼ିଶା ରିଲିଫ୍ ପାର୍ଟି । ଦଳରେ ଥିବା ଡାକ୍ତର ଓ ଭିନ୍ନ ଭିନ୍ନ ସଂସ୍ଥାର ପୁରୁଷ ଓ ନାରୀକର୍ମୀମାନେ ଗୋଟିଏ ପରିବାର ଭଳି ଯେ ଚଳିଲୁ ଏହା ମୋ ପାଇଁ ଖୁବ୍ ଆନନ୍ଦଦାୟକ ହେଲା । ଆମେ ପାଞ୍ଚୋଟି ପ୍ରଦେଶର ଲୋକ ଏକାଠି ଭାରତ ଓ ପାକିସ୍ଥାନ ସୈନ୍ୟମାନଙ୍କର ଗୋଳା ବିନିମୟ ମଧ୍ୟରେ କାମ କରୁଥାଉ । ଆମ କାମ ଏତେ ବଢ଼ିଗଲା ଯେ ଶରଣାର୍ଥୀମାନଙ୍କ ମଧ୍ୟରୁ ଡାକ୍ତର କମ୍ପାଉଣ୍ଡରଙ୍କୁ ଖୋଜି କାମରେ ଲଗାଇଲୁ । ମୋଟରେ ଶହେ ଛଅସ୍ତରି ଜଣ ସ୍ୱେଚ୍ଛାସେବକ ସେଠାରେ ଔଷଧ ବାଣ୍ଟିବା, ଗୁଣ୍ଡଦୁଧ ବାଣ୍ଟିବା, ଟିଉବୱେଲ ଖୋଳାଇବା, ଲୁଗା କମ୍ବଳ ବାଣ୍ଟିବା ଆଦି କାର୍ଯ୍ୟରେ ଲାଗିଲୁ । ଅକ୍‌ସଫାମର ଫିଲଡ୍ ଡାଇରେକ୍ଟର ଶ୍ରୀ ଏଲେନ୍ ଲେଦର ଏତେ ସହାନୁଭୂତିଶୀଳ ଥିଲେ ଯେ ଆମର କୌଣସି ପରାମର୍ଶକୁ ସେ ଅଗ୍ରାହ୍ୟ କରୁନଥିଲେ । ତାଙ୍କର ସୌଜନ୍ୟ-ପୂର୍ଣ୍ଣ ବ୍ୟବହାର ଓ ଆନ୍ତରିକତା କେବେ ଭୁଲି ହେବ ନାହିଁ । ତାଙ୍କ ସାଙ୍ଗରେ ଏତେବେଶି ଘନିଷ୍ଠତା ଜନ୍ମିଥିବା ସତ୍ତ୍ୱେ ଓଡ଼ିଶା ରିଲିଫ ପାର୍ଟିର ଜଣେ ସ୍ୱେଚ୍ଛାସେବକ ତାଙ୍କର କ୍ୟାମେରାଟି ଚୋରାଇକରି ଧରାପଡ଼ିଲେ । ଆଉଥରେ ତାଙ୍କର ପୁରସ୍କାର ଟଙ୍କା ହଜିଲା । ଏଥିରୁ ଆମ ପରିଚାଳନାରେ ଯେ ତ୍ରୁଟିରହି ଯାଇଥିଲା, ତାହା ପ୍ରମାଣିତହେଲା ।

ଶରଣାର୍ଥୀମାନେ ଆମ ରହିବା ସ୍ଥାନର ଚାରିପାଖ ଓଦା ବାଲିରେ ଲୁଗା, ଟାରପୋଲିନ୍, ଗଛର ଡାଙ୍ଗ ରହିଥିଲେ । ତେଣୁ ସେମାନଙ୍କର ନିକଟ ସମ୍ପର୍କରେ ଆସିବାର ସୁଯୋଗ ଆମକୁ ମିଳିଥିଲା । ପୂର୍ବପାକିସ୍ଥାନରେ ସେମାନେ ପଶ୍ଚିମପାକିସ୍ତାନୀ ସୈନ୍ୟଙ୍କ ନିର୍ମମ ନିର୍ଯ୍ୟାତନା ଭୋଗି ଘରଦ୍ୱାର, ସମ୍ପତ୍ତିବାଡ଼ି, ଏପରିକି କେହି କେହି ସ୍ତ୍ରୀପିଲାଙ୍କଠାରୁ ବିଚ୍ଛିନ୍ନ ହୋଇ ପ୍ରାଣବିକଳରେ ଆସି ଦାରୁଣ ଦୁଃଖ ଭିତରେ କାଳ କାଟୁଥିଲେ । ଏତେ ଦୁଃଖ



ବଙ୍ଗଳାଦେଶ ଶରଣାର୍ଥୀ ସେବା ଶିବର, ପଶ୍ଚିମବଙ୍ଗ ହ୍ଵଲ ସୀମାନ୍ତରେ ।
ବାମରୁ : ପାର୍ବତୀ ସ୍ୱାଇଁ, ସ୍ନେହଲତା ପ୍ରଧାନ, ହ୍ଵଲ ବ. ଡ. ଓ., ମଙ୍ଗଳା ସେନ , ପାର୍ବତୀ ଦାସ, ରମା ଦେବୀ, ଅନ୍ନପୂର୍ଣ୍ଣା ମହାରଣା ।

ବମ୍ବେଠାରେ ଦାଦା ଧର୍ମାଧିକାରୀଙ୍କଠାରୁ ଜମ୍ନାଲାଲ ବଜାଜ ପୁରସ୍କାର ଗ୍ରହଣ ।



ରମାଦେବୀ, ଆଚାର୍ଯ୍ୟ ହରିହର ଓ ଗୋପବାବୁ



କସ୍ତୁରବା ସ୍ମାରକନିଧିର ସେବିକାମାନଙ୍କ ସହିତ ।
ବାଁରୁ : ଅନ୍ନପୂର୍ଣ୍ଣା ଦାସ, ରମାଦେବୀ, ରତ୍ନାଦେବୀ, ସୁମିତ୍ରା ଦେବୀ ଓ ଅନ୍ନପୂର୍ଣ୍ଣା ମହାରଣା

ଦୁର୍ଦ୍ଦଶା ସତ୍ତ୍ୱ ସୁଦ୍ଧା ଶେଖ୍ ମୁଜିବୁର ରହ୍‌ମନ୍‌ଙ୍କ ପ୍ରତି ସେମାନଙ୍କର ଶ୍ରଦ୍ଧା ଭାବନା ରହିଥିଲା । ଶରଣାର୍ଥୀ ଶିବିରର ଛୋଟ ପିଲାଙ୍କ ମୁହଁରେ ସୁଦ୍ଧା ଆମେ ଶୁଣୁଥିଲୁ "ଆମାର ସୋନାର ବାଂଲା, ଆମି ତୋମାୟ ଭାଲୋବାସି" । ଏ ଗୀତଟି ସେମାନେ ଏପରି ପ୍ରାଣର ଆବେଗରେ ବୋଲନ୍ତି ଯେ ସେଥିରୁ ମୁକ୍ତିସଂଗ୍ରାମ ପ୍ରତି ସେମାନଙ୍କର ଆନ୍ତରିକତା ପରିସ୍ଫୁଟ ହେଉଥାଏ । ଶୁଣିଲା ଲୋକର ମନରେ ମଧ୍ୟ ସେ ଗୀତ ସ୍ପନ୍ଦନ ଆଣିଦିଏ । ଅସ୍ୱାସ୍ଥ୍ୟକର ସ୍ଥାନରେ ରହି ଖାଦ୍ୟସାରଶୂନ୍ୟ ଖାଦ୍ୟ ଖାଇ ସେମାନଙ୍କର ଜୀବନୀଶକ୍ତି କ୍ଷୀଣ ହୋଇ ଯାଉଥାଏ । ସାନପିଲାମାନଙ୍କ ଭିତରେ ହାଡ଼ପଞ୍ଜରସାର ହୋଇଯାଇଥାନ୍ତି । ଲୁଗା ଓ ଘୋଡ଼େଇ ହେବା ଘୋଡ଼ଣୀ ଅଭାବ ହେତୁ ବର୍ଷା ଓ ଥଣ୍ଡା ସହିନପାରି ଯେ ବହୁତ ଶିଶୁ ମରିଯିବେ ତାହା ସ୍ପଷ୍ଟ ଜଣାପଡ଼ୁଥାଏ । ଜୀବନୀଶକ୍ତି କ୍ଷୀଣ ହେବା ସଙ୍ଗେ ସଙ୍ଗେ ସେମାନଙ୍କ ମନରେ ହତାଶଭାବ ମଧ୍ୟ ଦେଖାଦେଲା । ଭାରତ ସରକାର ସେମାନଙ୍କ ଶରୀର ରକ୍ଷା ପାଇଁ ସନ୍ତୁଳିତ ଖାଦ୍ୟ ଦେଉଥିଲେ । ସାହସ ଓ ଧୈର୍ଯ୍ୟ ଆଣିବା ପାଇଁ ଆମେ ଗାନ୍ଧୀଜୀଙ୍କ ଲେଖାର ଖଣ୍ଡେ ଛୋଟିଆ ବଙ୍ଗଳା ସଂକଳନ ଛପାଇ ସେମାନଙ୍କ ମଧ୍ୟରେ ବାଣ୍ଟିଲୁ । ଏ ଛୋଟିଆ ବହିଖଣ୍ଡିକୁ ଶରଣାର୍ଥୀମାନେ ବହୁତ ଆଦରର ସହିତ ଗ୍ରହଣ କରିଥିଲେ ଏବଂ ଗାନ୍ଧୀଜୀଙ୍କ ବିଷୟରେ ସବୁକଥା ଜାଣିବାର ଉତ୍ସୁକତା ସେମାନଙ୍କ ମଧ୍ୟରେ ଦେଖା ଦେଇଥିଲା ।

୧୯୭୧ ମସିହା ନଭେମ୍ବର ମାସରେ ଓଡ଼ିଶାରେ ସାମୁଦ୍ରିକ ତୋଫାନରେ ହଜାର ହଜାର ଲୋକଙ୍କର ମୃତ୍ୟୁ ଖବର ପାଇ ମୁଁ ଓଡ଼ିଶା ଫେରିଆସିଲି । କ୍ଷେତ୍ରବାସୀ ପତି, ଶ୍ୟାମସୁନ୍ଦର ବିଶ୍ୱାଳ, ଅନ୍ନପୂର୍ଣ୍ଣା ମହାନ୍ତି, ବୈଦେହୀ ପଣ୍ଡାଙ୍କ ଦେଖାଶୁଣାରେ ସେଠା କାମ ଚାଲିଲା । ଉତ୍କଳ ସର୍ବୋଦୟ ମଣ୍ଡଳ, ଉତ୍କଳ ଖଦୀମଣ୍ଡଳ, କସ୍ତୁରବା ଗାନ୍ଧୀ ରାଷ୍ଟ୍ରୀୟ ସ୍ମାରକ ଟ୍ରଷ୍ଟ, ଗୁଜୁରାଟର ଗାନ୍ଧୀ ବିଦ୍ୟାପୀଠର କର୍ମୀ ଓ ଛାତ୍ରମାନେ ପଶ୍ଚିମ ଦିନାଜପୁରରେ ବିଭିନ୍ନ ପ୍ରକାର ସେବାକାର୍ଯ୍ୟ ଚାଲୁରଖିଲେ । ଡିସେମ୍ବର ୩, ୧୯୭୧ରେ ପାକିସ୍ତାନ ଯୁଦ୍ଧଘୋଷଣା କରିବାରୁ ଏବଂ ତାହା ପୂର୍ବପାକିସ୍ତାନର ସୀମାନ୍ତବର୍ତ୍ତୀ ସ୍ଥାନ ହୋଇଥିବାରୁ, ରାଜ୍ୟ ସରକାର ଓଡ଼ିଶା ରିଲିଫ୍ ପାର୍ଟିର ମହିଳା କର୍ମୀମାନଙ୍କୁ ତୁରନ୍ତ ଅନ୍ୟତ୍ର ସ୍ଥାନାନ୍ତରିତ କଲେ । ଶରଣାର୍ଥୀମାନଙ୍କୁ ମଧ୍ୟ ତାହା ଅଞ୍ଚଳରୁ ପ୍ରାୟ ଅଶୀମାଇଲ ଦୂର ରାୟଗଞ୍ଜ ଚଙ୍ଗାରାମପୁର ଅଞ୍ଚଳକୁ ସ୍ଥାନାନ୍ତରିତ କରାଗଲା । ଓଡ଼ିଶା ରିଲିଫ ପାର୍ଟିର କର୍ମୀମାନେ ଶରଣାର୍ଥୀଙ୍କ ସହିତ ନୂଆ ସ୍ଥାନକୁ ଯାଇ ସେମାନଙ୍କ ସାହାଯ୍ୟଦାନ କାମ ଚାଲୁରଖିଲେ । ଦଶଦିନରେ ଯୁଦ୍ଧ ଶେଷହେଲା । ଯୁଦ୍ଧ ସରିବା ମାତ୍ରେ ୧୩ ଡିସେମ୍ବର, ୧୯୭୧ରେ ଶରଣାର୍ଥୀମାନେ ବାଂଲାଦେଶ ବା ପୂର୍ବପାକିସ୍ଥାନକୁ ଫେରିବାକୁ ଲାଗିଲେ । ଓଡ଼ିଶା ରିଲିଫ ପାର୍ଟିର କର୍ମୀମାନେ ସେମାନଙ୍କୁ ବାଂଲାଦେଶର ରଙ୍ଗପୁର, ବଗୁଡ଼ା ଆଦି ଜିଲାରେ ପହଞ୍ଚାଇ ଥଇଥାନର ବ୍ୟବସ୍ଥାରେ ଲାଗିଲେ । ଫେବୃୟାରୀ ୧୫, ୧୯୭୨ ମସିହା ସୁଦ୍ଧା ଏ କାମ ଶେଷ ହେବାରୁ କର୍ମୀମାନେ ଓଡ଼ିଶା ଫେରିଲେ । ଓଡ଼ିଶା ରିଲିଫ ପାର୍ଟି ପକ୍ଷରୁ ମୋଟ ୨୪,୯୧୭ ଜଣଙ୍କୁ କଲେରା ଟୀକା, ୩୨,୨୭୪ ଜଣଙ୍କୁ ବସନ୍ତ ଟୀକା ଦିଆଯାଇଥିଲା । ମୋଟ ୭୨,୦୭୧

ରୋଗୀ ଚିକିତ୍ସିତ ହୋଇଥିଲେ । ୫୫୦ ଜଣ ରୋଗୀ ତମ୍ବୁ ପକାଇ ତିଆରି ହୋଇଥିବା ହାସପାତାଳରେ ରହି ଚିକିତ୍ସିତ ହୋଇଥିଲେ । ଗୁରୋଟି ଦାତବ୍ୟ ଔଷଧାଳୟରେ ଡାକ୍ତରମାନେ ଔଷଧ ଦେଉଥିଲେ । ଗୃଳଶ ଜଣ ଗର୍ଭବତୀ ମହିଳାଙ୍କର ପ୍ରସବ କାର୍ଯ୍ୟ ସମାଧାନ ହୋଇଥିଲା । ପାନୀୟ ଜଳ ପାଇଁ ୪୨ଟି ଟିଉବ୍‌ୱେଲ୍ ଖୋଲାଯାଇଥିଲା । ୧୨୦୦ କୂଅ ବିଶୋଧିତ ହୋଇଥିଲା । ତିନୋଟି ପ୍ରାଥମିକ ବିଦ୍ୟାଳୟ ଗୁଲୁକରାଯାଇଥିଲା । ୪୧୫ ଜଣ ପିଲାଙ୍କୁ ଏହି ବିଦ୍ୟାଳୟରେ ୩ ଜଣ ଶିକ୍ଷକ ଶିକ୍ଷାଦେଉଥିଲେ । ଦୁଗ୍ଧବଣ୍ଟନ କେନ୍ଦ୍ରରେ ମୋଟ ୨୨୬୧ ଜଣ ପିଲାଙ୍କୁ ଆଉଟା ଗୁଣ୍ଡଦୁଧ ଦିଆ ଯାଉଥିଲା । ୪୫୦ ଜଣ ରୁଗ୍ଣ ପିଲାଙ୍କ ପାଇଁ ମଧ୍ୟାହ୍ନ ଭୋଜନ ବ୍ୟବସ୍ଥା ଥିଲା । ସତରଟି ପାଇଖାନା ତିଆରିକରାଯାଇଥିଲା । ଓଦା ଭୂଇଁରେ ଶୋଇଥିବା ପିଲାଙ୍କ ପାଇଁ ଶହ ଶହ ବାଉଁଶ ଖଟିଆ ତିଆରି ହୋଇ ଦିଆ ଯାଇଥିଲା । ୧୭,୪୩୫ ଖଣ୍ଡ ଶାଢ଼ୀ, ୧୯,୬୧୬ ଖଣ୍ଡ ଗେଞ୍ଜି, ୧୯୦୦ ଖଣ୍ଡ କମ୍ବଳ, ୨୫,୪୦୬ ଖଣ୍ଡ ଫ୍ରକ, ୨୧୨୦ ଖଣ୍ଡ ଗୁଦର, ୮୦୦ ଶତରଞ୍ଜି ସହିତ ସାର୍ଟ, ପ୍ୟାଣ୍ଟ, ଲୁଙ୍ଗି, ଧୋତି, କମ୍ବଳ, ସାବୁନ ଆଦି ବିତରଣ ହୋଇଥିଲା । ମୁଖ୍ୟତଃ ଅକସ୍‌ଫାମ ଆନୁମାନିକ କୋଡ଼ିଏ ଲକ୍ଷ ଟଙ୍କାର ସାମଗ୍ରୀ ଓ ଔଷଧ ପଥ୍ୟାଦି ଯୋଗାଇଦେଇଥିଲେ । ମୋଟ ୧୭୭ ଜଣ ସ୍ୱେଚ୍ଛାସେବକ ଏହି କାର୍ଯ୍ୟ ଗୁଲାଇଥିଲେ । ୨୨୦୦୦ ଶରଣାର୍ଥୀ ପରିବାରଙ୍କୁ ଏହି ସାହାଯ୍ୟ ଦିଆଯାଇଥିଲା ।

## ୪୩ । ସେହି ଗାନ୍ଧୀକଥା ଗୃଲୁଛି

୧୯୭୫ ମସିହା ଜୁନ୍ ୨୭ ତାରିଖ । ମୁଁ ସତ୍ୟଭାମାପୁରରେ ଥାଏ । ହଠାତ୍ ତାଳଗୁଡ଼ି ସମିତିର ଜଣେ କର୍ମୀ ଆସି ଖବର ଦେଲେ ଯେ ମନମୋହନ ଚୌଧୁରୀ ଟେଲିଫୋନରେ କହିଲେ—ଜୟପ୍ରକାଶ ନାରାୟଣ ଗିରଫ ହୋଇଗଲେଣି । ରମାଦେବୀଙ୍କୁ କୁହ ଉପରଓଳି ତିନଟାବେଳ 'ସୁଦ୍ଧା ସେ କଟକରେ ପହଞ୍ଚିଯାଆନ୍ତୁ । ଶିକ୍ସା ଖଣ୍ଡେ ଧରି ମୁଁ ଓ ମୋ ଝିଅ ସତ୍ୟଭାମାପୁରରୁ ବାହାରିଆସିଲୁ । ବାଟରୁ ଶ୍ରୀ ବିରଜା ପ୍ରସାଦ ରାୟ ତାଙ୍କ ଗାଡ଼ିରେ ମୋତେ କଟକ ଆଣିଲେ ।

ବାଟଯାକ ଭାବୁଥାଏ—"ବର୍ତ୍ତମାନ କର୍ତ୍ତବ୍ୟ କଣ ?" ଜୟପ୍ରକାଶଜୀ ଯେତେବେଳେ ବିହାରର ଛାତ୍ର ଆନ୍ଦୋଳନକୁ ନେତୃତ୍ୱ ଦେଲେ ଓ ବିହାରରେ ବ୍ୟାପକ ଭାବରେ ଆନ୍ଦୋଳନ ଆରମ୍ଭ ହେଲା, ସେତେବେଳେ ମନମୋହନ ସେ ଆନ୍ଦୋଳନରେ ଜଣେ ମୁଖ୍ୟ ହୋଇଥିଲେ ହେଁ, ମୋର ସେ ଆନ୍ଦୋଳନ ସହିତ କୌଣସି ସଂପର୍କ ନ ଥିଲା । କେବଳ ଜନସାଧାରଣ, ବିଶେଷରେ ଛାତ୍ରସମାଜ ଏହି ଆନ୍ଦୋଳନରେ ଅହିଂସାର ମର୍ଯ୍ୟାଦା ରକ୍ଷା କରି ଚଳୁଥିବାର ଲକ୍ଷ୍ୟ କରି ଏବଂ ସମ୍ପୂର୍ଣ୍ଣ କ୍ରାନ୍ତିର ଗଠନମୂଳକ କାର୍ଯ୍ୟଗୁଡ଼ିକ, ଯଥା

—ଜାତିଭେଦ ନିରାକରଣ, ଯୌତୁକପ୍ରଥା ଉଠାଇବା, ଗାଁ କଳି ଗାଁରେ ତୁଟାଇବା ଆଦି କାର୍ଯ୍ୟ ଗୁଡ଼ିକ କାର୍ଯ୍ୟକାରୀ ହେଉଥିବାର ଶୁଣି ମୁଁ ଟିକିଏ ଆତ୍ମପ୍ରସାଦ ଲାଭକରୁଥିଲି । ମାତ୍ର ୧୨ ଜୁନ୍‌ରେ ପ୍ରଧାନ ମନ୍ତ୍ରୀଙ୍କ ବିରୁଦ୍ଧରେ ଏଲାହାବାଦ ହାଇକୋର୍ଟର ରାୟ ଓ ଗୁଜୁରାଟ ନିର୍ବାଚନରେ ଜନତା ଦଳର ବିଜୟ ସମ୍ବାଦ ଏକା ଦିନକେ ଶୁଣିଥିଲେହେଁ ତାହା ମୋ ମନରେ ବିଶେଷ ରେଖାପାତ କରିନଥିଲା । ମାତ୍ର ବାଂଲାଦେଶ ସମସ୍ୟା, ବ୍ୟାଙ୍କ ଜାତୀୟକରଣ ରାଜାରାଜୁଡ଼ାଙ୍କ ଭତ୍ତାକାଟ ଆଦି ଅନେକ କାର୍ଯ୍ୟରେ ପ୍ରଧାନମନ୍ତ୍ରୀଙ୍କ ସହିତ ସକ୍ରିୟ ସହଯୋଗ କରିଥିବା ଜୟପ୍ରକାଶଜୀଙ୍କର ଗିରଫଦାରୀ ଖବର ମୋତେ ଟିକିଏ କିଂକର୍ତ୍ତବ୍ୟବିମୂଢ଼ କରିଦେଲା । ଦିଲ୍ଲୀରେ ଏପରି କି ଘଟଣା ଘଟିଲା ଯେଉଁଥିଯୋଗୁଁ ପ୍ରଧାନମନ୍ତ୍ରୀ ତାଙ୍କର ପରମହିତୈଷୀ ଜୟପ୍ରକାଶଙ୍କୁ ବନ୍ଦୀ କଲେ ତାହା ମୁଁ କଳିପାରିଲି ନାହିଁ । ଅବଶ୍ୟ ଭୁବନେଶ୍ୱର ରାଜଭବନରେ ପ୍ରଧାନମନ୍ତ୍ରୀ ଭୂମିହୀନମାନଙ୍କୁ ଜମି ପଟ୍ଟା ବାଣ୍ଟିବା ଉତ୍ସବରେ ମୋ ଉପସ୍ଥିତିରେ, ଏପରିକି ମୋ ଆଡ଼କୁ ଚାହିଁ, ଜୟପ୍ରକାଶଙ୍କୁ ଯାହା ସବୁ ଆକ୍ଷେପ କରି କହିଥିଲେ ଓ ଏ ରାଜ୍ୟର ମୁଖ୍ୟମନ୍ତ୍ରୀ, ଶ୍ରୀମାନ୍ ସୁରେନ୍ଦ୍ର ଦ୍ୱିବେଦୀ ଆଜି ଯେଉଁ ବିବୃତି ଦେଇଥିଲେ, ଜୟପ୍ରକାଶଜୀ ମଧ୍ୟ ତାଙ୍କର ଯେଉଁ ଆୟ ବ୍ୟୟ ହିସାବ ଦେଇଥିଲେ, ସେସବୁ ମୁଁ ଲକ୍ଷ୍ୟ କରିଥିଲି । ମାତ୍ର ରାଜନୀତିକ ଜଗତରେ ସେଗୁଡ଼ାକ ନିତି-ଦିନିଆ କାରବାର ହୋଇଥିବାରୁ ମୁଁ ସେଥିପ୍ରତି ବିଶେଷ ମନଧ୍ୟାନ ଦେଇନଥିଲି ।

ଗାଡ଼ି କାଠଯୋଡ଼ିକୂଳ ଘରେ ପହଞ୍ଚିଲାରୁ ଦେଖିଲି ସର୍ବଶ୍ରୀ ଡକ୍ଟର ମହତାବ, ନୀଳମଣି ରାଉତରାୟ, ବିଶ୍ୱନାଥ ପଣ୍ଡିତ, ସଂଗ୍ରାମ ମହାପାତ୍ର, ବିଶ୍ୱମ୍ଭର ସାମନ୍ତ, କୃଷ୍ଣଚନ୍ଦ୍ର ପାତ୍ର, ବିନୋଦ କାନୁନ୍‌ଗୋ ଆଦି ପ୍ରାୟ ତିରିଶ ଜଣ ହେବ ଏକାଠି ହୋଇଛନ୍ତି । ନବବାବୁ ସେଦିନ କଟକରେ ନଥାନ୍ତି ।

ଯୁଦ୍ଧକାଳୀନ ଜରୁରୀ ପରିସ୍ଥିତି କାଏମ୍ ଥାଉ ଥାଉ ନୂଆ ଜରୁରୀକାଳୀନ ପରିସ୍ଥିତି ଘୋଷଣା କରାଯାଇ କେବଳ ଜୟପ୍ରକାଶ ନୁହନ୍ତି—ମୋରାରଜୀ, ନାନାଜୀ ଆଦି ବିରୋଧୀ ଦଳର ନେତା ଓ ଶାସକ କଂଗ୍ରେସର ଚନ୍ଦ୍ରଶେଖର, ରାମଧନ ଆଦି ଗିରଫ ହେବା ଖବର ପାଇ ବୁଝାଗଲା ଯେ ବ୍ୟାପାର ସହଜ ନୁହେଁ । ହଠାତ୍ ଟେଲିଫୋନ୍‌ରେ ମହତାବବାବୁଙ୍କୁ ଡାକରା ଆସିଲା । ସେ ଟେଲିଫୋନରେ କଥାବାର୍ତ୍ତା କରି ଆସି କହିଲେ ଯେ ପ୍ରେସ୍ ଉପରେ କଟକଣା ଜାରି ହୋଇଗଲା ବୋଲି ପ୍ରଜାତନ୍ତ୍ର ପ୍ରେସ୍‌କୁ ଖବର ଆସିଛି । ମୁଁ ସେଠାକୁ ଯାଉଛି । ପରିସ୍ଥିତିର ଭୀଷଣତା ଆହୁରି ସ୍ପଷ୍ଟ ହୋଇଉଠିଲା ।

ଜନସାଧାରଣଙ୍କୁ ବର୍ତ୍ତମାନ ପରିସ୍ଥିତି ସମ୍ବନ୍ଧରେ ଅବହିତ କରିବାପାଇଁ ତୁରନ୍ତ ଖଣ୍ଡିଏ ପ୍ରଚାରପତ୍ର ବାହାରକରି ସାରା ଓଡ଼ିଶାରେ ସମ୍ପ୍ରସାରିତ କରିଦେବାପାଇଁ ଆମେ ସମସ୍ତେ ଏକମତ ହୋଇଗଲୁ । ଏହି ପ୍ରଚାରପତ୍ର କାହାର ସ୍ୱାକ୍ଷରରେ ବାହାରିବ ବୋଲି ପ୍ରଶ୍ନ ଉଠିବାରୁ, ମୋ ସ୍ୱାକ୍ଷରରେ ବାହାରିବ ବୋଲି ମୁଁ କହିଲି ଏବଂ ପ୍ରଚାରପତ୍ରରେ ଦସ୍ତଖତ କରିଲି । ସଙ୍ଗେ

ସଙ୍ଗେ ପ୍ରଚାରପତ୍ରର ଚିଠା ପ୍ରସ୍ତୁତହୋଇ ଗ୍ରାମସେବକ ପ୍ରେସକୁ ଛପିବା ପାଇଁ ଦିଆଗଲା । ସନ୍ଧ୍ୟା ସାତଟା ସୁଦ୍ଧା ହଜାର ହଜାର ପ୍ରଚାରପତ୍ର ପ୍ରସ୍ତୁତ ହୋଇଗଲା । ଝିପିରି ଝିପିରି ମେଘ ବରଷୁଥାଏ । ସହକର୍ମୀମାନେ ପ୍ଲାଷ୍ଟିକ ଖୋଳରେ ସେ ପ୍ରଚାରପତ୍ର ନେଇ କଟକରୁ ରାଜ୍ୟର ବିଭିନ୍ନ ଦିଗକୁ ଯାଉଥିବା ବସ୍ ଓ ଟ୍ରେନର ଯାତ୍ରୀଙ୍କ ଜରିଆରେ ସମଗ୍ର ଓଡ଼ିଶାରେ ପ୍ରଚାରପତ୍ର ଖେଳାଇଦେବାପାଇଁ ବାଦାମବାଡ଼ି ଓ କଟକ ରେଲ୍‌ୱେ ଷ୍ଟେସନକୁ ଚାଲିଗଲେ । ଯାତ୍ରୀମାନେ ଖବରକାଗଜ କିଣି କାଖରେ ଜାକି ଟିକଟ କିଣିବାରେ, ଜାଗା ଟିକିଏ ଦଖଲ କରିବାରେ ବ୍ୟସ୍ତ ଥାଆନ୍ତି । ଯେତେବେଳେ ଆମ ସହକର୍ମୀମାନେ ତାଙ୍କୁ ଏମରଜେନ୍‌ସି ଓ ଖବରକାଗଜ ଉପରେ କଟକଣା କଥା କହି ସେମାନଙ୍କୁ ପ୍ରଚାରପତ୍ର ଦେଲେ ସେମାନେ ଆବାକାବା ହୋଇ ସଡ଼କ ଆଲୁଅ ପାଖକୁ ଯାଇ ପ୍ରଜାତନ୍ତ୍ର ଖୋଲି ଦେଖିଲେ ଯେ ସମ୍ପାଦକୀୟସ୍ତମ୍ଭ ନାହିଁ । ସେତେବେଳେ ସେମାନେ ଅତି ଆଗ୍ରହରେ ପ୍ରଚାରପତ୍ର ନେଇ ନିଜ ଅଞ୍ଚଳରେ ବାଣ୍ଟିବା ପାଇଁ ରାଜିହୋଇଗଲେ । ଚବିଶ ଘଣ୍ଟା ମଧ୍ୟରେ ସାରା ଓଡ଼ିଶାରେ ଖବର ପହଞ୍ଚିଗଲା । ପ୍ରଚାରପତ୍ର ଏହି ପ୍ରକାର ଥିଲା—

## ‘ସମସ୍ତେ ଧ୍ୟାନ ଦିଅନ୍ତୁ’

“ଆଜି ସକାଳୁ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ସରକାର ଦେଶରେ ନୂତନ ଜରୁରୀକାଳୀନ ପରିସ୍ଥିତି ଘୋଷଣା କରି ସବୁ ଖବରକାଗଜମାନଙ୍କରେ ଖବର ବାହାରିବା ଉପରେ କଟକଣା ଜାରିକରିଛନ୍ତି । ସେଥିପାଇଁ ଆପଣ ଆଜି ଖବରକାଗଜରୁ ପ୍ରକୃତ ଖବର ପାଇବେନାହିଁ । ରେଡ଼ିଓରେ ତ ବରାବର ମିଥ୍ୟା ପ୍ରଚାର ଚାଲିଛି । ତେଣୁ ଏ ବୁଲେଟିନ୍ ।

ନୂଆ ଜରୁରୀକାଳୀନ ପରିସ୍ଥିତିଦ୍ୱାରା ସରକାର ଯାହାକୁ ଇଚ୍ଛା ତାକୁ ଗିରଫ କରି ଅଟକ ରଖିବା କ୍ଷମତା ନେଇଛନ୍ତି । ଏ ଅନୁସାରେ ଶ୍ରୀ ଜୟପ୍ରକାଶ ନାରାୟଣ ଓ ବିରୋଧୀ ଦଳର ନେତା ସର୍ବଶ୍ରୀ ମୋରାରଜୀ ଦେଶାଇ, ରାଜନାରାୟଣ, ଅଟଳ ବିହାରୀ ବାଜପେୟୀ, ଆଡ଼ୱାନୀ, ଶ୍ୟାମନନ୍ଦନ ମିଶ୍ର, ଜ୍ୟୋତିର୍ମୟ ବସୁ, ସମର ଗୁହ, ପିଲୁ ମୋଦୀ, ଚରଣ ସିଂହ, ଜର୍ଜ ଫର୍ଣ୍ଣାଣ୍ଡିସ୍ ପ୍ରଭୃତିଙ୍କୁ ଓ କଂଗ୍ରେସ ଦଳର କାର୍ଯ୍ୟକାରୀ କମିଟିର ସଦସ୍ୟ ଶ୍ରୀ ଚନ୍ଦ୍ରଶେଖର, କଂଗ୍ରେସ ପାର୍ଲାମେଣ୍ଟାରୀ ଦଳର ସମ୍ପାଦକ ଶ୍ରୀ ରାମଧନ ପ୍ରମୁଖଙ୍କୁ ଗିରଫ କରାଯାଇଛି । ଖବରକାଗଜମାନଙ୍କରେ ଗିରଫଦାରୀ ଓ ପ୍ରତିବାଦ ଆଦିର ଖବର ପ୍ରକାଶ କରାଯାଇ ପାରିବ ନାହିଁ ଓ ସବୁ ଖବର ସରକାରୀ ଯାଞ୍ଚ ଅଫିସରଙ୍କ ଅନୁମତିଦ୍ୱାରା ହିଁ ପ୍ରକାଶ କରାଯାଇ ପାରିବ ବୋଲି ଆଦେଶ ଜାରିହୋଇଛି । ଏହା ଦ୍ୱାରା ଏ ଦେଶରେ ବସ୍ତୁତଃ ଏକଛତ୍ରବାଦ ଜାରିହେଲା । କଂଗ୍ରେସ ଦଳ ଭିତରେ ଥିବା ଗଣତନ୍ତ୍ରର ସମର୍ଥକଙ୍କୁ ଗିରଫ କରିବା ଦ୍ୱାରା ଏକଥା ଏବେ ଜଳଜଳ ଦେଖାଯାଉଛି ।

"କାଲି ଦିଲ୍ଲୀରେ ଏକ ଅଭୂତପୂର୍ବ ଜନତା ସଭାରେ ଭାଷଣ ଦେଇ ଶ୍ରୀ ଜୟପ୍ରକାଶ ନାରାୟଣ ଘୋଷଣା କରିଥିଲେ ଯେ ଆସନ୍ତା ୨୯ ତାରିଖରୁ ଦେଶସାରା ଶ୍ରୀମତୀ ଗାନ୍ଧୀଙ୍କ ଇସ୍ତଫା ଦାବୀ ଜନିତ ଆନ୍ଦୋଳନ ଚାଲିବ । ଏବେ ନଗ୍ନ ଏକଛତ୍ରବାଦ ବିରୋଧରେ ଲଢ଼ିବା ପାଇଁ ଦେଶବାସୀଙ୍କୁ ଅଣ୍ଟା ଭିଡ଼ିବାକୁ ହେବ ।"

ଜୁନ୍ ୨୭ ତାରିଖକୁ ଏହି ଗିରଫଦାରୀ ଓ ଏମରଜେନ୍‌ସିର ପ୍ରତିବାଦ ସଭା କରିବା କଥା ସ୍ଥିର ହେଲା । କଟକ ସହରର ସଡ଼କ ଓସାର କରିବା ପାଇଁ ସେ ସମୟରେ ଘରଭଙ୍ଗା କାର୍ଯ୍ୟକ୍ରମ ସରକାରଙ୍କ ପକ୍ଷରୁ ଚାଲିଥିଲା । ମୁଁ ଅସୁସ୍ଥ ଥିବା ହେତୁ ସେ ବିଷୟରେ ବିଶେଷ କିଛି ଖବର ରଖିପାରି ନ ଥାଏ । ସେହି ଘରଭଙ୍ଗାର ପ୍ରତିବାଦ ସଭା ୨୭ ତାରିଖରେ କରିବା ପାଇଁ ସଂଗ୍ରାମବାବୁ ପ୍ରଭୃତି ପ୍ରଚାର କରିଥାନ୍ତି । ସେହି ସଭାରେ ଏହି ଗିରଫଦାରୀର ମଧ୍ୟ ପ୍ରତିବାଦ କରିବା ସ୍ଥିର ହୋଇ ଆମ ଆଲୋଚନା ସଭା ସରିଗଲା ।

ମନରେ କିଛି ଶାନ୍ତି ନଥାଏ । ମାଳତୀ ଦେବୀ ଓ ନବବାବୁ କଟକରେ ନ ଥିବା ହେତୁ ସେ ଦୁହିଁଙ୍କ ସଙ୍ଗେ ପରାମର୍ଶ କରି ନ ପାରି ଅସ୍ୱସ୍ତି ବୋଧହେଉଥାଏ । ୧୯୪୨ ଅଗଷ୍ଟ ନଅ ତାରିଖ ଦିନ ସମସ୍ତେ କିପରି ଏକା ସାଙ୍ଗରେ ଗିରଫ ହୋଇ ଯାଇଥିଲୁ, ସେ କଥା ମନେ ପଡ଼ି ଯାଉଥାଏ । ସବୁଠାରୁ ବେଶି ମନେପଡ଼ୁଥାଏ ଗାନ୍ଧୀଙ୍କ କଥା, ଦିଶିଯାଉଥାଏ ଗାନ୍ଧୀଙ୍କ ମୁହଁ ।

୧୯୪୪ ମସିହାରେ ଆମେ ସବୁ ଜେଲରୁ ବାହାରିବା ପରେ ଚରଖା ସଂଘ ବୈଠକରେ ଗାନ୍ଧୀଜୀ କହିଥିଲେ ଯେ ସ୍ୱରାଜ ଆସୁଛି ମାତ୍ର ତାହା ମୋ ପରିକଳ୍ପିତ ସ୍ୱରାଜ ନୁହେଁ । ମୋ ସ୍ୱରାଜ ପାଇଁ ପୁଣି ଥରେ ଲଢ଼ିବାକୁ, ଜନଶକ୍ତିକୁ ସଂଗଠିତ କରିବାକୁ ହେବ । ଏ କଣ ସେହି ବେଳ ଆସିଗଲା ? ଦେଶ ସ୍ୱାଧୀନ ହେବା ପରେ ? ୧୯୪୮ ମସିହା ଜାନୁଆରୀ ୨୯ ତାରିଖ ଦିନ ଗାନ୍ଧୀଜୀ ତାଙ୍କର ଶେଷ ଇଚ୍ଛାପତ୍ରରେ ଲେଖିଥିଲେ ଯେ—"ଭାରତରେ ଏବେ ମଧ୍ୟ ସାମାଜିକ, ନୈତିକ ଓ ଆର୍ଥିକ ସ୍ୱାଧୀନତା ଅର୍ଜନ କରିବାର କାମ ବାକି ଅଛି । ଗଣତାନ୍ତ୍ରିକ ଲକ୍ଷ୍ୟ ଦିଗରେ ଭାରତ ଗତିକରୁଥିବାବେଳେ ସାମରିକ ଶକ୍ତି ଉପରେ ଜନ-ଶକ୍ତିର ବିଜୟ ପାଇଁ ଆନ୍ଦୋଳନ ହେବ ହିଁ ହେବ ।" ଗାନ୍ଧୀଜୀଙ୍କର ସେହି ଭବିଷ୍ୟତ୍‌ବାଣୀ କ'ଣ ସତ୍ୟ ହେଲା ? ଗାନ୍ଧୀଜୀ ଚାହିଁଥିଲେ ଭାରତର (ଅବିଭକ୍ତ) ସାତଲକ୍ଷ ଗାଁରେ ସାତଲକ୍ଷ ଯୁବକ ଯୁବତୀ ଗଣତନ୍ତ୍ରର ଅତନ୍ଦ୍ର ପ୍ରହରୀ ହୋଇ ରହିବେ । ଆମେ ତ ସେ ସଙ୍ଗଠନ କରି ପାରିଲୁ ନାହିଁ । ଏ ଦେଶବାସୀ କଣ ପୁଣି ଥରେ ସ୍ୱାଧୀନତା ହରାଇ ପୁଣି ମୂକ ଜଡ଼ ହୋଇ ପଶୁବତ୍ ଜୀବନ କଟାଇବେ ? ସହକର୍ମୀମାନେ ଛବିଶ ତାରିଖ ରାତି ସାରା ବର୍ଷାରେ ଭିଜିବୁଡ଼ି ବୁଲେଟିନ ବାଣ୍ଟୁଥାନ୍ତି । ରାତିସାରା ମୋ ମନରେ ଏହି ଅନ୍ତର୍ଦ୍ୱନ୍ଦ୍ୱ ଚାଲିଥାଏ ।

ରାତି ପାହିଲା । ନବବାବୁ ଅନୁଗୁଳରୁ ଆସିଲେ । ମାଳତୀ ଦେବୀ ଆସିଲେ ନାହିଁ । ଉପରଓଳି ନବବାବୁଙ୍କ ଉପସ୍ଥିତିରେ ପୁଣି ଆଲୋଚନା ସଭା ହୋଇ ଆମ ଦୁହିଁଙ୍କ ସ୍ୱାକ୍ଷରରେ ଦ୍ୱିତୀୟ ବୁଲେଟିନ୍ ବାହାରିଲା—

## 'ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କର ଏକଛତ୍ରବାଦର ବିରୋଧ କରନ୍ତୁ'

"ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ସରକାର କାଲି ଏ ଦେଶରେ ଏକ ନୂତନ ଜରୁରୀକାଳୀନ ପରିସ୍ଥିତି ଘୋଷଣା କରି ନିଜ ହାତକୁ ବିଶେଷ କ୍ଷମତା ନେଇଛନ୍ତି । ଏହା ବଳରେ ଖବର-କାଗଜମାନଙ୍କରେ ଖବର ଯାଞ୍ଚକରି କେବଳ ତାଙ୍କୁ ସୁହାଇବା ଭଳି ଖବର ସରକାର ଛପିବା ପାଇଁ ଅନୁମତି ଦେବା ବ୍ୟବସ୍ଥା କରିଛନ୍ତି ଓ ଦେଶସାରା ଗିରଫଦାରୀ ଆରମ୍ଭ କରି ଦେଇଛନ୍ତି । କାଲି ଶ୍ରୀ ଜୟପ୍ରକାଶ ନାରାୟଣ ଓ ସର୍ବଶ୍ରୀ ମୋରାରଜୀ ଦେଶାଇ, ରାଜନାରାୟଣ, ଚରଣ ସିଂହ, ଅଶୋକ ମେହେଡା, ପିଲୁ ମୋଦୀ, ଜର୍ଜ ଫର୍ଣ୍ଣାଣ୍ଡିସ୍, ବିଜୁ ପଟ୍ଟନାୟକ, ଅଟଳ ବିହାରୀ ବାଜପେୟୀ, ଏଲ୍. କେ. ଆଡ୍‌ଭାନି ପ୍ରମୁଖ ବିରୋଧୀ ଦଳର ନେତା, ସର୍ବୋଦୟ ନେତା ଶ୍ରୀ ସିଦ୍ଧରାଜ ଢଢ୍ଢା ଓ ଶହ ଶହ ଅନ୍ୟାନ୍ୟ ଲୋକ ଗିରଫ ହୋଇଛନ୍ତି । ଆକାଶବାଣୀ ମିଥ୍ୟା ପ୍ରଚାର ଚଳାଇଥିବାରୁ ଓ ଖବରକାଗଜରେ ସମ୍ବାଦ ପ୍ରକାଶ ଉପରେ କଟକଣା ଯୋଗୁଁ ସବୁ ଆଡ଼ର ଖବର ପାଇବା ଅସମ୍ଭବ ପ୍ରାୟ ହୋଇଛି । କଂଗ୍ରେସ କାର୍ଯ୍ୟକାରୀ କମିଟିର ସଦସ୍ୟ ଶ୍ରୀ ଚନ୍ଦ୍ରଶେଖର ଓ କଂଗ୍ରେସ ପାର୍ଲାମେଣ୍ଟାରୀ ଦଳର ଅନ୍ୟତମ ସମ୍ପାଦକ ଶ୍ରୀ ରାମଧନ ମଧ୍ୟ ଗିରଫ ହୋଇଛନ୍ତି ।

"ଏହାଦ୍ୱାରା ଶ୍ରୀମତୀ ଗାନ୍ଧୀ ନିଜ ହାତକୁ ଏକଛତ୍ର ଶାସନ କ୍ଷମତା ନେଇଛନ୍ତି ଓ ଦେଶର ଗଣତନ୍ତ୍ରର ଓ ଲୋକଙ୍କର ନାଗରିକ ସ୍ୱାଧୀନତାର କଣ୍ଠରୋଧ କରିଛନ୍ତି । ଦେଶର ସୁରକ୍ଷା ପ୍ରତି ଆଭ୍ୟନ୍ତରୀଣ ବିପଦର ଆଶଙ୍କା ଯୋଗୁଁ ଏହା କରାଯାଇଛି ବୋଲି ସୂଚେଇଦିଆଯାଇଛି । ମାତ୍ର କଂଗ୍ରେସ ଦଳର ହିଁ ଉଚ୍ଚପାହ୍ୟାର ନେତାଙ୍କ ଗିରଫଦାରୀ ଦ୍ୱାରା ଏହା ସ୍ପଷ୍ଟ ହୋଇଛି ଯେ ଦେଶପ୍ରତି ବିପଦର ଆଶଙ୍କା ନୁହେଁ, ପ୍ରଧାନମନ୍ତ୍ରୀଙ୍କର କ୍ଷମତାଲାଳସା ହିଁ ଏହାର ଅସଲ କାରଣ । ସେଥିପାଇଁ ଜୟପ୍ରକାଶ ନାରାୟଣ ବହୁ ପୂର୍ବରୁ ଯେଉଁ ସତର୍କବାଣୀ ଦେଶବାସୀଙ୍କୁ ଶୁଣାଇ ଆସିଛନ୍ତି ତାହା ଯେ ନିରାଟ ସତ୍ୟ, ତାହା ଏହା ଦ୍ୱାରା ସାବ୍ୟସ୍ତ ହେଲା । ଇନ୍ଦିରାଗାନ୍ଧୀଙ୍କ ସରକାରଙ୍କର ଏହି ପଦକ୍ଷେପ ଏ ଦେଶର ଜନତା ପ୍ରତି ଏକ ଆହ୍ୱାନ ଓ ମହାତ୍ମା ଗାନ୍ଧୀଙ୍କ ଡାକରାରେ ଦେଶର ସ୍ୱାଧୀନତା ପାଇଁ ରକ୍ତ ଦେଇଥିବା ଏ ଦେଶର ଜନତା ଯେ ତାହା ଉପରେ ଏ ଆକ୍ରମଣକୁ ମୁଣ୍ଡପାତି ସହି ନେବେ ନାହିଁ ଏହା ଆମର ଦୃଢ଼ ବିଶ୍ୱାସ । ଜୟ-ପ୍ରକାଶଙ୍କ ପନ୍ଥାରେ ପୂର୍ଣ୍ଣ ବିପ୍ଳବ ପାଇଁ ସଂଗଠିତ ହେବା ଓ ସଂଗ୍ରାମ କରିବା ଏଥିରୁ ମୁକ୍ତିର ଏକମାତ୍ର ପନ୍ଥା । ସେଥିପାଇଁ ଓଡ଼ିଶାର ଜନସାଧାରଣଙ୍କୁ ଅଣ୍ଟା ଭିଡ଼ିବାକୁ ଆମେ ନିବେଦନ କରୁଛୁ ।

"ଜୁନ ୨୯ ତାରିଖଠାରୁ ଦେଶବ୍ୟାପୀ ଶାନ୍ତିପୂର୍ଣ୍ଣ ଆନ୍ଦୋଳନ କରିବା ପାଇଁ ଜୟ-ପ୍ରକାଶଜୀଙ୍କ ନେତୃତ୍ୱରେ ଅଖିଳ ଭାରତ ଜନସଂଘର୍ଷ ସମିତି ସ୍ଥିର କରିଛନ୍ତି । ଏବେ ଆଉ କେବଳ ପ୍ରଧାନମନ୍ତ୍ରୀଙ୍କ ଇସ୍ତଫା ଦାବୀ ପ୍ରଶ୍ନ ନାହିଁ । ଏକଛତ୍ର ଶାସନ ବିରୋଧରେ ଓ ପୂର୍ଣ୍ଣ ବିପ୍ଳବ ପାଇଁ ଏହି ଜୁନ୍ ୨୯ ତାରିଖରୁ ସାରା ଓଡ଼ିଶାରେ ଲୋକଙ୍କୁ ବର୍ତ୍ତମାନର ପରିସ୍ଥିତି

କ୍ରୁଷ୍ଟାଇବା ଓ ସଂଗ୍ରାମ ସମିତି ମାଧ୍ୟମରେ ସଂଗଠିତ କରିବା ଉଦ୍ୟମ ଆରମ୍ଭ କରାଯାଉ । ଏଥିପାଇଁ ବଜାର, ଛକ ଓ ଗାଁଗହଳିରେ ସବଂଜ ସଭା କରାଯାଉ । ସରକାରଙ୍କ ପକ୍ଷରୁ ସଭା ଓ ଶୋଭାଯାତ୍ରା ଆଦି ଉପରେ କଟକଣା ଜାରି କରାଗଲେ ତାହା ଭଙ୍ଗ କରିବାର ବ୍ୟବସ୍ଥା କାର୍ଯ୍ୟକ୍ରମ କରାଯାଉ, ଆଗକୁ କାର୍ଯ୍ୟକ୍ରମ ଏହାପରେ ଯଥା ସମୟରେ ଦିଆଯିବ ।"

ଇତି ମଧ୍ୟରେ କଟକ ସହରରେ ୧୪୪ ଧାରା ଜାରି ହୋଇଗଲା । ପୂର୍ବ ଘୋଷଣା ଅନୁସାରେ ଗୌରୀଶଙ୍କର ପାର୍କ (କଟକ)ରେ ସଭା ହେବା କଥା । ସଭାର ଆବାହକ ଶ୍ରୀ ସଂଗ୍ରାମ ମହାପାତ୍ରଙ୍କ ସଙ୍ଗେ ସର୍ବଶ୍ରୀ ବିଜୟା ପ୍ରସାଦ ରାୟ, ସୁରେନ୍ଦ୍ର ମହାନ୍ତି, ଶ୍ୟାମଳୀ ମହାପାତ୍ର ପ୍ରମୁଖ ଆଠଜଣ ସଭାରେ ବକ୍ତୃତା ଦେଇ ଗିରଫ ହେଲେ । ଏହା ହିଁ ଓଡ଼ିଶାରେ ପ୍ରଥମ ଗିରଫଦାରୀ । ଏଣେ ସର୍ବଶ୍ରୀ କ୍ଷେତ୍ରବାସୀ ପତି, ବିନୋଦ ମହାନ୍ତି, ପ୍ରଶାନ୍ତ ମିଶ୍ର ଆଦି ବହୁ ସ୍ୱେଚ୍ଛାସେବକ ଗୁପ୍ତଭାବେ ବୁଲେଟିନ୍ ପଠଉଥାନ୍ତି । ଏହିସବୁ ବୁଲେଟିନ୍‌ରେ ଗ୍ରାମସେବକ ପ୍ରେସ୍‌ର ନାମ ଦିଆଯାଇଥିବାରୁ ଜୁନ୍ ୨୮ ତାରିଖରେ ସରକାର ପ୍ରେସ୍‌କୁ ବନ୍ଦ କରିଦେଇ ପୁଲିଶ ଜଗୁଆଳି ରଖାଇଦେଲେ ।

ଏଣେ ଜୁନ୍ ୨୯ ତାରିଖରେ ସତ୍ୟାଗ୍ରହ ଆରମ୍ଭ ହେବା କଥା । କେତେକ ବନ୍ଧୁ ମତ ଦେଲେ ଯେ ୩୦।୬ରେ ସତ୍ୟାଗ୍ରହ ଆରମ୍ଭ କଲେ ଭଲ ହେବ । କଟକର କେତେକ ଭଦ୍ର ବ୍ୟକ୍ତି ସ୍ୱତଃପ୍ରବୃତ୍ତ ହୋଇ ଆସି କହିଲେ ଯେ ସେଦିନ କଲେକ୍ଟରେଟ୍ ଆଗରେ ସତ୍ୟାଗ୍ରହ ଚଳାଇବା ଦାୟିତ୍ୱ ଆମେ ନେଉ । ତେଣୁ ସେଦିନ ଆଉ ଯେଉଁମାନେ କଟକରେ ସତ୍ୟାଗ୍ରହ କରିବା କଥା ସେମାନେ ଅନ୍ୟତ୍ର ଗଲେ ପ୍ରଚାର କାର୍ଯ୍ୟରେ । ମୁଁ ମଙ୍ଗଳା ସେନ୍‌ଙ୍କୁ ସାଙ୍ଗରେ ନେଇ ଛତିଆ ଚାଲିଗଲି । ଛତିଆରେ ସଭା କରିବାର ପ୍ରୟାସ କରି ଲୋକେ କିପରି ଆତଙ୍କିତ ହୋଇଛନ୍ତି ତାହାର ଅନୁଭବ ପାଇଲି । ସେ ଅଞ୍ଚଳର ଅତି ପରିଚିତ ବାମପନ୍ଥୀ ମନୋଭାବାପନ୍ନ ବ୍ୟକ୍ତି ମଧ୍ୟ ସେଦିନ ମୋତେ ସେଠାରେ ଦେଖି ଭୟଭୀତ ହେଲେ । ତଥାପି ଲୋକଙ୍କ ମଧ୍ୟରେ ପ୍ରଚାରପତ୍ର ବାଣ୍ଟି, କଥାବାର୍ତ୍ତା କରି ଅମେ ଫେରିବା ବେଳକୁ ଜାଣିଲୁ ଯେ ଉକ୍ତ ଭଦ୍ରବ୍ୟକ୍ତିମାନେ କଲେକ୍ଟରେଟ୍ ଠାରେ ସତ୍ୟାଗ୍ରହ ତ କଲେ ନାହିଁ, ଓଲଟି କେତେକ ବିଶେଷ ସଂବାଦ ପୁଲିସକୁ ଯୋଗାଇଦେଲେ ।

ଏହାପରେ ମନମୋହନ, ମଦନମୋହନ ସାହୁ, ଅନାଦି ନାୟକ, ବିନୋଦ ମହାନ୍ତି, ନବବାବୁ ଆଦି ସର୍ବୋଦୟ କର୍ମୀଙ୍କ ଗିରଫଦାରୀ ଆରମ୍ଭ ହୋଇଗଲା । ସେମାନଙ୍କୁ **MISA**ରେ ବନ୍ଦୀ କରାଗଲା । ମାଳତୀ ଦେବୀ ଅନୁଗୁଳରୁ ଆଉ କଟକ ନ ଆସି ସମ୍ବଲପୁର ଯାଇ ଗୋଟିଏ ସହରତଳି ଜାଗାରେ ଛପିରହି ସେ ଅଞ୍ଚଳରେ ଲୋକଙ୍କ ସଙ୍ଗେ ସମ୍ପର୍କ ସ୍ଥାପନ କରିବା ସଙ୍ଗେ ସଙ୍ଗେ "ସଂଗ୍ରାମ" ନାମକ ବୁଲେଟିନ୍ ବାହାରକରି ଗୁପ୍ତଭାବେ ସଂପ୍ରସାରିତ କଲେ । ବର୍ଷା ଦିନରେ ନାନା ଅସୁବିଧା ମଧ୍ୟରେ ଛନ୍ଦବୁଦ୍ଧି କାମ କରିବା ଫଳରେ ସେ ଜ୍ୱରରେ ପଡ଼ି ଆସି ଜଣେ ଡାକ୍ତର ବନ୍ଧୁଙ୍କ ଘରେ ଚିକିତ୍ସିତ ହେଲେ ଓ ଅନୁଗୁଳ ଫେରିଆସି "ସଂଗ୍ରାମ" ପ୍ରଚାର କାର୍ଯ୍ୟ ଅବ୍ୟାହତ ରଖିଲେ । ଏହି "ସଂଗ୍ରାମ" ସାଙ୍ଗକୁ

କଟକରୁ ମଧ୍ୟ ଶ୍ରୀମଦେନ ସାଗ୍ରରଙ୍କ ଚିଠି, ଜର୍ଜ ଫର୍ଣ୍ଣାଣ୍ଡିସ୍‌ଙ୍କ ବବୃତି, ମୋହନ ଧାରିଆଙ୍କ ପାର୍ଲମେଣ୍ଟ ବକ୍ତୃତା, ନ୍ୟାୟମୂର୍ତ୍ତି ଚଗଲଙ୍କ ବକ୍ତୃତା ଆଦି ନାନା ବୁଲେଟିନ୍‌ର ପ୍ରଚାର ଫଳରେ ଘରଆଡ଼େ ଖାନତଲାସ ଓ ଗିରଫଦାରୀ ଆରମ୍ଭହୋଇଗଲା । ବହୁ ଯୁବକ ଓ ଛାତ୍ର ମିଶା ଓ ଡି. ଆଇ. ଆର୍‌ରେ ଗିରଫ ହେଲେ । କିନ୍ତୁ ଖବରକାଗଜ ଉପରେ କଟକଣା ଥିବା ହେତୁ ଏ ସବୁ ଖବର ଲୋକେ ଆଦୌ ଜାଣି ପାରୁ ନଥାନ୍ତି । ପୁଲିସ ଏପରି ଭାବରେ ଆମର ଗତିବିଧି ଉପରେ ଦୃଷ୍ଟି ରଖିଥାଆନ୍ତି ଯେ ପର୍ଯ୍ୟାପ୍ତ ବୁଲେଟିନ୍ ମଧ୍ୟ ଛାପି ବାଣ୍ଟିବା କଷ୍ଟକର ହେଉଥାଏ । ପ୍ରତିଦିନ ରାତିରେ D. P. R. O କଟକରେ ପ୍ରତ୍ୟେକଟି ପ୍ରେସ୍ ଚଢ଼ଉ କରି ଦେଖୁଥାନ୍ତି—କେଉଁଠୁ ଏ ବୁଲେଟିନ୍ ବାହାରୁଛି ।

ଆମେ ଭାବିଲୁ, ସହରରେ ତ ଏହିପରି ଆତଙ୍କ, ମଫସଲକୁ ଯାଇ ସେଠା ପରିସ୍ଥିତି ଦେଖିବାକୁ ହେବ । ମୁଁ ବସ୍ତା ଅଞ୍ଚଳକୁ ପ୍ରଚାର କାର୍ଯ୍ୟରେ ଯାଇ ଦେଖିଲି ଯେ ଅଳ୍ପ କେତେଜଣଙ୍କୁ ଛାଡ଼ିଦେଲେ ବାକି ସମସ୍ତେ ଛାନିଆ । ତା ଉପରକୁ ପୁଣି ପୁଲିସ ଆସି ଘୋଷଣା କରିଦେଇଗଲେ ଯେ ରମାଦେବୀଙ୍କୁ ଆମେ ଗିରଫ କରିବୁ ନାହିଁ, ମାତ୍ର ତାଙ୍କ ପାଖକୁ ଯିଏ ଯିବ, ତାଙ୍କ ସଭାକୁ ଯିଏ ଯିବ, ତାଙ୍କୁ ଗିରଫ କରିବୁ । କାର୍ଯ୍ୟତଃ ମଧ୍ୟ ପୁଲିସ କେତେକଙ୍କ ସହିତ ସେହି ଆଚରଣ କଲେ । ଲୋକଙ୍କ ମଧ୍ୟରେ ଏହି ଭୟ, ଏହି ଆତଙ୍କ ଦେଖି ଆମ ମନ କଲବଲ ହୋଇଯାଉଥାଏ । ଖାଲି ଏହି ଭାବନା ମନକୁ ଆସୁଥାଏ ଯେ ଏହି ଡର ଛଡ଼ାଇବା ପାଇଁ ଗାନ୍ଧୀର ଏତେ ସାଧନା ସବୁ ବ୍ୟର୍ଥ ହୋଇଗଲା ! ଲୋକେ ପୁଣି ପଚିଶବର୍ଷ ପୂର୍ବର ଅବସ୍ଥାକୁ ଫେରିଗଲେ ! ନିଜର ମୌଳିକ ଅଧିକାର ହରାଇ ସୁଦ୍ଧା ଲୋକଙ୍କର କୌଣସି ଶୋଚନା ନାହିଁ ! ଗାଁ ଗାଁ ଲୋକେ ଗ୍ରୁପ୍ ଗ୍ରୁପ୍ ଦଳରେ ବିଭକ୍ତ ହୋଇଯାଇଛନ୍ତି । କେହି ଟିକିଏ ସ୍ୱାଧୀନ ମତ ବ୍ୟକ୍ତ କରିବା ପାଇଁ ମୁଣ୍ଡ ଟେକିବା ମାତ୍ରେ ତାକୁ ତଳିତଳାନ୍ତ କରିଦେବାର ଧମକଦିଆଯାଉଛି । ଏପରି ସ୍ଥଳେ ହେବ କ'ଣ ? ଯାହାହେଉ ଦାଦେ ଆପଣେ ତ କହିଯାଇଛନ୍ତି 'ଘଣ୍ଟା ବାଜୁଥିବ'—ଆମେ ଆମର ଘଣ୍ଟା ବଜାଇ ଚାଲିଥିବା ।

ଏହା ମଧ୍ୟରେ ରଥଯାତ୍ରା ଆସିଲା । ପୁରୀର ସହକର୍ମୀମାନେ ରଥଯାତ୍ରୀଙ୍କ ଭିତରେ ହଜାର ହଜାର ବୁଲେଟିନ୍ ବାଣ୍ଟିବା ଫଳରେ ସରକାର ଏ ବୁଲେଟିନ୍‌ର ପ୍ରଚାର ବନ୍ଦ କରିବାକୁ ତତ୍ପର ହୋଇଉଠିଲେ ଓ ବାହୁଡ଼ା ବେଳକୁ ବହୁତ ବୁଲେଟିନ୍ ଜବତ କରି ସର୍ବଶ୍ରୀ କଣ୍ଠେଶ୍ୱର ଚରଣ ନାୟକ, ଜୟକୃଷ୍ଣ ମହାନ୍ତି ପ୍ରମୁଖଙ୍କୁ ଗିରଫ କଲେ । ଅଗଷ୍ଟ ନଅ ତାରିଖ ଉପଲକ୍ଷେ କେତେକ କଲେଜରେ ଛାତ୍ରମାନେ କଲେଜରେ ଯୋଗ ନ ଦେବା ଫଳରେ କେତେକ ଛାତ୍ର ଗିରଫ ହେଲେ । ଅକ୍ଟୋବର ମାସ ପାଖେଇ ଆସିଲା । ଗାନ୍ଧୀ-ଜୟନ୍ତୀ ଉପଲକ୍ଷ୍ୟେ କଟକରେ ଏକ ନୀରବ ଶୋଭାଯାତ୍ରା ବାହାର କରିବା କାର୍ଯ୍ୟକ୍ରମ ସ୍ଥିର ହେଲା । ଯେହେତୁ, ଗାନ୍ଧୀ, ରବୀନ୍ଦ୍ରନାଥ ଆଦିଙ୍କ ବାଣୀ କେହି ଉଚ୍ଚାର କରି ପାରିବେ ନାହିଁ ବୋଲି ତ ଅର୍ଡିନାନ୍‌ସ ଜାରୀ ହୋଇସାରିଥାଏ । ଅମେମାନେ ସେହିମାନଙ୍କ

ବାଣୀ ଲେଖା ପ୍ଲାକାର୍ଡ ଧରି କଟକରେ ଶୋଭାଯାତ୍ରା ବାହାରକଲୁ । ଶୋଭାଯାତ୍ରା ବାହାରିବାର ଠିକ୍ ପୂର୍ବରୁ ପୁଲିସ ଶ୍ରୀମାନ୍ ବ୍ରଜ ଓ ଶ୍ରୀ ବିଶ୍ୱନାଥ ପଣ୍ଡିତଙ୍କୁ ଗିରଫ କରି-ନେଲେ । ତଥାପି ପଟୁଆର ବାହାରିଲା । ଏମ୍ରଜେନ୍ସି ଜାରି ହେବା ପରେ ଏହା କଟକରେ ପ୍ରଥମ ପଟୁଆର । ଗାନ୍ଧୀବାଣୀ ଲେଖା କାର୍ଡ ମଧ୍ୟ ପିଲାଏ ବାଣ୍ଟୁଥାନ୍ତି । ପୁଲିସ ତାହା ଛଡ଼ାଇ ନେଉଥାନ୍ତି । ଲୋକେ ଦୋକାନ ବଜାରରୁ ବାହାରି ଆସି ସେ ପଟୁଆରକୁ ଦେଖୁଥାନ୍ତି, ସତେ ଯେପରି ସେଇଟା ଗୋଟାଏ ଅସୀମ ସାହସିକ କାମ । ପଟୁଆରରେ ଗାନ୍ଧୀ ଘାଟଯାଏ ଯାଇ ସେଠାରେ ପ୍ରାର୍ଥନା କରି ଆମେ ଫେରିଲୁ । କେହି ଗିରଫ ହେଲେ ନାହିଁ । ମାତ୍ର ତାହା ପରେ ପରେ ଥୋରିଆସାହି, ବାଖରାବାଦ ଘର ଆଦି ଖାନତଲାସ କରି ଗାନ୍ଧୀ, ଜୟପ୍ରକାଶ, ନେହେରୁଆଦିଙ୍କ ବାଣୀ ଲେଖା ପ୍ଲାକାର୍ଡ ପୁଲିସ ନେଇଗଲେ ।

ଖାନତଲାସ ତ ହରଦମ ହେଉଥାଏ । ପିଲାମାନେ ଅତ୍ୟନ୍ତ ସତର୍କତାର ସହିତ ବୁଲେଟିନ୍-ଗୁଡ଼ିକ ସାଇତି ରଖୁଥାନ୍ତି—କାରଣ ବାରମ୍ବାର ବୁଲେଟିନ ଛାପିବାକୁ ପୁଣି ଅର୍ଥ ମଧ୍ୟ ଦରକାର । ସର୍ବୋଦୟ କର୍ମୀମାନେ ବିନୋବାଜୀଙ୍କ ନିର୍ଦ୍ଦେଶରେ ଜନସାଧାରଣଙ୍କ ସାହାଯ୍ୟରେ ଚଳିବା ପାଇଁ ସଂକଳ୍ପବଦ୍ଧ ହୋଇଥିଲେ । ସେଥିପାଇଁ ଯେଉଁମାନେ ବରାବର ଆର୍ଥିକ ସାହାଯ୍ୟ ଦେଇ ଆସୁଥିଲେ ସେମାନଙ୍କ ମଧ୍ୟରୁ ଅନେକ ଆଉ ଦୁଆର ମଡ଼େଇ ଦେଲେ ନାହିଁ । ଆଉ ଅନେକ ହାତଯୋଡ଼ି କହିଲେ ଯେ ସରକାର ମୁଖ୍ୟଙ୍କର କଡ଼ା ନିଷେଧ ରହିଛି, ତେଣୁ ଆମେ ସାହାଯ୍ୟ କରିବାକୁ ଅସମର୍ଥ । ସେତେବେଳେ ରବୀନ୍ଦ୍ରନାଥଙ୍କ ଗୀତ ମନେପଡ଼ୁଥାଏ "ଯଦି କେଉ କଥା ନା କୟ, ଯଦି ସବାଇ ଥାକେ ମୁଖ ଫିରାୟେ ସବାଇ କରେ ଭୟ, ତବେ ମୁଖ୍ ଫୁଟେ ତୋର ମନେର କଥା ଏକଲା ବଲୋରେ" । ଭୟ, ତଥାପି ଧର୍ମନାବ ଧର୍ମର ପ୍ରଭାବରେ ଚାଲିଲା । ଓଡ଼ିଶା ବାହାରୁ ଓ ଓଡ଼ିଶା ଭିତରୁ ଅନେକ ହୃଦୟବାନ୍ ଦାତା ଆମକୁ ଓ ବନ୍ଦୀମାନଙ୍କ ପରିବାରକୁ କିଛି କିଛି ଆର୍ଥିକ ସାହାଯ୍ୟ ଦେଲେ ।

ପୁଣି ଅକ୍ଟୋବର ଏଗାର ତାରିଖରେ ଜୟପ୍ରକାଶଜୀଙ୍କର ଜନ୍ମଦିନ ଉପଲକ୍ଷେ ଆମେ କଟକର ଗୌରୀଶଙ୍କର ପାର୍କରେ ପ୍ରାର୍ଥନା ସଭା ଓ ଶୋଭାଯାତ୍ରା କରିବା କାର୍ଯ୍ୟକ୍ରମ ରଖିଲୁ । ସେଦିନ ମାଲତୀ ଦେବୀ, ଗୌରୀଅମ୍ମା ଓ ଅଧ୍ୟାପକ ରାଜକିଶୋର ମିଶ୍ର ଅନୁଗୁଳରେ ଶୋଭାଯାତ୍ରା ବାହାରକରି ଗିରଫ ହେଲେ । କଟକରେ ସକାଳଓଳି ଆମେ ସବୁ ପ୍ରାର୍ଥନା ସଭାରେ ଯୋଗଦେବା ସତ୍ତ୍ୱେ ଧରାହେଲୁନାହିଁ । ମାତ୍ର ଓପରଓଳି ପଟୁଆର ବାହାରିବା ଉଦ୍ୟମ ହେବା ମାତ୍ରେ ଉନଜଣ ଓକିଲ ଓ ଜଣେ ମହିଳା ସମେତ ବାରଜଣ ଗିରଫହେଲେ ଓ ଜାମିନ ରାଜିରେ ଛୁଟିପାଇଲେ ।

ଏହା ମଧ୍ୟରେ ନଭେମ୍ବର ୧୪, ୧୯୭୫ରୁ ଆନ୍ଦୋଳନର ଦ୍ୱିତୀୟ ପର୍ଯ୍ୟାୟ ନିଖିଳ ଭାରତୀୟ ସ୍ତରରେ ଆରମ୍ଭ ହେବା ସ୍ଥିର ହେଲା । ୧୯୨୧, ୩୦-୩୨, ୪୨ ଆନ୍ଦୋଳନ ଦେଲେ ଦେଖାଯାଇଛି ଯେ ପାଞ୍ଚ ଛଅମାସ ଜନଆନ୍ଦୋଳନ ଚାଲିବା ପରେ କ୍ରମେ ତାହା

ଶିଥିଳ ହୋଇଯାଏ, ମାତ୍ର ଏଥର ଛଅମାସ ପରେ ପୁଣି ନବବାବୁମଙ୍କରେ ଲୋକେ ଆନ୍ଦୋଳନ ଚଳାଇଲେ । ସମଗ୍ର ଭାରତରେ ହଜାର ହଜାର ଲୋକ ପୁଣି ଧରାହେଲେ । ଓଡ଼ିଶାର ପ୍ରାୟ ସବୁ ଜିଲ୍ଲାରେ ସଭା ଶୋଭାଯାତ୍ରା କରି ସତ୍ୟାଗ୍ରହୀମାନେ ଗିରଫ ହେଲେ । ଏଥିରେ ସ୍କୁଲକଲେଜର ପିଲାଙ୍କ ଅଧିକ ସଂଖ୍ୟାରେ ଯୋଗଦେଲେ । କଟକରେ ମଶାଲ୍ ଶୋଭାଯାତ୍ରା, ଢେଙ୍କାନାଳରେ ଶୋଭାଯାତ୍ରା ଆଦି ଜନମାନସରେ ନୂଆ ଚେତନା ଆଣି ଦେଲା । କେବଳ ଅଙ୍ଗେଇଜପଡ଼ା ସ୍କୁଲର ଚାଳିଶରୁ ଅଧିକ ପିଲା ଗିରଫ ହେଲେ । ସେମାନଙ୍କୁ ପୁଲିଶଙ୍କ ପକ୍ଷରୁ ବହୁତ ଧମକ ଚମକ ଦିଆଗଲା ଓ ଆତଙ୍କିତ କରିବା ପାଇଁ ଉଦ୍ୟମ ହେଲା; ମାତ୍ର ସେମାନେ ଅବିଚଳ ରହିଲେ । ଉଦାହରଣ ସ୍ୱରୂପ ଢେଙ୍କାନାଳରେ କେତେକ ଶୋଭା-ଯାତ୍ରାକାରୀ ପିଲାଙ୍କୁ କେତେକ ଗୋପନ ତଥ୍ୟ କହିଦେବା ପାଇଁ ପୁଲିସ କହିବାରୁ ସେମାନେ ତାହା କହିବାକୁ ଅସ୍ୱୀକାର କଲେ । ପୁଲିଶ ସେମାନଙ୍କୁ ଭୟଭୀତ କରିବା ପାଇଁ ଗଭୀର ରାତିରେ ନିର୍ଜନ ସ୍ଥାନରେ ନିଆଁ ଜାଳି ନିଆଁରେ ଫୋପାଡ଼ି ପକାଇଦେବା ଭୟ ଦେଖାଇଲେ । ତଥାପି ସେ ପିଲାମାନେ ନିଜ ସଙ୍କଳ୍ପରେ ଅଟଳ ରହି ଭାରତର ପ୍ରାଚୀନ ଇତିହାସର ବୀରଶିଶୁ ବାଦଲ, ଗୁରୁଗୋବିନ୍ଦ ସିଂହଙ୍କର ଶିଶୁପୁତ୍ରମାନଙ୍କ ବୀରତ୍ୱର ପରମ୍ପରା ରକ୍ଷା କଲେ । ପୁଲିଶ ଅଫିସରମାନେ ସୁଦ୍ଧା ସେହି ବାଳକମାନଙ୍କ ସାହସ ଦେଖି ଆଶ୍ଚର୍ଯ୍ୟ ଚକିତ ହେଲେ । ନଭେମ୍ବର ୧୪ ତାରିଖରୁ ଜାନୁଆରୀ ୨୬, ୧୯୬୬ ପର୍ଯ୍ୟନ୍ତ ଏହି କାର୍ଯ୍ୟକ୍ରମ ବହୁଳ ଜୋରସୋର୍‌ରେ ଚାଲିଲା ।

ଏହା ମଧ୍ୟରେ ୧୯୭୫ ମସିହା ନଭେମ୍ବର ମାସରେ ଜୟପ୍ରକାଶଜୀ ଜେଲ୍ ମଧ୍ୟରେ ଅସୁସ୍ଥ ହୋଇ, ମୃତପ୍ରାୟ ହୋଇ, ଚିକିତ୍ସା ପାଇଁ ଖଲାସ ହେଲେ । ମାଳତୀ ଦେବୀ ଓ ମୁଁ ତାଙ୍କୁ ଦେଖିବା ପାଇଁ ଦିଲ୍ଲୀ ଗଲୁ । ଏଣେ ନବବାବୁ ମଧ୍ୟ ବାଣପଦା ଜେଲ୍‌ରେ ହଠାତ୍ ରକ୍ତଚାପ ଜନିତ ପକ୍ଷାଘାତ ରୋଗରେ ଆକ୍ରାନ୍ତ ହେଲେ । ଏହି ଘଟଣାଗୁଡ଼ିକ ଆନ୍ଦୋଳନ ପକ୍ଷରେ ବାଧକ ହେବା ଦୂରେଥାଉ ଲୋକେ ଆହୁରି ମାତିଉଠିଲେ । ଅଧିକରୁ ଅଧିକ ବୁଲେଟିନ୍ ପ୍ରକାଶିତ ହେବାକୁ ଲାଗିଲା । ବିଲାତରେ "ଜୟପ୍ରକାଶଙ୍କୁ ରକ୍ଷାକର" ନାମରେ ଯେଉଁ କମିଟି ନୋବେଲ ପୁରସ୍କାର ଲାଭକରିଥିବା ଶ୍ରୀ ନୋଏଲ-ବେକର୍‌ଙ୍କ ସଭାପତିତ୍ୱରେ ଗଢ଼ାହୋଇଥିଲା ତାହା ପକ୍ଷରୁ ସେ ଦେଶର ଶତ ଶତ ଲୋକଙ୍କ ସ୍ୱାକ୍ଷରରେ ଏକ ନିବେଦନ ବାହାରିଲା । ସେହି କମିଟି ଆହୁରି ତତ୍ପର ହୋଇଉଠିଲେ । ବିଲାତରୁ 'ସ୍ୱରାଜ୍ୟ' ନାମରେ ଗୋଟିଏ ପତ୍ରିକା ପ୍ରକାଶପାଇଲା ଓ ଭାରତବର୍ଷରେ ଚାଲିଥିବା ଆନ୍ଦୋଳନର ସମସ୍ତ ବିବରଣୀ ସେଥିରେ ବାହାରିଲା । ତାହା ସମଗ୍ର ପୃଥିବୀରେ ପ୍ରସାରିତହେଲା । ଭାରତ ସରକାର ଭାରତ ଭିତରକୁ ତାହା କପିଏ ହେଁ ନ ଆସିବ ସେଥିପାଇଁ ଯଥାସମ୍ଭବ ଉଦ୍ୟମ କରିବା ସତ୍ତ୍ୱେ ତାହା ଭାରତରେ ପ୍ରଚାରିତହେଲା ।

ଆନ୍ଦୋଳନ ତେଜିବା ସଙ୍ଗେ ସଙ୍ଗେ ଲୋକଙ୍କୁ ଦବେଇବା ପାଇଁ ଚାରିଆଡ଼େ ନାନା ପ୍ରକାର ଦମନମୂଳକ କାର୍ଯ୍ୟ ଚାଲିଲା । ଦିଲ୍ଲୀର ତିହାର ଜେଲ୍ ଭିତରେ ଅତ୍ୟାଚାର,

ନୈନି ଜେଲ୍‌ରେ ମାଡ଼, ସମ୍ବଲପୁର ଜେଲ୍‌ରେ ଲାଠିଚାଳନା ସାଙ୍ଗକୁ ଦିଲ୍ଲୀରେ ତୁର୍କମାନ୍ ଗେଟ୍ ନିକଟରେ ଗୁଳିଚାଳନା ଫଳରେ ଶହ ଶହ ଲୋକଙ୍କର ମୃତ୍ୟୁ ଆଦି ନାନାପ୍ରକାର ଅତ୍ୟାଚାର ଚାଲିଲା । ଏ ସବୁ ଖବର ବୁଲେଟିନ୍‌ରୁ ହିଁ ମିଳୁଥାଏ—ଖବରକାଗଜରେ ପ୍ରକାଶ ପାଇ ନ ଥାଏ । ବନ୍ଦୀମାନେ ଗିରଫଦାରି ପରେ ଚାଲିଥାଏ "ପିଟାଇ", ଅର୍ଥାତ୍ ଅନ୍ଧାଧୁନ୍ଦା ମାଡ଼ । ମଧ୍ୟପ୍ରଦେଶରେ କାମକରୁଥିବା ଜଣେ ଉଚ୍ଚପଦସ୍ଥ ଓଡ଼ିଆ ସରକାରୀ ହାକିମଙ୍କ ଉକ୍ତି ଅନୁସାରେ ସେ ରାଜ୍ୟରେ ରାଜନୈତିକ ବନ୍ଦୀମାନଙ୍କର ବିଚାର ବେଳେ ସୁଦ୍ଧା ହାତରୁ ହାତକଡ଼ି ଗୋଡ଼ରୁ ଗୋଡ଼କଡ଼ି ଖୋଲା ହେଉ ନ ଥିଲା । ଜେଲରେ ମଧ୍ୟ ହଜାର ହଜାର ବନ୍ଦୀ ଚବିଶ ଘଣ୍ଟା ହାତକଡ଼ି ଗୋଡ଼କଡ଼ି ପିନ୍ଧି ରହୁଥିଲେ । ଜୟପୁରର ଭୂତପୂର୍ବ ମହାରାଣୀ ଗାୟତ୍ରୀ ଦେବୀ, ଗ୍ୱାଲିଅରର ରାଜମାତା ବିଜୟା ରାଜେ ସିନ୍ଧିଆଙ୍କ ସଙ୍ଗେ ଜେଲ୍ ମଧ୍ୟରେ ଏପରି ଆଚରଣ କରାଗଲା ଯେ ସେମାନେ ଜେଲରୁ ବାହାରିବା ବେଳକୁ ଅର୍ଦ୍ଧପାଗଳିନୀ ହୋଇଯାଇଥିଲେ ବୋଲି ଖବର ମିଳିଲା । ହରିଆନା ଓ ପଞ୍ଜାବରେ ମଧ୍ୟ ଦମନନୀତି ଅତି ଉତ୍କଟ ହୋଇଥିବାର ଶୁଣାଯାଉଥାଏ । ଏ ସବୁ ସତ୍ତ୍ୱେ ଆନ୍ଦୋଳନ ନାନା ପ୍ରକାରେ ନାନା ରୂପରେ ମୁଣ୍ଡ ଟେକୁଥାଏ । ଓଡ଼ିଶାର ଭୂତପୂର୍ବ ରାଜ୍ୟପାଳ ଭୀମସେନ ସାଚ୍ଚର, ସେବକ ରାମ ଆଦି ପ୍ରଧାନମନ୍ତ୍ରୀଙ୍କୁ ଚିଠି ଲେଖି ସତ୍ୟାଗ୍ରହ କରୁଥାନ୍ତି । ଏହାହିଁ ହୋଇଥାଏ ଶାସକବର୍ଗଙ୍କ ମୁଣ୍ଡବଥାର କାରଣ ।

ଏହା ମଧ୍ୟରେ ବିନୋବାଜୀ ଘୋଷଣା କଲେ ଯେ, ସେପ୍‌ଟେମ୍ବର ୧୧, ୧୯୭୬ ସୁଦ୍ଧା ଭାରତ ସରକାର ଗୋବଧ ବନ୍ଦପାଇଁ ଆଇନ୍ ପ୍ରଣୟନ ନ କଲେ ସେ ଆମରଣ ଅନଶନ କରିବେ । ଏହା ଫଳରେ ପୁଣି ଏକ ନୂଆ ଚହଳ ପଡ଼ିଲା । ବିନୋବାଜୀ ୧୯୭୫ ମସିହା ଡିସେମ୍ବର ୨୫ ତାରିଖ ପର୍ଯ୍ୟନ୍ତ ବର୍ଷେ ମୌନ ରହିବା ପାଇଁ ସଂକଳ୍ପ କରିଥିଲେ ଏବଂ ଏହି ସମୟରେ କେବଳ ଆଧ୍ୟାତ୍ମିକ ଚିନ୍ତା କରିବେ ବୋଲି ଘୋଷଣା କରିଥିଲେ । ତେଣୁ ଜରୁରୀକାଳୀନ ପରିସ୍ଥିତି ଜାରି ହେଲାବେଳେ ଆମର କର୍ତ୍ତବ୍ୟ ଆମେ ନିଜେ ସ୍ଥିର କଲୁ । କାରଣ ହଠାତ୍ କୌଣସି ବିପଦ ସମାଜ ଉପରକୁ ଆସିଲେ ତତ୍‌କ୍ଷଣାତ୍ ଅହିଂସ ଉପାୟରେ ତାର ମୁକାବିଲା କରିବା ହେଲା ଶାନ୍ତିସେନାର ଧର୍ମ । ରାଉରକେଲାର ସାମ୍ପ୍ରଦାୟିକ ଗଣ୍ଡଗୋଳ, କଟକର ସାଂପ୍ରଦାୟିକ ଅଶାନ୍ତି, ଛାତ୍ର ଧର୍ମଘଟ ଆଦି ବେଳେ ଶାନ୍ତିସେନା ହିସାବରେ ମୋତେ ତୁରନ୍ତ କାର୍ଯ୍ୟ କରିବାକୁ ପଡ଼ିଥିଲା । ଏ ଦେଶର ନାଗରିକ ମୌଳିକ ଅଧିକାରଗୁଡ଼ିକ ଲୋପକରାଯାଇ ଏମରଜେନ୍‌ସି ଜାରିହେବାଟାକୁ ମୁଁ ଏକ ଗୁରୁତର ବିପଦ ମଣିଲି ଓ ତୁରନ୍ତ ତାର ମୁକାବିଲା କରିବାପାଇଁ ସ୍ଥିର କରିଥିଲି । ଏମରଜେନ୍‌ସି ଜାରି ହେବାର କିଛି କାଳରେ ବିନୋବାଜୀ ଏହାକୁ ଅନୁଶାସନ ପର୍ବ ଆଖ୍ୟା ଦେଇ ସମର୍ଥନ କରିଛନ୍ତି ବୋଲି କାନ୍ଥ ବାଡ଼ରେ ଲେଖାହୋଇ ପ୍ରଚାର ହେଲା । ଏଥିରୁ ଏହି ଧାରଣା ଦେଶରେ ସୃଷ୍ଟି କରାଯିବାର ଉଦ୍ୟମ ହେଲା ଯେ ଲକ୍ଷ ଲକ୍ଷ ଲୋକଙ୍କୁ ବନ୍ଦୀ କରିବା, ଖବର କାଗଜର ସ୍ୱାଧୀନତା ହରଣ କରିବା, ନିର୍ବାଚନ ବନ୍ଦ କରିବା ଆଦି କାମକୁ ବିନୋବାଜୀ

ସମର୍ଥନ କରୁଛନ୍ତି । ନାଗରିକ ବାଣୀ ସ୍ୱାତନ୍ତ୍ର୍ୟ ରକ୍ଷା କରିବା ନିମନ୍ତେ ବିନୋବାଜୀ ଗତ ବିଶ୍ୱଯୁଦ୍ଧ ବେଳେ ସତ୍ୟାଗ୍ରହ କରି କାରାବରଣ କରିଥିବା ସ୍ଥଳେ ବର୍ତ୍ତମାନ ନାଗରିକର ମୌଳିକ ଅଧିକାର ଓ ନ୍ୟାୟାଳୟର ନ୍ୟାୟ ଦେବା ଅଧିକାର ହରଣ କରିବା କାର୍ଯ୍ୟକୁ ସେ କିପରି ସମର୍ଥନ କଲେ ବିଚାର ଦେଶରେ ଏକ ଅନ୍ତର୍ଦ୍ୱନ୍ଦ୍ୱ ସୃଷ୍ଟି ହେଲା । ମାତ୍ର ଡିସେମ୍ବର ୨୫ ତାରିଖରେ ବିନୋବାଜୀ ମୌନ ଭାଙ୍ଗିବା ପରେ ଅନୁଶାସନର ଯେଉଁ ବ୍ୟାଖ୍ୟା କଲେ ଏବଂ ଏକ ଆଚାର୍ଯ୍ୟ ସମ୍ମିଳନୀ ଡକାଇ ତାଙ୍କ ଉପସ୍ଥିତିରେ ଏମରଜେନ୍‌ସି ଉଠାଇ ଦେବାକୁ, ରାଜନୈତିକ ବନ୍ଦୀଙ୍କୁ ଖଲାସ କରିଦେବାକୁ, ଖବରକାଗଜ ଉପରୁ କଟକଣା ଉଠାଇ ଦେବାକୁ ଏବଂ ନିର୍ବାଚନ କରିବାକୁ ଯେଉଁ ପ୍ରସ୍ତାବ ଗୃହୀତ ହୋଇ ଖବରକାଗଜରେ ପ୍ରକାଶପାଇଲା ସେଥିରୁ ବିନୋବାଜୀଙ୍କର ମୌନ ଅବସ୍ଥାରେ ଅନୁଶାସନ ପର୍ବର ପ୍ରଚାର ଯେ ଗୋଟାଏ ଧପ୍‌ପାବାଜୀ ତାହା ସ୍ପଷ୍ଟ ପ୍ରମାଣିତ ହୋଇଗଲା । ଯାହାହେଉ, ବିନୋବାଜୀଙ୍କ ଆମରଣ ଅନଶନ ସମ୍ବାଦ ପାଇ ମୁଁ ତାଙ୍କୁ ସାକ୍ଷାତ କରିବାକୁ ପଉଣାର୍ ଗଲି ଏବଂ ସେଠାରେ ଦେଖିଲି ଯେ ବିନୋବାଜୀଙ୍କ ଗୋବଧ ବନ୍ଦ ସଙ୍କାନ୍ତୀୟ ବିବୃତି ବ୍ରହ୍ମବିଦ୍ୟା ମନ୍ଦିରର ମୁଖପତ୍ର "ମୈତ୍ରୀ" ପତ୍ରିକାରେ ପ୍ରକାଶପାଇଥିବାରୁ ପୁଲିସ ଆଶ୍ରମ ମଧ୍ୟରେ ପଶି ପ୍ରେସରୁ ସମୁଦାୟ "ମୈତ୍ରୀ" ପତ୍ରିକା ଜବତକରିଛନ୍ତି ।

ଗୋବଧ ବନ୍ଦ ପାଇଁ ଆନ୍ଦୋଳନ କରିବାକୁ ବିନୋବାଜୀଙ୍କର ନିର୍ଦ୍ଦେଶ ପାଇ ମୁଁ ଓଡ଼ିଶା ଫେରିଲି । ସେତେବେଳକାର ରାଜ୍ୟର ମୁଖ୍ୟମନ୍ତ୍ରୀ ବିନୋବାଜୀଙ୍କ ଆଦେଶ ଅନୁସାରେ ତାଙ୍କର ରାଜକାର୍ଯ୍ୟ ଚଳାଉଛନ୍ତି ବୋଲି ଏକ ଧାରଣା ସୃଷ୍ଟିଆଡ଼େ ଜନ୍ମିଥିବା ସ୍ଥଳେ ଓଡ଼ିଶାର ପ୍ରେସ୍‌ମାନଙ୍କରେ ବିନୋବାଜୀଙ୍କ ବିବୃତି ଛାପିବାକୁ ଅନୁମତି ମିଳିଲାନାହିଁ ।

ଏହା ବିନୋବାଜୀଙ୍କୁ ଜଣାଇବାରୁ ସେ ହାତରେ ଲେଖି ଏହି ଲିଫ୍‌ଲେଟ୍ ବାଣ୍ଟିବାକୁ ନିର୍ଦ୍ଦେଶ ଦେଲେ । ଏଣୁ ସେପରି ଭାବରେ କାମ ଚାଲିଲା । ମାଳତୀ ଦେବୀ କୋରାପୁଟ ଜିଲ୍ଲାରେ ପଦଯାତ୍ରା କରି ବିନୋବାଜୀଙ୍କ ସତ୍ୟାଗ୍ରହ ବାର୍ତ୍ତା ପ୍ରଚାରକଲେ । ମାତ୍ର ବିନୋବାଜୀଙ୍କ ସହିତ କଥାବାର୍ତ୍ତା କରି ଗୋବଧ ବନ୍ଦ ପ୍ରସ୍ତାବକୁ ସରକାର ମାନି ନେବାରୁ ଏହି ଆନ୍ଦୋଳନ ପ୍ରତ୍ୟାହୃତହେଲା ।

ଆମମାନଙ୍କର ଏମରଜେନ୍‌ସି ବିରୁଦ୍ଧରେ ପ୍ରଚାର କାର୍ଯ୍ୟ ପୂର୍ବବତ୍ ଚାଲିଥାଏ । ନଭେମ୍ବର ୧୪, ୧୯୭୫ରୁ ଜାନୁୟାରୀ ୨୬, ୧୯୭୬ ପର୍ଯ୍ୟନ୍ତ ତ ଆନ୍ଦୋଳନ ଖୁବ୍ ଜୋର୍‌ସୋର୍‌ରେ ଚାଲିଲା । ଏହି ସମୟରେ ମୁଖ୍ୟତଃ ଜନସଂଘର ସ୍ୱେଚ୍ଛାସେବକମାନେ ହିଁ ଆନ୍ଦୋଳନ ଚଳାଇ-ଥିଲେ । ନାନା ସ୍ଥାନ ଖାନତଲାସ, ଗିରଫଦାରୀ, ପ୍ରେସ ବନ୍ଦ କରିବା, ସାଇକ୍ଲୋଷ୍ଟାଇଲ ମେସିନ୍ ଜବତ କରିନେବା ଆଦି ନାନା ପ୍ରୟାସ ସତ୍ତ୍ୱେ ପ୍ରଚାରକାର୍ଯ୍ୟ ଅବ୍ୟାହତ ରହିବା ଦେଖି ଫେବୃୟାରୀ ମାସର ୧୯୭୬ରେ ମାଳତୀ ଦେବୀ ଓ ସୁରେନ୍ଦ୍ର ମହାନ୍ତି ପ୍ରଭୃତିଙ୍କୁ ଗିରଫ କରାଗଲା ଓ ଯୋଗଆସାହିର ସର୍ବୋଦୟ କାର୍ଯ୍ୟାଳୟରେ ପୁଲିସ ଜଗୁଆଳି ରଖାଯାଇ ଆମକୁ ଏକପ୍ରକାର ଗୃହବନ୍ଦୀ କରାଗଲା ।

जयप्रकाश नारायण

पटना-३
२६-११-७१

प्रिय रमादेवी जी,

आपका सहानुभूतिपूर्ण संदेश प्राप्त हुआ। धन्यवाद। मैं अब अच्छा हूं। परन्तु डाक्टरों ने और कुछ दिन विश्राम करने की सलाह दी है। तदनुसार अभी विश्राम में हूं। आशा है, शीघ्र पूर्ण आरोग्य लाभ कर अपने दैनंदिन कार्य में लग जाउंगा। आपकी शुभेच्छाओं के लिए बहुत आभारी हूं।

प्रभावती को मेरे प्रणाम।

आपका सस्नेह,

जयप्रकाश

श्रीमती रमा देवी

[ ଜୟପ୍ରକାଶ ନାରାୟଣଙ୍କର ଏକ ଚିଠି ]

ମାଲତୀ ଦେବୀଙ୍କୁ ଗିରଫ କରିନେବାର ଅନ୍ୟତମ ଉଦ୍ଦେଶ୍ୟ ଥିଲା "ସଂଗ୍ରାମ" ପତ୍ରିକା ବନ୍ଦକରିଦେବା । କେତେକ ଯୁବକ ସହକର୍ମୀ ଏଭଳିଟାକୁ ମର୍ଯ୍ୟାଦା ରକ୍ଷାର ପ୍ରଶ୍ନ ମନେକରି "ସଂଗ୍ରାମ" ପତ୍ରିକା ବାହାର କରିବା ପାଇଁ ସ୍ଥିରକଲେ ଏବଂ "ସଂଗ୍ରାମ" ପତ୍ରିକା ନିୟମିତ ପ୍ରକାଶ ପାଇ ୭୦୦ ଗ୍ରାହକଙ୍କ ନିକଟକୁ ପଠାହେଲା । କଟକରୁ ପୁଣି କଲିକତାକୁ ଏହି କାର୍ଯ୍ୟାଳୟ ଉଠିଗଲା । ଆତ୍ମଗୋପନ କରି ରହି, ଗୁପ୍ତ ସଂଗ୍ରହ କରି, ପତ୍ରିକା ବାହାରକରି ସଂପ୍ରସାରିତକରିବା କିପରି କଷ୍ଟସାଧ୍ୟ କାର୍ଯ୍ୟ ତାହା କେବଳ ଅନୁଭବୀ ହିଁ ବୁଝିପାରିବ । ଓଡ଼ିଶା ପୋଲିସ ତା'ର ପାରୁପର୍ଯ୍ୟନ୍ତ ଉଦ୍ୟମକରି "ସଂଗ୍ରାମ" ପତ୍ରିକାର ପ୍ରକାଶନ ବନ୍ଦକରିବାରେ ଅସଫଳ ହେଲେ । କଲିକତାରେ ଓ ପରେ ବମ୍ବେରେ ଓଡ଼ିଶା ପୋଲିସ ଘାଟି ଜଗିରହିବା ସତ୍ତ୍ୱେ କାର୍ଯ୍ୟ ଅବ୍ୟାହତ ରହିଲା । ଶେଷରେ ବିନୋବାଜୀଙ୍କ ପରାମର୍ଶରେ ଶ୍ରୀ କ୍ଷେତ୍ରବାସୀ ପତି ଆତ୍ମସମର୍ପଣ କରିବାକୁ ସମ୍ମତ ହେଲେ ଏବଂ ଡାକଘରକୁ ପୋଲିସ ପ୍ରେରିତ ରେଜିଷ୍ଟ୍ରି ଚିଠି ଆଣିବାକୁ ଯାଇ ଗିରଫହେଲେ ।

ଏହା ମଧ୍ୟରେ ପୁଣି ସମ୍ବିଧାନର ବୟାଳିଶ(କ) ସଂଶୋଧନ ପାର୍ଲିମେଣ୍ଟରେ ହୋଇସିବା ଫଳରେ ଶିକ୍ଷିତ ମହଲ ପରିସ୍ଥିତିର ଗୁରୁତ୍ୱ ଭଲଭାବରେ ଉପଲବ୍ଧି କରୁଥିବାର ଲକ୍ଷ୍ୟ କରାଗଲା । ନ୍ୟାୟାଳୟର ଅଧିକାର କ୍ଷୁଣ୍ଣ କରାସିବା ଫଳରେ ନ୍ୟାୟଅନ୍ୟାୟର ବିଗ୍ୟର ବ୍ୟକ୍ତି ହାତକୁ ବା ପାର୍ଲିମେଣ୍ଟର ନଅଜଣିଆ ସଦସ୍ୟ ଥିବା କମିଟି ହାତକୁ ଚାଲିସିବାରୁ ଭାରତର ବଡ଼ ବଡ଼ ଆଇନଜୀବୀ ଓ ଭୂତପୂର୍ବ ନ୍ୟାୟାଧୀଶମାନେ ଚାରିଆଡ଼େ ସଭା ସମିତି କରି ତାର ପ୍ରତିବାଦ କଲେ । ଫଳରେ ଆମ ମନରେ ଆଶାର ସଞ୍ଚାର ହେଲା ଯେ ଦେଶବାସୀଙ୍କର ନିଦ ଭାଙ୍ଗୁଛି । ଏମର୍ଜେନ୍ସି ଲାଗୁ ହେବା ପରେ ମୁଁ ବୁଲେଟିନ୍ ଇତ୍ୟାଦି ଗ୍ରୁପ ଏହାର ବିରୋଧ କରିବା ପାଇଁ ଜନସାଧାରଣଙ୍କୁ ନିବେଦନ କରିଥିଲି ବୋଲି ମୋର ଜଣେ କନ୍ୟାପ୍ରତିମ ସହକର୍ମୀ ମୋ ନାମରେ ଖୋଲା ଚିଠି ଗ୍ରୁପି ବାଣ୍ଟିଥିଲେ ଓ ମୋର ମତିଭ୍ରମ ହୋଇଛି ବୋଲି ନିଜେ ଆସି ମୋତେ ବୁଝାଇ କୈଫିୟତ ଚାହିଁଥିଲେ । ଜବାବରେ ମୁଁ ତାଙ୍କୁ ଲେଖିଥିଲି ଯେ ଲୋକଙ୍କୁ ମୌଳିକ ଅଧିକାରର ଗୁରୁତ୍ୱ ବୁଝାଇବା ପାଇଁ ମୁଁ ଏ କାମ କରୁଛି । ମୁଁ ଠିକ୍ କରୁଛି କି ଭୁଲ କରୁଛି ତାହା ଇତିହାସ ବିଗ୍ୟର କରିବ । ମାତ୍ର ଇତିହାସ ବିଗ୍ୟର କରିବା ତ ଦୂର ଭବିଷ୍ୟତର କଥା, ନିର୍ବାଚନ ହେବ ବୋଲି ଭାରତର ପ୍ରଧାନମନ୍ତ୍ରୀ ଘୋଷଣା କଲା ପରେ ଓ ନିର୍ବାଚନରେ ଲୋକେ ଯାହା ରାୟ ଦେଲେ ସେଥିରୁ ମୋ କାମର ଭୁଲ ଠିକ୍ ମଧ୍ୟ ପ୍ରମାଣିତ ହୋଇଗଲା ।

ମାତ୍ର ଗତ ୨୦ ମାସର ଘଟିଯାଇଥିବା ଘଟଣାବଳୀର ସ୍ମୃତି ପାଶୋରିବା ମୋ ପକ୍ଷରେ ଏକ ପ୍ରକାର ଅସମ୍ଭବ ହୋଇପଡ଼ୁଛି । ମୁଁ ସବୁବେଳେ ଭାବୁଛି ଯେ, ଗାନ୍ଧୀ ଯାହା କହୁଥିଲେ, ଉପଯୁକ୍ତ ରାଷ୍ଟ୍ରଭାବନାସଂପନ୍ନ ଲୋକେ ଯଦି ଜନସାଧାରଣଙ୍କ ସାଙ୍ଗରେ ରହି ସେମାନଙ୍କୁ ସବୁବେଳେ ସଜାଗ ସତର୍କ ନରଖିବେ, ଲୋକେ ଯଦି ସ୍ୱେଚ୍ଛାରେ ଅସ୍ପୃଶ୍ୟତା, ଜାତିଭେଦ, ବିବାହବ୍ରତରେ ଅଯଥା ଖରଚ, ଆମ ସମାଜରେ ଥିବା ଦୋଷ ଦୁର୍ବଳତା-

ଗୁଡ଼ିକୁ ଦୂରକରିବାକୁ ବଦ୍ଧପରିକର ନହେବେ, ବିଶେଷରେ ନିର୍ବାଚନରେ ଜିତିବା ଲୋଭରେ ଯେଉଁ ଅଜସ୍ର "କଳାଗୁନ୍ଧ" ଖରଚ ହେଉଛି ତାହା ବନ୍ଦ କରିବା ପାଇଁ ଲୋକେ ଅଣ୍ଟା ଭିଡ଼ି ନବାହାରିବେ, ତେବେ ଏ ଦୁର୍ନୀତି, ଭ୍ରଷ୍ଟାଚାର, ଦୁଃଶାସନ ଆଦି ପରସ୍ପର ସମ୍ପୃକ୍ତ ଦୁଷ୍ଟଚକ୍ରରୁ ରକ୍ଷା ମିଳିବ କିପରି ? ଏଥିପାଇଁ ନାଗରିକଙ୍କ ଭିତରେ ଦେଶରେ ସମ୍ପୂର୍ଣ୍ଣ ବିପ୍ଳବର ବାର୍ତ୍ତା ପହଞ୍ଚାଇବା ପାଇଁ ତଥା ଦୁର୍ନୀତିମୁକ୍ତ ଶାସନ ଚଳାଇବା ପାଇଁ ହଜାର ହଜାର ଦେଶପ୍ରେମୀ ପୁରୁଷ ନାରୀ ବାହାରିପଡ଼ିବା ଦରକାର । ସେଥିପାଇଁ, ଅର୍ଥାତ୍ ଦେଶକୁ ରକ୍ଷା କରିବା ପାଇଁ, ସେମାନଙ୍କୁ ସେମାନଙ୍କର ନିଶ୍ଚିନ୍ତ ଆରାମଦାୟକ ଜୀବନ ପଦ୍ଧତି ଛାଡ଼ିବାକୁପଡ଼ିବ । ଖରାବର୍ଷା, ଭୋକଉପାସ, ମାନଅପମାନ ସହିବାକୁ ପଡ଼ିବ । ତାହେଲେ ଯାଇ ଏ ଦେଶ ବିପଦଟି ପାର ହୋଇ ପାରିବ । ଦାସେଆପଣେ ଇଚ୍ଛାରେ "ମିଶୁ ମୋର ଦେହ ଏ ଦେଶ ମାଟିରେ" କହିନଥିଲେ ଏବଂ ଗାନ୍ଧୀଜୀ ଅକାରଣରେ ସାତଲକ୍ଷ ଗାଁର ଜନସାଧାରଣଙ୍କୁ ଜାଗ୍ରତ କରିବା ପାଇଁ ଗଣତନ୍ତ୍ରର ସାତଲକ୍ଷ ଅତନ୍ଦ୍ର ପ୍ରହରୀ ହେବାପାଇଁ ଦେଶବାସୀଙ୍କୁ ଡ଼ାକରା ଦେଇନଥିଲେ ।

## ୪୪ । ଉପସଂହାର

ସାଙ୍ଗସାଥୀମାନଙ୍କ ଆଗ୍ରହକୁ ଏଡ଼ି ନ ପାରି ଜୀବନର କେତେଗୁଡ଼ିଏ ଘଟଣା କେତେ ବର୍ଷ ତଳେ ଲିପିବଦ୍ଧ କରି ରଖିଥିଲି । ତାହା "ସର୍ବୋଦୟ" ପତ୍ରିକାରେ ଛପା ହେବା ଫଳରେ ଲୋକଙ୍କ ଆଖିରେ ପଡ଼ିଲା । ବର୍ତ୍ତମାନ ତାହା ବହି ଆକାରରେ ଛପା ହେବାକୁ ଯାଉଛି । ସେଥିପାଇଁ ମୋତେ ସେ ଲେଖା ଉପରେ ଆଖି ବୁଲେଇ ଦେବାକୁ କୁହାଗଲାରୁ ମୁଁ ତାକୁ ପଢ଼ିବାକୁ ଚେଷ୍ଟାକଲି, ମାତ୍ର ଆଖିକୁ ଭଲ ଦିଶୁନଥିବାରୁ ସମୁଦାୟ ଲେଖା ପଢ଼ିନପାରି କେବଳ ଶିରୋନାମାଗୁଡ଼ିକ ପଢ଼ି ଦେଖିଲି ଯେ ୧୯୭୭ ମସିହା ଯାଏ ଯେତେ ଯେତେ ଘଟଣା ମୋ ଜୀବନରେ ଘଟିଯାଇଛି ତାର ଶତାଂଶରୁ ଏକାଂଶ ସୁଦ୍ଧା ଏଥିରେ ସ୍ଥାନ ପାଇ ନାହିଁ ।

ଯାହାହେଉ, ଗାନ୍ଧିଜୀ କହୁଥିଲେ ତୁମେ ଯଦି କୌଣସି କାମ କରିବାକୁ ମନ କରିବ, ସେ କାମ ଆରମ୍ଭ କରିବା ପୂର୍ବରୁ ଆଗେ ବିଚାର କରି ଦେଖିବ ଯେ ସେ କାମ କରିବା ଦ୍ୱାରା ସମାଜରେ ସବୁଠାରୁ ତଳେ ପଡ଼ିଥିବା ଲୋକର କିଛି ଉପକାର ହେବ କି ନାହିଁ । ସେ ଲୋକ ଯଦି ଉପକୃତ ନହେବ ତେବେ ତୁମ କାମ ଅକାରଣ ହୋଇଯିବ । ତେଣୁକରି ମୁଁ ଭାବିଲି ଯେ ଏତେ ସମୟ, ଶକ୍ତି ଓ ଅର୍ଥ ବ୍ୟୟ କରାଯାଇ ଏହି ଘଟଣାବଳୀକୁ ଯେ ବହି ଆକାରରେ ଛପାହେଉଛି, ଏହାଦ୍ୱାରା ସମାଜରେ ସବୁଠାରୁ ତଳେ ପଡ଼ି ରହିଥିବା ନାରୀ ସମ ଜାତି କୌଣସି ଉପକାର ହେବ କି ? ପ୍ରାଚୁର୍ଯ୍ୟ ମଧ୍ୟରେ ରହିଆସିଥିବା ବା ଦାରିଦ୍ର୍ୟର କଷାଘାତ ସହୁଥିବା, ଆମ ସମାଜରେ ନାରୀର ଅନ୍ତରରେ ସବୁବେଳେ ଗୋଟାଏ

ପ୍ରକାର ମାନସିକ ଅସହାୟତା, ମାନସିକ ଦାରିଦ୍ର୍ୟ ଉପୁଜନ୍ତି ଥାଏ । ନାନାପ୍ରକାର ବିଧି-ନିଷେଧ ଓ ଶୁଭାଶୁଭ ସଂସ୍କାରର ଗଣ୍ଡି ମଧ୍ୟରେ ଆବଦ୍ଧ ହୋଇ ତାର ଅନ୍ତରାତ୍ମା ଯେ ବିଶ୍ୱାତ୍ମା ସହିତ ମିଳିତ ହେବା ପାଇଁ ଆତୁର ହେଉଥାଏ, ସେ ଆତୁରତାକୁ ଦୂର କରିବା ପାଇଁ ସେ ନାନାପ୍ରକାର ପାର୍ଥିବ ସୁଖ ସ୍ୱଚ୍ଛଳତାର ଆଶ୍ରୟ ନିଏ । ମାତ୍ର ସେ ଉପାୟରେ ସେ ଆତୁରତା ମେଣ୍ଟି ପାରେନାହିଁ । ସେଥିପାଇଁ ଗାନ୍ଧିଜୀ ନାରୀସମାଜକୁ ଗୋଟିଏ ସୂତ୍ର ଦେଇଥିଲେ "ଘର୍‌କେ କାମ୍‌କେ ସାଥ୍ ବାହର୍‌କା କାମ୍‌କା ମେଲ ବିଠାନା ହୋଗା" । ନାରୀକୁ ପରିବାର-ସେବା ସହିତ ସମାଜ ସେବା କରିବା ଦାୟିତ୍ୱ ମଧ୍ୟ ବହନ କରିବାକୁ ହେବ ଏବଂ ଏ ଉଭୟ କାମ ସୁସ୍ଥୁରୂପେ ତୁଲାଇବାର କଳା ଆୟତ୍ତ କରିବା ହିଁ ହେବ ନାରୀର ସାଧନା । ସେତେବେଳେ ଅନେକେ ପ୍ରଶ୍ନ ଉଠେଇଥିଲେ—ପରିବାର-ସେବା ଓ ସମାଜ-ସେବା ଏ ଦୁଇ ନାବରେ ଗୋଡ଼ ଦେବା ଫଳରେ ପାରିବାରିକ କ୍ଷେତ୍ରରେ ଘୋର ବିଭ୍ରାଟ ଦେଖାଦେବ । ମାତ୍ର ଗାନ୍ଧିଜୀଙ୍କ ବିଶ୍ୱାସରେ ନାରୀ ପରିବାର-ସେବା ସହିତ ସମାଜ-ସେବାର ସମନ୍ୱୟ ଘଟାଇ ପାରିଲେ ପରିବାରର ସ୍ୱାର୍ଥ ଓ ସମାଜର ସ୍ୱାର୍ଥ ମଧ୍ୟରେ ଆଉ ବିରୋଧ ରହିବନାହିଁ—ଫଳରେ ସମାଜ ଓ ପରିବାର ଉଭୟର ଅଶେଷ ମଙ୍ଗଳ ସାଧିତ ହେବ ।

ଏ ଯେଉଁ ପରୀକ୍ଷା ଗାନ୍ଧୀଜୀ ଦକ୍ଷିଣ ଆଫ୍ରିକାରେ ଓ ଭାରତବର୍ଷରେ ଆମମାନଙ୍କୁ ଘେନି ଚଳାଇଥିଲେ, ସେ ପରୀକ୍ଷା ଅବଧି ସରିନାହିଁ । ଯେଉଁମାନେ ଘରକାମ ତୁଲାଇବା ସଙ୍ଗେ ସଙ୍ଗେ ସମାଜର ମଙ୍ଗଳ ସାଧନରେ ବ୍ରତୀ ହେବାପାଇଁ ସାଧନା କରୁଛନ୍ତି, ସେମାନଙ୍କ ସାଧନାରେ ମୋ ଜୀବନର ଘଟଣାବଳୀ ଯଦି କିଞ୍ଚିତ୍ ସୁଦ୍ଧା ସହାୟକ ହେବ, ତେବେ ଏ ଶ୍ରମ, ଶକ୍ତି ଓ ଅର୍ଥ ବ୍ୟୟ ବୃଥା ହେବ ନାହିଁ ବୋଲି ମୁଁ ଭାବିବି । କାରଣ ମୋର ବିଶ୍ୱାସ, ସତ୍ୟ, ପ୍ରେମ ଓ କରୁଣା ଉପରେ ଆଧାରିତ ଯେଉଁ ଶୋଷଣମୁକ୍ତ ସମାଜ ଗଢ଼ିବାପାଇଁ ଗାନ୍ଧୀ-ବିନୋବା-ଜୟପ୍ରକାଶ ଭଗୀରଥ-ଉଦ୍ୟମ କରିଗଲେ ଏବଂ ଆଜି ମଧ୍ୟ କେତେ ତ୍ୟାଗୀ ଜୀବନକୁ ପାଣିଛଡ଼େଇ ସେହି କାମରେ ଲାଗିଛନ୍ତି—ନାରୀ ସମାଜ ମଧ୍ୟରେ ସମାଜ ପ୍ରତି କର୍ତ୍ତବ୍ୟବୋଧ ଜାଗ୍ରତ ନ ହେବା ଯାଏ ତାହା କଦାପି ସଫଳ ହେବନାହିଁ ।

ସ୍ରୋତସ୍ୱିନୀର ପାଣି ଓ ଜଳୁଥିବା ଦୀପର ଶିଖା ଯେପରି ପ୍ରତିକ୍ଷଣରେ ବଦଳେ, ମଣିଷ ମଧ୍ୟ ସେହିପରି ପ୍ରତିକ୍ଷଣରେ ବଦଳିଯାଇ ନୂଆ ମଣିଷ ହୋଇ ଚାଲିଛି ବୋଲି ଶ୍ରୀମଦ୍ ଭାଗବତରେ କୁହାଯାଇଛି । ମୋ ଜୀବନର କେତେକ ଘଟଣା ଲିପିବଦ୍ଧ ହେବା ପରେ କେତେ ବର୍ଷ ବିତିଯାଇଥିବାରୁ ମୋ ଜୀବନ କେତେ ପ୍ରକାର ଘାତ ପ୍ରତିଘାତ ଭିତର ଦେଇ ଗତି କରି ଚାଲିଛି । ମାତ୍ର ବଡ଼ବାପାଙ୍କର ଯେଉଁ ଉକ୍ତିକୁ ପାଥେୟ କରି ଜୀବନ-ଯାତ୍ରା ଆରମ୍ଭ ହୋଇଥିଲି, ସେହି ଉକ୍ତି ହିଁ ଆଜି ଶେଷ ଜୀବନର ସମ୍ବଳ ହୋଇ ରହିଛି—

ଯାଉ ଏ ଜୀବନ ରହୁ ଏ ଜୀବନ
ଯିବା ଥିବା ସବୁ ମୋ ପକ୍ଷେ ସମାନ
ତୁମ୍ଭ ଇଚ୍ଛା ପ୍ରଭୁ ହେଉ ହେ ପୂରଣ ।

---

## ପରିଶିଷ୍ଟ-୧




ବଳଭଦ୍ର ଦାସଙ୍କ ତୃତୀୟ ପୁତ୍ର ସୁଦର୍ଶନ ଦାସ ମାଳିହତା ଦକ୍ଷିଣକବାଟଙ୍କ ଝିଅ କୃଷ୍ଣା ଦେଈଙ୍କୁ ବିବାହ କରିଥିଲେ । ତାଙ୍କର ପାଞ୍ଚ ପୁଅ । ୧୮୬୧ ଖ୍ରୀଷ୍ଟାବ୍ଦରେ ସୁଦର୍ଶନ ଦାସଙ୍କର ସତ୍ୟଭାମାପୁରରେ ମୃତ୍ୟୁ ହେଲା । କୃଷ୍ଣା ଦେଈ ସ୍ୱେଚ୍ଛାରେ ପତିଙ୍କ ଚିତା ଆରୋହଣ କରି ସତୀ ହେଲେ । ତାଙ୍କର ଜ୍ୟେଷ୍ଠପୁତ୍ର ଭଜନାନନ୍ଦଙ୍କ ଶାଖାରେ ମଧୁସୂଦନ ଓ ଗୋପାଳବଲ୍ଲଭ ଜାତ ହେଲେ । ଉମା ଓ ରମା ଗୋପାଳବଲ୍ଲଭଙ୍କ କନ୍ୟା । ଉମା ତେନ୍ତୁଳୀପଦାର ପଦ୍ମଚରଣ ପରିଡାଙ୍କୁ ଓ ରମା ଗୋପବନ୍ଧୁ ଚୌଧୁରୀଙ୍କୁ ବିଭାହୋଇଥିଲେ ।

# ପରିଶିଷ୍ଟ-୨

## ଜୀବନ-ବୃତ୍ତାନ୍ତ

### ଶ୍ରୀମତୀ ରମାଦେବୀ ଗୋପବନ୍ଧୁ ଚୌଧୁରୀ

ପିତାମାତା—ଗୋପାଳ ବଲ୍ଲଭ ଦାସ, ବସନ୍ତ କୁମାରୀ ଦେଈ, ସତ୍ୟଭାମାପୁର, କଟକ ।

ମାର୍ଗଶିର ପ୍ରଥମାଷ୍ଟମୀ ୧୯୧୪—ବିବାହ—ସ୍ୱାମୀ ଶ୍ରୀ ଗୋପବନ୍ଧୁ ଚୌଧୁରୀ ।

ଡ଼ିସେମ୍ବର ୧୯୧୪—ପିତାଙ୍କ ମୃତ୍ୟୁ

ଫେବୃଆରୀ ୧୯୧୫—ଶ୍ୱଶୁରଙ୍କ ମୃତ୍ୟୁ

୧୧ ଅକ୍ଟୋବର ୧୯୧୫—ପ୍ରଥମ ସନ୍ତାନ ମନମୋହନ ଚୌଧୁରୀ

୩ ନଭେମ୍ବର ୧୯୧୭—ଦ୍ୱିତୀୟ ସନ୍ତାନ ଅନ୍ନପୂର୍ଣ୍ଣା

୧୯୧୮—ଉତ୍କଳ ସମ୍ମିଳନୀରେ ମଧୁବାବୁ ଭାଷଣ ଦେଲେ—ବିଲାତରୁ ଲୁଗା ଆସୁଛି, ତେଣୁ ଆମ ମାନମହତ ବିଲାତ ହାତରେ । ଏ ଭାଷଣ ପ୍ରଭାବରେ ସୂତା କାଟିବା ଆରମ୍ଭ । ସାନ ନଣନ୍ଦ ବସନ୍ତ କୁମାରୀ ଦେଈଙ୍କ ବିବାହ ସମାଧାନ ।

୧୯୧୯—ତୃତୀୟ ସନ୍ତାନ ବିଜୟ

୨୧ ଫେବୃଆରୀ ୧୯୨୧—ଗୋପବନ୍ଧୁ ଚୌଧୁରୀ ଡେପୁଟୀ ମ୍ୟାଜିଷ୍ଟ୍ରେଟ୍ ପଦରୁ ଇସ୍ତଫା ଦେଲେ । ତୃତୀୟ ସନ୍ତାନର ମୃତ୍ୟୁ ।

ମାର୍ଚ୍ଚ ୧୯୨୧ (ଦୋଳପୂର୍ଣ୍ଣିମା)—ଗାନ୍ଧୀଜୀ ଓଡ଼ିଶା ଆସିଲେ । ବିନୋଦବିହାରୀ ହତାରେ ମହିଳା ସଭାରେ ଯୋଗଦାନ ।

ଡ଼ିସେମ୍ବର ୧୯୨୨—ନିଖିଳ ଭାରତ କଂଗ୍ରେସ କମିଟିର ବାର୍ଷିକ ଅଧିବେଶନରେ ପ୍ରତିନିଧି ରୂପେ ଗୟା କଂଗ୍ରେସରେ ଯୋଗଦାନ । ଖଦୀ ବୋର୍ଡ ପରେ ଚରଖା ସଂଘର ସଦସ୍ୟ ।

୧୯୨୪—କଟକରେ ଅନୁଷ୍ଠିତ ହେଉଥିବା ପ୍ରାଦେଶିକ ସମ୍ମିଳନୀରେ (ଟିକ୍ ଉହାଡ଼ରେ) ଯୋଗଦାନ ।

ଜୁଲାଇ ୧୯୨୭—ଦେବର ନବକୃଷ୍ଣ ଚୌଧୁରୀଙ୍କର ଆନ୍ତଃପ୍ରାଦେଶିକ ବିବାହ । ଅଲ୍ ଇଣ୍ଡିଆ ଉଇମେନ୍ସ କନ୍‌ଫରେନ୍‌ସର ସଦସ୍ୟ ।

ସେପ୍ଟେମ୍ବର ୧୯୨୮—ନିଖିଳ ଭାରତ କଂଗ୍ରେସ କମିଟିର କଲିକତା ଅଧିବେଶନରେ ପ୍ରତିନିଧିତ୍ୱ ।

୧୯୨୯—ଅଲକାଶ୍ରମରେ ଅବସ୍ଥାନ, କଂଗ୍ରେସ ସଦସ୍ୟ (ମହିଳା) ସଂଗ୍ରହ ।

୧୯୩୦—ଲବଣ ସତ୍ୟାଗ୍ରହରେ ଯୋଗଦାନ । ଶ୍ରୀଜଙ୍ଗ(ବାଲେଶ୍ୱର), କୁଜଙ୍ଗର ଗଣ୍ଡକୀପୁର (କଟକ)ରେ ଲବଣ ସତ୍ୟାଗ୍ରହ, ସତ୍ୟାଗ୍ରହ ପାଇଁ ଅର୍ଥ ସଂଗ୍ରହ, ସତ୍ୟାଗ୍ରହୀ ସଂଗ୍ରହ. ବିଲାତି ଲୁଗା ଦୋକାନରେ ପିକେଟିଂ, ପୁରୀ ସିଂହଦ୍ୱାରରେ ସାଧାରଣ ସଭାରେ ପ୍ରଥମ ଭାଷଣ, (ମାଳତୀ ଦେବୀ ଚୌଧୁରୀ ୨୪-୯-୩୦ରେ ଗିରଫ) ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି, ୮-୧୧-୩୦ ତାରିଖରେ ଗିରଫ, ଆଠମାସ ଶ୍ରମ କାରାଦଣ୍ଡ, ଭାଗଲପୁର ସେଣ୍ଟ୍ରାଲ ଜେଲ୍‌ରେ ଅବସ୍ଥାନ ।

ମାର୍ଚ୍ଚ ୧୯୩୧—ଗାନ୍ଧୀ-ଆରଉଇନ ଚୁକ୍ତି ଅନୁସାରେ କାରାମୁକ୍ତ । ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ଗସ୍ତ, କରାଚୀ କଂଗ୍ରେସ ଅଧିବେଶନରେ ପ୍ରତିନିଧିତ୍ୱ, ନି. ଭା. କଂ. କମିଟିର ସଦସ୍ୟ, ପୁରୀରେ ଆଗାମୀ ଅଧିବେଶନ ପାଇଁ ପ୍ରସ୍ତୁତି, ଅଭ୍ୟର୍ଥନା ସମିତି ସଦସ୍ୟ ସଂଗ୍ରହ ପାଇଁ ଓଡ଼ିଶା ଗସ୍ତ, ହିନ୍ଦୁସ୍ଥାନୀ ସେବାଦଳ ତତ୍ତ୍ୱାବଧାନରେ ସ୍ୱେଚ୍ଛାସେବିକା ତାଲିମ ପାଇଁ ସ୍ୱେଚ୍ଛାସେବିକା ସଂଗ୍ରହ କାର୍ଯ୍ୟ ।

ଜାନୁଆରୀ ୧୯୩୨—୨୬ ଜାନୁଆରୀ ପୂର୍ଣ୍ଣସ୍ୱରାଜ୍ୟ ସଙ୍କଳ୍ପପତ୍ର ପାଠ କରି ମାତା ପୁତ୍ର ଉଭୟେ ଗିରଫ । ଜୋରିମାନା ନ ଦେବା ସତ୍ତ୍ୱେ କାରାମୁକ୍ତ, ସତ୍ୟାଗ୍ରହୀ ସଂଗ୍ରହ କାର୍ଯ୍ୟ, ହରିଶପୁର, ଗୋଡ଼ା (କଟକ)ରେ ଲବଣ ସତ୍ୟାଗ୍ରହ, Kidnapping ଅପରାଧରେ ଗିରଫ ଓ ସଜା । ହଜାରିବାଗ ସେଣ୍ଟ୍ରାଲ ଜେଲକୁ ବଦଳି । ଅକ୍ଟୋବର ମାସରେ କାରାମୁକ୍ତ ହେବା ପରେ ହରିଜନ-ସେବା କାର୍ଯ୍ୟରେ ଆତ୍ମନିୟୋଗ । ପ୍ରା. ହରିଜନ-ସେବକ ସଙ୍ଘର ସେକ୍ରେଟାରୀ ।

୧୯୩୩—କଟକରେ ମଠସାହି, ରାଜାବଗିଚା, ଝାଞ୍ଜିରୀମଙ୍ଗଳା ଆଦିର ମେହେନ୍ତର ବସ୍ତିରେ ଔଷଧ ଦେବା, ପାଠ

ପଢ଼ାଇବା, ବସ୍ତି ସଫେଇ, ପୁରାଣ ପାଠ ଆଦି କାର୍ଯ୍ୟକ୍ରମ ପରିଚାଳନା, କୈବଲ୍ୟ କୁଟୀର ସ୍ଥାପନ, ସର୍ବସାଧାରଣ ସ୍କୁଲ କଲେଜ କୂଅ ପୋଖରୀ ବ୍ୟବହାର ପାଇଁ ହରିଜନଙ୍କୁ ଛାଡ଼ିଦେବାକୁ ଆନ୍ଦୋଳନ, କାଠଯୋଡ଼ି ବନ୍ୟା, ଓଡ଼ିଶା ରିଲିଫ କମିଟିର ସଦସ୍ୟ ଓ ଝଞ୍ଜାବିଧ୍ୱସ୍ତ ଅଞ୍ଚଳରେ ରିଲିଫ କାର୍ଯ୍ୟ, ରାଷ୍ଟ୍ରଭାଷା ପ୍ରଚାର କାର୍ଯ୍ୟ, ରାଷ୍ଟ୍ରଭାଷା ପ୍ରଚାର ସଭା ଗଠନ ।

ମେ ୧୯୩୪—ଗାନ୍ଧୀଜୀଙ୍କ ହରିଜନ ପଦଯାତ୍ରାର ଅନ୍ୟତମ ବ୍ୟବସ୍ଥାପିକା

ଅଗଷ୍ଟ ୧୯୩୪-୪୨—ବାରି ଯାତ୍ରା । ଗ୍ରାମସଙ୍ଗଠନ ଅର୍ଥାତ୍ ଗାଁ ସଡ଼କ ତିଆରି, ହରିଜନ ମନ୍ଦିର ପ୍ରବେଶ, ମୌଳିକ ଶିକ୍ଷା, ମହିଳା କର୍ମୀ ତାଲିମ, ନୈଶ ବିଦ୍ୟାଳୟ, ହୋମିଓପ୍ୟାଥି ଔଷଧ ଦେବା, ଗୋ ଉନ୍ନତି, ଖଦି, ମହୁଚାଷ, ଖଜୁରୀ ଗୁଡ଼ ତିଆରି, ନିରକ୍ଷରତା ଦୂରୀକରଣ, ପ୍ରାଥମିକ କଂଗ୍ରେସ କମିଟି ଗଠନ ଆଦି କାର୍ଯ୍ୟ

୧୯୩୮—ଗାନ୍ଧୀ ସେବା ସଂଘ ସଦସ୍ୟ, ବେରବୋଇରେ ଗାନ୍ଧୀ ସେବାସଂଘ ସମ୍ମିଳନୀର ଆୟୋଜକ । ମଧୁସ୍ମୃତି କମିଟିର ସଦସ୍ୟ ।

୯ ଅଗଷ୍ଟ, ୧୯୪୨—ଗିରଫ. କଟକ ଜେଲରେ ସିକ୍ୟୁରିଟି ପ୍ରିଜନର୍ ଭାବରେ ଅବସ୍ଥାନ (ସ୍ୱାମୀ, ଦେବର, ସାନ କାଆ, ପୁଅ, ଝିଅ, ଜ୍ୱାଇଁ, ଝିଆରୀ ବିଭିନ୍ନ ଜେଲ୍‌ରେ ବନ୍ଦୀ) ।

ଜୁଲାଇ, ୧୯୪୪—୧୯୪୪ ଜୁଲାଇରେ ଜେଲରୁ ଖଲାସ, ମହିଳା ସେବା ମଣ୍ଡଳ (ଉଆର୍ଦ୍ଧା)ର ସଦସ୍ୟ, ଅ. ଭା: ଚରଖା ସଂଘର ଟ୍ରଷ୍ଟୀ । ଜେଲରେ ଥିବା କର୍ମୀଙ୍କ ପିଲାଙ୍କପାଇଁ ରାମଚନ୍ଦ୍ର-ପୁର(କଟକ)ରେ ଛାତ୍ରାବାସ ସ୍ଥାପନା, ସମଗ୍ର ଗ୍ରାମସେବା ଯୋଜନା ପାଇଁ କର୍ମୀ ତାଲିମ ।

୧୯୪୫—ରାମଚନ୍ଦ୍ରପୁରରେ ଓଡ଼ିଆ ଭାଷା ମାଧ୍ୟମରେ ବାଲବାଡ଼ି ଓ ନୈଶ୍ ସ୍ଥାପନ, ହିନ୍ଦୁସ୍ତାନୀ ତାଲିମ ସଂଘ (ଉଆର୍ଦ୍ଧା) ସଦସ୍ୟ ।

୧୯୪୬—ଗାନ୍ଧୀଜୀଙ୍କଦ୍ୱାରା କସ୍ତୁରବା ଗାନ୍ଧୀ ରାଷ୍ଟ୍ରୀୟ ସ୍ମାରକ ଟ୍ରଷ୍ଟର ପ୍ରାଦେଶିକ ପ୍ରତିନିଧି ନିଯୁକ୍ତ । ୧୯୫୨ରେ ଏହି

ଦାୟିତ୍ୱରୁ ମୁକ୍ତ । କନ୍ୟାଶ୍ରମ ଓ କର୍ମୀ ତାଲିମ ଶିବିର ସ୍ଥାପନ ।

୧୯୪୭—ଉତ୍କଳ ଖଦୀମଣ୍ଡଳ ପାଇଁ ଅର୍ଥ ସଂଗ୍ରହ ଓ ଉତ୍କଳ ଖଦୀ ମଣ୍ଡଳର ସଦସ୍ୟ (ସ୍ଥାପିତ ୧-୮-୪୭), ମୌଳିକ ଶିକ୍ଷା ପ୍ରୟୋଗ । ରେଡ୍‌କ୍ରସ୍ ସୋସାଇଟିର ଉପସଭାପତି ।

୧୯୪୮—ବାଲବାଡ଼ୀ ଶିକ୍ଷକ ତାଲିମ କେନ୍ଦ୍ରର ଆୟୋଜନ, ଉତ୍କଳ ନବଜୀବନମଣ୍ଡଳର ସଦସ୍ୟ (ସ୍ଥାପିତ ୨୪-୧୦-୪୮)

୧୯୫୦—ଭୁମ୍ବୁଖରେଗଡ଼ାରେ ଆଦିବାସୀ-ସେବା-କେନ୍ଦ୍ର ସ୍ଥାପନ । ମହିଳା କର୍ମୀଙ୍କଦ୍ୱାରା ବ୍ୟାପକ କ୍ଷେତ୍ରରେ ଆଦିବାସୀ ସେବାକାର୍ଯ୍ୟ ସଞ୍ଚାଳନ, ଅଖିଳ ଭାରତ ସର୍ବୋଦୟ ସମ୍ମିଳନୀ (ଅନୁଗୁଳ)ର ଅନ୍ୟତମ ଆୟୋଜକ ।

୧୯୫୧—କୋରାପୁଟ ଦୁର୍ଭିକ୍ଷ, ମାଲତୀ ଦେବୀ ଚୌଧୁରୀଙ୍କ ସହ କୋରାପୁଟ ଗସ୍ତ, ରିଲିଫ ବ୍ୟବସ୍ଥା ।

୨୫ ଡିସେମ୍ବର, ୧୯୫୨ରୁ ଗୋପବନ୍ଧୁ ଚୌଧୁରୀଙ୍କ ସହ ପଦଯାତ୍ରୀ—

(କ) ବରୀ, ପରଜଙ୍ଗ, ଅନୁଗୁଳ, ଟାଲ୍‌ଚେର ।

(ଖ) ପୁରୀ, ବ୍ରହ୍ମଗିରି, ଗଞ୍ଜାମ, ଗୁଣପୁର, ରାୟଗଡ଼ା, ବସନ୍ତ କଟକ, କଳାହାଣ୍ଡି, ବଲାଙ୍ଗିର, ପଦ୍ମପୁର, ସମ୍ବଲପୁର, ଧାମା, ନରସିଂହପୁର, କଟକ-ଖଣ୍ଡସାହି ।

(ଗ) ବରୀ-ସୋରୋ ।

ପ୍ରାୟ ୨୦୦୦ ମାଇଲ ପଦଯାତ୍ରା । ଏକହଜାର ଦାତାଙ୍କ ଠାରୁ ଏକହଜାର ଏକର ଜମି ସଂଗ୍ରହ ଓ ଭୂଦାନମେଳା କାର୍ଯ୍ୟକ୍ରମର ଆୟୋଜନ । ଭୂଦାନ-ଗ୍ରାମଦାନ କାର୍ଯ୍ୟରେ ଆତ୍ମନିୟୋଗ ।

୧୯୫୫—ବିନୋବାଜୀଙ୍କ ଓଡ଼ିଶା ପଦଯାତ୍ରାର ଆୟୋଜକ, ଅଖିଳ ଭାରତ ସର୍ବୋଦୟ ସମ୍ମିଳନୀ (ପୁରୀ)ର ଅନ୍ୟତମ ଆୟୋଜକ ।

୧୯୫୭—ତନ୍ତ୍ରମୁକ୍ତ ନିଧିମୁକ୍ତ ହୋଇ କେନ୍ଦୁଝରରେ ଗ୍ରାମଦାନ ସଂଗ୍ରହ କାମ । ଅଖିଳଭାରତ ଶାନ୍ତିସେନା ମଣ୍ଡଳ ସଦସ୍ୟ ।

୨୯ ଏପ୍ରିଲ ୧୯୫୮—ଗୋପବନ୍ଧୁ ଚୌଧୁରୀଙ୍କ ଦେହାନ୍ତ, ଅଖିଳ ଭାରତ ସର୍ବୋଦୟ ସମ୍ମିଳନୀ, ପଣ୍ଢରପୁରରେ ସଭାପତିତ୍ୱ ।

୧୯୫୯-୬୧—କଟକରେ ଶାନ୍ତି ସେନା ଶିବିର ଓ ସର୍ବୋଦୟ ପାତ୍ର ସ୍ଥାପନ କାର୍ଯ୍ୟ ସଂଗଠନ, ବସ୍ତିରେ ଗାଁ ମୋକଦ୍ଦମା ଗାଁରେ ନିଷ୍ପତ୍ତି କରିବା ପାଇଁ ସମନ୍ୱୟ ସମିତି ଦ୍ୱାରା କାର୍ଯ୍ୟ, ବନ୍ୟା ରିଲିଫ କାର୍ଯ୍ୟ, ହରିଦାସପୁର ସେବା ସମିତି ଉଦ୍‌ଘାଟନ ।

ନଭେମ୍ବର ୧୯୬୨—ଚୀନଯୁଦ୍ଧ ପରେ ଶାନ୍ତିରକ୍ଷା ପାଇଁ ଆସାମ ସୀମାନ୍ତ ଯାତ୍ରା, କଟକରେ ଶିଶୁବିହାର, ସ୍ଥାପନ ।

୧୯୬୩—ବିନୋବା ପଦଯାତ୍ରା ଆୟୋଜନ

୧୯୬୪—ରାଉରକେଲା ସାଂପ୍ରଦାୟିକ ଗଣ୍ଡଗୋଳ, ଓଡ଼ିଶା ଗ୍ରାମ ଆନ୍ଦୋଳନରେ ଶାନ୍ତି ସ୍ଥାପନ କାର୍ଯ୍ୟସହ ଗ୍ରାମଦାନ, ଖଦି ଓ ଶାନ୍ତି-ସେନା ବିଷୟର ପ୍ରଚାର ମଧ୍ୟ ସଂଗଠନ ।

୭ ଅକ୍‌ଟୋବର, ୧୯୬୫—ଉତ୍କଳ ଗାନ୍ଧୀ ସ୍ମାରକ ନିଧିର ସଭାପତି ହୋଇ ଓଡ଼ିଆରେ

୧୯୬୬ ଗାନ୍ଧୀ ରଚନାବଳୀ ପ୍ରସ୍ତୁତ କରିବା ଯୋଜନା । କଳାହାଣ୍ଡି ଦୁର୍ଭିକ୍ଷ ପୀଡ଼ିତ ଅଞ୍ଚଳରେ ରିଲିଫ କାର୍ଯ୍ୟ, ଉତ୍କଳ ରିଲିଫ କମିଟିର ସଭାପତି, ଅନାଥାଶ୍ରମ ସ୍ଥାପନ, ରାଜ୍ୟପାଳ ଖୋସ୍‌ଲାଙ୍କଦ୍ୱାରା ପ୍ରସ୍ତାବିତ ପଦ୍ମଶ୍ରୀ ଉପାଧି ପ୍ରତ୍ୟାଖ୍ୟାନ ।

୧୯୬୭—ବାଲେଶ୍ୱର ବନ୍ୟା ଓ ବାତ୍ୟା ପୀଡ଼ିତଙ୍କ ସେବା, ଗୃହହୀନଙ୍କୁ ଗୃହ ପାଇଁ ଲୁଣା ପାଣି ବନ୍ଦ କରିବାକୁ ଘେର, କୂଅ, ପାଣି କଳ, ଧୀବରଙ୍କୁ ଜାଲ, ତନ୍ତୀଙ୍କୁ ତନ୍ତ, ଲୁଣ ମରାଳୀଙ୍କୁ ମୂଳଧନ ଆଦି ଯୋଗାଇଦେବା ରିଲିଫ କାମ । ତଦାନୀନ୍ତନ ମୁଖ୍ୟମନ୍ତ୍ରୀଙ୍କ ଅନୁରୋଧରେ ଆନ୍ଧ୍ରପ୍ରଭା ପତ୍ରିକାର ପ୍ରବନ୍ଧଜନିତ ଓଡ଼ିଆ-ତେଲେଗୁ ଅଶାନ୍ତିର ସମାଧାନ ।

୧୯୬୮—ଢେଙ୍କାନାଳ, କୋରାପୁଟ, ଗଞ୍ଜାମ, ବାଲେଶ୍ୱର ଆଦି ଆଠଟି ଜିଲ୍ଲାର ମରୁଡ଼ି ପରିସ୍ଥିତିର ମୁକାବିଲା ପାଇଁ ଜୟପ୍ରକାଶ ନାରାୟଣଙ୍କ ସହଯୋଗରେ ଦିଲ୍ଲୀରେ ଆନ୍ତର୍ଜାତିକ ରିଲିଫ୍ ସଂସ୍ଥାଙ୍କ ବୈଠକ ଓ ତଦାନୀନ୍ତନ ମୁଖ୍ୟମନ୍ତ୍ରୀଙ୍କ ସହଯୋଗରେ ବିଭିନ୍ନ ଜିଲ୍ଲାରେ ବିଭିନ୍ନ ସଂସ୍ଥା ପକ୍ଷରୁ ରିଲିଫ୍ ଦାନର ବ୍ୟବସ୍ଥା ।

ଡିସେମ୍ବର ୧୯୬୯—ଗାନ୍ଧୀ ଶତବାର୍ଷିକୀ ପାଳନ ପାଇଁ ଓଡ଼ିଶା ଗସ୍ତ, ଜମ୍ମୁ ଓଡ଼ିଆ—ବଙ୍ଗାଳୀ ଦ୍ୱନ୍ଦ୍ୱ, କଟକ ହିନ୍ଦୁ—ମୁସଲମାନ

ଦ୍ୱନ୍ଦ୍ୱର ସମାଧାନ ଉଦ୍ୟମ, ବାସୁଦେବପୁର (ବାଲେଶ୍ୱର) ଓଡ଼ିଆ—ବଙ୍ଗାଳୀ ଦ୍ୱନ୍ଦ୍ୱର ସମାଧାନ ।

୧୯୭୧-୭୨—ପଶ୍ଚିମ ଦିନାଜପୁର (ପଶ୍ଚିମବଙ୍ଗ) ହିଲ୍ ଅଞ୍ଚଳରେ ମହାମାରୀଗ୍ରସ୍ତ ବାଂଲାଦେଶ ଶରଣାର୍ଥୀଙ୍କ ସେବା, ରବିଶଙ୍କର ମହାରାଜଙ୍କ ସହଯୋଗରେ ଓଡ଼ିଶା ବାତ୍ୟା-ଦୁର୍ଗତ ଲୋକଙ୍କ ପାଇଁ ବ୍ୟାପକ ଘର ତିଆରି କାମ (୩୭୮୭ ପରିବାରଙ୍କ ପାଇଁ ଘର ତିଆରି) ।

୧୯୭୩-୭୪—ସ୍ତ୍ରୀ-ଶକ୍ତି-ଜାଗରଣ କାର୍ଯ୍ୟରେ ଆତ୍ମନିୟୋଗ ।

୧୯୭୫-୭୭—ଏମରଜେନ୍‌ସିର ବିରୋଧ, ଯୋରଥା ସାହୁ ଗୁଣନିଧି ଭବନରେ ପୁଲିସ ପହରା ।

୧୯୭୭—ଆଚାର୍ଯ୍ୟ ହରିହର ଦାସଙ୍କ ଶତବାର୍ଷିକୀ ଉପଲକ୍ଷରେ ଆଚାର୍ଯ୍ୟ ହରିହର ଦାସ ମେମୋରିଆଲ୍ ଟ୍ରଷ୍ଟ ସ୍ଥାପନ ଏବଂ କଟକରେ କ୍ୟାନସର୍ ରୋଗ ନିର୍ଣ୍ଣୟ କେନ୍ଦ୍ରର କାର୍ଯ୍ୟାରମ୍ଭ ।

---